

ଜଣେ ଶିକ୍ଷାବିତ୍‌ଙ୍କ ଆତ୍ମକଥା

# ଶିକ୍ଷାର କିଛି କଥା ଓ ବ୍ୟଥା

ପ୍ରଫେସର ପୂର୍ଣ୍ଣଚନ୍ଦ୍ର ରାଉତ



ପ୍ରକାଶକ :

କ୍ଲାସ ଓଡ଼ିଶା



"ଶିକ୍ଷାର କିଛି କଥା ଓ ବ୍ୟଥା"
ଜଣେ ଶିକ୍ଷାବିତ୍‌ଙ୍କ ଆତ୍ମକଥା

ଲେଖକ :
ପ୍ରଫେସର ପୂର୍ଣ୍ଣଚନ୍ଦ୍ର ରାଉତ

ପ୍ରକାଶକ :
କ୍ଲାସ ଓଡ଼ିଶା
ପ୍ଲଟ୍ ନଂ - ୯୫୮,
ପ୍ରକୃତି ବିହାର, ବରମୁଣ୍ଡା
ଭୁବନେଶ୍ୱର-୭୫୧ ୦୦୩

ପ୍ରକାଶ କାଳ
ଜୁଲାଇ, ୨୦୧୦

ପ୍ରଚ୍ଛଦ :
ସୁଧୀର କୁମାର ଲେଙ୍କା

ମୁଦ୍ରଣ :
ସୁଦେଷ୍ଣା କ୍ରିଏଟିଭ୍‌ସ
୯, ଷ୍ଟେସନ ସ୍କୋୟାର,
ୟୁନିଟ୍-୩, ଭୁବନେଶ୍ୱର

ମୂଲ୍ୟ : ୨୫୧ ଟଙ୍କା

"Sikshyara Kichhi Katha O Byatha"
Jane Sikhyabitnka Atmakatha

*Writer:*
*Prof.*Purna Chandra Rout, Ph.D.

*Publisher :*
CLASSORISSA
Plot No. 958, Prakruti Vihar
Baramunda,
Bhubaneswar- 751 003

*Publication :*
July, 2010

*Cover Design:*
Sudhir Kumar Lenka

*Printer :*
SUDESHNA CREATIVES
9, Station Square, Unit-III,
Bhubaneswar - 751 001

Pri[illegible]

# ମୁଖବନ୍ଧ

ପ୍ରତ୍ୟେକ ଆତ୍ମଜୀବନୀ ସମ୍ପୃକ୍ତ ବ୍ୟକ୍ତିଙ୍କର ଜୀବନ କଥା ହୋଇଥିଲେ ହେଁ ସେଥିରୁ ତାଙ୍କ ସମୟର ଚଳଣି, ଚିନ୍ତାଧାରା, କାର୍ଯ୍ୟଧାରା, ସାମୂହିକ ଜୀବନର ଏକ ବହୁମୁଖୀ ଚିତ୍ର ମିଳିଥାଏ। ନିଜ ଜୀବନ ଗଢି ହେଉଥିଲା ବେଳେ, ଜୀବନର ଖେଳ ଖେଳିଲାବେଳେ, ସଂଗ୍ରାମ ଲଢିବା ବେଳେ, ଜୀବନର ଆହ୍ୱାନଗୁଡିକର ମୁକାବିଲା କଲାବେଳେ ଜଣେ ସମ୍ପୂର୍ଣ୍ଣ ନିର୍ଲିପ୍ତ ରହିବା, ପ୍ରତି ପଦକ୍ଷେପରେ ସଚେତନ ରହିବା ସବୁବେଳେ ସମାନ ଭାବରେ ସମ୍ଭବ ନୁହେଁ। ତେଣୁ ପରବର୍ତ୍ତୀ କାଳରେ ସବୁ ଘଟଣାର ବର୍ଣ୍ଣନା କଲାବେଳେ, ସମୀକ୍ଷା କରି ଲେଖିଲାବେଳେ କେତେକ ପ୍ରାବୃତ୍ତିକ ତ୍ରୁଟି ବିଚ୍ୟୁତି ଧସେଇ ପଶିବାର ଆଶଙ୍କା ଥାଏ। ଆତ୍ମଜୀବନୀ ସମ୍ବନ୍ଧରେ ଏହି ବିଚାରକୁ ଗ୍ରହଣ କରିନେଲେ କୌଣସି ଆତ୍ମଜୀବନୀ ଆଉ ଖଟକା ଲାଗିବ ନାହିଁ। ତାହା ସମ୍ପୃକ୍ତ ବ୍ୟକ୍ତିଙ୍କର ବ୍ୟକ୍ତିଗତ ବୃତ୍ତାନ୍ତ ହେଲେ ହେଁ ସେଥିରେ ରହିଥିବା ସମକାଳୀନ ସମାଜ, ପରିବାର, ବ୍ୟକ୍ତି ତଥା ଜୀବନର ଆଭିମୁଖ୍ୟକୁ ବୁଝିବା ଲାଭଦାୟକ ହୋଇଥାଏ।

ଆମେ କେହି ପୂରାପୂରି ସ୍ୱତନ୍ତ୍ର ନୋହୁଁ। କେଉଁଠି ନା କେଉଁଠି, କାହାରି ସହ ହେଲେ କିଛି ନା କିଛି ପାରସ୍ପରିକ ସାମଞ୍ଜସ୍ୟ ରହିଥାଏ। ସେପରି ବ୍ୟକ୍ତି ନିଜ ଅନୁରୂପ ବ୍ୟକ୍ତିଙ୍କର ଜୀବନ କାହାଣୀରୁ ପ୍ରୋତ୍ସାହନ, ସମ୍ବେଦନା, ପ୍ରେରଣା, ସାନ୍ତ୍ୱନା ତଥା ମାର୍ଗଦର୍ଶନ ଖୋଜି ପାଇବାର ବହୁତ ସମ୍ଭାବନା ଥାଏ। ତେଣୁ ପ୍ରତ୍ୟେକ ଜୀବନ କାହାଣୀ ଅତ୍ୟନ୍ତ ଉପାଦେୟ ଓ ଆଦରଣୀୟ। ଏହି ସମସ୍ତ ବିଚାରରୁ ପୂର୍ଣ୍ଣସାରଙ୍କ ଜୀବନ କାହାଣୀ 'ଜଣେ ଶିକ୍ଷାବିତ୍‌ର କିଛି କଥା ଓ ବ୍ୟଥା' କୁ ବିଚାର କରାଯାଇପାରେ। ଏଥିରେ ଓଡିଶାରେ ଶିକ୍ଷା, ଶିକ୍ଷା ବ୍ୟବସ୍ଥା ସମ୍ବନ୍ଧରେ ଅନେକ ତଥ୍ୟ ଦିଆଯାଇଛି ଯାହା ଶିକ୍ଷାକ୍ଷେତ୍ରରେ କାମ କରୁଥିବା, ଶିକ୍ଷା ସମ୍ବନ୍ଧରେ ଚିନ୍ତା କରୁଥିବା ବ୍ୟକ୍ତିମାନେ ଜାଣିବା ନିହାତି ଆବଶ୍ୟକ।

ପୂର୍ଣ୍ଣସାର୍, ଆଜିର ପ୍ରଫେସର ପୂର୍ଣ୍ଣଚନ୍ଦ୍ର ରାଉତଙ୍କୁ ପ୍ରଥମେ ଜାଣିବାର ସୁଯୋଗ ୧୯୫୮ ମସିହାରେ ମତେ ମିଳିଥିଲା। ମୁଁ ଭଦ୍ରକ କଲେଜରେ ଆଇ.ଏସ୍ ସି. ପଢୁଥାଏ। ପ୍ରଧାନ ଛାତ୍ରବାସର ୧୩ କି ୧୪ ନମ୍ବର ରୁମ୍‌ରେ ମୋର ସିନିୟର୍ ସୂର୍ଯ୍ୟମଣି ଜେନା ଓ ସହପାଠୀ ତ୍ରିଲୋଚନ ଦାଶ ରହୁଥାନ୍ତି। ଉଭୟେ ମୋର ଅନ୍ତରଙ୍ଗ ଥିବାରୁ ମୁଁ ସେ ରୁମ୍‌କୁ ଅନେକ ସମୟରେ ଯାଉଥିଲି। ପୂର୍ଣ୍ଣସାର୍ ସେଇ ରୁମ୍‌ରେ ସୂର୍ଯ୍ୟମଣି ବାବୁଙ୍କର ଅତିଥି ହୋଇ କିଛିଦିନ ରହିଥିଲେ। ସେତେବେଳେ ସେ ଭଦ୍ରକ ସ୍କୁଲ ସବ୍‌ଇନିସ୍ପେକ୍ଟର ହୋଇ ନୂତନ ଭାବେ ଯୋଗ ଦେଇଥାନ୍ତି। ନିଜର ଘର ଯୋଗାଡ କରି ଯିବା ପୂର୍ବରୁ ସେଇ କେଇଦିନ ସାର୍‌ଙ୍କ ଠାରୁ ତାଙ୍କ କର୍ମ ଜୀବନର କଥା ଶୁଣିଥିଲି। ଆଉ ସେବେଠାରୁ ଆଜିଯାଏ ସାର୍‌ଙ୍କର କଥାକୁହା ଢଙ୍ଗ, ତତ୍ପରତା ଓ ଆଭିମୁଖ୍ୟକୁ ଦେଖିଲେ ମୋତେ ଅନେକ ସମୟରେ ଲାଗେ ଯେ ସାର୍‌ଙ୍କର ବିଚାର ଓ କର୍ମଧାରା ଶାଣିତ ହୋଇଥିଲେ ବି ସେ ବଦଳି ନାହାଁନ୍ତି କି ତାଙ୍କର ବୟସ ବଢିନାହିଁ। ଜଣେ ମଣିଷ ସୁଖରେ ଦୁଃଖରେ ଏତେ ଅବିଚଳିତ ରହିପାରନ୍ତି, ପୂର୍ଣ୍ଣ ସାର୍‌ଙ୍କ ସହ ନ ମିଶିଲେ ଜଣେ ବିଶ୍ୱାସ କରିପାରିବ ନାହିଁ। ବ୍ୟକ୍ତିଗତ ଜୀବନରେ ହେଉ କି ଚାକିରି ଜୀବନରେ ହେଉ ଯେ କୌଣସି ସମସ୍ୟା ଆସୁନା କାହିଁକି ତାକୁ ସେ ଫୁଟକିରେ ଉଡାଇ ଦେଲାଭଳି କହି ସହକର୍ମୀଙ୍କ ମନରେ ଯେଉଁ ଦମ୍ଭ ଦିଅନ୍ତି ଓ ପରମୁହୂର୍ତ୍ତରେ ତାର ସମାଧାନ ପାଇଁ ଯେଭଳି ପରାମର୍ଶ ଦିଅନ୍ତି ତାହା ପ୍ରତ୍ୟେକ ଉପରିସ୍ଥ ହାକିମଙ୍କର ଅନୁକରଣୀୟ।

ରାଜ୍ୟଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦରେ ମୋର ବିଭିନ୍ନ ଦାୟିତ୍ୱ ଭିତରେ ସ୍କୁଲ ଛାତ୍ରଛାତ୍ରୀଙ୍କ ପାଇଁ ବିଜ୍ଞାନ ପ୍ରଦର୍ଶନୀ କରାଇବା ଥିଲା ଅନ୍ୟତମ। ସେଥିପାଇଁ ଝଉରଚଝ ବା ରାଜ୍ୟ ସରକାର ପଇସାଟିଏ ଦେଇନଥାନ୍ତି। ଘଉରଚଝ ପଚିଶି ହଜାର ଟଙ୍କା ଦେଇଥାନ୍ତି। ମୋ ପୂର୍ବରୁ ବିଜ୍ଞାପନ ଜରିଆରେ ପ୍ରକଳ୍ପ ଆହ୍ୱାନ କରାଯାଇ ରାଜ୍ୟରେ ଗୋଟିଏ ଜାଗାରେ ଏହି ପ୍ରଦର୍ଶନୀ କରାଯାଉଥିଲା। ମୁଁ ଏହାକୁ ବ୍ୟାପକ କରାଇଲି। ସେଥିପାଇଁ ଟଙ୍କା କେଉଁଠୁ ଆସିବ ଠିକଣା ନଥାଏ। ସ୍କୁଲ ଓ ସର୍କଲ ସ୍ତର ପ୍ରଦର୍ଶନୀ ପାଇଁ ପାଣ୍ଠି ସଂଗ୍ରହ ଲାଗି ପ୍ରତି ପିଲାଙ୍କଠାରୁ ବର୍ଷକୁ ବିଜ୍ଞାନ ଫିସ୍ ବାବଦ ଦୁଇ ଟଙ୍କା ଆଦାୟ କରାଯାଇ ସ୍କୁଲରେ ଏକ ଟଙ୍କା ଓ ସର୍କଲରେ ଆଠଅଣା ରଖି ରାଜ୍ୟସ୍ତର ପାଇଁ ଆଠଅଣା ପଠାଇବା ଲାଗି ସରକାରଙ୍କୁ ମୁଁ ଏକ ପ୍ରସ୍ତାବ ଦେଲି। ସରକାର ଗୋଟିଏ କମିଟି ଗଠନ

କଲେ ଓ ପାଞ୍ଚ/ଛଅ ଥର ମିଟିଙ୍ଗ ପରେ ପଚିଶି ପଇସା ଫିସ୍ କରାଯାଇପାରେ ବୋଲି ପ୍ରସ୍ତାବ କଲେ। ମୁଁ ଆଉ ସେଥିରେ ମନ ନଦେଇ ପୂର୍ଣ୍ଣସାର୍‌ଙ୍କୁ କଥା ପ୍ରସଙ୍ଗରେ ସେ କଥା କହିଲି। ସେତେବେଳେ ସେ ଢେଙ୍କାନାଳ ଇନିସ୍ପେକ୍ଟର ଥାଆନ୍ତି। ମୋ କଥା ଶୁଣି ସେ ଯାହା କହିଥିଲେ ଏବେ ବି ମୋ କାନରେ ସ୍ପଷ୍ଟ ଧ୍ୱନିତ ହେଉଛି - ସେ କହିଥିଲେ, "ଓଃ ଏହିକଥା? ଏଥିପାଇଁ ତମେ ସରକାରଙ୍କ ପାଖକୁ କାହିଁକି ଯାଇଥିଲ? ଇନିସ୍ପେକ୍ଟରଙ୍କ କାର୍ଯ୍ୟପରିସର ମଧ୍ୟରେ ତାହା ଅନ୍ତର୍ଗତ। ମୁଁ କାଲି ଏ ଅର୍ଡର କରି ତମ ପାଖକୁ କପିଟେ ପଠାଇ ଦେଉଛି।" ସତକୁ ସତ ଚାରିପାଞ୍ଚ ଦିନ ଭିତରେ ଠିକ୍ ମୋ କହିବା ମୁତାବକ ଇନିସ୍ପେକ୍ଟରଙ୍କ ଅର୍ଡରଟିଏ ଢେଙ୍କାନାଳ ସର୍କଲରେ ବାହାରି ପଡିଲା। ତାଙ୍କ ଅର୍ଡର କପି କରି ମୁଁ ସମସ୍ତ ଇନିସ୍ପେକ୍ଟରଙ୍କୁ ଚିଠି ଦେଲି। ମୟୂରଭଞ୍ଜ ଇନିସ୍ପେକ୍ଟର ଗୌରବାବୁ ସଂଗେ ସଂଗେ ତାକୁ କାର୍ଯ୍ୟକାରୀ କରିଦେଲେ। ସର୍କଲ୍‌ମାନଙ୍କରେ ବିଜ୍ଞାନ ଫଣ୍ଡ ସୃଷ୍ଟି ହୋଇଗଲା।

କିଛିଦିନ ରାଜ୍ୟଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦରେ ମୋର କାମ କରିବା ଢଙ୍ଗକୁ ଦେଖି ପରବର୍ତ୍ତୀକାଳରେ ସେ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ହେଲାପରେ ସରକାରଙ୍କୁ କହି ପ୍ରାଥମିକ ଶିକ୍ଷା ଯୋଜନା ଉପନିର୍ଦ୍ଦେଶକ ଭାବରେ ମୋତେ ନେଲେ। ତାଙ୍କର ଅବସର ପରେ ସମୟ କ୍ରମେ ମୁଁ "ସମସ୍ତଙ୍କ ପାଇଁ ଶିକ୍ଷା" ପରିଷଦର ନିର୍ଦ୍ଦେଶକ ଥାଏ। ମତେ ଦିନେ ସେତେବେଳର ଶିକ୍ଷା ସଚିବ ଶ୍ରୀଯୁକ୍ତ ମଦନମୋହନ ମହାନ୍ତି ସମସ୍ତଙ୍କ ପାଇଁ ଶିକ୍ଷାପରିଷଦ ପାଇଁ ଜଣେ ପରାମର୍ଶଦାତା ରଖିବା ନେଇ ମୋର ମତାମତ ଲୋଡିଲେ। ମୁଁ କହିଥିଲି "ପୂର୍ଣ୍ଣସାର୍ ବିଚାରର ଯୌକ୍ତିକତାକୁ ଆଦର କରି ଗ୍ରହଣ କରିଥାନ୍ତି। ତେଣୁ ତାଙ୍କୁ ଆଣିବାରେ ମୋର ଆପତ୍ତି ନାହିଁ। ମାତ୍ର ଅନ୍ୟ କେହି ଆସିଲେ ମୋ କାମରେ ଅଯଥା ବାଧା ସୃଷ୍ଟି ହୋଇପାରେ।" ସେ କହିଲେ "ମୁଁ ସେହି ପ୍ରଫେସର ରାଉତଙ୍କ କଥା ହିଁ କହୁଛି।" ତାପରଠାରୁ ପୂର୍ଣ୍ଣସାର୍ ମୋ କାମକୁ ଯେତିକି ପାଖରୁ ଓ ଯେତେ ନିବିଡ ଭାବରେ ଦେଖିଛନ୍ତି ମୋ ପାଇଁ ତାଙ୍କର ଶ୍ରଦ୍ଧା ସେତିକି ଗଭୀର ହୋଇଥିବାର ସୂଚନା ମୁଁ ପାଇଛି। ଏଇଠି ସାର୍‌ଙ୍କର ଓ ମୋର ସଂପର୍କର ଗୋଟିଏ ଛୋଟ କଥା କହିଲେ ଅପ୍ରାସଙ୍ଗିକ ହେବନାହିଁ। ସମସ୍ତଙ୍କ ପାଇଁ ଶିକ୍ଷା ପ୍ରକଳ୍ପ ଭିତରେ ଦଶଟି ବ୍ଲକରେ ଗୋଷ୍ଠୀ କୈନ୍ଦ୍ରିକ ବିଦ୍ୟାଳୟ ଯୋଜନାର ନାମକରଣ "ଆମସ୍କୁଲ" ବୋଲି ମୁଁ ଚଟ୍‌କରି କହିବାରୁ ସାର୍ କହିଲେ "ନାଇଁମ,

ଆମ ସ୍କୁଲ କହିଲେ ତମ ସ୍କୁଲ ତାଙ୍କ ସ୍କୁଲ ଆଦି ସବୁ ରକମ କଥା ଉଠିବ।" ମୁଁ କହିଲି ସାର୍ ଆପଣ ଅଲଗା ନାଆଁଟିଏ ଦୁଇଦିନ ଭିତରେ କହନ୍ତୁ। ଦ୍ୱିତୀୟ ଦିନ ସାର୍ କହିଲେ "ନାଇଁ ନରେନ୍ଦ୍ର ତମେ ଦେଇଥିବା "ଆମସ୍କୁଲ" ନାଆଁଟା ହିଁ ସର୍ବୋତ୍ତମ - ଏଥିରେ ଏକ ନିରୁତା ଝରଭଝର ଢ଼ଳ ତଙ୍ଗଭରଵଝଷସଙ୍କୁ ଆସୁଛି ।" ସାର୍ ବଡ ହେଲେ ବି ସାନ ମାନଙ୍କର ଯଥାର୍ଥ ମତକୁ ଯେପରି ସମ୍ମାନ ଦିଅନ୍ତି ତାହା କ୍ୱଚିତ୍ ଦେଖାଯାଏ। ନୂଆ କଥା ଶୁଣିବା ଲାଗି, ଶିଖିବା ଲାଗି ପୂର୍ଣ୍ଣସାର୍‌ଙ୍କର ଆଗ୍ରହ ଓ ନିଷ୍ଠା ମଧ୍ୟ ଅତ୍ୟନ୍ତ ବିରଳ। ଏହିସବୁ ଧାରଣାକୁ ସାବ୍ୟସ୍ତ କରିବା ପାଇଁ ଏତିକି ଦୃଷ୍ଟାନ୍ତ ଅଛି କହିଲେ ପୋଥିଟିଏ ହେବ।

ପୂର୍ଣ୍ଣସାର୍‌ଙ୍କ ଜୀବନ କଥାରୁ କେହି ଭାବିପାରନ୍ତି ଯେ ଏଥିରେ ବ୍ୟଥାର ବର୍ଣ୍ଣନା ଅଧିକ। ଏଠାରେ ସମ୍ଭ୍ରମର ସହ ମୋ ନିଜ ସମ୍ବନ୍ଧରେ ପ୍ରଫେସର ଖଗେଶ୍ୱର ମହାପାତ୍ରଙ୍କୁ ପ୍ରଫେସର ବିଧୁଭୂଷଣ ଦାସ କହିଥିବା କଥାଟିଏ ଉଲ୍ଲେଖ କରିବା ସମୀଚୀନ ମନେ କରୁଛି। ଭୁବନେଶ୍ୱରସ୍ଥ ପାନ୍ଥ ନିବାସରେ ପ୍ରୌଢଶିକ୍ଷା ଓ ସାକ୍ଷରତା ସମ୍ବନ୍ଧରେ ଏକ ଆଲୋଚନା ସଭା ଡି.ପି.ଇ.ପି ଦ୍ୱାରା ଆୟୋଜିତ ହୋଇଥାଏ। ଡି.ପି.ଇ.ପିର ନିର୍ଦ୍ଦେଶକ ପ୍ରଫେସର ଦେବେନ୍ଦ୍ର କୁମାର ରାୟ ମତେ କିଛି କହିବା ପାଇଁ ବିଶେଷ ଭାବରେ ଅନୁରୋଧ କରିବାରୁ ମୁଁ କହିଥିଲି ଯେ ସାକ୍ଷରତା କାର୍ଯ୍ୟକ୍ରମ ଓ ପ୍ରୌଢଶିକ୍ଷା ରାଜ୍ୟରେ ବିଫଳ ହୋଇଛି। ସଭା ଶେଷରେ ପ୍ରଫେସର ଖଗେଶ୍ୱର ମହାପାତ୍ର ବିଧୁବାବୁଙ୍କ ସାମ୍ନାରେ ମତେ ପଚାରିଲେ ମୁଁ କାହିଁକି ଏତେ ନେତିବାଦୀ ହେଉଛି। ମୁଁ ଉତ୍ତର ଦେବା ପୂର୍ବରୁ ବିଧୁବାବୁ ଖଗେଶ୍ୱର ବାବୁଙ୍କୁ ତାଙ୍କ ପ୍ରଶ୍ନର ଉତ୍ତରରେ କହିଲେ ଯେ ଯେଉଁମାନେ ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରଖି ନିଷ୍ଠାପର ଭାବରେ କାମ କରୁଥାନ୍ତି ସେମାନଙ୍କର ଶ୍ରମ ବ୍ୟର୍ଥ ହେଲେ ସେମାନଙ୍କ ମୁହଁରୁ ନେତିବାଦୀ କଥା ବାହାରିଥାଏ। ଯାହା ଜୀବନରେ କୌଣସି ଲକ୍ଷ୍ୟ ହାସଲର ସ୍ୱପ୍ନ ନଥାଏ, ଯେଉଁମାନେ କାମ ନକରି ନିଜ ସମୟ ଭଲରେ କଟେଇ ଦେବାରେ ଲାଗିଥାନ୍ତି ସେମାନଙ୍କ କଥାରେ ବ୍ୟର୍ଥତାର ବ୍ୟଥା ନ ରହିବା ସ୍ୱାଭାବିକ। ପୂର୍ଣ୍ଣସାର୍‌ଙ୍କ ଜୀବନର ବ୍ୟଥା ସେହିଭଳି। ଓଡିଶାରେ ଶିକ୍ଷାକୁ ବାସ୍ତବରେ ପୁରପଲ୍ଲୀକୁ ନେଇଯିବା ପାଇଁ ତାଙ୍କର ଯେପରି ନିଷ୍ଠା ଥିଲା ସେଥିପାଇଁ ସୀମିତ ସମୟ ଓ ସମ୍ବଳ ଭିତରେ ସେ ଯେପରି ଚେଷ୍ଟା କରୁଥିଲେ ତାହା ଫଳବତୀ ନହେବାରେ ତାଙ୍କ ମନରେ ବ୍ୟଥା ଆସିବା ସ୍ୱାଭାବିକ।

ଏଭଳି ଏକ ବ୍ୟକ୍ତି ପୂର୍ଣ୍ଣସାର୍ ଯେତେବେଳେ ତାଙ୍କ ଆତ୍ମକଥାର ମୁଖବନ୍ଧ ଲେଖିବାକୁ ମତେ କହିଲେ ମୁଁ ସ୍ତବ୍ଧ ଓ ଚକିତ ହୋଇପଡିଲି । ମୁଁ କହିଲି, "ସାର୍ ଆପଣଙ୍କ ଆତ୍ମକଥାର ମୁଖବନ୍ଧ ଲେଖିବା ମୋ ପାଇଁ ଏକ ଅନନ୍ୟ ସାଧାରଣ ଗୌରବ ହେଲେବି ମୁଁ ଭାବୁଛି ଏତେବଡ ସମ୍ମାନ ପାଇଁ ମୋର ଯୋଗ୍ୟତା ନାହିଁ ।" ସାର୍ ପଣ୍ଡିତ ନୀଳକଣ୍ଠଙ୍କ କୌଣାର୍କେ କାବ୍ୟର ଡକ୍ଟର ମାୟାଧର ମାନସିଂ ଯେଉଁ ପରିସ୍ଥିତିରେ ମୁଖବନ୍ଧ ଲେଖିଥିଲେ ତାର ଅବତାରଣା କରି କହିଲେ ମୋ ଛଡା ଆଉ ଜଣେ ଦୁଇଜଣ ଲେଖିପାରିଥାନ୍ତେ - ମାତ୍ର ମୁଁ ଲେଖେ ବୋଲି ସେ ସ୍ଥିର କରିସାରିଛନ୍ତି । ତେଣୁ ମୁଖବନ୍ଧରେ ସାର୍‌ଙ୍କ ନେଇ ବା ତାଙ୍କ ଜୀବନ ତଥା କର୍ମଧାରା ନେଇ କିଛି କହିବାର ଦୁଃସାହସ ମୋର ନାହିଁ । କେବଳ ଗୋଟିଏ ଦୁଇଟି ସାଧାରଣ କଥା କହି ମୋ କଥା ଶେଷ କରିବି ।

ପୂର୍ବରୁ କହିଛି ଯେ ପ୍ରତ୍ୟେକ ଜୀବନୀ ସମକାଳୀନ ସମାଜର, ଆଭିମୁଖ୍ୟର, କର୍ମଧାରାର ଏକ ଅଭିଲେଖ । ପ୍ରକୃତରେ ଓଡିଶାରେ ଶିକ୍ଷା ବିଶେଷକରି ସ୍କୁଲଶିକ୍ଷା ବା ପ୍ରାଥମିକ ଶିକ୍ଷାର ଏକ ଅବିକଳ ଇତିହାସ ନାହିଁ । ପ୍ରାଥମିକଶିକ୍ଷା ଓ ବିଦ୍ୟାଳୟ ଶିକ୍ଷାର ଇତିହାସ ଆଧାରିତ ଯେଉଁ କେତେକ ପୁସ୍ତକ, ପୁସ୍ତିକା ଦେଖାଯାଏ ସେ ଗୁଡିକ ଯନ୍ତ୍ରବତ ନୀତି ଆଧାରିତ । ସେଥିରେ ଅଙ୍ଗେ ଲିଭେଇବା ଘଟଣା ପ୍ରବାହ ନଥିବାରୁ ସେଗୁଡିକ ଅତି ଜୀବନ୍ତ ମନେ ହୁଏନାହିଁ । କିନ୍ତୁ ପୂର୍ଣ୍ଣସାର୍‌ଙ୍କ କଥା ଓ ବ୍ୟଥା ଏ ଦୃଷ୍ଟିରୁ ଏକ ନିଆରା ସୃଷ୍ଟି । ସେ ବେସରକାରୀ ସ୍କୁଲରେ ଶିକ୍ଷକତା କରିବାଠାରୁ, ସ୍କୁଲ ସବଇନିସ୍‌ପେକ୍ଟର, ଇନିସ୍‌ପେକ୍ଟର, ଆସିଷ୍ଟାଣ୍ଟ ଡିରେକ୍ଟର, ଡେପୁଟି ଡିରେକ୍ଟର ଠାରୁ ଡିରେକ୍ଟର ପର୍ଯ୍ୟନ୍ତ ଦାୟିତ୍ୱ ତୁଲାଇଛନ୍ତି । ଏ ଦୃଷ୍ଟିରୁ ଓଡିଶାରେ ସେ ଅଦ୍ୱିତୀୟ । ତେଣୁ ତାଙ୍କ କଥାରେ ଯେଉଁ ସତ୍ୟ ଓ ଆନ୍ତରିକତାର ଚିହ୍ନ ଦେଖାଯାଇଛି ତାଙ୍କ ବ୍ୟଥାରେ ମଧ ତାଙ୍କର ଅନୁରୂପ ଆତ୍ମିକତା ସୃଷ୍ଟି ହୋଇଛି । ଆଉ ସେ ନିଜକୁ ନିଜେ ଗଢିଥିବା ଜଣେ ମଣିଷ ଓ ସାଧମତେ ସତ୍ୟନିଷ୍ଠ ହୋଇଥିବାରୁ ତାଙ୍କଠାରେ, ତାଙ୍କ ଲେଖାରେ ଯେଉଁ ଦାମ୍ଭିକତା ପରିସ୍ଫୁଟିତ ହୋଇଛି ତାହା ଅତ୍ୟନ୍ତ ସ୍ୱାଭାବିକ । ତାଙ୍କର ଅନେକ କଥାର ସାକ୍ଷୀ ରହିଥିବା ସଙ୍ଗେ ସଙ୍ଗେ ତାଙ୍କର କେତେକ ବ୍ୟଥାରେ ମଧ ମୁଁ ସାକ୍ଷୀ ରହିଛି । ମୋର ଜଣେ ବନ୍ଧୁ ଯେ କି ପ୍ରଥମରୁ ସାର୍‌ଙ୍କର ଅଧିକ ପ୍ରିୟ ଓ ନିକଟତର ହୋଇପାରିଥିଲେ ସେହି ବନ୍ଧୁଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଆଶଙ୍କା ସୃଷ୍ଟି ହୋଇଥିଲା । ତାଙ୍କ ସମ୍ବନ୍ଧରେ ମୋ ମତାମତ ଲୋଡାଯାଇଥିଲା ।

ମୋ ରିପୋର୍ଟ ଦେଖିବାକୁ ସାର୍ କହନ୍ତେ ତାହା ଗୋପନୀୟ ତେଣୁ ସାର୍ ମୋତେ ରିପୋର୍ଟ ଦେଖେଇବାକୁ ନକହିବା ଉଚିତ୍ ବୋଲି କହିଲି । ତଥାପି ସାର୍ ବାଧ୍ୟ କଲେ ଓ ମୋ ରିପୋର୍ଟର ନିରପେକ୍ଷତାକୁ ପ୍ରଶଂସା କଲେ ବି ଗୋଟିଏ ବାକ୍ୟକୁ ବଙ୍କେଇ କହିବାକୁ ବାଧ କଲେ । ମୁଁ ଅସନ୍ତୁଷ୍ଟ ହେଲି । ସାର୍ ମତେ ଦୁଇଦିନ ବୁଝାଇଲେ । ଶେଷରେ ମୁଁ ସେହି ବାକ୍ୟଟିକୁ ସାମାନ୍ୟ ବଦଳେଇଦେଲି - ସାର୍ଙ୍କ କଥାରେ ବଦଳା ବାକ୍ୟଟି ଯୁଧିଷ୍ଠିରଙ୍କ "ନରେ ବା ଗୁଞ୍ଜରେ ଅଶ୍ୱତ୍ଥମା ହତ" ଭଳି ଥିଲା । ସେ ବନ୍ଧୁ ବର୍ତ୍ତିଗଲେ ମାତ୍ର ପରବର୍ତ୍ତୀ ସମୟରେ ସେହି ବନ୍ଧୁଙ୍କର ଆଚରଣ ସାର୍ଙ୍କୁ ବହୁତ ବ୍ୟଥିତ କରିଥିଲା ।

ସାଧାରଣତଃ ପୂର୍ଣ୍ଣସାର୍ କେବେ କୌଣସିଥିରେ ବିଚଳିତ ହୁଅନ୍ତି ନାହିଁ । ସେହି ଚିରହାସ୍ୟମୟ ଚରିତ୍ର ହିଁ ତାଙ୍କର ବୈଶିଷ୍ଟ୍ୟ ଓ ତାଙ୍କ ସୁସ୍ଥ ଦେହ ଓ ମନର ମୌଳିକ କାରଣ । ସାର୍ ଆହୁରି ବହୁ ବର୍ଷ ନିରାମୟ ଜୀବନ କଟାନ୍ତୁ ଏବଂ ଆମପରି ଗୁଣମୁଗ୍ଧ ଅନୁଜମାନଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇରହନ୍ତୁ । ଏତିକି କାମନା କରି ଈଶ୍ୱରଙ୍କ ପାଖରେ ସାର୍ଙ୍କର ଶାନ୍ତି ପାଇଁ ପ୍ରାର୍ଥନା ଜଣାଇ ରହୁଛି ।

॥ ଇତି ॥

ସାର୍ଙ୍କ ନରେନ୍ଦ୍ର

(ଡଃ. ନରେନ୍ଦ୍ର ପ୍ରସାଦ ଦାସ)



# ଲେଖକଙ୍କ କଲମରୁ

"ଶିକ୍ଷାର କିଛି କଥା ଓ ବ୍ୟଥା" ଏକ ସତ୍ୟାଶ୍ରୟୀ ବିବରଣୀ । ବାସ୍ତବତା ସହିତ କଳ୍ପନା ନ ମିଶିଲେ ସାହିତ୍ୟ ହୋଇ ପାରେନା ବୋଲି ସମାଲୋଚକମାନେ କହନ୍ତି । ଏ ବିଷୟରେ ଅବହିତ ଥାଇ ମଧ୍ୟ ମୁଁ ଏଥିରେ କଳ୍ପନା ମିଶାଇ ନାହିଁ । ତା'ହୋଇଥିଲେ ଓଡିଶା ଶିକ୍ଷାର (କ୍ରମ ବିକାଶ ନୁହେଁ) କ୍ରମ ପରିଣାମର ଏକ ବିଶ୍ୱସନୀୟ ଦଲିଲ୍ ଭାବରେ ଏ ଲେଖାର ତାତ୍ପର୍ଯ୍ୟ ରହି ନ ଥାନ୍ତା ।

ଓଡିଶାରେ ଶିକ୍ଷାର କ୍ରମ ପରିଣାମର ଏକ ଧାରାବାହିକ ଇତିହାସ ନାହିଁ । ଏ ଲେଖା ବି ଠିକ୍ ଇତିହାସ ନୁହେଁ କାରଣ ଏଥିରେ ମୋର ବ୍ୟକ୍ତିଗତ ଅନୁଭୂତି ମିଶି ଯାଇଛି । ତଥାପି ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷା କାଳ ସ୍ରୋତରେ କିପରି ଗତି କରିଛି ତାର ଏକ ସ୍ପଷ୍ଟ ଚିତ୍ର ଏଥିରୁ ମିଳିବ । ମୋର ଅନୁଭୂତି ମିଶିଯାଇ ଶିକ୍ଷାର କ୍ରମ ପରିଣାମ ଚିତ୍ରକୁ ଜୀବନ୍ତ କରିଛି ବୋଲି ମୋର ଧାରଣା । ସଂପୂର୍ଣ୍ଣ ବ୍ୟକ୍ତି ନିରପେକ୍ଷ ଲେଖା ସମ୍ଭବ ନୁହେଁ । ଏପରିକି ଇତିହାସ ବି ନୁହେଁ । ଐତିହାସିକର ବ୍ୟକ୍ତିତ୍ୱ, ସାମାଜିକ-ରାଜନୈତିକ ଚିନ୍ତାଧାରା ଇତିହାସ ମଧ୍ୟରେ ପ୍ରବେଶ କରିଯିବାକୁ ପ୍ରତିହତ କରିବା ସମ୍ଭବ ନୁହେଁ ।

ପାଠ୍ୟକ୍ରମ ଓ ପାଠ୍ୟକ୍ରମର ପରିଚାଳନା ଶିକ୍ଷାର ଗୁଣାତ୍ମକ ମାନ ନିୟନ୍ତ୍ରଣ କରେ । ଶିକ୍ଷାର ଗୁଣାତ୍ମକ ମାନ ବିଷୟରେ ଅବଗତ ହେବାର ଆବଶ୍ୟକତା ଥିବାରୁ ପାଠ୍ୟକ୍ରମ ବିଷୟରେ ଆଲୋଚନା କରିବାକୁ ପଡିଲା । ଅତୀତରେ ପ୍ରଚଳିତ ପାଠ୍ୟକ୍ରମଗୁଡିକ ସହଜରେ ମିଳୁ ନ ଥିବା ଯୋଗୁ ପାଠ୍ୟକ୍ରମର ତୁଳନାତ୍ମକ ବିଚାର କରିବା ସମ୍ଭବ ହୁଏ ନାହିଁ । ବିଗତ ୬୦ ବର୍ଷ ମଧ୍ୟରେ ପ୍ରଚଳିତ ସମସ୍ତ ପାଠ୍ୟକ୍ରମ ମୋର ଅନୁଭୂତି ପରିସର ମଧ୍ୟରେ ଅନ୍ତର୍ଗତ । ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ପରଠାରୁ ପ୍ରଚଳିତ ସମସ୍ତ ପାଠ୍ୟକ୍ରମର ତୁଳନାତ୍ମକ ଆଲୋଚନା କରି ରାଜ୍ୟର ଶିକ୍ଷା ଉପରେ ତା'ର ପ୍ରଭାବ ବିଷୟରେ ସୂଚନା ଦେଇଛି ।

ମୋର କାର୍ଯ୍ୟକାଳ ଦୁଇ ଭାଗରେ ବିଭକ୍ତ  ଶିକ୍ଷକ ଜୀବନ ଓ ଶିକ୍ଷା ପ୍ରଶାସକର ଜୀବନ । ପ୍ରଥମ ଭାଗଟିକୁ ପ୍ରଭାବିତ କରିଛନ୍ତି ପ୍ରଫେସର ଶତ୍ରୁଘ୍ନ ନାଥ ଓ ଦ୍ୱିତୀୟ ଭାଗଟି ପ୍ରଫେସର ବିଧୁଭୂଷଣ ଦାସ । ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ଭଳି ରଚନାତ୍ମକ ମନୋଭାବାପନ୍ନ ଶିକ୍ଷକ ଯଦି ଓଡିଶାରେ ଆଉ କେତେ ଜଣ ଜନ୍ମ ନେଇଥାନ୍ତେ ଓଡିଶାର ଶିକ୍ଷାଚିତ୍ର ଭିନ୍ନ ପ୍ରକାର ହୋଇଥାନ୍ତା । ସେହିପରି ବିଧୁଭୂଷଣ ଦାସଙ୍କ ଭଳି ଶିକ୍ଷା ପ୍ରଶାସକ ଆଉ କେତେ ଜଣ ଥିଲେ ପ୍ରଶାସନର ମର୍ଯ୍ୟାଦା କେତେ ବଢି ଯାଇଥାନ୍ତା । ଯୋଗ୍ୟତା ଓ ଦକ୍ଷତା ନ ଥିବା କେତେକ ଶିକ୍ଷକ ଶିକ୍ଷାବିତ୍ ହେବା ପାଇଁ ବିଭିନ୍ନ ପନ୍ଥା ଅବଲମ୍ବନ କରି ଉପରକୁ ଉଠିଥିବାରୁ ଶିକ୍ଷାର କେତେ ଅଧୋଗତି ହୋଇଛି ତା'ର ସାମାନ୍ୟ ସୂଚନା ଏ ବହିରେ ଦିଆଯାଇଛି ।

ଲୋକ ବିଜ୍ଞାନ ଆନ୍ଦୋଳନ (ଚରକ୍ବକ୍ବକ୍ଷର'ଷ ଝମସରଭମର ଗକ୍ବଝରଜ୍ଞରଭଷ) ଲୋକଙ୍କ ମଧ୍ୟରେ ବିଜ୍ଞାନ ସଚେତନତା ଆଣି ଦେବା ସଙ୍ଗେ ସଙ୍ଗେ "ଲୋକଶାଳା" ଭଳି ଏକ ବିକଳ୍ପ ପ୍ରାଥମିକ ଶିକ୍ଷା ନମୁନା ସୃଷ୍ଟି କରିଛି । ମହାତ୍ମା ଗାନ୍ଧିଙ୍କ ପରେ ଏ ପ୍ରକାର ଉଦ୍ୟମ ଅନ୍ୟ କେହି କରିନାହାନ୍ତି । ଦୈବକ୍ରମେ "ଲୋକଶାଳା" ନମୁନା ମହାତ୍ମା ଗାନ୍ଧିଙ୍କ ନୟି ତାଲିମ ଆଦର୍ଶରେ ଅନୁପ୍ରାଣିତ ହୋଇଛି । ତା ବ୍ୟତୀତ ପିଲାଙ୍କ ବିଜ୍ଞାନ କଂଗ୍ରେସ ଏବେ ବି ପିଲାଙ୍କ ମନରେ ବିଜ୍ଞାନ ପ୍ରତି ଶ୍ରଦ୍ଧା ଜାଗ୍ରତ କରୁଛି । ସ୍ଥାନୀୟ ସମସ୍ୟାକୁ ନେଇ ପିଲାମାନଙ୍କର ବୈଜ୍ଞାନିକ ବିଶ୍ଳେଷଣ ଏକ ମହାନ୍ ପରଂପରା ସୃଷ୍ଟି କରିଛି । ମୋର ଭାରତ ଜନ ବିଜ୍ଞାନ ଆନ୍ଦୋଳନରେ ଯୋଗଦାନ ସାର୍ଥକ ହୋଇଛି ବୋଲି  ବିଶ୍ୱାସ ।

ମୋର ଶିକ୍ଷା ପ୍ରଶାସନ କାଳରେ ମୁଁ ବହୁ ସମସ୍ୟାର ସମ୍ମୁଖୀନ ହୋଇଛି ଓ ସେ ସବୁର ସମାଧାନ କରିଛି । ଯେ କୌଣସି ଶିକ୍ଷା ପ୍ରଶାସକ ଏହିପରି ସମସ୍ୟାର ସମ୍ମୁଖୀନ ହେବା ସ୍ୱାଭାବିକ । ମୋର ସମସ୍ୟା ସମାଧାନ ପ୍ରକ୍ରିୟା ଶିକ୍ଷା ପ୍ରଶାସକଙ୍କୁ ସାହାଯ୍ୟ କରିବ ବୋଲି ମୋର ଆଶା ।

ମୋର ଏହି ଲେଖା ପଢିଲେ ଯେ କୌଣସି ବ୍ୟକ୍ତି ଉପଲବ୍ଧି କରିବ ଯେ ଶିକ୍ଷାର କଥା ଅପେକ୍ଷା ବ୍ୟଥା ଅଧିକ । ଏ ବ୍ୟଥା ଯେ କୌଣସି ଶିକ୍ଷା ପ୍ରେମୀକୁ ବ୍ୟଥିତ କରିବ । ଏ ବ୍ୟଥା ସୃଷ୍ଟି ପାଇଁ ଯେଉଁମାନେ ଦାୟୀ ତାଙ୍କର ଅନୁଶୋଚନା ନାହିଁ । କାରଣ ବ୍ୟଥା ସୃଷ୍ଟି କରି ସେମାନେ ଲାଭବାନ୍ ହୋଇଛନ୍ତି ।

ଏ ଲେଖାରେ ଶିକ୍ଷାର ବହୁ ବ୍ୟଥାର ବର୍ଣ୍ଣନା ପାଠକରି କେହି କେହି ମୋତେ ଜଣେ ନେତିବାଦୀ ବୋଲି ଭାବି ପାରନ୍ତି କିନ୍ତୁ ମୁଁ ନେତିବାଦୀ ନୁହେଁ । କାମ କରି ସଫଳତା ପାଇବାରେ ମୁଁ ବିଶ୍ୱାସ କରେ । ବାସ୍ତବ ଜୀବନରେ ମୁଁ ଆଶାବାଦୀ (ଡକ୍ସଵସଛସଷଵ) କିନ୍ତୁ ବାସ୍ତବ ସ୍ଥିତିର ବର୍ଣ୍ଣନା କଲେ ତାର ଚିତ୍ର ଏହିପରି ହେବ ।

ସରକାରୀ ଚାକିରୀର ବିରକ୍ତିକର ରୁଦ୍ଧ ପରିବେଶରୁ ମୁକ୍ତିଲାଭ କରି ଭାରତ ଜନ ବିଜ୍ଞାନ ଯାଥାରେ ଯୋଗ ଦେଲି । ଏହି କାମରେ ବହୁ ଲୋକଙ୍କ ସହିତ ମିଶିବାର ସୁଯୋଗ ମିଳିଲା । ସ୍ୱେଚ୍ଛାସେବୀ ଅନୁଷ୍ଠାନରେ କାମ କରିବା ଅବସରରେ ଲୋକଙ୍କ ସହିତ ମିଶି ଯେଉଁ ଆନନ୍ଦ ଓ ସନ୍ତୋଷ ମିଳିଲା ତାହା ସରକାରୀ ଚାକିରୀ ଜୀବନରେ ଦୁଷ୍ପ୍ରାପ୍ୟ । ସେତିକି ନ ହୋଇଥିଲେ ଜୀବନ ଅପୂର୍ଣ୍ଣ ରହି ଯାଇଥାନ୍ତା ।

ମୋର ଅନେକ ଶୁଭାକାଂକ୍ଷୀ ଥିଲେ ଓ ଅଛନ୍ତି । ସେମାନଙ୍କ ପ୍ରେରଣା ଓ ଶୁଭେଚ୍ଛା ମୋତେ ମୋର କର୍ତ୍ତବ୍ୟ ପଥରେ ଆଗେଇ ନେଇଛି । ସେମାନଙ୍କ ମଧ୍ୟରୁ କେତେକ ହେଲେ, ପ୍ରଫେସର ବିଧୁଭୂଷଣ ଦାସ, ପ୍ରଫେସର ଦେବେନ୍ଦ୍ର ନାଥ ମିଶ୍ର, ପ୍ରଫେସର ଶତ୍ରୁଘ୍ନ ନାଥ, ପ୍ରଫେସର ଜୟକୃଷ୍ଣ ମିଶ୍ର, ପ୍ରଫେସର ଗୌରୀ କୁମାର ବ୍ରହ୍ମା, ପ୍ରଫେସର କୈଳାସ ଚନ୍ଦ୍ର ପଣ୍ଡା, ଅଧ୍ୟାପକ ଯଦୁମଣି ମହାପାତ୍ର, ଅଧ୍ୟାପକ ସୁଧାଂଶୁ ମୋହନ ରାୟ, ପ୍ରଫେସର ଧରଣୀଧର ଜେନା, ପ୍ରଫେସର କାଳି କୁମାର ଦାସ, ପ୍ରଫେସର ଶରତ ଚନ୍ଦ୍ର ଦାଶ ଓ ଶିକ୍ଷା ଉପସଚିବ କ୍ଷେତ୍ରମୋହନ ମଙ୍ଗରାଜ ।

ଯେଉଁ ବନ୍ଧୁମାନଙ୍କ ଶୁଭେଚ୍ଛା, ସାହାଯ୍ୟ ଓ ସହଯୋଗ ମୋତେ ପ୍ରେରଣା ଦେଇଛି ସେମାନଙ୍କ ମଧ୍ୟରୁ କେତେକ ହେଲେ : କ୍ୟାପ୍‌ଟେନ୍ ପ୍ରଭାକର ଶତପଥୀ, ଡକ୍ଟର ଦଶରଥ ନାୟକ, ଡକ୍ଟର ଦୁର୍ଗାପ୍ରସନ୍ନ ପଣ୍ଡା ବନ୍ଧୁ ରଜତ କୁମାର କର, ମାଧବ ଚନ୍ଦ୍ର ଶତପଥୀ, କ୍ଷେତ୍ରମୋହନ ଶତପଥୀ ଓ ସହଯୋଗୀ ଡକ୍ଟର ନରେନ୍ଦ୍ର ପ୍ରସାଦ ଦାସ ଓ କାଳିଦତ୍ତ ଦାଶ ।

ଏ ପୁସ୍ତକ ପ୍ରକାଶନ ଦାୟିତ୍ୱ ନେଇଥିବାରୁ ଶ୍ରୀ ଅତୀଶ ମହାନ୍ତିଙ୍କୁ ଧନ୍ୟବାଦ ଅର୍ପଣ କରୁଛି ।

-ଲେଖକ



# ସୂଚୀପତ୍ର

**ତୃତୀୟ ଅଧ୍ୟାୟ**



**ଚତୁର୍ଥ ଅଧ୍ୟାୟ**

## ପ୍ରଥମ ଅଧ୍ୟାୟ

# ଜନ୍ମ ଓ ଶିକ୍ଷା

ଅବିଭକ୍ତ କଟକ ଜିଲ୍ଲାର ଯାଜପୁର ସବ୍‌ଡିଭିଜନ (ଆଜିର ଯାଜପୁର ଜିଲ୍ଲା) ଦାନଗଦି ବ୍ଲକ୍ ଗୋବର୍ଦ୍ଧନପୁର ଗ୍ରାମରେ ୧୯୩୧ ମସିହା ଅଗଷ୍ଟ ମାସ ୨୭ ତାରିଖ ଗୁରୁବାର ରାକ୍ଷୀ ପୂର୍ଣ୍ଣିମା ଦିନ ମୋର ଜନ୍ମ । ପିତା ଅନନ୍ତ ଚରଣ ବଳ ଓ ମାତା ଚାନ୍ଦମଣି ଦେବୀ । ପୂର୍ଣ୍ଣମୀ ତିଥିରେ ଜନ୍ମ ହୋଇଥିବାରୁ ମୋର ନାମ ରଖିଥିଲେ ପୂର୍ଣ୍ଣଚନ୍ଦ୍ର । ଜନ୍ମଠାରୁ ତିନିବର୍ଷ ପର୍ଯ୍ୟନ୍ତ ଦେହ ଅସୁସ୍ଥ ରହୁଥିଲା । ସେତେବେଳେ ଡାକ୍ତରଖାନା ସାତ ସପନ । ଆଖପାଖ ପାଞ୍ଚ କିଲୋମିଟର ଭିତରେ ଡାକ୍ତରଖାନା ନଥିଲା । ତେଣୁ ଅସୁସ୍ଥତା ପାଇଁ ସ୍ଥାନୀୟ କବିରାଜ ଔଷଧ ଉପରେ ନିର୍ଭର କରିବାକୁ ପଡୁଥିଲା ।

ବାପାଙ୍କର ବଡ ଭଉଣୀ କେନ୍ଦୁଝର ଜିଲ୍ଲା ଆନନ୍ଦପୁର ନିକଟ ପୁରୁଣିଆ ଗ୍ରାମରେ ନିତ୍ୟାନନ୍ଦ ରାଉତଙ୍କୁ ବିବାହ କରିଥିଲେ । ତାଙ୍କର କୌଣସି ସନ୍ତାନ ସନ୍ତତି ନ ଥିବାରୁ ମୋର ଜନ୍ମ ପରେ ମୋତେ ପୋଷ୍ୟପୁତ୍ର କରି ନେବାପାଇଁ ବାପାଙ୍କୁ ରାଜି କରାଇଥିଲେ । ଗାଁର ଲୋକମାନେ ବାପାଙ୍କୁ ଜ୍ୟେଷ୍ଠ ପୁଅକୁ ଅନ୍ୟକୁ ପୋଷ୍ୟପୁତ୍ର କରି ଟେକି ଦେବାକୁ ବାରଣ କଲେ । ବାପା କିନ୍ତୁ କିଛି ଶୁଣିଲେ ନାହିଁ । ବାପା କହିଲେ "କଥା ଦେଇଛି ଯେତେବେଳେ ପୁଅକୁ ମୁଁ ମୋର ଭଉଣୀକୁ ପୋଷ୍ୟପୁତ୍ର କରି ନେବାକୁ ଦେଇ ଦେବି" ଫଳରେ ମୋର ଚାରିବର୍ଷ ପୂରିଗଲା ପରେ ପିଉସୀଙ୍କ ଘରକୁ ପୋଷ୍ୟପୁତ୍ର ହୋଇ ଚାଲିଗଲି ଓ ସେଇଠାରେ ହିଁ ବାଲ୍ୟକାଳ ଓ ବାଲ୍ୟଶିକ୍ଷା ଶେଷ ହେଲା ।

ମୋର ଜନ୍ମସ୍ଥାନ ଗୋବର୍ଦ୍ଧନପୁର ମୋଗଲବନ୍ଦୀ ଅଞ୍ଚଳ ସୁକିନ୍ଦା ଜମିଦାରୀ ଅନ୍ତର୍ଗତ । କିନ୍ତୁ ମୋଗଲବନ୍ଦୀ ଅଞ୍ଚଳର ଆବହାଓ୍ୱା ଆମ ଗାଁରେ ନ ଥିଲା । କାରଣ ସୁକିନ୍ଦାଗଡ ଓ ତା'ର ନିକଟବର୍ତ୍ତୀ ଅଞ୍ଚଳର ଗୋବର୍ଦ୍ଧନପୁର ବା ତା'ର ସନ୍ନିକଟସ୍ଥ ଗାଁ ସହିତ କିଛି ସଂପର୍କ ନଥିଲା । ମଝିରେ ନିବିଡ ଜଙ୍ଗଲ ।

ଆମ ଗାଁରୁ ପ୍ରାୟ ୧୫/୨୦କିଲୋମିଟର ଜଙ୍ଗଲ ପାର ହେଲେ ସୁକିନ୍ଦା ଅଞ୍ଚଳ । ଯେଉଁ ୨୦/୨୫ ଖଣ୍ଡ ଗାଁ ଗୋବର୍ଦ୍ଧନପୁରର ଆଖ ପାଖରେ ଅଛି ତା ଭିତରେ ୫/୬ ଖଣ୍ଡ ଅଣ-ଆଦିବାସୀ ଗାଁ । ବାକି ସବୁ ଘୋର ଜଙ୍ଗଲ ମଧ୍ୟରେ ଅବସ୍ଥିତ ଆଦିବାସୀ ଗାଁ । ଗୋବର୍ଦ୍ଧନପୁରର ଏକ କିଲୋମିଟର ମଧ୍ୟରେ ବାଘ ଭାଲୁ ଆଦି ହିଂସ୍ର ଜନ୍ତୁମାନଙ୍କର ଅବାଧ ବିଚରଣ ଥିଲା । ଗାଁ ମୁଣ୍ଡରେ ମିରିଗ ଶିକାର କରାଯାଉଥିଲା । ଡୋଳିପୁର (ଏବର ଯାଜପୁର ରୋଡ ବା ବ୍ୟାସନଗର) ଓ ତତ୍ ସହିତ ସନ୍ନିହିତ ଗାଁ ମାନଙ୍କ ସହିତ ସାଂସ୍କୃତିକ ଓ ଚଳଣିଗତ ସଂପର୍କ ପ୍ରାୟ ନ ଥିଲା । ପକ୍ଷାନ୍ତରେ କେଉଁଝର ଜିଲ୍ଲାର ଆନନ୍ଦପୁର ସବ୍‌ଡିଭିଜନ ଗାଁ ମାନଙ୍କ ସହିତ ଆମର ଚଳାଚଳ । ଆମର ବନ୍ଧୁବାନ୍ଧବ ସଂପର୍କ ସେଇ ଗାଁ ମାନଙ୍କ ସହିତ । ତରିମୂଳ, ଭଣ୍ଡାରିଡିହା, ଧାଉଡିଡିହା, ପଦନପୁର, ନରସିଂହପୁର ଆଦି ଖମାର ଅନ୍ତର୍ଗତ ଗାଁମାନଙ୍କ ସହିତ ଆମର ବୈବାହିକ ସଂପର୍କ ଅଧିକ । କେଉଁଝର ଜିଲ୍ଲାର ସଂସ୍କୃତି, ସଭ୍ୟତା, ଚଳଣି ସହିତ ଆମର ସଂପର୍କ ଥିବାରୁ ଆମକୁ 'ଗଡଜାତିଆ' ବୋଲି କହନ୍ତି । ଯାଜପୁର ଜିଲ୍ଲା ସହିତ ଏବେ ସିନା ସଂପର୍କ ଆମର ବଢି ଯାଇଛି ପୂର୍ବେ କିନ୍ତୁ ଆଦୌ ନ ଥିଲା । ମୁଖ୍ୟ ପ୍ରତିବନ୍ଧକ ଥିଲା ଜଙ୍ଗଲ ଓ ଗମନାଗମନ ପାଇଁ ରାସ୍ତା ତଥା ଯାନବାହନର ଅଭାବ ।

ଆମ ଗାଁକୁ କେଉଁଝର ଜିଲ୍ଲା ସୀମା ମାତ୍ର ୩ କିଲୋମିଟର ଦୂର । କେଉଁଝର ଜିଲ୍ଲାର ଗାଁ ଓ ଆମ ଗାଁ ଭିତରେ ପ୍ରତିବନ୍ଧକ କିଛି ନ ଥିଲା । ତେଣୁ ସେ ଗାଁ ମାନଙ୍କ ସହିତ ସ୍ୱାଭାବିକ ଭାବରେ ସହଜ ସଂପର୍କ ଗଢି ଉଠିଥିଲା । ଭାବଗତ ଓ ସାଂସ୍କୃତିକ ପାର୍ଥକ୍ୟ କିଛି ନ ଥିବାରୁ କେଉଁଝର ଜିଲ୍ଲାର ଲୋକମାନଙ୍କ ସହିତ ବିଶେଷତଃ ଆନନ୍ଦପୁର ସବ୍‌ଡିଭିଜନ ଲୋକଙ୍କ ସହିତ ଆମର ବେଶ୍ ଭଲ ସଂପର୍କ ରହିଥିଲା । ମୁଁ ପୁରୁଣିଆଁକୁ ପୋଷ୍ୟପୁତ୍ର ହୋଇଗଲା ପରେ ସେଠାକାର ପରିବେଶରେ ଚଳିବାକୁ କିଛି ଅସୁବିଧା ହେଲାନାହିଁ ।

ପୁରୁଣିଆଁ ଗୋବର୍ଦ୍ଧନପୁରଠାରୁ ୧୫ କିଲୋମିଟର ଦୂର । ଯିବା ଆସିବା ପାଇଁ ପାଦରେ ଚାଲିବାକ୍ ପଡେ । ବେଳେବେଳେ ବଳଦ ଗାଡିରେ ଯିବାକୁ ହୁଏ । ରାସ୍ତାଘାଟତ ନ ଥିଲା । ପାଦଚଲା ରାସ୍ତା ନ ହେଲେ ଗାଡିଗୁଳା । ପ୍ରାଥମିକ ଶିକ୍ଷା ଶେଷ ପର୍ଯ୍ୟନ୍ତ ମୁଁ ସାଇକେଲ ଦେଖି ନ ଥିଲି । ତେଣୁ ସାଇକେଲରେ ଯିବା ଆସିବା କଥା ସେତେବେଳେ ଚିନ୍ତା କରାଯାଉ ନ ଥିଲା । ପୁରୁଣିଆଁରୁ

ଗୋବର୍ଦ୍ଧନପୁର ବା ଗୋବର୍ଦ୍ଧନପୁରରୁ ପୁରୁଣିଆଁ ଯିବାକୁ ହେଲେ ମତେ ଭାରି କଷ୍ଟ ହୁଏ । ମତେ କାନ୍ଧରେ ବସାଇ ନେବାପାଇଁ ଜଣେ ଲୋକ ଆମ ସାଙ୍ଗରେ ଯାଏ । ମୁଁ ଖଣ୍ଡେବାଟ ଚାଲିଲେ ଖଣ୍ଡେବାଟ କାନ୍ଧରେ ବସେ ।

୧୯୩୬ ମସିହା ଜାନୁୟାରୀ କି ଫେବ୍ରୁୟାରୀ ମାସରେ ମୁଁ ପ୍ରଥମେ ପୁରୁଣିଆଁ ଗଲି । ସେତେବେଳେ ଆମ ଗାଁ ଗୋବର୍ଦ୍ଧନପୁରରେ ପ୍ରାଥମିକ ସ୍କୁଲ ନ ଥିଲା । କିନ୍ତୁ ପୁରୁଣିଆଁରେ ଥିଲା । ୧୯୩୮ ମସିହା ଜାନୁୟାରୀ ପହିଲାରେ ମୋର ପୁରୁଣିଆଁ ପ୍ରାଥମିକ ସ୍କୁଲରେ ନାଁ ଲେଖାହେଲା । ସେତେବେଳେ ଇଂରେଜ ଶାସନ । ଇଂରେଜ ଶାସନରେ ସର୍ବ ସାଧାରଣଙ୍କ ପାଇଁ ଶିକ୍ଷାର ବ୍ୟବସ୍ଥା ନ ଥିଲା । ସେମାନେ ନୀତିଗତ ଭାବରେ ସାଧାରଣ ଲୋକଙ୍କ ପାଇଁ ଶିକ୍ଷା ବ୍ୟବସ୍ଥା କରିବା ସପକ୍ଷରେ ନ ଥିଲେ । ଅଳ୍ପ କିଛି ଲୋକଙ୍କୁ ଶିକ୍ଷା ଦେବା ପାଇଁ ବ୍ୟବସ୍ଥା ସେମାନେ କରିଥିଲେ । ଶିକ୍ଷା ପାଇଥିବା ସେହି ଅଳ୍ପ କିଛି ଲୋକ ଅନ୍ୟମାନଙ୍କୁ ଶିକ୍ଷିତ କରିବା ଦାୟିତ୍ୱ ବହନ କରିବେ ବୋଲି ତାଙ୍କର ଶିକ୍ଷାନୀତି ଥିଲା ତାକୁ କୁହାଯାଉଥିଲା "Downward Filtration Theory." ସେତେବେଳେ ନିୟମ ଥିଲା ଯେ ୨୦ଟି ଗାଁ ପାଇଁ ଗୋଟିଏ ପ୍ରାଥମିକ ସ୍କୁଲ ଖୋଲାଯାଇ ପାରିବ । ୨୦ଟି ଗାଁର କେନ୍ଦ୍ର ସ୍ଥଳରେ ଅବସ୍ଥିତ ଗୋଟିଏ ଗାଁରେ ପ୍ରାଥମିକ ସ୍କୁଲ ଖୋଲିଲେ - କୋଡିଏଟି ଯାକ ଗାଁର ପିଲାମାନେ ସେ ସ୍କୁଲରେ ପଢି ପାରିବା ସମ୍ଭବ କି ? ପ୍ରଥମ ଅସୁବିଧା ହେଲା ଦୂରତା, କେନ୍ଦ୍ରାବସ୍ଥିତ ଗାଁ ଠାରୁ ଦୂରତମ ଗାଁର ଦୂରତା, ଖୁବ୍ କମ୍‌ରେ ୮/୧୦ କିଲୋମିଟର ହେବ । ପ୍ରାଥମିକ ଶ୍ରେଣୀ ପିଲାମାନେ ଏତେ ଦୂର ଅତିକ୍ରମ କରି ପାଠ ପଢିବାକୁ ଆସି ପାରିବା ସମ୍ଭବ ନୁହେଁ । ଦ୍ୱିତୀୟତଃ ୨୦ ଖଣ୍ଡ ଗାଁର ପ୍ରାଥମିକ ଶ୍ରେଣୀରେ ପଢିବା ପିଲାଙ୍କ ସଂଖ୍ୟା ଅତି କମ୍‌ରେ ୨୦୦୦ ରୁ ୨୫୦୦ ହେବ । ଏ ସମସ୍ତେ ଗୋଟିଏ ସ୍କୁଲରେ ପଢିବା ସମ୍ଭବ ନୁହେଁ । ଏ ପ୍ରକାର ନିୟମ କରି ଇଂରେଜ ସରକାର ପ୍ରାଥମିକ ଶିକ୍ଷାର କି ପ୍ରକାର ଉନ୍ନତି ସାଧନ କରିବାକୁ ପ୍ରୟାସ କରୁଥିଲେ ?

ଚତୁର୍ଥ ପଞ୍ଚମ ଶ୍ରେଣୀ ତ କୌଣସି ସ୍କୁଲରେ ଥିଲା ଭଳି ମନେ ହେଉ ନାହିଁ । ତୃତୀୟ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହେବା ପରେ ସିଧା ଚାରିଶ୍ରେଣୀ ବିଶିଷ୍ଟ ମାଇନର ସ୍କୁଲରେ ପ୍ରବେଶ କରିବାର ବ୍ୟବସ୍ଥା ଥିଲା । ହେଲେ, ମାଇନର ସ୍କୁଲ କ'ଣ ନିକଟରେ ଥିଲା ? ୧୯୪୦ ମସିହାରେ ସମଗ୍ର କେଉଁଝର ଜିଲ୍ଲାରେ ମାତ୍ର ୫ଗୋଟି ମାଇନର ସ୍କୁଲ ଥିଲା । ପିଲାମାନେ ପାଠ ପଢିବାର କୌଣସି ସୁବିଧା

ନ ଥିଲା । ହଜାର ହଜାର ପିଲା ସ୍କୁଲ ଅଭାବରୁ ପାଠ ପଢିବାରୁ ବଞ୍ଚିତ ହେଉଥିଲେ । ଇଂରେଜମାନଙ୍କର ନୀତି ସହିତ ତାଙ୍କ କାର୍ଯ୍ୟ ଠିକ୍ ଥିଲା । ସେମାନଙ୍କର ଘୋଷିତ ନୀତି ଥିଲା ଯେ ସେମାନେ ଅଳ୍ପ କିଛି ଭାରତୀୟଙ୍କୁ ଶିକ୍ଷିତ କରାଇବେ । କିନ୍ତୁ ସେମାନେ କିପରି କେଉଁଠାରେ ଅନ୍ୟ ଭାରତୀୟମାନଙ୍କୁ ଶିକ୍ଷିତ କରାଇବେ ତା'ର କିଛି ନିର୍ଦ୍ଦିଷ୍ଟ ରୂପରେଖ ସୂଚାଇ ନ ଥିଲେ କି ବ୍ୟବସ୍ଥା କରି ନ ଥିଲେ ।

ସୌଭାଗ୍ୟ ବଶତଃ ପୁରୁଣିଆଁରେ ଗୋଟିଏ ପ୍ରାଥମିକ ସ୍କୁଲ ଥିଲା । ଆଖ ପାଖରେ ବେଲବାହାଳୀ, ଟୋଲଙ୍କପଡା, ବାରିଗାଁ ପ୍ରଭୃତି ବଡ ବଡ ଗାଁ ଥିଲେ ମଧ୍ୟ ସେଠାରେ ପ୍ରାଥମିକ ସ୍କୁଲ ନ ଥିଲା । ତେଣୁ ସେ ସବୁ ଗାଁର ପିଲାମାନେ ପୁରୁଣିଆଁ ପ୍ରାଥମିକ ସ୍କୁଲରେ ପଢିବାକୁ ଆସୁଥିଲେ । ପୁରୁଣିଆଁ ପ୍ରାଥମିକ ସ୍କୁଲକୁ ଲାଗି ଗୋଟିଏ ନାଳ ଥିଲା, ବେଲବାହାଳୀ ଓ ଟୋଲଙ୍କ ପଡାର ପିଲାମାନେ ସେଇ ନାଳ ପାରି ହୋଇ ସ୍କୁଲକୁ ଆସନ୍ତି । ଖରାଦିନେ ନାଳ ଶୁଖିଲା ପଡିଥାଏ । ବର୍ଷାଦିନେ ପ୍ରବଳ ପାଣି ଓ ପ୍ରଖର ସ୍ରୋତ । ବର୍ଷାହୋଇ ନାଳରେ ପାଣି ହେଲେ ବେଲବାହାଳୀ ଓ ଟୋଲଙ୍କପଡା ପିଲାମାନେ ସ୍କୁଲକୁ ଆସନ୍ତି ନାହିଁ । ସେଇ ପୁରୁଣିଆଁ ସ୍କୁଲରେ ୧୯୩୮ ମସିହା ଜାନୁୟାରୀ ପହିଲା ଦିନ ମୋର ନାଁ ଲେଖା ହେଲା । ସେଇଦିନ ମୁଁ ପୂର୍ଣ୍ଣଚନ୍ଦ୍ର ବଳରୁ ପୂର୍ଣ୍ଣଚନ୍ଦ୍ର ରାଉତ ହୋଇଗଲି । ମୋ ନିଜ ବାପାଙ୍କ ସଞ୍ଜ୍ଞା ଥିଲା "ବଳ"କିନ୍ତୁ ପୋଷ୍ୟ ବାପାଙ୍କ ସଞ୍ଜ୍ଞା "ରାଉତ" ହୋଇଥିବାରୁ ମୋର ସଞ୍ଜ୍ଞା "ରାଉତ" ରଖାଗଲା ।

ପୁରୁଣିଆଁ ନିମ୍ନ ପ୍ରାଥମିକ ସ୍କୁଲଟି ଗାଁର ଦକ୍ଷିଣ ମୁଣ୍ଡରେ ଅବସ୍ଥିତ । ଦୁଇଟି କୋଠରୀ ବିଶିଷ୍ଟ ସୁଦୃଶ୍ୟ ଚାଳଘରଟିଏ । ପାଖରେ ଗୋଟିଏ ବଡ ଜର ଗଛ । ବେଶ୍ ବଡ ହତାଟିଏ ପ୍ରାୟ ଏକ ଏକର ହେବ । ଗୋଟିଏ ପାଖରେ ରିଲିଫ୍ ତିଆରି ହୋଇ ନଦୀ, ଶାଖା ନଦୀ, ଉପନଦୀ, ହ୍ରଦ, ଯୋଜକ, ପ୍ରଣାଳୀ, ଦ୍ୱୀପ, ଉପଦ୍ୱୀପ ପ୍ରଭୃତି ପ୍ରତିବର୍ଷ ତିଆରି ହୁଏ । ପିଲାମାନେ ନିଜେ ତିଆରି କରି ସେଇଠାରୁ ପ୍ରାକୃତିକ ଭୂଗୋଳ ଶିଖନ୍ତି । ଆଉ ପାଖରେ ସ୍କୁଲ ବଗିଚା । ପିଲାମାନେ ବଗିଚାକାମ କରି ଫସଲ ଉତ୍ପାଦନ କରନ୍ତି । ବର୍ଷାଦିନେ କିଛି ଅସୁବିଧା ହୁଏ ନାହିଁ । ବର୍ଷା ଛାଡିଗଲେ ନାଳ ପାଣି ଆଣି ବଗିଚାରେ ଦିଆ ହୁଏ । ନାଳ ଶୁଖିଗଲେ ବଗିଚା କାମ ବନ୍ଦ ।

ସ୍କୁଲରେ ଦୁଇ ଜଣ ଶିକ୍ଷକ । ପ୍ରଧାନ ଶିକ୍ଷକ କୃଷ୍ଣଚନ୍ଦ୍ର ବଳ । ସେଇ ଗାଁର ଲୋକ । ସହକାରୀ ଶିକ୍ଷକ ସାଇମନ୍ ନାୟକ । ଖ୍ରୀଷ୍ଟିଆନ୍, ରହନ୍ତି ଆନନ୍ଦପୁରରେ ।

ତାଙ୍କ ସ୍ତ୍ରୀ ସେଠାରେ ଶିକ୍ଷୟିତ୍ରୀ । ସାଇକେଲରେ ଯିବା ଆସିବା କରନ୍ତି । ସେତେବେଳେ ସାଇକେଲ ଖୁବ୍ ସମ୍ମାନପ୍ରଦ ଯାନ । ବଡ ଲୋକମାନେ କେବଳ ସାଇକେଲ୍ ଚଢୁଥିଲେ । ଆମ ମାଷ୍ଟ୍ରେ ସାଇକେଲ୍ ଚଢି ଆସୁଥିବାରୁ ଆମେ ଖୁବ୍ ଗର୍ବ କରୁ । ବର୍ଷାଦିନେ ଯେତେବେଳେ ସାଇକେଲ୍ ଚଢି ସାଇମନ୍ ସାର୍ ଆସନ୍ତି ଆମକୁ ବିପଦ । ଗୋଟାଏ ଗୁଡ ରନ୍ଧା ତାଓ୍ୱାରେ କାଦୁଅ ଚୁଣ୍ଡାଦେଇ ପାଣିରେ ଭସାଇ ଡେଙ୍ଗା ଡେଙ୍ଗା ପିଲା ୫/୬ ଜଣ ନାଳ ଆର ପାଖକୁ ନେଇଯାନ୍ତି । ତା ଉପରେ ସାର୍ ଓ ତାଙ୍କ ସାଇକେଲକୁ ରଖି ପିଲାମାନେ ପେଲି ପେଲି ଏ ପାଖକୁ ନେଇ ଆସନ୍ତି । ସାର୍ ଓହ୍ଲାଇ ଗଲାପରେ ପିଲାମାନେ ସାଇକେଲଟିକୁ ଟେକି ଟେକି ସ୍କୁଲକୁ ଆଣନ୍ତି । ଗଡାଇ ଗଡାଇ ଆଣିବା ମନା । କାରଣ କାଦୁଅ ଲାଗିଯିବ । ସାର୍ ସ୍କୁଲକୁ ଆସି ଚେୟାରରେ ବସି ଦଶ ମିନିଟ୍ ନିଶ ମୋଡନ୍ତି । ନିଶ ମୋଡି ମୋଡି ଛୁଞ୍ଚିମୁନ ଭଳି ଗୋଜ ହୋଇଗଲେ ପାଠ ପଢା ଆରମ୍ଭ ହୁଏ ।

ପ୍ରଧାନ ଶିକ୍ଷକ ଶିଶୁ ଶ୍ରେଣୀ (ସେତେବେଳେ ଶିଶୁ ଶ୍ରେଣୀ ଥିଲା) ଓ ତୃତୀୟ ଶ୍ରେଣୀରେ ପଢାନ୍ତି ଓ ସାଇମନ୍ ସାର ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀରେ ପଢାନ୍ତି । ପ୍ରଧାନ ଶିକ୍ଷକ କଡା ଲୋକ । କିନ୍ତୁ ତାଙ୍କ ପାଠପଢା ଓ ପିଲାଙ୍କ ସହିତ ବ୍ୟବହାର ବେଶ୍ ଭଲ । ସାଇମନ୍ ସାର୍ ପ୍ରବଳ ମାଡ ଦିଅନ୍ତି । ପ୍ରଶ୍ନର ଉତ୍ତର ଦେଇ ନ ପାରିଲେ ମାଡ । ସେ ନିଜେ ପିଲାଙ୍କୁ ମାରନ୍ତି । କିନ୍ତୁ ବେଶୀ ମାଡ ଦେବାକୁ ହେଲେ ସେଥିପାଇଁ "ହନ୍ତକାର" ବ୍ୟବସ୍ଥା କରିଥାନ୍ତି । ହନ୍ତକାର ନିଯୁକ୍ତି ପାଇଁ ପିଲାଙ୍କର ହାତ ପରୀକ୍ଷା କରାଯାଏ । ଯେଉଁମାନଙ୍କ ହାତରେ ହଳ ବୁଲାଇ ବେଣ୍ଠି ହୋଇଯାଇଥାଏ, ତାକୁଇ ହନ୍ତକାର ନିଯୁକ୍ତି କରାଯାଏ । ଚାପୁଡା ମାରିଲେ ପିଲାଙ୍କୁ ଅନ୍ଧାର ଦେଖାଯାଏ । ଦ୍ୱିତୀୟ ଶ୍ରେଣୀରେ ପଢୁଥିବା ଗୋଟିଏ ପିଲା-ଦୁଃଶାସନ ବଳ ଡରରେ ସ୍କୁଲକୁ ନ ଆସି ଲୁଚେ । ତେଣୁ ସ୍କୁଲ ଆରମ୍ଭ ହେଲେ ପ୍ରଥମ କାର୍ଯ୍ୟକ୍ରମ ହେଲା ଦୁଇ ତିନି ଦଳ ପିଲା ଦୁଃଶାସନକୁ ଖୋଜିବାକୁ ଯିବେ । ପୁରୁଣିଆଁରେ ପ୍ରବଳ ନଳିତା ଚାଷ କରାଯାଏ । ବର୍ଷା ଚାରିମାସ ଏହି ନଳିତା ବାଡିଗୁଡିକ ଲୁଚିବା ପାଇଁ ଚମତ୍କାର ସ୍ଥାନ ଭାବରେ ବିବେଚିତ ହୁଏ । ଯେଉଁ ପିଲାମାନେ ଦୁଃଶାସନକୁ ଖୋଜିବାକୁ ଯାଆନ୍ତି, ସେମାନେ ପ୍ରଥମେ ନଳିତା ବାଡି, ତା ପରେ ଘର ଆଟୁ ଉପର ଆଦି ଖୋଜି ତାକୁ ଧରି ଆଣନ୍ତି । ଦିନେ ଦୁଃଶାସନ ଜାକିଜୁକି ହୋଇ ଗୋଟେ ବଡ ହାଣ୍ଡି ତଳେ ଲୁଚିଥିଲା । ହାଣ୍ଡି ହଲିବାରୁ ସନ୍ଦେହ ହେଲା ଓ ସେ ଧରା ପଡିଲା । ଏ ଫାର୍ଶ ଅଧିକାଂଶ ଦିନ ସ୍କୁଲରେ ଲାଗିଥାଏ ।

ସ୍କୁଲରେ ପାଠ ପଢ଼ାରେ କିନ୍ତୁ ଅବହେଳା ନ ଥାଏ । ସାଇମନ୍ ସାର୍ ମାରନ୍ତି କିନ୍ତୁ ପାଠ ଭଲ ପଢ଼ାନ୍ତି । ଭଲ ପାଠ ପଢ଼ାଉଥିବାରୁ ଲୋକମାନେ ତାଙ୍କ ଉପରେ ସନ୍ତୁଷ୍ଟ ଥିଲେ । ଖେଳଛୁଟିବେଳେ ତାଙ୍କୁ ଖାଇବାକୁ ଦେବାକୁ ପଡ଼େ । ପିଲାମାନେ ପାଳି କରି ତାଙ୍କୁ ଖାଇବାକୁ ଦିଅନ୍ତି । ସବୁ ଅସୁବିଧା ସତ୍ତ୍ୱେ ପିଲାମାନେ ତଥା ଗ୍ରାମବାସୀମାନେ ଚାହୁଁଥିଲେ ସେ ସ୍କୁଲରେ ରହନ୍ତୁ । ମୋର ଦ୍ୱିତୀୟ ଶ୍ରେଣୀ ଶେଷ ବେଳକୁ ଅର୍ଥାତ୍ ୧୯୪୦ ମସିହା ଶେଷ ବେଳକୁ ତାଙ୍କର ବଦଳି ହେଲା । ତାଙ୍କ ସ୍ଥାନରେ କାଙ୍ଗାଳି ଚରଣ ପାଣିଗ୍ରାହୀ ଯୋଗଦେଲେ । ସେ ଭାରି ଛାତ୍ରବତ୍ସଳ ଓ କର୍ତ୍ତବ୍ୟନିଷ୍ଠ ମଧ୍ୟ । ସ୍କୁଲ ହତା ବାହାରେ ଗୋଟିଏ ଛୋଟ ବୋର୍ଡିଂ ଘର ଥିଲା । ସେଇଠାରେ ସେ ପିଲାଛୁଆ ନେଇ ରହୁଥିଲେ । ପୁରା ସମୟ ସ୍କୁଲ କାମରେ ନିୟୋଜିତ ରହୁଥିଲେ ।

୧୯୪୧ ମସିହା ବେଳକୁ ମୋର ତୃତୀୟ ଶ୍ରେଣୀ । ପ୍ରଧାନ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ତୃତୀୟ ଶ୍ରେଣୀ ପାଠ ପଢ଼ା ଯାଉଥିଲା । ତାଙ୍କର ପାଠ ପଢ଼ାଇବା ପଦ୍ଧତି ଭଲ । ପ୍ରାକୃତିକ ଭୂଗୋଳ ରିଲିଫ୍ ମାନଚିତ୍ର ସାହାଯ୍ୟରେ ପଢ଼ାନ୍ତି । କେଉଁଝରର ଇତିହାସ ଓ କେଉଁଝରର ଭୂଗୋଳ ମଧ୍ୟ ସେ ପଢ଼ାନ୍ତି । ସେତେବେଳେ ଦ୍ୱିତୀୟ ପୃଥିବୀ ମହାସମର ଲାଗିଥାଏ । ମିତ୍ର ପକ୍ଷରେ ଇଂଲଣ୍ଡ ଆମେରିକା ଓ ଋଷିଆ ଓ ବିପକ୍ଷରେ ଜର୍ମାନୀ, ଇଟାଲୀ ଓ ଜାପାନ ଲଢ଼ୁଥାନ୍ତି । ଯେତେବେଳେ ମିତ୍ର ପକ୍ଷ କୌଣସିଠାରେ ଜିତିଯାନ୍ତି, ଉପରୁ ନିର୍ଦ୍ଦେଶ ଆସେ ସ୍କୁଲ ପିଲାମାନେ ଛାତିରେ "V" ଲେଖା ଯାଇଥିବା ପ୍ଲାକାର୍ଡ ବାନ୍ଧି ଗାଁରେ ଶୋଭାଯାତ୍ରା କରିବେ । ଗାଁ ଲୋକେ ସେତେବେଳେ ଇଂରେଜ କିଏ, ଆମେରିକା କିଏ, କାହା ସହିତ କିଏ ଯୁଦ୍ଧ କରୁଛି, କିପରି ଜୟଲାଭ ହେଲା, କିଛି ବୁଝନ୍ତି ନାହିଁ । ଆମେ ବି କିଛି ବୁଝୁ ନ ଥିଲୁ । କେବଳ ଉପର ନିର୍ଦ୍ଦେଶ ମତେ ଶୋଭାଯାତ୍ରାରେ ଯିବା ଓ ମିଠା ଖାଇବା କଥା ଜାଣୁ ଥିଲୁ । ଯେଉଁ ପ୍ଲାକାର୍ଡ ଛାତିରେ ମାରୁଥିଲୁ ସେଥିରେ କ'ଣ ଲେଖା ଯାଇଛି ଓ ତା'ର ଅର୍ଥ କ'ଣ କିଛି ବୁଝୁ ନ ଥିଲୁ । ପରେ ଜାଣିଲୁ ଯେ "V" ଅର୍ଥ ହେଉଛି "Victory" "ଜୟ"। ଆମ ଇଂରେଜ ସରକାର ଜୟ କରିଥିବାରୁ ଆମେ "V" ପ୍ଲାକାର୍ଡ ମାରି ଶୋଭାଯାତ୍ରା କରୁଥିଲୁ ।

କେଉଁଝର Eastern States Agency ବା ପୂର୍ବ ଗଡଜାତ ଏଜେନ୍ସି ଅନ୍ତର୍ଗତ ଗୋଟିଏ କରଦ ରାଜ୍ୟ ଥିଲା । ସେଠାରେ ଜଣେ ରାଜା ଥିଲେ । ସେ କର ଦେଇ ଇଂରେଜ ଶାସନର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଶାସନ କରୁଥିଲେ ।

ତେଣୁ ଇଂରେଜ ମାନଙ୍କର ହାରଜିତ୍‌ରେ ସିଧା ସଳଖ ପ୍ରଭାବ ତାଙ୍କ ଉପରେ ପଡୁଥିଲା । ଉପରୁ ନିର୍ଦ୍ଦେଶ ଆସିଲାକ୍ଷଣି ତତ୍‌କ୍ଷଣାତ୍ କାର୍ଯ୍ୟକାରୀ କରିବା ତାଙ୍କର କର୍ତ୍ତବ୍ୟ । ଯୁଦ୍ଧରେ କେଉଁଠି ଜିତ୍ ହୋଇଗଲେ ସ୍କୁଲର ପିଲାମାନଙ୍କୁ ଶୋଭାଯାତ୍ରାରେ ବାହାର କରିବା ଓ ତାଙ୍କ ବିଜୟ ଉତ୍ସବ ପାଳନ କରିବା ତାଙ୍କର ଶ୍ରେଷ୍ଠ କାମ ଥିଲା । ଏ ପ୍ରକାର ଇଂରେଜମାନଙ୍କର ବିଜୟ ଉତ୍ସବ ମୋଗଲବନ୍ଦୀ ସ୍କୁଲ ମାନଙ୍କରେ ପାଳନ କରାଯାଉ ନ ଥିଲା ।

ଆମେ ପ୍ରାଥମିକ ଶ୍ରେଣୀରେ ଯେଉଁ ପାଠ ପଢୁଥିଲୁ ତାହା ଏକ ଅଦ୍ଭୁତ ସମ୍ମିଶ୍ରଣ ଥିଲା । ଓଡିଶା ପ୍ରଦେଶ ପାଇଁ ଉଦ୍ଦିଷ୍ଟ ଶିକ୍ଷା ପାଠ୍ୟକ୍ରମ ଓ କେଉଁଝର ଷ୍ଟେଟ୍‌ର ସ୍ୱତନ୍ତ୍ର ପାଠ୍ୟକ୍ରମକୁ ମିଶାଇ ଆମକୁ ଶିକ୍ଷା ଦିଆଯାଉଥିଲା । କେଉଁଝର ଛୋଟରାୟ ଲକ୍ଷ୍ମୀନାରାୟଣ ଭଞ୍ଜଦେଓ ବିଲାତରେ ପାଠପଢି ଫେରିଲା ପରେ କେଉଁଝର ଷ୍ଟେଟର ସ୍ୱାତନ୍ତ୍ର୍ୟ ରକ୍ଷା କରିବା ପାଇଁ ଶିକ୍ଷାରେ ନୂତନତ୍ୱ ଆଣିବାକୁ ଉଦ୍ୟମ କଲେ । ଫଳ ସ୍ୱରୂପ ପ୍ରାଥମିକ ଶ୍ରେଣୀରେ କେଉଁଝର ଇତିହାସ (ରାଜ ବଂଶର ଇତିହାସ), କେଉଁଝର ଭୂଗୋଳ,ଭାଷା ଶିକ୍ଷା ପାଇଁ ସ୍ୱତନ୍ତ୍ର ପାଠ୍ୟ ପୁସ୍ତକ ରଚନା କରାଗଲା । ଆମେ ସବୁ କେଉଁଝର ରାଜାଙ୍କର ପୂର୍ବ ୩୨ ପୁରୁଷଙ୍କ ନାଁ ମୁଖସ୍ଥ କରିଥିଲୁ । କେଉଁଝର ଭୂଗୋଳରେ ତିନି ସବଡିଭିଜନ, ତହସିଲ, ଥାନା, ଦଣ୍ଡପାଟ, ଗ୍ରାମ ଇତ୍ୟାଦି ବିଷୟରେ ଶିକ୍ଷାଲାଭ କରୁଥିଲୁ । କେଉଁଝର ଗଡରେ ଅବସ୍ଥିତ ଗିବସନ୍ ହାଇସ୍କୁଲ ପ୍ରଧାନ ଶିକ୍ଷକ ଭାବଗ୍ରାହୀ ମହାନ୍ତିଙ୍କ ଲିଖିତ ପାଠ୍ୟପୁସ୍ତକ ପଢିଲୁ । ଏ ପ୍ରକାର ବ୍ୟବସ୍ଥାର କେତେଗୁଡିଏ କାରଣ ଅଛି ।

ପ୍ରଥମତଃ ବିଲାତରେ ପାଠ ପଢି ଆସିଥିବା ଛୋଟରାୟ ସାହେବ କେଉଁଝରର କିଛି ସ୍ୱତନ୍ତ୍ର ଶିକ୍ଷା ବ୍ୟବସ୍ଥା କରି ଦେଖାଇବା ପାଇଁ ବ୍ୟଗ୍ର ଥିଲେ । ଦ୍ୱିତୀୟତଃ କେଉଁଝର ଷ୍ଟେଟ୍ ଓଡିଶା ଶାସନ ଅନ୍ତର୍ଗତ ନୁହେଁ । ଏହା ଏକ ସ୍ୱତନ୍ତ୍ର ଶାସନ ଅଧୀନ ବୋଲି ପ୍ରମାଣ କରି ଦେଖାଇବାର ପ୍ରବୃତ୍ତି କେଉଁଝର ରାଜବଂଶରେ ଦେଖା ଦେଇଥିଲା । ତୃତୀୟତଃ କେଉଁଝର କରଦ ରାଜ୍ୟ ଭାବରେ Eastern States Agency ଅନ୍ତର୍ଗତ ଥିଲା ଓ ଖୋଦ୍ ଇଂରେଜ ସରକାରଙ୍କ ବିଶ୍ୱସ୍ତ ବୋଲି ପ୍ରମାଣ କରି ଦେଖାଇବାର ଉଦ୍ୟମ କରା ଯାଉଥିଲା । ସେଥିପାଇଁ କେଉଁଝର ଷ୍ଟେଟରେ ସ୍ୱତନ୍ତ୍ର ପାଠ୍ୟକ୍ରମ ଭାବରେ ଆମକୁ ଏକ ମିଶ୍ରିତ ପାଠ୍ୟକ୍ରମରେ ଶିକ୍ଷା ଦିଆ ଯାଉଥିଲା ।

୧୯୩୬ - ୧୯୩୭ ମସିହାରେ କେଉଁଝର ଷ୍ଟେଟରେ ମାତ୍ର ଗୋଟିଏ ହାଇସ୍କୁଲ, ୪ଟି ମଧ୍ୟ ଇଂରାଜୀ ସ୍କୁଲ ଓ ମାତ୍ର ୯୫ଟି ପ୍ରାଥମିକ ବିଦ୍ୟାଳୟ ଥିଲା । ୯୫ ଗୋଟି ପାଥମିକ ବିଦ୍ୟାଳୟ ମଧ୍ୟରୁ ଇଂରେଜ ସରକାର ୨୨ଗୋଟି ବିଦ୍ୟାଳୟକୁ ବାର୍ଷିକ ୬୦୦ଟଙ୍କା ଲେଖାଁଏ ଅନୁଦାନ ଦେଉଥିଲେ । ବାକି ସବୁ ସ୍କୁଲ କେଉଁଝର ଷ୍ଟେଟ୍ ତାଙ୍କ ନିଜ ଆୟରୁ ପରିଚାଳନା କରୁଥିଲେ । କେଉଁଝର ଷ୍ଟେଟ୍ ଶିକ୍ଷା ବ୍ୟବସ୍ଥା ଅନ୍ୟ ବହୁ କରଦ ରାଜ୍ୟର ଶିକ୍ଷା ବ୍ୟବସ୍ଥାଠାରୁ ଭଲ ଥିଲା । ଛୋଟ ଛୋଟ ରାଜ୍ୟର ରାଜାମାନେ ଶିକ୍ଷା ବ୍ୟବସ୍ଥା କରି ଲୋକଙ୍କୁ ଶିକ୍ଷିତ କରାଇବାର ପକ୍ଷପାତୀ ନ ଥିଲେ । କାରଣ ଲୋକେ ଶିକ୍ଷିତ ହେଲେ ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାର ଆଶଙ୍କା ଥିଲା ।

## ୧.୨ ସ୍ୱତନ୍ତ୍ର ଓଡିଶା ପ୍ରଦେଶର ଶିକ୍ଷା

୧୯୩୬ ମସିହା ଅପ୍ରେଲ ପହିଲା ଦିନ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ହେଲା । ସେଇ ଦିନଠାରୁ ଓଡିଶାର ସ୍ୱତନ୍ତ୍ର ଶାସନ ଆରମ୍ଭ ହେଲା । ସେଦିନ ସାର୍ ଜନ୍ ଅଷ୍ଟିନ୍ ହବାକ୍ ଓଡିଶାର ପ୍ରଥମ ଗଭର୍ଣ୍ଣର ଓ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ପ୍ରଥମ ପ୍ରଧାନ ମନ୍ତ୍ରୀ (ସେତେବେଳେ ରାଜ୍ୟ ମୁଖ୍ୟମନ୍ତ୍ରୀମାନଙ୍କୁ ପ୍ରଧାନ ମନ୍ତ୍ରୀ କୁହାଯାଉଥିଲା) ଭାବେ କାର୍ଯ୍ୟଭାର ଗ୍ରହଣ କଲେ । ଓଡିଶାର ପ୍ରଥମ ଶିକ୍ଷାମନ୍ତ୍ରୀ ହେଲେ ଗୋରାଚାନ୍ଦ ପଟ୍ଟନାୟକ । ସେ ୦୧ /୦୪ / ୧୯୩୬ ଠାରୁ ୧୯ / ୦୭ / ୧୯୩୭ ପର୍ଯ୍ୟନ୍ତ ଏକ ବର୍ଷ ତିନିମାସ ଅଠର ଦିନ ଶିକ୍ଷାମନ୍ତ୍ରୀ ଦାୟିତ୍ୱରେ ରହିଲେ । ବିଭାଗ ଗଠନ ଓ ଶିକ୍ଷାର ସମୀକରଣ ପ୍ରକ୍ରିୟାରେ ତାଙ୍କ କାର୍ଯ୍ୟକାଳ ଶେଷ ହୋଇଗଲା । ତାପରେ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାଶ ନିଜେ ଶିକ୍ଷାମନ୍ତ୍ରୀ ଦାୟିତ୍ୱରେ ରହିଲେ । ସେ ପ୍ରାୟ ଦୁଇ ବର୍ଷ ଶିକ୍ଷା ମନ୍ତ୍ରୀ ଭାବରେ କାର୍ଯ୍ୟ କଲେ ମଧ୍ୟ ତାଙ୍କ କାର୍ଯ୍ୟସୂଚୀରେ ଶିକ୍ଷା ପ୍ରତି ଅଗ୍ରାଧିକାର ଅଭାବ ଓ ରାଜନୈତିକ ହଇଚଇ ଯୋଗୁଁ ବିଶେଷ କିଛି କରି ପାରିଲେ ନାହିଁ । ଶାସନର ଅସ୍ଥିରତା ମଧ୍ୟରେ ଶିକ୍ଷାର ଉନ୍ନତି କଥା ଚିନ୍ତା କରିବାକୁ ତାଙ୍କୁ ବେଳ ନ ଥିଲା ।

ଏଠାରେ ଲକ୍ଷ୍ୟ କରିବାର କଥା ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ହେବାର ତିନିବର୍ଷପରେ ଦ୍ୱିତୀୟ ପୃଥିବୀ ମହାସମର ଆରମ୍ଭ ହୋଇଗଲା । ଯୁଦ୍ଧ କାଳରେ ମନ୍ତ୍ରୀମାନଙ୍କ କାର୍ଯ୍ୟ ପରିସର ଓ କ୍ଷମତା ସଙ୍କୁଚିତ କରି ଦିଆଗଲା । ପ୍ରାୟ ସମସ୍ତ ପ୍ରକାର ଉନ୍ନୟନମୂଳକ କାର୍ଯ୍ୟ ଉପରେ ପ୍ରତିକୂଳ ପ୍ରଭାବ ପଡିଲା ।

ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ଦିନଠାରୁ ଓଡିଶାରେ ଏକ ଶିକ୍ଷା ନିର୍ଦ୍ଦେଶାଳୟ ଖୋଲିଲା । ଏହାର ମୁଖ୍ୟ କାର୍ଯ୍ୟାଳୟ କଟକର କାଠଯୋଡି ଛାତ୍ରାବାସରେ ଚାଲିଲା । Mr. H. Dippie ଓଡିଶାର ପ୍ରଥମ ଡି.ପି.ଆଇ ଭାବରେ କାର୍ଯ୍ୟାରମ୍ଭ କଲେ । ଡି.ପି.ସାହେବ ଜଣେ ପ୍ରବୀଣ ଶିକ୍ଷାବିତ୍ ଥିଲେ । ସେ ଅତ୍ୟନ୍ତ ଛାତ୍ରବତ୍ସଳ ମଧ୍ୟ ଥିଲେ । ଓଡିଆ ଭାଷା ଶିକ୍ଷା କରି ସେ ପିଲାଙ୍କ ପାଇଁ ଓ ଶିକ୍ଷକଙ୍କ ପାଇଁ ଶିକ୍ଷାଦାନ ପ୍ରଣାଳୀ ଉପରେ ପୁସ୍ତକ ରଚନା କରି ପ୍ରଶଂସାଭାଜନ ହୋଇଥିଲେ । ସେ ବହୁ ପ୍ରାଥମିକ ବିଦ୍ୟାଳୟ ପରିଦର୍ଶନ କରି ଅତ୍ୟନ୍ତ ଉପାଦେୟ ଉପଦେଶମାନ ଦେଇ ଯାଇଛନ୍ତି । ବୋଧହୁଏ ଡି.ପି.ସାହେବ ପ୍ରଥମ ଓ ଶେଷ ଡି.ପି.ଆଇ ଯେ ପ୍ରାଥମିକ ବିଦ୍ୟାଳୟ ପରିଦର୍ଶନ କରୁଥିଲେ ଓ ପ୍ରାଥମିକ ଶିକ୍ଷାର ଉନ୍ନତି ପାଇଁ ଯତ୍ନବାନ ଥିଲେ । ତାଙ୍କ ପରେ ଯେଉଁମାନେ ଡି.ପି.ଆଇ ହେଲେ ସେମାନେ କଲେଜ ଓ ଉଚ୍ଚତର ଶିକ୍ଷା ଉପରେ ଗୁରୁତ୍ୱ ଦେଉଥିଲେ । ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷା ଜଣେ ଜଣେ ଉପ-ନିର୍ଦ୍ଦେଶକଙ୍କ ହାତରେ ଛାଡି ଦିଆ ଯାଇଥିଲା । କେବଳ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଡି.ପି.ଆଇ ନେଉଥିଲେ । ଦୈନନ୍ଦିନ ପରିଚାଳନା ଦାୟିତ୍ୱ ଉପନିର୍ଦ୍ଦେଶକମାନେ ତୁଲାଉଥିଲେ ।

ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ପରେ ଓଡିଶାର ଶିକ୍ଷା ବ୍ୟବସ୍ଥାର ପୁନର୍ଗଠନ ଓ ସମୀକରଣ ହେଲା ନାହିଁ । ଯେଉଁ ଅଞ୍ଚଳରେ ଯେଉଁ ପ୍ରକାର ଶିକ୍ଷା ପୂର୍ବରୁ ଚଳୁଥିଲା, ତାହାହିଁ ଚାଲୁ ରହିଲା । ତତ୍ କାଳୀନ ଶିକ୍ଷା ବ୍ୟବସ୍ଥା ମୁଖ୍ୟତଃ ଦୁଇଟି ସଂସ୍ଥା ଦ୍ୱାରା ପରିଚାଳିତ ହେଉଥିଲା । ପ୍ରଥମଟି ହେଲା ପାଟନା ବିଶ୍ୱ ବିଦ୍ୟାଳୟ ଓ ଦ୍ୱିତୀୟଟି ମାଡ୍ରାସ୍ ପ୍ରେସିଡେନ୍ସି । ପାଟନା ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରବର୍ତ୍ତିତ ଶିକ୍ଷା କଟକ, ବାଲେଶ୍ୱର, ପୁରୀ ଓ ସମ୍ବଲପୁର ଜିଲ୍ଲାରେ ଚଳୁଥିଲା ଓ ମାଡ୍ରାସ୍ ପ୍ରେଡିସେନ୍ସି ଦ୍ୱାରା ପ୍ରବର୍ତ୍ତିତ ଶିକ୍ଷା ଗଞ୍ଜାମ ଓ କୋରାପୁଟ ଜିଲ୍ଲାରେ ଚଳୁଥିଲା । ଏହା ଫଳରେ ଗୋଟିଏ ରାଜ୍ୟରେ ଦୁଇ ପ୍ରକାର ଶିକ୍ଷା ବ୍ୟବସ୍ଥା ୧୯୪୩ ମସିହା ପର୍ଯ୍ୟନ୍ତ ଚାଲୁ ରହିଲା ।

୧୯୩୬ ମସିହାରେ ଯେତେବେଳେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ହେଲା, ସେତେବେଳେ ନୂଆକରି ଓଡିଶାର ଶିକ୍ଷା ନିର୍ଦ୍ଦେଶାଳୟ ଖୋଲିଲା । କିନ୍ତୁ ତାହା ହଠାତ୍ କାର୍ଯ୍ୟ କଲା ନାହିଁ । ବିହାର ଓଡିଶା ପ୍ରଶାସନରେ ପ୍ରାଥମିକ ସ୍କୁଲମାନଙ୍କରେ ଯେଉଁ ପାଠ୍ୟକ୍ରମ ଚାଲୁଥିଲା ତାହା ଚାଲୁ ରହିଲା । ଏହି ପାଠ୍ୟକ୍ରମ ୧୯୩୩ ମସିହାରେ ପ୍ରସ୍ତୁତ ହୋଇଥିଲା ।

୧୯୩୬ ମସିହାରେ ସ୍ୱତନ୍ତ୍ର ଓଡିଶା ପ୍ରଦେଶରେ ପ୍ରାଥମିକ ଶିକ୍ଷା ପାଇଁ ଯେଉଁ ପାଠ୍ୟକ୍ରମ ପ୍ରଚଳିତ ଥିଲା ତା'ର ମୁଖ୍ୟାଂଶ ପ୍ରଦତ୍ତ ହେଲା ।

# ୧୯୩୬ ମସିହା ଠାରୁ ପ୍ରଚଳିତ ପ୍ରାଥମିକ ଶିକ୍ଷା ପାଠ୍ୟକ୍ରମ

| ଶ୍ରେଣୀ | ବିଷୟ | ସମୟ (ଘଣ୍ଟାରେ) |
|---|---|---|
| ଶିଶୁ ଶ୍ରେଣୀ | ପଠନ ଓ ଲିଖନ | ୫ ଘଣ୍ଟା |
| | ଗଣିତ | ୩ ଘଣ୍ଟା |
| | ଖେଳ ଓ ଇନ୍ଦ୍ରିୟାନୁଭୂତି | ୪ ଘଣ୍ଟା |
| | କଥୋପକଥନ ଓ ପର୍ଯ୍ୟବେକ୍ଷଣ | ୧ ଘଣ୍ଟା |
| | ଗଳ୍ପକଥନ ଓ ଧର୍ମଶିକ୍ଷା | ୧ ଘଣ୍ଟା |
| | | ମୋଟ - ୧୪ ଘଣ୍ଟା |
| ପ୍ରଥମ ଶ୍ରେଣୀ | ପଠନ ଓ ଲିଖନ | ୫ ଘଣ୍ଟା |
| | ଗଣିତ | ୩ ଘଣ୍ଟା |
| | ଖେଳ ଓ ଇନ୍ଦ୍ରିୟାନୁଭୂତି | ୪ ଘଣ୍ଟା |
| | କଥୋପକଥନ ଓ ପର୍ଯ୍ୟବେକ୍ଷଣ | ୩ ଘଣ୍ଟା |
| | ଗଳ୍ପକଥନ ଓ ଧର୍ମଶିକ୍ଷା | ୧ ଘଣ୍ଟା |
| | | ମୋଟ - ୧୬ ଘଣ୍ଟା |
| ଦ୍ୱିତୀୟ ଶ୍ରେଣୀ | ପଠନ | ୪ ଘଣ୍ଟା |
| | ଲିଖନ ଓ ରଚନା | ୪ ଘଣ୍ଟା |
| | ଗଣିତ | ୪ ଘଣ୍ଟା |
| | ପରିବେଶ ଶିକ୍ଷା | ୩ ଘଣ୍ଟା |
| | ସ୍ୱାସ୍ଥ୍ୟରକ୍ଷା | ୩ ଘଣ୍ଟା |
| | ଗଳ୍ପକଥନ ଓ ହସ୍ତକର୍ମ | ୨ ଘଣ୍ଟା |
| | ଖେଳ ଓ ଶାରୀରିକ ଶିକ୍ଷା | ୨ ଘଣ୍ଟା |
| | ଧର୍ମ ଶିକ୍ଷା | ୧ ଘଣ୍ଟା |
| | | ମୋଟ - ୨୩ ଘଣ୍ଟା |
| ତୃତୀୟ ଶ୍ରେଣୀ | ପଠନ | ୪ ଘଣ୍ଟା |
| | ରଚନା, ସାଧାରଣ ଭୁଲ ସଂଶୋଧନ, ପତ୍ରଲିଖନ | ୪ ଘଣ୍ଟା |
| | ଗଣିତ | ୪ ଘଣ୍ଟା |
| | ପରିବେଶ ଶିକ୍ଷା | ୧ ଘଣ୍ଟା |
| | ସ୍ୱାସ୍ଥ୍ୟରକ୍ଷା | ୧ ଘଣ୍ଟା |
| | ହସ୍ତକର୍ମ | ୧ ଘଣ୍ଟା |

| ଶ୍ରେଣୀ | ବିଷୟ | ସମୟ (ଘଣ୍ଟାରେ) |
|---|---|---|
| ତୃତୀୟ ଶ୍ରେଣୀ | ଚିତ୍ରାଙ୍କନ | ୩ ଘଣ୍ଟା |
| | ଗଳ୍ପକଥନ | ୨ ଘଣ୍ଟା |
| | ଖେଳ ଓ ଶାରୀରିକ ଶିକ୍ଷା | ୨ ଘଣ୍ଟା |
| | ଧର୍ମ ଶିକ୍ଷା | ୧ ଘଣ୍ଟା |
| | | ମୋଟ - ୨୩ ଘଣ୍ଟା |
| ଚତୁର୍ଥ ଶ୍ରେଣୀ | ପଠନ | ୪ ଘଣ୍ଟା |
| | ରଚନା, ବ୍ୟାକରଣ ଓ ଲିଖନ | ୪ ଘଣ୍ଟା |
| | ଗଣିତ | ୪ ଘଣ୍ଟା |
| | ସ୍ୱାସ୍ଥ୍ୟ ଓ ସ୍ୱାସ୍ଥ୍ୟରକ୍ଷା | ୧ ଘଣ୍ଟା |
| | ଇତିହାସ ଓ ଭୂଗୋଳ | ୨ ଘଣ୍ଟା |
| | ଶାରୀରିକ କର୍ମ ଓ କ୍ରୀଡା | ୧ ଘଣ୍ଟା |
| | ଚିତ୍ରାଙ୍କନ ଓ ହସ୍ତକର୍ମ | ୨ ଘଣ୍ଟା |
| | ଉଦ୍ୟାନ କର୍ମ ଓ ପ୍ରକୃତିପାଠ | ୨ ଘଣ୍ଟା |
| | ଧର୍ମଶିକ୍ଷା | ୧ ଘଣ୍ଟା |
| | ଐଚ୍ଛିକ ବିଷୟ | ୩ ଘଣ୍ଟା |
| | | ମୋଟ - ୨୪ଘଣ୍ଟା |
| ପଞ୍ଚମ ଶ୍ରେଣୀ | ପଠନ | ୪ ଘଣ୍ଟା |
| | ରଚନା, ବ୍ୟାକରଣ ଓ ଶ୍ରୁତ ଲିଖନ | ୪ ଘଣ୍ଟା |
| | ଗଣିତ | ୪ ଘଣ୍ଟା |
| | ସ୍ୱାସ୍ଥ୍ୟ ଓ ସ୍ୱାସ୍ଥ୍ୟରକ୍ଷା | ୧ ଘଣ୍ଟା |
| | ଇତିହାସ ଓ ଭୂଗୋଳ | ୨ ଘଣ୍ଟା |
| | ଶାରୀରିକ କର୍ମ ଓ କ୍ରୀଡା | ୧ ଘଣ୍ଟା |
| | ହସ୍ତକର୍ମ ଓ ଚିତ୍ରାଙ୍କନ | ୨ ଘଣ୍ଟା |
| | ଉଦ୍ୟାନ କର୍ମ ଓ ପ୍ରକୃତି ପାଠ | ୨ ଘଣ୍ଟା |
| | ଧର୍ମ ଶିକ୍ଷା | ୧ ଘଣ୍ଟା |
| | ଐଚ୍ଛିକ ବିଷୟ (ସୂଚୀକର୍ମ ଝିଅଙ୍କ ପାଇଁ) | ୩ ଘଣ୍ଟା |
| | | ମୋଟ - ୨୪ଘଣ୍ଟା |

ଉତ୍ତର ଓଡ଼ିଶା ଓ ଦକ୍ଷିଣ ଓଡ଼ିଶାରେ କେବଳ ଦୁଇ ପ୍ରକାର ପାଠ୍ୟକ୍ରମ ପ୍ରଚଳିତ ହୋଇଥିଲେ କିଛି କ୍ଷତି ହୋଇ ନ ଥାନ୍ତା। କିନ୍ତୁ ପାଠ୍ୟକ୍ରମ ସହିତ କେତେକ ଢାଞ୍ଚାଗତ ପରିବର୍ତ୍ତନ ଲକ୍ଷ୍ୟ କରାଗଲା। ପୂର୍ବରୁ କୁହାଯାଇଛି ଯେ ଉତ୍ତର ଓଡ଼ିଶାର ପ୍ରାଥମିକ ଶିକ୍ଷା ପାଠ୍ୟକ୍ରମ ୧୯୩୩ ମସିହାରେ ପାଟନା ବିଶ୍ୱ ବିଦ୍ୟାଳୟ ଦ୍ୱାରା ସ୍ଥିରୀକୃତ ହୋଇଥିଲା। ସେଇ ପାଠ୍ୟକ୍ରମ ସ୍ୱତନ୍ତ୍ର ପ୍ରଦେଶ ଗଠନ ପୂର୍ବରୁ ଚଳୁଥିଲା। ୧୯୩୬ ମସିହାରେ ସ୍ୱତନ୍ତ୍ର ପ୍ରଦେଶ ଗଠନ ପରେ କୌଣସି ପରିବର୍ତ୍ତନ କରା ନଯାଇ ଚାଲୁ ରହିଲା। ଦକ୍ଷିଣ ଓଡ଼ିଶାର ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ Madras Primary Education Act, 1920 ଅନୁସାରେ ନୂଆ ପାଠ୍ୟକ୍ରମ ପ୍ରସ୍ତୁତ କରାଯାଇ ୧୯୨୨-୨୩ ମସିହାଠାରୁ ଗଞ୍ଜାମ ଓ କୋରାପୁଟ ଜିଲ୍ଲାର ପ୍ରାଥମିକ ସ୍କୁଲରେ ପ୍ରଚଳନ କରାଗଲା ଓ ୧୯୩୬ ମସିହା ପରେ ତା'ର କୌଣସି ପରିବର୍ତ୍ତନ କରା ନଯାଇ ଚାଲୁ ରହିଲା। ଏଥିରେ ଶିଶୁ ଶ୍ରେଣୀ ନଥିଲା।

ଇଂରାଜୀ ଶିକ୍ଷା ବାଧ୍ୟତାମୂଳକ ଥିଲା। ସ୍ୱାସ୍ଥ୍ୟରକ୍ଷା First Aid, ଭୂଗୋଳ, ଇତିହାସ, ନଗର ବିଜ୍ଞାନ ଓ ଇଂରାଜୀ ଇଚ୍ଛାଧୀନ ବିଷୟ ଥିଲା। Kinder Garten ପ୍ରଣାଳୀରେ ପାଠ ପଢାଇବା ପାଇଁ ନିର୍ଦ୍ଦେଶ ଥିଲା । ପ୍ରକୃତି ପର୍ଯ୍ୟବେକ୍ଷଣ ଓ ବୈଷୟିକ ଶିକ୍ଷା ଉପରେ ଗୁରୁତ୍ୱ ଦିଆଯାଉଥିଲା। ଲୋକମାନଙ୍କର ସ୍ଥାନୀୟ ବୃତ୍ତି ଓ ଶିଳ୍ପ ସହିତ ପାଠକୁ ସମନ୍ୱିତ କରି ପାଠଦାନ କରିବାକୁ ନିର୍ଦ୍ଦେଶ ଥିଲା। କିନ୍ତୁ ତାହା କାର୍ଯ୍ୟକାରୀ ହେଉନଥିଲା।

ଉତ୍ତର ଓଡ଼ିଶା ଶିକ୍ଷା ବ୍ୟବସ୍ଥାରେ ଭାଷା ଶିକ୍ଷା, ଗଣିତ, ସ୍ୱାସ୍ଥ୍ୟ ଓ ସ୍ୱାସ୍ଥ୍ୟରକ୍ଷା, ଇତିହାସ ଓ ଭୂଗୋଳ, ଚିତ୍ରାଙ୍କନ, ହସ୍ତକର୍ମ, ଉଦ୍ୟାନ କର୍ମ, ପ୍ରକୃତିପାଠ ଓ ଧର୍ମଶିକ୍ଷା ବାଧ୍ୟତାମୂଳକ ଥିଲା ଓ ତା ସହିତ ଇଚ୍ଛାଧୀନ ବିଷୟ ପାଇଁ ପ୍ରତି ସପ୍ତାହରେ ତିନି ଘଣ୍ଟା ସମୟ ନିର୍ଦ୍ଧାରିତ ହୋଇଥିଲା। ପ୍ରାଥମିକ ଶିକ୍ଷାରେ ଶିଶୁ ଶ୍ରେଣୀ ମିଶାଇ ଛଅ ଗୋଟି ଶ୍ରେଣୀ ଥିଲା କିନ୍ତୁ ଦକ୍ଷିଣ ଓଡ଼ିଶା ପ୍ରାଥମିକ ଶିକ୍ଷାର ଅବଧି ପାଞ୍ଚବର୍ଷ ଥିଲା। ଉତ୍ତର ଓଡ଼ିଶାରେ ପ୍ରାଥମିକ ସ୍କୁଲରେ ପ୍ରବେଶ ବୟସ ୫+ ଥିଲା ସ୍ଥଳେ ଦକ୍ଷିଣ ଓଡ଼ିଶାରେ ତାହା ୬+ ଥିଲା।

ଓଡ଼ିଶାର ଛବିଶଗୋଟି ଗଡଜାତର ଶିକ୍ଷା ବ୍ୟବସ୍ଥା କଥା ଏଠାରେ କୁହାଯାଇନାହିଁ। କାରଣ ଗଡଜାତଗୁଡିକ ସେତେବେଳେ ଓଡ଼ିଶାର ଅଙ୍ଗୀଭୂତ ହୋଇନଥିଲା। ତା ମଧ୍ୟରୁ କେତେକ ଗଡଜାତ ନିଜର ସ୍ୱତନ୍ତ୍ର ଶିକ୍ଷା ବ୍ୟବସ୍ଥା କରିଥିଲେ ଯେପରି କେଉଁଝର । ଅନ୍ୟ ଛୋଟ ଛୋଟ ଗଡଜାତଗୁଡିକ ଉତ୍ତର ଓଡ଼ିଶାର ଶିକ୍ଷା ବ୍ୟବସ୍ଥା ଗ୍ରହଣ କରିଥିଲେ।

ପ୍ରାଥମିକ, ନିମ୍ନପ୍ରାଥମିକ ଓ ମାଧ୍ୟମିକ ସ୍ତରରେ ଉତ୍ତର ଓ ଦକ୍ଷିଣ ଓଡ଼ିଶାରେ ଯେଉଁ ପାର୍ଥକ୍ୟ ରହିଥିଲା ତାହା ଦୂର କରି ଏକ ସାଧାରଣ ଶିକ୍ଷା ବ୍ୟବସ୍ଥା ପ୍ରଚଳନ ପାଇଁ ୧୯୩୯ ମସିହାରେ ସରକାର ଏକ କମିଟି ଗଠନ କରିଥିଲେ। ସମଗ୍ର ଶିକ୍ଷା ବ୍ୟବସ୍ଥାରେ ଏକ ସମୀକରଣ କରିବା ପାଇଁ ଏହି କମିଟି ଉଦ୍ୟମ କରିଥିଲେ। ତାଙ୍କ ସୁପାରିଶ ଅନୁସାରେ ୧୯୪୩ ମସିହାରେ ନିଷ୍ପତ୍ତି ନିଆଗଲା। କିନ୍ତୁ ତାହା କାର୍ଯ୍ୟକାରୀ ହେବାକୁ ଦୁଇ ତିନି ବର୍ଷ ଲାଗିଗଲା। ୧୯୪୫-୪୬ ମସିହାରେ ନୂଆ ସମୀକୃତ ଶିକ୍ଷା ବ୍ୟବସ୍ଥା କାର୍ଯ୍ୟକାରୀ ହେଲା।

## ୧.୩ ଓଡିଶାରେ ମଧ୍ୟ ଇଂରାଜି ସ୍କୁଲ ଶିକ୍ଷା

ଓଡ଼ିଶାର ମୋଗଲବନ୍ଦୀ ଜିଲ୍ଲାମାନଙ୍କରେ ନିମ୍ନପ୍ରାଥମିକ ଶିକ୍ଷା ଚାରିଗୋଟି ଶ୍ରେଣୀରେ ପରିଚାଳିତ ହେଉଥିଲା। ଶିଶୁ, ୧ ମ, ୨ୟ ଓ ୩ୟ ଶ୍ରେଣୀ। ଉଚ୍ଚ ପ୍ରାଥମିକ ଶିକ୍ଷା ଦୁଇଟି ଶ୍ରେଣୀରେ ଦିଆଯାଉଥିଲା ୪ର୍ଥ ଓ ୫ମ ଶ୍ରେଣୀ। କେଉଁଝର ଜିଲ୍ଲାରେ ଉଚ୍ଚ ପ୍ରାଥମିକ ସ୍କୁଲ ନଥିଲା। ଯେଉଁମାନେ ନିମ୍ନପ୍ରାଥମିକ ଶିକ୍ଷା ଶେଷ କରୁଥିଲେ ସେମାନେ ମଧ୍ୟ ଇଂରାଜି ବା ମଧ୍ୟ ଭର୍ଣ୍ଣାକୁଲର ସ୍କୁଲରେ ପଢୁଥିଲେ। ଯେଉଁମାନଙ୍କର ମଧ୍ୟ ଇଂରାଜି ବା ମଧ୍ୟ ଭର୍ଣ୍ଣାକୁଲର ସ୍କୁଲରେ ପଢିବାର କ୍ଷମତା ନଥିଲା ସେମାନେ ଘରେ ବସୁଥିଲେ। ସେତେବେଳେ କେଉଁଝର ଜିଲ୍ଲାରେ ଚାରିଗୋଟି ମଧ୍ୟ ଇଂରାଜି ସ୍କୁଲ ଓ ଗୋଟିଏ ମଧ୍ୟ ଭର୍ଣ୍ଣାକୁଲର ସ୍କୁଲ ଥିଲା। ଯେଉଁମାନେ ଅଧିକ ପଢିବା ପାଇଁ ଇଚ୍ଛା କରୁଥିଲେ ସେମାନେ ଏହି ମଧ୍ୟ ଇଂରାଜି ବା ମଧ୍ୟ ଭର୍ଣ୍ଣାକୁଲର ସ୍କୁଲରେ ପଢୁଥିଲେ।

ମୋର ପ୍ରାଥମିକ ଶିକ୍ଷା ୧୯୪୧ ଡିସେମ୍ବର ମାସରେ ଶେଷ ହେଲା। ତା' ପରେ ମୁଁ ପାଠ ପଢିବି କି ନାହିଁ ତାହ ସ୍ଥିର ହୋଇପାରିଲା ନାହିଁ। କାରଣ ମୋର ପୋଷ୍ୟ ବାପାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିଲା। ଆମ ଘରଠାରୁ ପ୍ରାୟ ୫ କିଲୋମିଟର ଦୂର ହେଉଛି ଆନନ୍ଦପୁର ମଧ୍ୟ ଇଂରାଜି ସ୍କୁଲ୍ । ବାଟରେ ଶାଳପତା ଜଙ୍ଗଲ । ତେଣୁ ଯିବା ଆସିବା କରି ପାଠ ପଢିବା ସମ୍ଭବ ନଥିଲା। ସେଠାରେ ଛାତ୍ରାବାସରେ ରହି ପାଠ ପଢିବାକୁ ହେଲେ ମାସକୁ ଅଢେଇ ଟଙ୍କା (୦୨.୫୦ ପଇସା) ଓ ଚାଉଳ ୩୦ ମାଣ ପ୍ରାୟ ୨୦ କିଲୋଗ୍ରାମ - ଏତିକି ଖର୍ଚ୍ଚ ଦେଇ ପାରିବା ଭଳି ଶକ୍ତି ବାପାଙ୍କର ନଥିଲା। ପୁରୁଣିଆଁ ଗାଁର କ୍ଷେତ୍ରବାସୀ ବଳ ପ୍ରଭୃତି କେତେକ ଲୋକ କହିଲେ, "ନିତ୍ୟାନନ୍ଦ, ପିଲାଟା ଭଲ ପଢୁଛି। ତାକୁ ଆନନ୍ଦପୁରରେ ମାଇନର ପଢାଇବା ବ୍ୟବସ୍ଥା କର" ପୁରୁଣିଆଁ ପ୍ରାଥମିକ

ସ୍କୁଲ ଶିକ୍ଷକମାନେ ମଧ ସେଇ କଥା କହିଲେ। ଶେଷରେ କଥା ହେଲା ଅଢେଇ ଟଙ୍କା ପୋଷ୍ୟ ବାପା ଦେବେ ଓ ତା ସହିତ ହାତ ଖର୍ଚ୍ଚ ଆଠଣା, ମୋଟ ତିନି ଟଙ୍କା ଦେବେ। ଋଉଳ ୩୦ ମାଣ ଆମ ଗାଁ ଗୋବର୍ଦ୍ଧନପୁରରୁ ପ୍ରତି ମାସ ପଠାଇବେ। ମୁଁ ୧୯୪୨ ମସିହା ଜାନୁୟାରୀ ମାସ ଆନନ୍ଦପୁର ମାଇନର ସ୍କୁଲରେ ନାଁ ଲେଖାଇଲି। ହଷ୍ଟେଲରେ ରହିଲି। ସେତେବେଳେ ମୋର ବୟସ ୧୦ ବର୍ଷ। ପୁରୁଣିଆଁର ଆଉ ତିନୋଟି ପିଲା ଯେଉଁମାନେ ମୋ ସହିତ ପ୍ରାଥମିକ ଶ୍ରେଣୀରେ ପଢୁଥିଲେ ସେମାନେ ବି ଆନନ୍ଦପୁର ସ୍କୁଲରେ ନାଁ ଲେଖାଇଲେ ଓ ମୋ ସହିତ ହଷ୍ଟେଲରେ ରହିଲେ।

୧୯୪୦-୪୧ ବେଳକୁ ଓଡ଼ିଶାରେ ଗୋଟିଏ ବାଳିକା ସ୍କୁଲ ସମେତ ୧୨୭ ଗୋଟି ମଧ୍ୟ ଇଂରାଜି ସ୍କୁଲ ଓ ୫ ଗୋଟି ବାଳିକା ସ୍କୁଲ ସହ ୬୧ ଗୋଟି ମଧ୍ୟ ଭର୍ଣ୍ଣାକୁଲର ସ୍କୁଲ ଥିଲା। ଏଥିରେ ଗଡଜାତରେ ଥିବା ସ୍କୁଲ ଗୁଡିକୁ ହିସାବକୁ ନିଆଯାଇ ନାହିଁ। ମଧ୍ୟ ଇଂରାଜି ସ୍କୁଲ ସ୍ତରରେ ମଧ୍ୟ ଉତ୍ତର ଦକ୍ଷିଣ ଓଡ଼ିଶାର ପାର୍ଥକ୍ୟ ଦେଖାଯାଉଥିଲା। ଉତ୍ତର ଓଡ଼ିଶାରେ ଶିଶୁ, ୧ମ, ୨ୟ ଓ ୩ୟ ଶ୍ରେଣୀକୁ ନେଇ ନିମ୍ନ ପ୍ରାଥମିକ, ୪ର୍ଥ ଓ ୫ ମ ଶ୍ରେଣୀ ଉଚ୍ଚ ପ୍ରାଥମିକ ଓ ୬ଷ୍ଠ ଓ ୭ମ ଶ୍ରେଣୀକୁ ମଧ ଇଂରାଜି ବା ନିମ୍ନମାଧମିକ ସ୍କୁଲ ବୋଲି କୁହାଯାଉଥିଲା। ଦକ୍ଷିଣ ଓଡ଼ିଶାରେ ୧ ମରୁ ୫ମ ପର୍ଯ୍ୟନ୍ତ ପାଞ୍ଚଟି ଶ୍ରେଣୀକୁ ନିମ୍ନ ଏଲିମେଣ୍ଟାରୀ, ୬ଷ୍ଠ, ୭ମ ଓ ୮ମ ଶ୍ରେଣୀକୁ ଉଚ୍ଚ ଏଲିମେଣ୍ଟାରୀ ସ୍କୁଲ ଭାବରେ ପରିଗଣିତ ହେଉଥିଲା।

ସପ୍ତମ ଶ୍ରେଣୀ ଶେଷରେ ଉତ୍ତର ଓଡ଼ିଶାରେ ପିଲାଙ୍କୁ ଗୋଟିଏ ସାଧାରଣ ପରୀକ୍ଷା ଦେବାକୁ ପଡୁଥିଲା Middle Shool Certificate Examination.ତାପରେ ସେମାନେ ହାଇସ୍କୁଲର ଅଷ୍ଟମ ଶ୍ରେଣୀରେ ନାଁ ଲେଖାଇବାକୁ ଯୋଗ୍ୟ ବିବେଚିତ ହେଉଥିଲେ। କିନ୍ତୁ ଦକ୍ଷିଣ ଓଡ଼ିଶାରେ ଏପରି କୌଣସି ପରୀକ୍ଷା ନଥିଲା। ଅଷ୍ଟମ ଶ୍ରେଣୀ ଶେଷରେ Higher Elementary School ପରୀକ୍ଷା ଡେପୁଟି ଇନ୍ସପେକ୍ଟର ପରିଚାଳନା କରୁଥିଲେ ଓ ସଫଳ ପିଲାଙ୍କୁ ସାର୍ଟିଫିକେଟ୍ ଦେଉଥିଲେ । ତା'ପରେ ସେମାନେ ହାଇସ୍କୁଲର ୯ମ ଶ୍ରେଣୀରେ ପ୍ରବେଶ କରୁଥିଲେ।

ସ୍କୁଲ ପରିଚାଳନା କ୍ଷେତ୍ରରେ ଉତ୍ତର ଓ ଦକ୍ଷିଣ ଓଡ଼ିଶା ସ୍କୁଲ ମଧରେ ବିଶେଷ ପାର୍ଥକ୍ୟ ଦେଖାଯାଉଥିଲା। ଗଞ୍ଜାମ ଓ କୋରାପୁଟ ଜିଲ୍ଲାର ସମସ୍ତ ସ୍କୁଲ ବେସରକାରୀ। ଗଞ୍ଜାମ ଓ କୋରାପୁଟ ଜିଲ୍ଲା ବୋର୍ଡ ସବୁ ସ୍କୁଲ ପରିଚାଳନା

କରୁଥିଲେ। କିନ୍ତୁ ଉତ୍ତର ଓଡ଼ିଶାରେ କଟକର Practising Middle English School ସରକାରୀ ସ୍କୁଲ ଥିଲା, ଅନ୍ୟ ମଧ୍ୟ ଇଂରାଜି ସ୍କୁଲଗୁଡିକ ଜିଲ୍ଲା ବୋର୍ଡ ପରିଚାଳନା କରୁଥିଲେ ।

ଆନନ୍ଦପୁର ମଧ୍ୟ ଇଂରାଜି ସ୍କୁଲଟି ସରକାରୀ ସ୍କୁଲ ଥିଲା । ଦୟାନିଧି ପଣ୍ଡା ପ୍ରଧାନ ଶିକ୍ଷକ, ବଂଶୀଧର ମିଶ୍ର, ବିଶ୍ୱମ୍ଭର ମିଶ୍ର, ଦାଶରଥି ମିଶ୍ର ଓ କୃପାସିନ୍ଧୁ ମିଶ୍ର ଏ ଚାରିଜଣ ସରକାରୀ ଶିକ୍ଷକ ଥିଲେ । ବୈତରଣୀ ନଦୀ କୂଳରେ ଏକ ଖପର ଛାଉଣି ଘରେ ସ୍କୁଲ କାର୍ଯ୍ୟ ଚାଲୁଥିଲା ଓ ଆଉ ଗୋଟିଏ ଖପର ଛାଉଣି ଘରେ ସ୍କୁଲ ହଷ୍ଟେଲ ଥିଲା । ବୈତରଣୀ ନଦୀ ଏତେ ପାଖ ଯେ ଆମେ ଖାଇସାରି ବାସନ ଧୋଇବାକୁ ନଦୀ କୂଳକୁ ଚାଲିଯାଉ ।

ମାଇନର ସ୍କୁଲରେ ଚାରିବର୍ଷ ପାଠପଢା ଖୁବ୍ ଆନନ୍ଦରେ କଟିଲା । ସେତେବେଳେ ଇଲେକ୍ଟ୍ରି ଆଲୁଅ କଥା କେହି ଚିନ୍ତା କରି ନ ଥିଲେ । ସନ୍ଧ୍ୟାହେଲେ ପ୍ରାର୍ଥନା ସାରି ଲଣ୍ଠନ ଲଗାଇବାକୁ ସମସ୍ତେ ଚାଲିଯା'ନ୍ତି । ପ୍ରତି ୪ ଜଣ ପିଲାଙ୍କ ପାଇଁ ଗୋଟିଏ ଲଣ୍ଠନ । ସନ୍ଧ୍ୟା ୭ଟାରୁ ୯ଟା ପାଠପଢା । ବିଶ୍ୱମ୍ଭର ପଣ୍ଡିତେ ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟ । ଛୋଟ ବେତ ଖଣ୍ଡିଏ କାଖରେ ଜାକି ସେ ଚାଲି ଆସନ୍ତି ସମସ୍ତେ ପଢୁଛନ୍ତି ନା ନାହିଁ ଦେଖିବା ପାଇଁ । ଯଦି କେହି ଶୋଇ ପଡିଥାନ୍ତି ବା ଢୁଳେଇ ଥାନ୍ତି ପଣ୍ଡିତଙ୍କ ବେତ କାମରେ ଲାଗେ ।

ରାତି ଖାଇ ସାରିଲା ପରେ ଦିନେ ଦିନେ ପ୍ରଧାନ ଶିକ୍ଷକ ଫିଙ୍ଗା ଜାଲ ଧରି ମାଛ ମାରିବାକୁ ଆସନ୍ତି । ଆମେ ଦୁଇ ତିନିଜଣ ପିଲା ହାତରେ ଗୋଟିଏ ନୋଟା ଧରି ସାଙ୍ଗରେ ଚାଲୁ । ବୈତରଣୀ କୂଳେ କୂଳେ ସେ ଫିଙ୍ଗା ଜାଲ ପକାନ୍ତି । ଆମେ ମାଛ ଗୋଟାଇ ନୋଟାରେ ରଖୁ । ମାଛଧରା ଭାରି ମଜା ଲାଗେ । ପ୍ରାୟ ରାତି ୧୨ଟା ବା ସାଢେ ବାରଟା ବେଳେ ନଈକୂଳରୁ ଫେରୁ ।

ବୈତରଣୀ ନଦୀ ତଥା ଆନନ୍ଦପୁର ସେତେବେଳେ ମାଛ ପାଇଁ ପ୍ରସିଦ୍ଧି ଲାଭ୍ କରିଥିଲା । ବାହାରୁ ଜାଲୁଆ ଆସି ଏଠାରେ ବଡ ବଡ ମାଛ ଧରି ବିକ୍ରି କରୁଥିଲେ । ହଷ୍ଟେଲରେ ପ୍ରତି ସପ୍ତାହରେ ଦୁଇଥର ମାଛ, ଥରେ ମାଂସ ହୁଏ । ଖାଇବା ପିଇବା ଖୁବ୍ ଭଲ ।

ଆନନ୍ଦପୁର ନଈକୂଳ ହୋଇଥିବାରୁ ନଈବଢି ପରେ ପଟୁ ପଡି କୂଳ ଜମି ଉର୍ବର ହୋଇଯାଏ । ଭଲ ପନିପରିବା ହୁଏ । ଆନନ୍ଦପୁର ପାଖରେ ପଦ୍ମପୁରରେ ମଧ୍ୟ ଭଲ ପରିବା ହୁଏ । ପରିବାପତ୍ର ଶସ୍ତାରେ ମିଳେ । ଏଣୁ ହଷ୍ଟେଲରେ

ଖାଇବା ପିଇବା ଭଲ ହୁଏ । ଆନନ୍ଦପୁରରେ ମାଇନର ପଢାବେଳେ ପ୍ରାୟ ସାଢେ ତିନିବର୍ଷ ବେଶ୍ ମଜାରେ କଟିଲା ।

ଆମର ଷଷ୍ଠ ଶ୍ରେଣୀ ୧୯୪୪ ମସିହା ପର୍ଯ୍ୟନ୍ତ ପ୍ରତି ଶିକ୍ଷାବର୍ଷ ଜାନୁୟାରୀ ମାସରେ ଆରମ୍ଭ ହେଉଥିଲା । କିନ୍ତୁ ୧୯୪୪ ମସିହାରେ ହଠାତ୍ ସରକାରୀ ନିର୍ଦ୍ଦେଶ ଆସିଲା ଏଣିକି ଶିକ୍ଷାବର୍ଷ ଜୁନ୍‌ମାସଠାରୁ ଆରମ୍ଭ ହୋଇ ମେ ମାସରେ ଶେଷ ହେବ । ତେଣୁ ସେ ବର୍ଷ ଛ ମାସରେ ଗୋଟିଏ ଶ୍ରେଣୀର ପାଠ ଶେଷ ହେଲା । ଆମେ ଜାନୁୟାରୀରୁ ପାଠପଢା ଆରମ୍ଭ କରି ଜୁନ୍ ମାସରେ ସପ୍ତମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେଲୁ । ଏପରି Short Session ହେବାର କାରଣ ୧୯୩୬ ମସିହା ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ପରେ ବିହାର ଓଡିଶା ପ୍ରଶାସନର ନିୟମ ଅନୁସାରେ ଶିକ୍ଷା ପରିଚାଳିତ ହେଉଥିଲା । ଓଡିଶାର ସ୍ୱତନ୍ତ୍ର ଶିକ୍ଷା ପ୍ରଶାସନ ବା ସ୍ୱତନ୍ତ୍ର ପାଠ୍ୟକ୍ରମ ନ ଥିଲା । ୧୯୪୩ ମସିହାରେ ଉତ୍କଳ ବିଶ୍ୱ ବିଦ୍ୟାଳୟ ସ୍ଥାପିତ ହେଲା ଓ ଓଡିଶାର ସ୍ୱତନ୍ତ୍ର ଶିକ୍ଷା ବ୍ୟବସ୍ଥା ପ୍ରଚଳିତ ହେଲା । ତା'ର ଫଳସ୍ୱରୂପ ଏ ପ୍ରକାର ନୂଆ ବ୍ୟବସ୍ଥା ପ୍ରଚଳିତ ହେଲା ।

## ୧.୪ ମାଧ୍ୟମିକ ଶିକ୍ଷା

ମୋର ମଧ୍ୟ ଇଂରାଜି ସ୍କୁଲ ଶିକ୍ଷା ୧୯୪୫ ମସିହା ଜୁନ୍ ମାସରେ ଶେଷ ହେଲା । ତା ପରେ ହାଇସ୍କୁଲରେ ପଢିବା ଚିନ୍ତା । ମୁଖ୍ୟ ହେଲା ଅର୍ଥ ଚିନ୍ତା । ଯେନତେନ ପ୍ରକାରେ ମଧ୍ୟ ଇଂରାଜି ଶିକ୍ଷା ଶେଷ ହୋଇଗଲା । ସେତେବେଳେ ସଂପୂର୍ଣ୍ଣ କେଉଁଝର ଷ୍ଟେଟ୍‌ରେ ଗୋଟିଏ ହାଇସ୍କୁଲ - ଗିବ୍‌ସନ୍ ହାଇସ୍କୁଲ - କେଉଁଝର ଗଡରେ ଅବସ୍ଥିତ । ପୁରୁଣିଆଁ ଗାଁର ଆମ ବିରୋଧୀମାନେ କହିଲେ, "କେଉଁଝର ଗଡରେ ପୁଅକୁ ପାଠ ପଢାଇବା ଦମ୍ ନିତ୍ୟାନନ୍ଦ ରାଉତର କାହିଁ ? ତା ପୁଅର ପାଠପଢାରେ ଏଇଠି ଡୋରି ବନ୍ଧାହେବ ।" ଠିକ୍ ଏଇ ସମୟରେ ଆନନ୍ଦପୁରରେ ଗୋଟିଏ ହାଇସ୍କୁଲ ଖୋଲିବା ପାଇଁ ଆନ୍ଦୋଳନ ଚାଲିଲା । ଆନ୍ଦୋଳନକାରୀ ମାନଙ୍କର ଯୁକ୍ତି ହେଲା - ଆନନ୍ଦପୁର ଏକ ଅଣ ଆଦିବାସୀ ଅଧ୍ୟୁଷିତ ସବ୍‌ଡିଭିଜନ୍ । ଏଠାର ଲୋକମାନେ ଶିକ୍ଷା ପ୍ରିୟ ଓ ଶିକ୍ଷିତ । ଏଠାରେ ଗୋଟିଏ ହାଇସ୍କୁଲ ଖୋଲିବା ଦରକାର । ରାଜାରାଜୁଡା ଶାସନ । ରାଜାଙ୍କୁ ନ ଧରିଲେ କୌଣସି କାମ ହେବା ସମ୍ଭବ ନୁହେଁ । ଦଳେ ଶିକ୍ଷା ପ୍ରେମୀ କେଉଁଝର ଗଡକୁ ଚାଲିଲେ ରାଜାଙ୍କୁ ଭେଟିବା ପାଇଁ । କେଉଁଝରର ତତ୍କାଳୀନ ରାଜା

ସାହେବ ବଳଭଦ୍ର ନାରାୟଣ ଭଞ୍ଜ ଦେଓଙ୍କୁ ଭେଟି ପ୍ରସ୍ତାବଦେଲେ ଯେ ରାଜାଙ୍କ ନାମାନୁସାରେ "ବଳଭଦ୍ର ନାରାୟଣ ହାଇସ୍କୁଲ" ଆନନ୍ଦପୁର ମାଇନର ସ୍କୁଲରେ ସ୍ଥାପିତ ହେବ । ରାଜା ସାହେବ ରାଜି ହୋଇଗଲେ । ୧୯୪୫ ମସିହା ଜୁଲାଇ ମାସରେ ଆନନ୍ଦପୁର ଡାକ ବଙ୍ଗଳା ନିକଟରେ ଏକ ବିରାଟ ସାଧାରଣ ସଭାରେ ରାଜା ଓ ରାଣୀ ଯୋଗଦେଇ ଆନୁଷ୍ଠାନିକ ଭାବରେ ସ୍କୁଲର ଶୁଭାରମ୍ଭ କଲେ । ଏକାଥରେ ଦୁଇଟି ଶ୍ରେଣୀ ଖୋଲିଲା । ଆମ ଆଗରୁ ମାଇନର୍ ପାଶ୍ କରି ଆଖ ପାଖ ହାଇସ୍କୁଲରେ ପଢୁଥିବା ଆନନ୍ଦପୁର ପିଲାସବୁ ନବମ ଶ୍ରେଣୀରେ ପଢିଲେ । ଆମେ ଯେଉଁମାନେ ୧୯୪୫ ମସିହାରେ ମାଇନର ପାଶ୍ କଲୁ ଆମେ ଅଷ୍ଟମ ଶ୍ରେଣୀରେ ପଢିଲୁ ।

ସ୍କୁଲ ଆରମ୍ଭ ସମୟରେ ମାଇନର ସ୍କୁଲର ଶିକ୍ଷକମାନେ ପାଠ ପଢାଇବା ଆରମ୍ଭ କଲେ । ସେତେବେଳେ ଦେଓଗାଁ ମାଇନର୍ ସ୍କୁଲର ପ୍ରଧାନ ଶିକ୍ଷକ ନଟବର ଦେବତା ବି.ଏ. ପାଶ୍ କରିଥିବାରୁ ତାଙ୍କୁ ବଦଳି କରି ପ୍ରଧାନ ଶିକ୍ଷକ ଦାୟିତ୍ୱରେ ରଖାଗଲା । ପରେ ରମେଶ ଚନ୍ଦ୍ର ପଟ୍ଟନାୟକ ବି.ଏ. ବି.ଏଡ୍‌ଙ୍କୁ ପ୍ରଧାନ ଶିକ୍ଷକ ଭାବରେ ନିଯୁକ୍ତି ଦିଆଗଲା ଓ ନଟବର ଦେବତା ସହକାରୀ ଶିକ୍ଷକ ଭାବରେ କାର୍ଯ୍ୟ କଲେ । ନୂଆ ସ୍କୁଲ । ଘରଠାରୁ ଆରମ୍ଭ କରି ପାଠୋପକରଣ, କାଷ୍ଠୋପକରଣ, ବିଜ୍ଞାନ ଉପକରଣ ଇତ୍ୟାଦି ସବୁ ଅଭାବ । ସେଇ ଅଭାବ ଭିତରେ କୌଣସି ମତେ ପାଠ ପଢା ଚାଲିଲା ।

କେଉଁଝରଗଡ ଗିବ୍‌ସନ୍ ହାଇସ୍କୁଲରେ ପାଠ ପଢିଥିଲେ ମୋ ପାଇଁ ଯେଉଁ ଆର୍ଥିକ ସମସ୍ୟା ହୋଇଥାନ୍ତା, ତାହା ହେଲା ନାହିଁ । ଆନନ୍ଦପୁରରେ ମୋର ଚାରିବର୍ଷ କଟିଛି । ଯେଉଁ ହଷ୍ଟେଲରେ ଯେପରି ଭାବରେ ଆମେ ଆଗରୁ ରହୁଥିଲୁ ସେଇପରି ଭାବରେ ରହିଲୁ । ଅଧିକ ଖର୍ଚ୍ଚ ପ୍ରାୟ ହେଲା ନାହିଁ । ଯେଉଁ ସାମାନ୍ୟ ଅଧିକ ଖର୍ଚ୍ଚ ପଡିଲା ବହିପତ୍ର କିଣାରେ ଓ ମେସ୍ ଖର୍ଚ୍ଚରେ ତାହା ତୁଲାଇ ନେବାରେ ବିଶେଷ ଅସୁବିଧା ହେଲା ନାହିଁ । ଆନନ୍ଦପୁରରେ ହାଇସ୍କୁଲ ଖୋଲିବା ମୋ ପାଇଁ ତଥା ଆହୁରି ବହୁତ ଗରିବ ପିଲାଙ୍କ ପାଇଁ ବର ସଦୃଶ ହେଲା । ସ୍କୁଲ ନ ଖୋଲିଥିଲେ ବୋଧହୁଏ ଆମର ପାଠପଢା ଶେଷ ହୋଇ ଯାଇଥାନ୍ତା ।

ହାଇସ୍କୁଲର ପାଠପଢାରେ କେତେକ ଅସୁବିଧା ଦେଖାଦେଲା । ସେଇ ବର୍ଷଠାରୁ ବିଜ୍ଞାନ ଶିକ୍ଷା ନୂଆକରି ପ୍ରବର୍ତ୍ତିତ ହେଲା । ନୂଆ ବିଷୟ ପଢାଇବାକୁ

ବିଜ୍ଞାନ ଶିକ୍ଷକ ନାହାନ୍ତି । ମାଇନର ସ୍କୁଲର ପ୍ରଧାନ ଶିକ୍ଷକ ଦୟାନିଧି ପଣ୍ଡା I.Sc. ପାଶ୍ କରିଥିଲେ । କିନ୍ତୁ ସେ ଯେତେବେଳେ I.Sc. ପଢୁଥିଲେ ତାଙ୍କର Practical ନ ଥିଲା । ତେଣୁ ସେ ବିଜ୍ଞାନ ପଢାଇବାକୁ ନିଜର ଅସାମର୍ଥ୍ୟ ପ୍ରକାଶ କଲେ । ହାଇସ୍କୁଲ ସହିତ ମାଇନର୍ ସ୍କୁଲର ମିଶ୍ରଣ ହୋଇ ସାରିଥିଲା । ତା ଫଳରେ ମାଇନର ସ୍କୁଲର ପ୍ରଧାନ ଶିକ୍ଷକ ହାଇସ୍କୁଲର ସହକାରୀ ଶିକ୍ଷକ ହୋଇ ସାରିଥିଲେ । ବିଜ୍ଞାନ ପଢାଇବା ପାଇଁ ଅନ୍ୟ ବ୍ୟବସ୍ଥା ହୋଇ ନ ପାରିବାରୁ ଦୟାନିଧି ବାବୁଙ୍କୁ ବିଜ୍ଞାନ ପଢାଇବାକୁ ପଡିଲା । ନଟବର ଦେବତା - ଇଂରାଜି, ଇତିହାସ ଓ ଭୂଗୋଳ ମାଇନର ସ୍କୁଲ ଶିକ୍ଷକ ପଢାଇଲେ । ପ୍ରଧାନ ଶିକ୍ଷକ ରମେଶଚନ୍ଦ୍ର ପଟ୍ଟନାୟକ ଗଣିତ ଓ ଇଂରାଜି ପ୍ରଥମ ପତ୍ର ପଢାଇଲେ । ମାଇନର ସ୍କୁଲ ଶିକ୍ଷକ ବିଶ୍ୱମ୍ଭର ପଣ୍ଡିତେ ଓଡିଆ ପଢାଇଲେ । ସେ ତାଙ୍କର ପୁରୁଣା ମାଇନର ସ୍କୁଲର ଅଭ୍ୟାସ ଅନୁସାରେ କେବଳ ଶବ୍ଦାର୍ଥ କହି ଦିଅନ୍ତି ।

ବିଷୟ ବସ୍ତୁର Critical appreciation ହୁଏ ନାହିଁ । ତେଣୁ ଓଡିଆ ପଢାରେ କେହି ସନ୍ତୁଷ୍ଟ ହେଲେ ନାହିଁ । ମୋଟାମୋଟି ଭାବରେ ସବୁ କାମଚଳା ହେଲା ସିନା ସନ୍ତୋଷଜନକ ପାଠପଢା ହେଲା ନାହିଁ ।

ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ (୧୯୩୬) ସମୟରେ ଓଡିଶାରେ ବିଶ୍ୱ ବିଦ୍ୟାଳୟ ନ ଥିଲା । ଓଡିଶାର ସ୍କୁଲ କଲେଜମାନଙ୍କର ପାଠ୍ୟକ୍ରମ ପାଟନା ବିଶ୍ୱ ବିଦ୍ୟାଳୟ ଦ୍ୱାରା ନିୟନ୍ତ୍ରିତ ହେଉଥିଲା । ପାଟନା ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରସ୍ତୁତ ପାଠ୍ୟକ୍ରମ ଓଡିଶା ସ୍କୁଲ ମାନଙ୍କରେ ୧୯୩୬ ରୁ ୧୯୪୩ ମସିହା ପର୍ଯ୍ୟନ୍ତ ଚାଲୁଥିଲା । ପଣ୍ଡିତ ଗୋଦାବରୀଶ ମିଶ୍ର ଶିକ୍ଷାମନ୍ତ୍ରୀ ଥିବାବେଳେ ଓଡିଶାରେ ୧୯୪୩ ମସିହା ନଭେମ୍ବର ମାସ ୨୩ ତାରିଖରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା । କିନ୍ତୁ ୧୯୪୫ - ୧୯୪୬ ପର୍ଯ୍ୟନ୍ତ ଓଡିଆ ପିଲାମାନେ ପାଟନା ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରସ୍ତୁତ ପାଠ୍ୟକ୍ରମ ଅନୁସାରେ ପରୀକ୍ଷା ଦେଉଥିଲେ । ଓଡିଶା ସ୍କୁଲ କଲେଜଗୁଡିକ ଉତ୍କଳ ବିଶ୍ୱବିଦ୍ୟାଳୟ ସହ ୧୯୪୫ - ୧୯୪୬ ମସିହାଠାରୁ ସହବନ୍ଧିତ ହେଲେ । ପାଟନା ବିଶ୍ୱବିଦ୍ୟାଳୟର ନୂଆ ନିୟମ ଅନୁସାରେ ୧୯୩୮ - ୧୯୩୯ ମସିହାଠାରୁ ମାତୃଭାଷା ମାଧ୍ୟମରେ ପାଠପଢା ହେବାର ଓ ପରୀକ୍ଷା ହେବାର ନିୟମ ପ୍ରବର୍ତ୍ତିତ ହୋଇଥିଲା । ଫଳରେ ୧୯୪୨ ମସିହାଠାରୁ ମାଟ୍ରିକୁଲେସନ୍ ପରୀକ୍ଷା ଓଡିଆ ମାଧ୍ୟମରେ ପରିଚାଳିତ ହେଲା । ଉତ୍କଳ ବିଶ୍ୱବିଦ୍ୟାଳୟ ପରୀକ୍ଷା ପରିଚାଳନା ଦାୟିତ୍ୱ ନେବା ପୂର୍ବରୁ

ଓଡିଆ ମାଧ୍ୟମରେ ପାଠପଢ଼ା ଓ ପରୀକ୍ଷା ପରିଚାଳନା କରାଯାଉଥିଲା । ୧୯୪୩ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେବା ପରେ ସିଲାବସ୍ କମିଟି ଗଠନ ଓ ନୂଆ ସିଲାବସ୍ ପ୍ରସ୍ତୁତ କରିବାକୁ କିଛି ସମୟ ଲାଗିଲା । ୧୯୪୫-୧୯୪୬ ଠାରୁ ମାଟ୍ରିକୁଲେସନ୍ ପରୀକ୍ଷା ପରିଚାଳନା ଦାୟିତ୍ୱ ଉତ୍କଳ ବିଶ୍ୱ ବିଦ୍ୟାଳୟ ହାତକୁ ନେଲେ ।

ଓଡିଶାର ଉତ୍ତରାଞ୍ଚଳରେ ବାଲେଶ୍ୱର, କଟକ, ପୁରୀ ଓ ସମ୍ବଲପୁର ଜିଲ୍ଲାର ସ୍କୁଲସମୂହ ଯେଉଁଗୁଡିକ ପାଟନା ବିଶ୍ୱ ବିଦ୍ୟାଳୟ ଅଧୀନରେ ଥିଲେ ସେ ଗୁଡିକ ସିଧା ଉତ୍କଳ ବିଶ୍ୱ ବିଦ୍ୟାଳୟ ଅଧୀନକୁ ଆସିଗଲେ । ଉତ୍କଳ ବିଶ୍ୱ ବିଦ୍ୟାଳୟ ପରିଚାଳିତ ମାଟ୍ରିକୁଲେସନ ଶିକ୍ଷା ବ୍ୟବସ୍ଥା ଗ୍ରହଣ କଲେ । ସେତେବେଳେ ଓଡିଶାର ଦକ୍ଷିଣାଞ୍ଚଳରେ ଅବସ୍ଥିତ କୋରାପୁଟ ଓ ଗଞ୍ଜାମ ଜିଲ୍ଲାରେ ଭିନ୍ନ ପ୍ରକାର ଶିକ୍ଷା ବ୍ୟବସ୍ଥା ଥିଲା । ସେ ସ୍କୁଲ ଗୁଡିକରେ କ୍ଲାସ ବଦଳରେ "Form" ବ୍ୟବହାର କରାଯାଉଥିଲା । ସେ ପିଲାମାନେ SSLC (Secondary School Leaving Certificate ) ବୋର୍ଡ ଦ୍ୱାରା ପରିଚାଳିତ ପରୀକ୍ଷା ୧୯୪୪ ମସିହା ପର୍ଯ୍ୟନ୍ତ ଦେଉଥିଲେ । ୧୯୪୫ ମସିହାଠାରୁ Director of Public Instruction, Orissa ଙ୍କୁ SSLC ପରୀକ୍ଷା ପରିଚାଳନା କରିବାକୁ କ୍ଷମତା ପ୍ରଦାନ କରାଗଲା । ୧୯୪୩-୧୯୪୪ ମସିହାରେ ପାଟନା ବିଶ୍ୱ ବିଦ୍ୟାଳୟର ମାଟ୍ରିକୁଲେସନ୍ ଓ ମାଡ୍ରାସ୍ ବିଶ୍ୱ ବିଦ୍ୟାଳୟର SSLC ସିଲାବସର ସମୀକରଣ କରାଯାଇ ସମଗ୍ର ଓଡିଶା ପାଇଁ ଗୋଟିଏ ସିଲାବସ୍ ନିର୍ଦ୍ଧାରିତ ହେଲା ।

ଆମେ ୧୯୪୫-୧୯୪୬ ମସିହାରେ ହାଇସ୍କୁଲରେ ନାଁ ଲେଖାଇବା ବେଳକୁ ଉତ୍କଳ ବିଶ୍ୱ ବିଦ୍ୟାଳୟ ଦ୍ୱାରା ପ୍ରସ୍ତୁତ ସିଲାବସ୍ ପ୍ରଚଳିତ ହୋଇ ସାରିଲାଣି । ମାଧ୍ୟମିକ ଶିକ୍ଷାରେ ଚାରିଗୋଟି ଶ୍ରେଣୀ - ଅଷ୍ଟମ, ନବମ, ଦଶମ ଓ ଏକାଦଶ । ସାତଗୋଟି ବିଷୟ ପଢ଼ା ଯାଉଥିଲା । :-

| | | |
|---|---|---|
| ଇଂରାଜି | - | ୨୦୦ ନମ୍ବର |
| ଗଣିତ | - | ୧୦୦ ନମ୍ବର |
| ମାତୃଭାଷା | - | ୧୦୦ ନମ୍ବର |
| ସାଧାରଣ ବିଜ୍ଞାନ | - | ୧୦୦ ନମ୍ବର |

| | | |
|---|---|---|
| ସଂସ୍କୃତ | - | ୧୦୦ ନମ୍ବର |
| ଇତିହାସ-ଭୂଗୋଳ | - | ୧୦୦ନମ୍ବର (୫୦+୫୦) |
| ଇଚ୍ଛାଧୀନ ବିଷୟ | - | ୧୦୦ ନମ୍ବର |
| ମୋଟ | - | ୮୦୦ ନମ୍ବର |

ଶିକ୍ଷାବର୍ଷ ଆରମ୍ଭ ହେଉଥିଲା ଜୁନ୍ ମାସ ଓ ଶେଷ ହେଉଥିଲା ମେ ମାସ। ଆମ ସ୍କୁଲର ଦୁଇଗୋଟି ହଷ୍ଟେଲ ଥିଲା । ପୁରୁଣା ମାଇନର ସ୍କୁଲ ହଷ୍ଟେଲକୁ 'A' ହଷ୍ଟେଲ ଓ ସ୍କୁଲର ଉତ୍ତରକୁ ଗୋଟିଏ ଛୋଟିଆ ଚାଳଘରେ ଗୋଟିଏ ଛୋଟ ହଷ୍ଟେଲ ଥିଲା - 'B' ହଷ୍ଟେଲ । 'B' ହଷ୍ଟେଲରେ କେବଳ ଅଷ୍ଟମ ଶ୍ରେଣୀର ୧୫-୧୬ ଟି ପିଲା ରହୁଥିଲେ । ମୁଁ 'B' ହଷ୍ଟେଲରେ ରହୁଥିଲି । ଦୁଇଟି ଯାକ ହଷ୍ଟେଲ ସଂପୂର୍ଣ୍ଣ ପୃଥକ ଭାବରେ ପରିଚାଳିତ ହୁଅନ୍ତି ।

'A' ହଷ୍ଟେଲର ସୁପରିନ୍‌ଟେଣ୍ଡେଣ୍ଟ କୃପାସିନ୍ଧୁ ମିଶ୍ର ଓ 'B' ହଷ୍ଟେଲରେ କେହି ସୁପରିନ୍‌ଟେଣ୍ଡେଣ୍ଟ ନ ଥାନ୍ତି । ନାମକୁ ମାତ୍ର ନଟବର ଦେବତାଙ୍କୁ ଦାୟିତ୍ୱ ଦିଆ ଯାଇଥାଏ । ଥରେ 'A' ହଷ୍ଟେଲରେ ଗୋଟିଏ କିରାସିନି ଟିଣ ସଂପୂର୍ଣ୍ଣ ବୋହିଗଲା । ସେଥିରେ ଯେଉଁ କ୍ଷତି ହେଲା ତାହା 'A' ଓ 'B' ଉଭୟ ହଷ୍ଟେଲର ପିଲାମାନେ ଭରଣା କରିବା ଉଚିତ ବୋଲି 'A' ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟ କୃପାସିନ୍ଧୁ ମିଶ୍ର ହେଡ୍ ମାଷ୍ଟରଙ୍କୁ କହିଲେ । ହେଡ୍ ମାଷ୍ଟ୍ରେ ମଧ୍ୟ କିଛି ନ ବିଚାରି ତାଙ୍କ କଥାରେ ରାଜି ହୋଇଗଲେ ଓ କ୍ଷତି ଭରଣା କରିବାକୁ 'B' ହଷ୍ଟେଲ ପିଲାଙ୍କୁ ବାଧ୍ୟକଲେ । 'B' ହଷ୍ଟେଲ ପିଲାମାନେ ଯୁକ୍ତି କଲେ ଯେ କୌଣସି ବିଷୟରେ ଉଭୟ ହଷ୍ଟେଲର ପରିଚାଳନାରେ ସଂପର୍କ ନ ଥିବାବେଳେ 'A' ହଷ୍ଟେଲର କ୍ଷତି ସେମାନେ ଭରଣା କରିବେ କାହିଁକି ? 'B' ହଷ୍ଟେଲର କୌଣସି ପ୍ରକାର କ୍ଷତି ହେଲେ 'A' ହଷ୍ଟେଲ ସାହାଯ୍ୟ କରନ୍ତି ନାହିଁ । ତା ଛଡା 'B' ହଷ୍ଟେଲ ଛୋଟ ହୋଇଥିବାରୁ ସେଠାରେ ପିଲାମାନେ ଅଧିକ ଖର୍ଚ୍ଚ ବହନ କରନ୍ତି । ସେଥିରେ 'A' ହଷ୍ଟେଲ ସାହାଯ୍ୟ କରେ ନାହିଁ । 'A' ହଷ୍ଟେଲର କ୍ଷତି 'B' ହଷ୍ଟେଲ ପିଲାମାନେ ଭରଣା କରିବାକୁ ରାଜି ହେଲେ ନାହିଁ । ଶେଷରେ ଏ ବିବାଦ ତୀବ୍ର ରୂପ ଧାରଣ କଲା । ଯେଉଁ କୃପାସିନ୍ଧୁ ବାବୁ ଏ ପ୍ରସ୍ତାବ ଦେଇଥିଲେ ସେ ଖସିଗଲେ । ବିବାଦ ତୀବ୍ରତର ହେଲା ହେଡ୍‌ମାଷ୍ଟର ଓ 'B' ହଷ୍ଟେଲର

ଅଷ୍ଟମ ଶ୍ରେଣୀ ପିଲାଙ୍କ ମଧ୍ୟରେ । ଏ ବିବାଦ ଧୀରେ ଧୀରେ ସ୍କୁଲକୁ ସଂପ୍ରସାରିତ ହେଲା । ଶେଷରେ ଅଷ୍ଟମ ଶ୍ରେଣୀ ପିଲାମାନେ Strike କଲେ ହେଡମାଷ୍ଟରଙ୍କର ଅନ୍ୟାୟ ଆଦେଶ ବିରୁଦ୍ଧରେ । ତା ଭିତରେ ଗୋଟିଏ ଅଘଟଣ ଘଟିଗଲା । ହେଡ୍ ମାଷ୍ଟ୍ରେ ପିଲାଙ୍କ ମଝିରେ ଯାଉଥିବା ଅବସ୍ଥାରେ ଜଣେ କିଏ ଦୁଷ୍ଟପିଲା ତାଙ୍କୁ ଧକ୍କାଏ ପକାଇଲା । ତାପରେ ଅବସ୍ଥା ଅସମ୍ଭାଳ ।

ବାହାରେ ପ୍ରଚାର ହେଲା ପିଲାମାନେ ହେଡ୍ ମାଷ୍ଟରଙ୍କୁ ମାଡ ଦେଇଛନ୍ତି । ହେଡ୍ ମାଷ୍ଟ୍ରେ ଜିଦ୍ ଧରିଲେ ସବୁ ଅଷ୍ଟମ ଶ୍ରେଣୀ ପିଲାଙ୍କୁ Rusticate କରିବେ । ସବୁ ପିଲା ଭୟରେ ଛାନିଆଁ । କ'ଣ ହେବ ? ରାଜା ରାଜୁଡା ଶାସନ । କିଛି ଧରାବନ୍ଧା ନିୟମ ଅନୁସାରେ କାର୍ଯ୍ୟାନୁଷ୍ଠାନ ହେବ ନାହିଁ । ଆନନ୍ଦପୁର ସହରର ଭଦ୍ରଲୋକମାନେ ହେଡ୍ ମାଷ୍ଟରଙ୍କୁ ବୁଝାସୁଝା କଲାପରେ ସେ କହିଲେ ଅନ୍ତତଃ ପକ୍ଷେ ଅଷ୍ଟମ ଶ୍ରେଣର 'B' ହଷ୍ଟେଲ ପିଲାଙ୍କୁ Rusticate କରାଯାଉ । କାରଣ ସେଇମାନଙ୍କଠାରୁ ସବୁ ଗୋଳମାଳ ଆରମ୍ଭ । ସ୍କୁଲ ଉପଦେଷ୍ଟା କମିଟିର ସେକ୍ରେଟେରୀ ଗିରିଧାରୀ ପଣ୍ଡାଙ୍କ ଭାଇ ଅଚ୍ୟୁତାନନ୍ଦ ପଣ୍ଡା ଆମରି ସହିତ ଅଷ୍ଟମ ଶ୍ରେଣୀରେ ପଢୁଥାନ୍ତି । ସେ ଦେଖିଲେ ଯେଉଁ ନିଷ୍ପତ୍ତି ପିଲାଙ୍କ ବିରୁଦ୍ଧରେ ନିଆଯିବ ସେଥିରେ ତାଙ୍କ ଭାଇ ଅସୁବିଧାରେ ପଡିବ । ତେଣୁ ସେ ଓ ଆଉ କେତେକ ଭଦ୍ରବ୍ୟକ୍ତିଙ୍କ ମଧ୍ୟସ୍ଥତାରେ ନିଷ୍ପତ୍ତି ହେଲା ଯେ ଅଷ୍ଟମ ଶ୍ରେଣୀ ପିଲାମାନେ ହେଡ୍ ମାଷ୍ଟରଙ୍କ ଗୋଡତଳେ ପଡି କ୍ଷମା ମାଗିବେ । ଭବିଷ୍ୟତରେ ଏପରି କାର୍ଯ୍ୟ କରିବେ ନାହିଁ ବୋଲି ପ୍ରତିଜ୍ଞା କରିବେ । ଆମେ ସବୁ ହେଡ୍ ମାଷ୍ଟ୍ରଙ୍କ ଗୋଡତଳେ ପଡି କ୍ଷମା ପ୍ରାର୍ଥନା କଲୁ । ଭବିଷ୍ୟତରେ ଏ ପ୍ରକାର କାର୍ଯ୍ୟ କରିବୁ ନାହିଁ ବୋଲି ପ୍ରତିଜ୍ଞା କଲୁ । ହେଡ୍ ମାଷ୍ଟେ ଆମକୁ କ୍ଷମା କରିଦେଲେ । ସେତିକିରେ ସେ ଗୋଳମାଳ ତୁଟିଗଲା ସିନା କିନ୍ତୁ ହେଡ୍‌ମାଷ୍ଟରଙ୍କ ରାଗ ଅଷ୍ଟମ ଶ୍ରେଣୀ ହଷ୍ଟେଲ ପିଲାଙ୍କ ଉପରେ ରହିଲା । ପରବର୍ତ୍ତୀ କାଳରେ ବିଭିନ୍ନ ଘଟଣାରେ ତାହା ପ୍ରକାଶିତ ହେଲା ।

ମାଇନର ସ୍କୁଲର ପୁରୁଣା ଖପର ଛାଉଣୀ ଘରେ ମାଇନର ସ୍କୁଲ ଚାଲିଲା ତା ସହିତ ହାଇସ୍କୁଲ ମଧ୍ୟ ଚାଲିଲା । ଶ୍ରେଣୀ ପରିଚାଳନା ପାଇଁ ସ୍ଥାନାଭାବ ହେବାରୁ ମାଇନର ସ୍କୁଲର ଦୁଇଟି ଶ୍ରେଣୀ ହଷ୍ଟେଲରେ ପରିଚାଳିତ ହେଲା । ନୂଆ ଘର ତିଆରି ନ ହେବାରୁ ଘର ପାଇଁ ଭାରି ଅସୁବିଧା ହେଲା । ଶିକ୍ଷକ ଅଭାବ ତ ଲାଗି ରହିଥିଲା । ଉପକରଣ ଅଭାବ ମଧ୍ୟ ବିରାଟ ସମସ୍ୟା ସୃଷ୍ଟି କଲା ।

ଆମର ଅଷ୍ଟମ ଶ୍ରେଣୀ ବେଳେ (୧୯୪୬) ପୂର୍ବ ଗଡଜାତ ସମୂହର Resident Commissioner ଜଣେ ଗୋରା ସାହେବ ଓ Political Agent ଇସ୍କନ୍ଦର ମିର୍ଜା ଯେ ପରବର୍ତ୍ତି କାଳରେ ପାକିସ୍ଥାନର ରାଷ୍ଟ୍ରପତି ହେଲେ  ସେ ଦୁଇ ଜଣ କେଉଁଝର ଷ୍ଟେଟ୍ ପରିଦର୍ଶନରେ ଆସିଥିଲେ । ସେଇ ଉପଲକ୍ଷ୍ୟେ ରାସ୍ତା ଘାଟ ତିଆରି, ମରାମତି ସହ ମୋରମ୍ ପଡି ସବୁ ଠିକ୍ ଠାକ୍ କରାଗଲା । ସେମାନେ ଆମ ସ୍କୁଲ ପରିଦର୍ଶନ କଲେ ଓ ଆମ ଶ୍ରେଣୀକୁ ମଧ୍ୟ ଆସିଲେ । ସେ ଯାହା ପଚାରିଲେ ଆମେ କିଛି ବୁଝି ପାରିଲୁ ନାହିଁ । ଆମ ହେଡ୍ ମାଷ୍ଟ୍ରେ ତାଙ୍କ ପ୍ରଶ୍ନକୁ ଆଉ ଥରେ ଆମ ଉଚ୍ଚାରଣ ପଦ୍ଧତିରେ ପଚାରିବାରୁ ଆମେ ସବୁ ଉତ୍ତର ଦେଇଦେଲୁ । ଆମକୁ କଡା ନିର୍ଦ୍ଦେଶ ଥାଏ ଯେ ସ୍କୁଲର ଅଭାବ ଅସୁବିଧା କଥା ଆମେ କିଛି ଉଠାଇବୁ ନାହିଁ । ଉଠାଇଲେ ସ୍କୁଲ ଉଠିଯିବା ସହ ରାଜାଙ୍କର ବି କ୍ଷତି ହୋଇପାରେ । ତେଣୁ ସେ ବିଷୟରେ ଆମେ କିଛି ଉଠାଇଲୁ ନାହିଁ।

ହେଡ୍ ମାଷ୍ଟ୍ରଙ୍କ ସହିତ ପିଲାଙ୍କର ଯେଉଁ ଗୋଳମାଳ ଲାଗିଥିଲା ତା'ର ଆପୋଷ ସମାଧାନ ପରେ କେଉଁଠାରୁ ରିପୋର୍ଟ ପାଇ ସ୍କୁଲ ଇନିସ୍ପେକ୍ଟର ଡକ୍ଟର ମାୟାଧର ମାନସିଂ ତଦନ୍ତ କରିବା ପାଇଁ ଆସିଲେ । ଆମକୁ ବୁଝାଇ ଦିଆଗଲା ଯେ ଇନିସ୍ପେକ୍ଟରଙ୍କୁ କିଛି କୁହାଯିବ ନାହିଁ । ଯଦି କୁହାଯାଏ ତା'ହେଲେ ପିଲାମାନଙ୍କର କ୍ଷତି ହେବ । ତେଣୁ ଇନିସ୍ପେକ୍ଟର ଯାହା ପଚାରିଲେ ବି ଆମେ କିଛି ଜାଣି ନାହୁଁ ବୋଲି କହିଲୁ । ଇନିସ୍ପେକ୍ଟର ଫେରିଗଲେ ।

ଆମର ଦଶମ ଶ୍ରେଣୀ ବେଳକୁ ପୁରୁଣା ଶିକ୍ଷକ ତିନିଜଣ ଅବସର ଗ୍ରହଣ କରିଥିବାରୁ ନୂଆ ତିନିଜଣ ଶିକ୍ଷକ ଆସିଲେ । ନିତ୍ୟାନନ୍ଦ ବାରିକ ବିଜ୍ଞାନ ଶିକ୍ଷକ, ଜଗନ୍ନାଥ ପଟ୍ଟନାୟକ ଓ ଭାସ୍କର ଚନ୍ଦ୍ର ମହାନ୍ତି ଇଂରାଜି ଶିକ୍ଷକ ଭାବରେ ଯୋଗ ଦେଲେ । ଅଳ୍ପଦିନ ପରେ ଭାସ୍କର ବାବୁଙ୍କୁ ଯକ୍ଷ୍ମା ହେବାରୁ ସେ ଛାଡି ଚାଲିଗଲେ । ଏହି ସମୟରେ ଓଡିଶାରେ  ତତ୍‌କାଳୀନ ଡି.ପି.ଆଇ ଶ୍ୟାମ ଚରଣ ତ୍ରିପାଠୀ ସ୍କୁଲ ପରିଦର୍ଶନରେ ଆସିଲେ । ଗଡଜାତ ସ୍କୁଲ ପରିଦର୍ଶନ କରିବାରେ ତାଙ୍କର ଭାରି ଆଗ୍ରହ କାରଣ ରାଜା ସାହେବମାନଙ୍କର ଚର୍ଚ୍ଚା ତାଙ୍କର ଭାରି ରୋଚକ ହୁଏ । ସେ ଆମ କ୍ଲାସକୁ ଆସିଲେ ଓ ପଚାରିଲେ କିଏ ତମର ଇଂରାଜି ପଢାନ୍ତି ? ଆମେ ଯେମିତି ଭାସ୍କରବାବୁଙ୍କୁ ଯକ୍ଷ୍ମା ହେବା କଥା କହିଛୁ, ସେ ତତ୍‌କ୍ଷଣାତ ସ୍କୁଲ ଛାଡି ଚାଲିଗଲେ ।

ଆମ ଶ୍ରେଣୀର ହଷ୍ଟେଲ ପିଲାମାନେ ପୁଣିଥରେ ହେଡମାଷ୍ଟ୍ରଙ୍କ ବିଷ ଦୃଷ୍ଟିରେ ପଡିଲୁ । ହେଡ୍ ମାଷ୍ଟ୍ରେ ସରକାରୀ ଡାକ୍ତରଖାନା ତଳକୁ ଗୋଟେ ବିରାଟ

ଛଣ ଛପର ଘରେ ରହୁଥିଲେ । ତାଙ୍କ ପାଇଁ ସେଇ Quarter ତିଆରି ହୋଇଥିଲା । ତାଙ୍କର ପଡୋଶୀ ଖପରାଖାଇ ଗାଁ ଲୋକଙ୍କ ସହିତ ବିବାଦ ହେବାରୁ ଆମ ଶ୍ରେଣୀର ହଷ୍ଟେଲ ପିଲାମାନେ ଯାଇ ତାଙ୍କ Quarter ଜଗିବା ପାଇଁ ହୁକୁମ କଲେ । ସେ Quarter ତଳ ଅଂଶରେ ଆମେ ରୋଷେଇବାସ, ଖିଆପିଆ କରି ରହିଲୁ । ପ୍ରତିଦିନ ବୈତରଣୀ ନଦୀ ପାର ହୋଇ ସ୍କୁଲକୁ ଯିବାକୁ ହୁଏ । କିଛି ଦିନ ରହିଲା ପରେ ସେଠାରେ ଚଳିବା ପାଇଁ ବହୁତ ଅସୁବିଧା ହେବାରୁ ଆମେ ଯେତେବେଳେ ହଷ୍ଟେଲକୁ ଯିବା ପାଇଁ ବାହାରିଲୁ ପୁଣି ହେଡ୍ ମାଷ୍ଟ୍ରଙ୍କ ସହିତ ଝଗଡା ହେଲା । ଆମେ ଅସୁବିଧା କଥା କହି କୌଣସିମତେ ପୁଣି ଆମ ହଷ୍ଟେଲକୁ ଚାଲିଗଲୁ ।

ଆମର ଏକାଦଶ ଶ୍ରେଣୀ ବର୍ଷ (୧୯୪୮ ମସିହା ଶେଷ ଆଡକୁ ଜଣେ ଯୁବ M.B.B.S ଡାକ୍ତର ଆନନ୍ଦପୁର ସରକାରୀ ଡାକ୍ତରଖାନାରେ ଯୋଗଦେଲେ । ସେ ଭାରୀ ଉତ୍ସାହୀ । ଆମ ମାନଙ୍କୁ କହିଲେ ଦୁଇମାସ ଭିତରେ Physiology Optional ର ସବୁ ପାଠ ପଢାଇ ଦେବେ । ବହୁତ ପିଲା ସଂସ୍କୃତ ଓ ଗଣିତ Optional ଛାଡି Physiology Optional ନେଲେ । ମୁଁ ଗଣିତ Optional ନେଇଥାଏ । ହେଡ୍ ମାଷ୍ଟ୍ରେ ଗଣିତ ପଢାଉଥାନ୍ତି । ଆମକୁ ବିଶେଷତଃ ଆମ ଶ୍ରେଣୀର ହଷ୍ଟେଲ ପିଲାଙ୍କୁ ଦେଖିଲେ ସେ ଶିଙ୍ଗ୍ ଶିଙ୍ଗ୍ ହୁଅନ୍ତି । ଆମେ ଯାହା ପଚାରିଲେ କିଛି ବୁଝାଇ ଦିଅନ୍ତି ନାହିଁ । ତେଣୁ ମୋର ଇଛା ହେଲା Physiology Optional ନେଇ ଯିବା ପାଇଁ ଅନ୍ୟମାନଙ୍କ ସହିତ ମୁଁ ମଧ ପଢିବାକୁ ଗଲି ଡାକ୍ତରଙ୍କ ପାଖକୁ । କିନ୍ତୁ ଶେଷରେ Mathematics Optional ନ ଛାଡିବା ପାଇଁ ନିଷ୍ପତ୍ତି ନେଲି ।

ମାଟ୍ରିକୁଲେସନ୍ ପରୀକ୍ଷା ଦେବାକୁ ଆମେ କେଉଁଝର ଗଡ ଗିବ୍‌ସନ୍ ହାଇସ୍କୁଲକୁ ଯାଇ ତାଙ୍କ ହଷ୍ଟେଲରେ ରହିଲୁ । ସେତେବେଳେକୁ ମୋର ଦେହ ଭୀଷଣ ଖରାପ । ଆନନ୍ଦପୁର ହାଇସ୍କୁଲରେ ଆମକୁ ବିଦାୟ ଦେବାକୁ ଯେଉଁ ଭୋଜି କରିଥିଲେ ତା'ର ପଲୋଉ ଚାଉଳିଆ ହୋଇଥିଲା । ସେ ପଲୋଉ ଖାଇ ମୋର ଝାଡା ଓ ଜର ଲାଗି ରହିଲା । ପରୀକ୍ଷା ପ୍ରଥମ ଦିନ ଇଂରାଜି ପ୍ରଥମ ପତ୍ର ଥାଏ । ମୋତେ ଜର ଛାଡି ନ ଥାଏ । ହାତ ଥରୁଥାଏ । ପ୍ରଥମ ଏକ ଘଣ୍ଟା କାଳ ମୁଁ କିଛି ଲେଖିପାରିଲି ନାହିଁ । ତାପରେ ଆସ୍ତେଆସ୍ତେ ହାତ ଚାଲିଲା । ବହୁତ ଅସୁବିଧା ଓ ଅସୁସ୍ଥତା ଭିତରେ ପରୀକ୍ଷା ଦେଇ ମୁଁ ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକ ପାଶ୍ କଲି ।

# ୧.୫ କଲେଜ ଶିକ୍ଷା

ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକୁଲେସନ୍ ପାଶ୍ କରିବା ପରେ ପୁଣି ଅର୍ଥଚିନ୍ତା । ଏହା ପରେ ପାଠ ପଢ଼ିବି କି ନାହିଁ ? ଯଦି ପଢ଼ିବି ଅର୍ଥ କେଉଁଠୁ ଆସିବ ? ମୁଁ କିନ୍ତୁ ପାଠ ପଢ଼ିବା ଓ ଚାକିରି କରିବା ଉଭୟ କାମ ପାଇଁ ପ୍ରସ୍ତୁତ ହୋଇଥାଏ । ପୁରୁଣିଆଁର କେବଳ ପୁରୁଷୋତ୍ତମ ନାୟକ କଲେଜରେ ପଢ଼ିବା ପାଇଁ ପ୍ରସ୍ତୁତ ହେଉଥାଏ । କାରଣ ତାଙ୍କର ଅର୍ଥାଭାବ ନାହିଁ । ଆମ ପାଇଁ କିନ୍ତୁ ଅର୍ଥ ସମସ୍ୟା ବିରାଟ । କୌଣସି ମତେ ଆନନ୍ଦପୁରରେ ମାଟ୍ରିକୁଲେସନ୍ ଶେଷ ପର୍ଯ୍ୟନ୍ତ ପାଠ ପଢ଼ା ଚଳିଗଲା । ଏଥର କିନ୍ତୁ ଆଉ ଚଳିବା ଭଳି ଦେଖା ଯାଉ ନାହିଁ । ମୋର ଶୁଭାକାଂକ୍ଷୀ ମାନେ ବାପାଙ୍କୁ କହିଲେ ପୁଅ ଭଲ ପଢୁଛି, ତାକୁ କଲେଜରେ ପଢ଼ା । ବାପା ସେମାନଙ୍କ କଥାରେ ଉତ୍ସାହିତ ହୋଇ ହଠାତ୍ ସ୍ଥିର କଲେ ଜମି ବିକ୍ରିକରି ମୋତେ ପାଠ ପଢ଼ାଇବେ । ମୁଁ ପ୍ରସ୍ତୁତ ହୋଇଗଲି ପାଠ ପଢ଼ିବା ପାଇଁ ।

ସେତେବେଳେ ଓଡିଶାରେ ଗୋଟିଏ ମହିଳା କଲେଜକୁ ମିଶାଇ ୧୨ଟି କଲେଜ ଥାଏ । କେଉଁଝର ଷ୍ଟେଟ୍ ୧୯୪୮ ମସିହା ଜାନୁୟାରୀ ପହିଲାରେ ଓଡିଶା ସହିତ ମିଶିଯାଇ କେଉଁଝର ଜିଲ୍ଲା ହୋଇ ଯାଇଥାଏ । କେଉଁଝର ଜିଲ୍ଲା କି ଯାଜପୁର କି ଯାଜପୁର ରୋଡ ଯେଉଁଠାରେ ବର୍ତ୍ତମାନ ବିରାଟ ବିରାଟ କଲେଜମାନ ଅଛି, କେଉଁଠାରେ କଲେଜ ନ ଥାଏ । ଆମକୁ ନିକଟତମ କଲେଜ କଟକରେ ଥାଏ । ମୁଁ ରେଭେନ୍ସା କଲେଜ ଓ କ୍ରାଏଷ୍ଟ କଲେଜ ଦୁଇଟିକୁ ଦରଖାସ୍ତ କରିଥାଏ । ରେଭେନ୍ସା କଲେଜର I.Sc. ଓ I.A ଦୁଇଟି ଯାକ ପାଇଁ ଦରଖାସ୍ତ କରିଥିଲି । ପ୍ରଥମ Selection ରେ ମୋର I.Sc. ରେ ହେଲା ନାହିଁ । କିନ୍ତୁ ଆମ ସ୍କୁଲର ଅଚ୍ୟୁତ ପଣ୍ଡା, ଜଗନ୍ନାଥ ପଣ୍ଡା, ଜଗନ୍ନାଥ ପାତ୍ର ପ୍ରଭୃତିଙ୍କର ହୋଇଗଲା । ସେମାନେ Admission ନେଇଗଲେ । ମୋର I.A ପାଇଁ Selection ହୋଇଯିବାରୁ ମୁଁ ମଧ୍ୟ Admission ନେଇଗଲି । ପରେ ଦ୍ୱିତୀୟ Selection ରେ ମୋର I.Sc. ପାଇଁ ହୋଇଗଲା । କିନ୍ତୁ ମୁଁ ଆଉ ପରିବର୍ତ୍ତନ କଲି ନାହିଁ । ପାଠ ପଢ଼ାରେ କିଛି ଅସୁବିଧା ହେଲା ନାହିଁ । କିନ୍ତୁ ହଷ୍ଟେଲରେ ସିଟ୍ ନ ମିଳିବାରୁ ଖୁବ୍ ହଇରାଣ ହେବାକୁ ପଡିଲା । ଅଚ୍ୟୁତ ପଣ୍ଡା ଖଟ ତଳେ ଜିନିଷପତ୍ର ରଖି, ହୋଟେଲରେ ଖାଇ କ୍ଲାସରେ ଯୋଗ ଦିଏ । ଅନ୍ୟ ସମୟରେ ବୁଲୁଥାଏ ।

ହଷ୍ଟେଲରେ ସିଟ୍ ନ ପାଇଥିବା ଆମ ଅଞ୍ଚଳର ଦଳେ ପିଲା ଥିବାରୁ ସମସ୍ତେ ଏକାଠି ହୋଇ ବୁଲାବୁଲି କରୁ । ଯାଯାବର ଜୀବନ ପ୍ରାୟ ମାସେ କାଳ ବତାଇବାକୁ ପଡିଲା ।

ଓଡିଶା ମିଲିଟାରୀ ପୁଲିସ ପଡିଆ ପାଖରେ ଭାରତୀ ବିହାର ନାମରେ ଗୋଟିଏ ଛୋଟ ମେସ୍ ଥିଲା । ସେଠାରେ କୁଜଙ୍ଗ ଅଞ୍ଚଳର କଲେଜ ପିଲାମାନେ ରହି ପାଠ ପଢୁଥିଲେ । ସେଠାରେ କେବଳ କୁଜଙ୍ଗ ଅଞ୍ଚଳ ପିଲାଙ୍କୁ ରଖିବାକୁ ସେମାନେ ନିୟମ କରିଥାନ୍ତି । ସିଟ୍ ଖାଲି ପଡିବାରୁ ତାଙ୍କ ସହିତ କଥାବାର୍ତ୍ତା କରି ସେଇ ମେସ୍‌ରେ ଯାଇ ରହିଲି । ସେଠାରେ ଗୋଟିଏ ସୁବିଧା ହେଲା । ମେସ୍ ଖର୍ଚ୍ଚ ପାଇଁ ସେମାନେ ଚାଉଳ ଓ ଟଙ୍କା ନେଉଥିଲେ । ସେଥିପାଇଁ ଟଙ୍କାରେ ଟିକିଏ ରିହାତି ମିଳିଲା । ସେଠାରେ ଅସୁବିଧା ହେଲା-ସକାଳେ ଖାଇ ଦେଇ ପ୍ରାୟ ଦେଢ କିଲୋମିଟର ବାଟ ଚାଲି କଲେଜରେ ଯୋଗ ଦେବାକୁ ହୁଏ । ପ୍ରତିଦିନ ଦୌଡ଼ି ଦୌଡି ବିରକ୍ତ ଲାଗିଲା । କୌଣସି ମତେ ୭/୮ ମାସ ଭାରତୀ ବିହାର ମେସରେ କଟାଇବାକୁ ପଡିଲା । ୧୯୫୦ ମାର୍ଚ୍ଚମାସ ବେଳକୁ ରେଭେନ୍ସା କଲେଜ ପଶ୍ଚିମ ଛାତ୍ରାବାସରେ ସିଟ୍ ମିଳିଯିବାରୁ ଏ କଷ୍ଟରୁ ତ୍ରାହି ମିଳିଲା । ପଶ୍ଚିମ ଛାତ୍ରାବାସରେ ପ୍ରାୟ ଗୋଟିଏ ବର୍ଷ ରହଣି ମଧ୍ୟରେ ଅନେକ ପିଲାଙ୍କ ସହିତ ବନ୍ଧୁତା ହେଲା ଯେଉଁମାନେ ପରବର୍ତ୍ତୀ ଜୀବନରେ ବେଶ୍ ପ୍ରତିଷ୍ଠିତ ହେଲେ । ସେମାନେ ହେଲେ :- ରମାକାନ୍ତ ମିଶ୍ର, ଗୌରକିଶୋର ଦାସ, ରଜତ କୁମାର କର, ମାଗୁଣି ସାହୁ, ହରିହର ଦାସ, ରବି ନାରାୟଣ ଦାସ ଇତ୍ୟାଦି ।

ରେଭେନ୍ସା କଲେଜରେ ପଢିବା ସମୟରେ ସିନେମା, ଥିଏଟର ଦେଖିବା, ବା ଅନ୍ୟ କୌଣସି ଖର୍ଚ୍ଚାନ୍ତ ହେବା ଭଳି କାମ ମୁଁ କରୁ ନ ଥିଲି । ମୋର ସବୁବେଳେ ମନେ ଥାଏ ଯେ ଅନ୍ୟମାନେ ତାଙ୍କ ବାପାଙ୍କ ରୋଜଗାରରେ ପାଠ ପଢୁଛନ୍ତି କିନ୍ତୁ ମୁଁ ଜମି ବିକ୍ରି ଟଙ୍କାରେ ପାଠ ପଢୁଛି । ତେଣୁ ସେମାନଙ୍କ ଭଳି ମୁଁ ବିଳାସ ବ୍ୟସନରେ ଟଙ୍କା ଖର୍ଚ୍ଚ କରିପାରିବି ନାହିଁ । ଏପରିକି ପୋଷାକ ପତ୍ରରେ ମୁଁ ଅଧିକ ଖର୍ଚ୍ଚ କରିବାକୁ ପସନ୍ଦ କରୁ ନ ଥିଲି । I.A. ପରୀକ୍ଷା ବେଳକୁ ମୋତେ ମିଳିମିଳା ସହିତ ଅଣ୍ଡା ଜର ହେଲା । ତେଣୁ ମୋର ଭୟ ହେଲା ସଂକ୍ରାମକ ରୋଗ ହୋଇଥିବାରୁ କାଳେ ମୋତେ ପରୀକ୍ଷା ଦେବାରୁ ବଞ୍ଚିତ କରିବେ । ଦେହରେ ଜର ଥିବା ସମୟରେ ଓ ଦେହଯାକ ମିଳିମିଳା ବାହାରିଥିବା ଅବସ୍ଥାରେ ମୁଁ ପରୀକ୍ଷା ଦେଲି । ସେଥିପାଇଁ ଦୁଇଟି ବିଷୟରେ

ମୋର ନମ୍ବର କମିଗଲା । କିନ୍ତୁ ମୋଟାମୋଟି ଭାବରେ ପରୀକ୍ଷାରେ ଭଲ ଫଳ ହେଲା । ପ୍ରତି ବିଷୟରେ ୫୯ ପ୍ରତିଶତ ନମ୍ବର ରହିଲା । ବହୁ ଆର୍ଥିକ ଅନଟନ ଭିତରେ I.A. ପାଠ ଶେଷ ହୋଇଗଲା ।

ଆଇ.ଏ ପରୀକ୍ଷାରେ ଭଲ ଫଳ ହୋଇଥିବାରୁ ବି.ଏ. ଶ୍ରେଣୀରେ ନାମ ଲେଖାଇବାରେ କିଛି ଅସୁବିଧା ହେଲା ନାହିଁ । ନାମ ଲେଖା ସମୟରୁହିଁ ପୂର୍ବ ଛାତ୍ରାବାସରେ ସ୍ଥାନ ମିଳିଗଲା । ବରଂ କ'ଣ ଅନର୍ସ ନେବି ସେ ବିଷୟରେ ମୁଁ କିଛି ନିଷ୍ପତ୍ତି ନେଇ ପାରିଲି ନାହିଁ । ଅର୍ଥନୀତି, ଓଡ଼ିଆ ଓ ଦର୍ଶନ ଅନର୍ସ ଶ୍ରେଣୀରେ ଯାଇ ବସେ । ସବୁ ବିଷୟରେ ପ୍ରାୟ ସମାନ ନମ୍ବର ରହିଥିବାରୁ ନିଷ୍ପତ୍ତି ନେବାରେ ଅସୁବିଧା ହେଲା । ମୋର ଜଣେ ସଙ୍ଗାତ ଥିଲେ - ପ୍ରମୋଦ ଚନ୍ଦ୍ର ରଥ । ସେ ଏମ୍.ଏ ପଢୁଥିଲେ । ସେ ମୋତେ ଓଡ଼ିଆ ଅନର୍ସ ନେବା ପାଇଁ ପରାମର୍ଶ ଦେଲେ । କହିଲେ ତାଙ୍କର ଓଡ଼ିଆ ଅନର୍ସର ସବୁ ଯାକ ବହି ମୋତେ ଦେଇଦେବେ, ତାହା ହିଁ ହେଲା । ଓଡ଼ିଆ ଅନର୍ସ ନେଇ ମୁଁ ବି.ଏ. ପଢ଼ିଲି ।

ସେତେବେଳେ ରେଭେନ୍ସା କଲେଜରେ ଓଡ଼ିଆ ସାହିତ୍ୟ ବିଭାଗରେ ବହୁତ ବିଜ୍ଞ ଅଧ୍ୟାପକ ଥିଲେ । ଜୟକୃଷ୍ଣ ମିଶ୍ର, ଗୌରୀକୁମାର ବ୍ରହ୍ମା, ଭୋଳାନାଥ ମିଶ୍ର, ଗୋପାଳ ଚନ୍ଦ୍ର ମିଶ୍ର, ବଂଶୀଧର ମହାନ୍ତି ପ୍ରଭୃତି ଥାଆନ୍ତି । ପଢ଼ାପଢ଼ି ବେଶ୍ ଭଲ ହେଉଥିଲା । ତୃତୀୟ ବର୍ଷ ପରୀକ୍ଷାରେ ଭଲ ଫଳ ହେବାରୁ ଚତୁର୍ଥ ବର୍ଷରେ ପୂର୍ବ ଛାତ୍ରାବାସରେ Single room ମିଳିଗଲା । ୩୪ ନମ୍ବର ରୁମରେ ରମାକାନ୍ତ ମିଶ୍ର, ୩୩ ନମ୍ବର ରୁମ୍‌ରେ ଗୌରକିଶୋର ଦାସ, ୩୨ ନମ୍ବର ରୁମରେ ମୁଁ ଓ ୩୧ ନମ୍ବର ରୁମ୍‌ରେ ଶିବ ପ୍ରସାଦ ପାଢୀ ରହିଲେ । ଆମ ଭିତରେ ନିବିଡ ବନ୍ଧୁତା ରହିଲା । ପାଠପଢ଼ାରେ ସମସ୍ତେ ଖୁବ୍ ମନୋଯୋଗୀ । ସାଙ୍ଗ ସାଥୀ ମେଳରେ ଗୋଟିଏ ବର୍ଷ ଭଲରେ କଟିଗଲା ।

ବି.ଏ ଶେଷ ପରୀକ୍ଷାରେ ଇଂରାଜି ପ୍ରଥମ ପତ୍ରରେ ମୋର ସାମାନ୍ୟ ଭୁଲ୍ ଯୋଗୁଁ ଫେଲ୍ ହୋଇଯିବାର ଆଶଙ୍କା ହେଲା । ଅନ୍ୟ ପତ୍ରଟି ଭଲ ହୋଇଥିଲା । ତେବେ ପାଶ୍ ହୋଇଗଲା । ଓଡ଼ିଆ ଅନର୍ସରେ ଭଲ ହୋଇଥିଲା । ମୁଁ ଭାବୁଥିଲି ମୁରାରୀମୋହନ ଜେନା କି ବୀରକିଶୋର ଦାସ କିଏ ଅନର୍ସରେ ପ୍ରଥମ ହେବେ । କିନ୍ତୁ ପରୀକ୍ଷା ଫଳ ବାହାରିଲା ବେଳକୁ ଦେଖିଲି ମୁଁ ପ୍ରଥମ ହୋଇଛି । ମୁରାରୀ ଓ ବୀର ଜଣେ ଅର୍ଥନୀତିରେ, ଜଣେ ଇଂରାଜିରେ ଫେଲ ହୋଇଛନ୍ତି ।

କାଳେ ମୁଁ ଫେଲ ହୋଇଯିବି ଏଇ ଛାନିଆଁରେ ଗାଁ ପାଖ ଗୋଟିଏ ଅସଂପୂର୍ଣ୍ଣ ହାଇସ୍କୁଲରେ ଶିକ୍ଷକ ଚାକିରି ଖଣ୍ଡିଏ ଯୋଗାଡ କରି ସେଠାରେ ଯୋଗ ଦେଇଥିଲି ୨୬.୦୫.୧୯୫୩ ତାରିଖରେ । ସ୍କୁଲଟି ହେଉଛି କେଉଁଝର ଜିଲ୍ଲା କୁଶଳେଶ୍ବର ହାଇସ୍କୁଲ । ସେଠାରେ ଚାକିରିରେ ଯୋଗ ଦେଇ ସାରିବାପରେ ପରୀକ୍ଷାଫଳ ବାହାରିଲା । ମୁଁ ଯେତେବେଳେ ଜାଣିଲି ଯେ ଓଡିଆ ଅନର୍ସରେ ପ୍ରଥମ ସ୍ଥାନ ଅଧିକାର କରିଥିବାରୁ ମୋତେ Post - Graduate Scholar-ship ମିଳିବ, ଚାକିରି ଛାଡି ଏମ୍.ଏ ପଢିବାକୁ ଇଛା ହେଲା । ମୋର ଏ ଅଭିଳାଷ କଥା ପ୍ରଥମେ ହେଡ୍ ମାଷ୍ଟରଙ୍କୁ ଓ ପରେ ସେକ୍ରେଟାରୀଙ୍କୁ କହିଲି । ସେ ଦୁଇ ଜଣ ଯାକ ମୋତେ ଛାଡିବାକୁ ମନା କଲେ । ଘରେ ଯେତେବେଳେ ଏମ୍.ଏ ପଢିବା ପ୍ରସ୍ତାବ ଦେଲି, ବାପା କହିଲେ, "ତୁ ପଢିବାକୁ ଚାହୁଁଛୁ ଯଦି ପଢ, କିନ୍ତୁ ଆମେ ହଇରାଣ ହେବୁ ।" ବାପା ଗରିବ ଲୋକ ଥିଲେ । ତାଙ୍କର ଜମିବାଡି ବେଶି ନ ଥିଲା । ଯାହା ଥିଲା ତାକୁ ବିକ୍ରି କରି ମୋତେ ପାଠ ପଢାଇଲେ । ମୁଁ ବି.ଏ ପାଶ୍ କଲାବେଳକୁ ତାଙ୍କର ସବୁ ଜମି ପ୍ରାୟ ବିକ୍ରି ସରିଥିଲା । ଜମି ବିକ୍ରିରେ ଯେତିକି ଟଙ୍କା ମିଳିଲା ସେଥିରୁ କିଛି ମୋର ପଢିବାରେ ଖର୍ଚ୍ଚହେଲା । ଆଉ କିଛି ଟଙ୍କାରେ ଆମ ନିଜ ଗାଁ ଗୋବର୍ଦ୍ଧନ ପୁରରେ କିଛି ଧାନ ଜମି କିଣିଥିଲେ । ମୁଁ ଦେଖିଲି ପରିବାର ଲୋକଙ୍କୁ ଭୋକ ଉପାସରେ ରଖି ମୁଁ ଏମ୍.ଏ. ପଢିବା ଠିକ୍ ହେବ ନାହିଁ । ତେଣୁ ଚାକିରୀ କରିବାକୁ ସ୍ଥିର କଲି ।

## ୧.୬. ଚାକିରି ଜୀବନ ଆରମ୍ଭ

କେଉଁଝର ଜିଲ୍ଲା କୁଶଳେଶ୍ବର ହାଇସ୍କୁଲ, ଦେଓଗାଁରେ ଜୁନ ୨୫, ୧୫୩ ମସିହାଠାରୁ ସହକାରୀ ଶିକ୍ଷକ ଭାବରେ ଚାକିରୀ ଜୀବନ ଆରମ୍ଭ କଲି । ଦରମା ମାସିକ ଟ.୭୦/ ଓ ମହଙ୍ଗା ଭତ୍ତା ଟ.୨୦/ (ମୋଟ ଟ.୯୦) ସେତେବେଳକୁ ପୁରୁଣିଆଁରେ ଚାଷବାସ ଭାଙ୍ଗି ମୋର ପୋଷ୍ୟ ବାପା ମା ଆମ ଗୋବର୍ଦ୍ଧନପୁର ଘରକୁ ଚାଲି ଆସିଲେଣି । ଗୋଟିଏ ଘରେ ମୋର ନିଜର ବାପା, ମା, ଭାଇ, ଭଉଣୀ ଓ ପୋଷ୍ୟ ବାପା, ମା ସମସ୍ତେ ଏକାଠି ରହିଲେ । ପୋଷ୍ୟ ବାପା ଜମି, ବାଡି ଚାଷ ବାସ ଖବର ବୁଝିଲେ । ମୋତେ ଯେ ସେମାନେ ପୋଷ୍ୟପୁତ୍ର କରି ନେଇଥିଲେ ଓ ମୋ ପାଇଁ ଜମିବାଡି ବିକ୍ରି କରି ମୋତେ

ପାଠ ପଢାଇଥିଲେ, ତାହା ପରିଶୋଧ କରିବାର ବେଳ ମୋ ପାଇଁ ଆସିଗଲା । ସେମାନଙ୍କ ସୁଖ ସୁବିଧା ଦେଖିବା ମୋର ପ୍ରଥମ କର୍ତ୍ତବ୍ୟ ହୋଇଗଲା । ଘର ଅସୁବିଧା ଦୂର କରିବା ପାଇଁ ଆମ ପୁରୁଣା ଘରଠାରୁ ସ୍ୱଳ୍ପ ଦୂରରେ ଗୋଟିଏ ନୂଆ ଘର ତିଆରି ଆରମ୍ଭ କରିଦେଲି । ନୂଆ ଘରକୁ ସମସ୍ତେ ଚାଲିଆସିଲୁ । ମୋ ନିଜ ବାପା କିନ୍ତୁ ତାଙ୍କ ଭିଟାମାଟି ଛାଡିଲେ ନାହିଁ । ସେ ସେଥିରେ ରହିଲେ ଓ ନୂଆଘରେ ଆସି ଖିଆପିଆ କଲେ ।

କୁଶଳେଶ୍ୱର ହାଇସ୍କୁଲରେ ଦେଖିଲି ନୂଆ କରି ସ୍କୁଲ ଆରମ୍ଭ ହୋଇଛି । ନୂଆଣିଆ ଟିଣ ଘର ଖଣ୍ଡେ-ସେଠାରେ କ୍ଲାସ ହେଉଛି । ମଞ୍ଜୁରି ମିଳି ନାହିଁ । ପିଲା ଅଷ୍ଟମ, ନବମ ଓ ଦଶମ ଶ୍ରେଣୀରେ ୯୦-୯୧ ଜଣ । ଏକାଦଶ ଶ୍ରେଣୀ ଖୋଲି ନାହିଁ । Ex-State ସ୍କୁଲ ହୋଇଥିବାରୁ ଶୀଘ୍ର ଅନୁଦାନ ମିଳିବା ସମ୍ଭାବନା । ଶିକ୍ଷକ-ହେଡ୍ ମାଷ୍ଟର କୈଳାସ ଚନ୍ଦ୍ର ରାଉତ, ସଂସ୍କୃତ ଶିକ୍ଷକ - ବୃନ୍ଦାବ ପଣ୍ଡା ସାହିତ୍ୟାଚାର୍ଯ୍ୟ, ବିଜ୍ଞାନ ଶିକ୍ଷକ କୀର୍ତ୍ତନ ବିହାରୀ ମହାନ୍ତି B.SC. (Plucked) ଗଣିତ ଶିକ୍ଷକ ମହେଶ୍ୱର ରାଉତ I.SC (Plucked) ଏମାନଙ୍କ ସହିତ ମୁଁ ଯୋଗଦେଲି ଇଂରାଜି ଓ ଓଡିଆ ଶିକ୍ଷକ ଭାବରେ । ସ୍କୁଲରୁ କିଛି ଦୂରରେ ଖଣ୍ଡେ ଟୁଙ୍ଗି ଘରେ ମୁଁ ଓ ମହେଶ୍ୱର ରାଉତ ରହୁ । ହାତରେ ରୋଷେଇ କରୁ । ବର୍ଷା ଋତୁରେ ଶନିବାର ରାତିଠାରୁ ସୋମବାର ସକାଳ ଯାଏ ରୋଷେଇ ବନ୍ଦ । ମୋର ତଥା ମହେଶ୍ୱରର ଘର ସ୍କୁଲଠାରୁ ୭/୮ କିଲୋମିଟର ରାସ୍ତା ହୋଇଥିବାରୁ ଶନିବାର ଘରକୁ ଚାଲିଯାଉ ଓ ସୋମବାର ସକାଳୁ ଆସୁ । ଶୀତ ଓ ଗ୍ରୀଷ୍ମ ଋତୁରେ ପ୍ରାୟ ଘରୁ ପ୍ରତିଦିନ ଯିବା ଆସିବା କରୁ ।

ସ୍କୁଲ ସେକେଟ୍ରେରୀ ହୃଷିକେଶ ପତି, ପାଠପଢା ମାଟ୍ରିକ୍ ପର୍ଯ୍ୟନ୍ତ । ମଝିରେ ମଝିରେ ଇଂରାଜୀ କହନ୍ତି । ମିଜାଜ୍ ଭାରି କଡା । କାହାକୁ ଖାତିର ନକରିବାର ଅଭିନୟ କରନ୍ତି । ସ୍କୁଲର ହେଡ୍ ମାଷ୍ଟର ତଥା ଅନ୍ୟ ଶିକ୍ଷକ ମାନଙ୍କୁ ଡରାଇ ରଖିବାର ଉଦ୍ୟମ କରନ୍ତି । କଥାବାର୍ତ୍ତାରେ ଶାଳୀନତାର ଅଭାବ ଥାଏ । ସେଥିପାଇଁ ସ୍କୁଲ ଇନିସ୍ପେକ୍ଟର ଶ୍ରୀରାମଚନ୍ଦ୍ର ମହାପାତ୍ରଙ୍କ ଭଳି ଥଣ୍ଡା ମିଜାଜର ଲୋକ ଅସନ୍ତୁଷ୍ଟ ହୋଇ ସ୍କୁଲରୁ ଚାଲିଗଲେ ଓ କହିଲେ ହୃଷିକେଶ ପତି ସେକ୍ରେଟେରୀ ଥିବା ପର୍ଯ୍ୟନ୍ତ ସ୍କୁଲକୁ ମଞ୍ଜୁରି ମିଳିବ ନାହିଁ ।

କେଉଁଝର ଜିଲ୍ଲା ସେତେବେଳେ ଉତ୍ତର ଓଡିଶା ଶିକ୍ଷା ମଣ୍ଡଳ (Northern Circle) ଅନ୍ତର୍ଗତ ଥିଲା । କଟକ, ବାଲେଶ୍ୱର, ମୟୁରଭଞ୍ଜ ଓ କେଉଁଝର ଏହି ଚାରିଗୋଟି ଜିଲ୍ଲା ଉତ୍ତର ଓଡିଶା ଶିକ୍ଷା ମଣ୍ଡଳ ମଧ୍ୟରେ ଥିଲା । ଶ୍ରୀରାମଚନ୍ଦ୍ର

ମହାପାତ୍ର ଇନିସ୍ପେକ୍ଟର । ବିଜ୍ଞ ଲୋକ । ଧୀରେ ଧୀରେ କଥା କହନ୍ତି । ଅଫିସର ହିସାବରେ ଅଭିଜ୍ଞ ଓ ଦୃଢ ମତବାଦୀ । ସେ ଆସିଥିଲେ କୁଶଳେଶ୍ୱର ହାଇସ୍କୁଲ ପରିଦର୍ଶନ କରିବାକୁ । ମୁଁ ସେତେବେଳେ ସେ ସ୍କୁଲରେ ଯୋଗ ଦେଇ ନ ଥିଲି । ସ୍କୁଲର ଅଭାବ, ଅସୁବିଧା ଦର୍ଶାଇ ଇନିସ୍ପେକ୍ଟର କହିଲେ ଏଇ ଅଭାବ ଅସୁବିଧା ପୂରଣ ହେଲା ପରେ ମଞ୍ଜୁର ମିଳିବା କଥା ବିଚାର କରାଯିବ । ଅଭାବ ଭିତରେ ସେ କହିଲେ ଗ୍ୟାଲେରି ଥିବା ବିଜ୍ଞାନ କ୍ଲାସରୁମ୍, ତାଲିମ ପ୍ରାପ୍ତ ଯୋଗ୍ୟ ଶିକ୍ଷକ, ଭୌଗୋଳିକ, ଐତିହାସିକ ମାନଚିତ୍ର, ବିଜ୍ଞାନ ଯନ୍ତପାତି ଓ ଉପକରଣ ସହିତ ସ୍କୁଲର ଗୋଟିଏ ଅଫିସରୁମ୍, ଶିକ୍ଷକଙ୍କ ପାଇଁ Common Room ଇତ୍ୟାଦି । ସେ ଯାହା କହିଲେ ସବୁ ଯୁକ୍ତିଯୁକ୍ତ । ସେକ୍ରେଟେରୀ ହୃଷିକେଶ ପତି ତାଙ୍କ ସହିତ ଯୁକ୍ତିତର୍କ କରି ସ୍କୁଲ ମଞ୍ଜୁରୀ ଦାବି କଲେ ଓ କହିଲେ ସରକାରଙ୍କ କାନକୁ ମୋଡି ମଞ୍ଜୁରି ଆଣିବୁ । ଏଥିରେ ଇନିସ୍ପେକ୍ଟର ଅସନ୍ତୁଷ୍ଟ ହୋଇ ଚାଲିଗଲେ । କିଛି ଅଭାବ ପୂରଣ କରି ଯେତେବେଳେ ତାଙ୍କୁ ଅନୁରୋଧ କରାଗଲା ପରିଦର୍ଶନରେ ଆସିବା ପାଇଁ, ସେ କହିଲେ ହୃଷିକେଶ ପତି ସେକ୍ରେଟେରୀ ଥିବା ପର୍ଯ୍ୟନ୍ତ' ସେ ପରିଦର୍ଶନରେ ଆସିବେ ନାହିଁ ।

ମୁସ୍କିଲ କଥା । ହୃଷିକେଶ ପତିଙ୍କୁ ସେକ୍ରେଟେରୀ ପଦରୁ ହଟାଇବା ସମ୍ଭବ ନୁହେଁ । ଏ ପ୍ରଶ୍ନ ଉଠାଇବା କ୍ଷଣି ସେ ପ୍ରଶ୍ନକର୍ତ୍ତାଙ୍କ ସପ୍ତ ପୁରୁଷ ଉଝାଳି ଦେବେ । ଆଶାଳୀନ ଭାଷାରେ ଗାଳିଗୁଲଜ କରିବେ । ହେଡ୍ ମାଷ୍ଟର ସେକ୍ରେଟେରୀଙ୍କ ଅନୁଗତ । ତାଙ୍କର ସାହସ ହେଲା ନାହିଁ ସେକ୍ରେଟେରୀଙ୍କ ବିରୁଦ୍ଧରେ କିଛି କରିବାକୁ । କୀର୍ତ୍ତନ ବାବୁ ସ୍ଥାନୀୟ ଲୋକ ତେଣୁ ସେ ଆଗ ପଛ ହେଲେ । ଏ କଥା ସତ ଯେ ସ୍କୁଲ ମଞ୍ଜୁରୀ ପାଇବା ଦରକାର । ଦୁଇଟି ଜିନିଷ ନିହାତି ଦରକାର । ପ୍ରଥମ ବିଜ୍ଞାନ କୋଠରୀ ଓ ଦ୍ୱିତୀୟ ହୃଷିକେଶ ପତିଙ୍କ ସେକ୍ରେଟେରୀ ପଦ ଛାଡିବା ।

ମୁଁ ଦେଖିଲି ଯେ ମୁଁ ଆଗକୁ ନ ବାହାରିଲେ କାମ ହେବ ନାହିଁ । ସେତେବେଳେ ଦେଓଗାଁରେ ନିତ୍ୟାନନ୍ଦ ମହାନ୍ତି ନାମରେ ଜଣେ Forest Ranger ଥିଲେ । ମୁଁ ତାଙ୍କ ସହିତ ପରାମର୍ଶ କଲି । ତାଙ୍କୁ ଅନୁରୋଧ କଲି । ବିଜ୍ଞାନ କୋଠରୀର ଓରା, ଶେଣୀ, ଓ ରୁଅ ପାଇଁ କିଛି କାଠ ସେ ଦିଅନ୍ତୁ । ସେ କାଠ ଯୋଗାଇ ଦେଲେ । ବିଜ୍ଞାନ କୋଠରୀ ତିଆରି ଚାଲିଲା କିନ୍ତୁ ମୁଖ୍ୟ କଥା ହେଲା ହୃଷିକେଶ ପତିଙ୍କୁ କିପରି ବହିଷ୍କାର କରାଯିବ । ନିତ୍ୟାନନ୍ଦ ବାବୁ ସ୍କୁଲ ପରିଚାଳନା ସମିତିର ଜଣେ ଟାଣୁଆ ସଦସ୍ୟ । ତାଙ୍କର ସାହାଯ୍ୟ ନେଇ ହୃଷିକେଶ

ପତିଙ୍କ ଦେଓଗାଁରୁ ଅନୁପସ୍ଥିତିର ସୁଯୋଗ ନେଇ, ରାତାରାତି ଅନ୍ୟ ସଦସ୍ୟମାନଙ୍କ ସହିତ କଥାବାର୍ତ୍ତା କରି ପରିଚାଳନା ସମିତି ସଭାପତି ମିଟିଂ ଡାକିଲେ । ସେ କମିଟିରେ ହୃଷିକେଶ ପତିଙ୍କୁ ସେକ୍ରେଟାରୀ ପଦରୁ ବିଦାୟ କରି ଦେଓଗାଁର କସ୍ତୁରୀ ଦାସଙ୍କୁ ସେକ୍ରେଟେରୀ କରାଗଲା ।

କସ୍ତୁରୀ ଦାସଙ୍କୁ ସାଙ୍ଗରେ ଧରି ମୁଁ କଟକ ଇନିସ୍ପେକ୍ଟରଙ୍କ ଅଫିସକୁ ଗଲା । ଇନିସ୍ପେକ୍ଟରଙ୍କୁ ତାଙ୍କ ଅଫିସରେ ଭେଟି ମୁଁ ଯେମିତି କୁଶଳେଶ୍ୱର ହାଇସ୍କୁଲ ପରିଦର୍ଶନ ପାଇଁ ଅନୁରୋଧ କଲି ସେ ଚିହିଁକି ଆସିଲେ । କହିଲେ, "ହୃଷିକେଶ ପତି ସେକ୍ରେଟେରୀ ଥିବା ପର୍ଯ୍ୟନ୍ତ ମୁଁ ପରିଦର୍ଶନ କରିବାକୁ ଯିବି ନାହିଁ ।" ମୁଁ କହିଲି "ହୃଷିକେଶ ପତି ଆଉ ସେକ୍ରେଟେରୀ ନାହାନ୍ତି । ତାଙ୍କ ବଦଳରେ ଜଣେ ନୂଆ ସେକ୍ରେଟେରୀ ହୋଇଛନ୍ତି ।" ଏହା କହି ମୁଁ କସ୍ତୁରି ଦାସଙ୍କୁ ଭିତରକୁ ଡାକି ନେଲି । ସେ ଅଫିସରେ ପଶୁ ପଶୁ ହାତ ଟେକି ଆଶୀର୍ବାଦ କରିଗଲେ । ଇନିସ୍ପେକ୍ଟର ଦେଖିଲେ ସୌମ୍ୟ ଦର୍ଶନ ଲୋକଟିଏ । ବେଶ୍ ଭଦ୍ର । ବିନୀତ ବ୍ୟବହାର । ତା ପରେ ସେ ରାଜି ହେଲେ କୁଶଳେଶ୍ୱର ହାଇସ୍କୁଲ ପରିଦର୍ଶନ କରି ଆସିବାକୁ ।

ଇନିସ୍ପେକ୍ଟର ୧୯୫୫ ମସିହା ସେପ୍ଟେମ୍ବର ମାସରେ ପରିଦର୍ଶନ ପାଇଁ ଆସିଲେ । ସାଙ୍ଗରେ ଆନନ୍ଦପୁର S.D.O. ଆସିଥାନ୍ତି । ସେ ଆସିଲା ବେଳକୁ ବିଜ୍ଞାନ କୋଠରୀ ତିଆରି ସରିଥାଏ, କେବଳ ଗ୍ୟାଲେରି କାମ ବାକି ଥାଏ । ଅଫିସ ରୁମ୍ ଓ ଶିକ୍ଷକଙ୍କ କମନ୍ ରୁମ ତିଆରି ସରିଥାଏ । ବିଜ୍ଞାନ ଉପକରଣ ଓ ଲାଇବ୍ରେରୀ ବହି କିଛି କିଣା ହୋଇ ଆସିଥାଏ । ସବୁ ଦେଖି ସେ ସନ୍ତୁଷ୍ଟ ହେଲା ଭଳି ଜଣା ଯାଉଥାଏ । କିନ୍ତୁ Staff ବିଷୟରେ ଆପତ୍ତି ଉଠାଇଲେ । କେବଳ ହେଡ୍ ମାଷ୍ଟର ଓ ସଂସ୍କୃତ ଶିକ୍ଷକଙ୍କୁ ସେ ଯୋଗ୍ୟ ଶିକ୍ଷକ ବୋଲି କହିଲେ । S.D.O. ରଙ୍ଗାରାଓ ମୋ କଥା କହିଲେ ଯେ ସେ ବି.ଏ. (ଅନର୍ସ), ପୁଣି ସ୍କୁଲ ପାଠ୍ୟ ବିଷୟରେ ଅନର୍ସ । ତାଙ୍କୁ କାହିଁକି ଯୋଗ୍ୟ ଶିକ୍ଷକ ହିସାବରେ ଧରାଯିବ ନାହିଁ ? ଇନିସ୍ପେକ୍ଟର କହିଲେ, "ତାଙ୍କର ବିଷୟ ଜ୍ଞାନ ଯଥେଷ୍ଟ ଅଛି, କିନ୍ତୁ ଜ୍ଞାନକୁ କିପରି ପ୍ରୟୋଗ କରାଯିବ ତାଙ୍କୁ ଜଣାନାହିଁ । କେବଳ ତାଲିମ୍ ପାଇଲେ ସେ ଜାଣି ପାରିବେ । B.Ed. ପଢିଲା ପରେ ସେ ଜଣେ ଯୋଗ୍ୟ ଶିକ୍ଷକ ଭାବେ ବିବେଚିତ ହେବେ । ମୋତେ କହିଲେ, ତମେ ଟ୍ରେନିଂ ଯାଉ ନାହଁ? ତମର ଦରମା ବଢିବ ଓ ଅନୁଷ୍ଠାନ ବି ଉପକୃତ ହେବ । ମୁଁ କହିଲି, "ଆସନ୍ତା ଶିକ୍ଷାବର୍ଷରେ ମୁଁ ଟ୍ରେନିଂ ଯିବି ।"

ସ୍କୁଲ ମଞ୍ଜୁରୀ ପାଇଲା । ପିଲାମାନେ ପରୀକ୍ଷା ଦେଲେ । ପରୀକ୍ଷା ଫଳ ବି ଭଲ ହେଲା । ମୁଁ ଯେଉଁ ବିଷୟ ପଢାଉଥିଲି ସେଥିରେ ପିଲାମାନେ ଭଲ ନମ୍ବର ରଖି ଥିବାରୁ ଦେଓଗାଁ ଅଞ୍ଚଳରେ ମୋର ସୁନାମ ବଢିଗଲା ।

## ୧.୭ ଟ୍ରେନିଂ କଲେଜ ଜୀବନ

ଇନିସ୍ପେକ୍ଟରଙ୍କ ପରାମର୍ଶ ଅନୁଯାୟୀ ୧୯୫୬ ମସିହାରେ B.Ed ପଢିବା ପାଇଁ ବାହାରିଲି । ସେତେବଳେ ଟ୍ରେନିଂ କଲେଜରେ ପଢିବା ପାଇଁ ଲିଖିତ ଓ ମୌଖିକ ପରୀକ୍ଷା ହେଉଥିଲା । ମୁଁ ଲିଖିତ ପରୀକ୍ଷାରେ ଚତୁର୍ଥ ସ୍ଥାନ ପାଇଥିଲି । ମୌଖିକ ପରୀକ୍ଷା ବେଳେ ଟିକିଏ ଅସୁବିଧା ହେଲା । ସେତେବେଳେ ରାଧାନାଥ ଟ୍ରେନିଂ କଲେଜରେ ଅଧକ୍ଷ ଥାନ୍ତି ବୈଦ୍ୟନାଥ ରଥ । ଅଧାପକ ଡକ୍ଟର ରାଧାଚରଣ ଦାଶ, ଭୋଳାନାଥ ମିଶ୍ର, ପ୍ରାଣବନ୍ଧୁ କର, ଓ ମହାଦେବ ତାରିଣାୟା । ପରେ ଆସି ଯୋଗଦେଲେ ଡକ୍ଟର ଗୌରୀଶ୍ୟାମ ମହାନ୍ତି । ଇଣ୍ଟରଭିଉ ପାଇଁ ବସିଥିଲେ ଅଧକ୍ଷ, ଭୋଳାନାଥ ବାବୁ ଓ ପ୍ରାଣବନ୍ଧୁ ବାବୁ । ଦଳଗତ ଇଣ୍ଟରଭିଉ ହେଉଥିଲା । ଗୋଟିଏ ପ୍ରଶ୍ନ ପଚରା ଯାଏ । ଯାହାକୁ ଉତ୍ତର ଆସେ ସେ ଉତ୍ତର ଦିଏ । ଯେତେଗୁଡିଏ ପ୍ରଶ୍ନ ପଚରାଗଲା ସବୁଗୁଡିକର ଉତ୍ତର ମୁଁ ଠିକ୍ ଭାବେ ଦେଇଥିଲି । କିନ୍ତୁ ପ୍ରାଣବନ୍ଧୁ ବାବୁ କେତେକ ଭୁଲ୍ ପ୍ରଶ୍ନ ପଚାରିଲେ । ମୁଁ ଉତ୍ତରରେ କହିଲି, "ପ୍ରଶ୍ନ ଭୁଲ୍" ସେଇଥିରେ ସେ ମୋ ଉପରେ ଖପ୍ପା ହୋଇଗଲେ । ତେବେ ମୋର ଲିଖିତ ପରୀକ୍ଷାଫଳ ଭଲ ହୋଇଥିବାରୁ ମୋତେ ସିଟ୍ ମିଳିଗଲା ଓ ନାଁ ଲେଖା ହୋଇଗଲା Theory ଓ Practical ପାଇଁ ସେତେବେଳେ ତିନିଗୋଟି Method ନେବାକୁ ପଡୁଥିଲା । ମୁଁ ଇଂରାଜୀ, ଓଡିଆ ଓ ଇତିହାସ ତିନିଗୋଟି ବିଷୟ ନେଲି । ପ୍ରାଣବନ୍ଧୁ ବାବୁ ଓଡିଆ Method ପଢାଉଥିଲେ । Demonstration Lesson ଦେବା ବେଳେ ସେ ଗୋଟିଏ ଭୁଲ୍ କଥା କହିଲେ । ସେ ଭୁଲ୍ ମୁଁ ଦର୍ଶାଇବାରୁ ମୋ ଉପରେ ରାଗିଗଲେ । କ୍ଲାସର ସବୁ ପିଲା ମୋ ମତାମତକୁ ସମର୍ଥନ ଜଣାଇବାରୁ ତାଙ୍କର ରାଗ ଆହୁରି ବଢିଗଲା ।

ସେ ବର୍ଷ (୧୯୫୬) ପ୍ରଥମ କରି ଜାତୀୟସ୍ତରରେ ଯୁବ ମହୋତ୍ସବ (Youth Festival) ଅନୁଷ୍ଠିତ ହେଲା । ତା'ର ରୂପ ରେଖ ସମ୍ବନ୍ଧରେ କାହାର ଧାରଣା ନ ଥିଲା । ପ୍ରାଣବନ୍ଧୁ ବାବୁ ଯୁବ ମହୋତ୍ସବ ଦାୟିତ୍ୱରେ ଥିଲେ । ସେ ଓଡିଶୀ ନୃତ୍ୟ, ନୃତ୍ୟନାଟିକା ଆଦି ରିହରସଲ କରାଇ ପ୍ରସ୍ତୁତ କଲେ । ପିଲାଙ୍କୁ ନେଇ ଦିଲ୍ଲୀ ଗଲେ । କିନ୍ତୁ ଆମ ଟ୍ରେନିଂ କଲେଜରେ ପ୍ରସ୍ତୁତ କାର୍ଯ୍ୟକ୍ରମ ସେଠାରେ ସାଧାରଣ ମନୋରଞ୍ଜନ ଭାବେ ବିବେଚିତ ହେଲା ସିନା କିଛି ସ୍ୱତନ୍ତ୍ର

ପ୍ରଶଂସା ମିଳିଲା ନାହିଁ । ପ୍ରାଣବନ୍ଧୁ ବାବୁଙ୍କ ପ୍ରିୟ ପିଲାମାନେ ଯାଇ ଦିଲ୍ଲୀ ବୁଲି ଆସିବା ହିଁ ସାର ହେଲା ।

କଲେଜର ବାର୍ଷିକ ନାଟ୍ୟୋତ୍ସବ ପାଇଁ ପ୍ରସ୍ତୁତି ଆରମ୍ଭ ହୋଇ ଯାଇଥାଏ । ମୋର ନାଟକରେ ଅଂଶ ଗ୍ରହଣ କରିବା ପାଇଁ ପ୍ରବଳ ଆଗ୍ରହ ଥାଏ । ତେଣୁ ଯେତେବେଳେ ରିହରସଲ୍ ଆରମ୍ଭ ହୁଏ ମୁଁ ପ୍ରଥମେ ଆସି ହାଜର ହୋଇଯାଏ । ନାଟକ ପାଇଁ ଚରିତ୍ର ବଛାବଛି ବେଳେ ମୁଁ ଉପସ୍ଥିତ ଥିଲେ ମଧ୍ୟ ମୋତେ କୌଣସି ଚରିତ୍ର ଦିଆଗଲା ନାହିଁ । କାରଣ ପ୍ରାଣବନ୍ଧୁ ବାବୁ ନାଟକ ଦାୟିତ୍ୱରେ ଥିଲେ । ସେ ପୂର୍ବରୁ ମୋ ଉପରେ ଅସନ୍ତୁଷ୍ଟ ଥିଲେ । କଲେଜରେ ପ୍ରିନ୍‌ସିପାଲଙ୍କ ଦ୍ୱାରା ଲିଖିତ ନାଟକ ମଞ୍ଚସ୍ଥ ହୁଏ । ରିହରସଲ୍ ନିଜେ ପ୍ରିନ୍‌ସପାଲ୍ କରାନ୍ତି । ମୋତେ ସେ ସବୁଦିନ ରିହରସଲ୍ ସମୟରେ ଦେଖନ୍ତି । ମୋର ଆଗ୍ରହ ଦେଖି ଛୋଟ ଚରିତ୍ରଟିଏ କରିବା ପାଇଁ ମୋତେ ସେ କହିଲେ । ପ୍ରାଣବନ୍ଧୁ ବାବୁଙ୍କ ବିରୋଧ ସତ୍ତ୍ୱେ ପ୍ରିନ୍‌ସପାଲ ମୋତେ ଚରିତ୍ର ଅଭିନୟ ପାଇଁ ବାଛିଲେ । ରିହରସଲ୍ ସମୟରେ ସବୁଠୁ ଗୁରୁତ୍ୱପୂର୍ଣ୍ଣ ଚରିତ୍ରରେ ଯାହାଙ୍କୁ ପ୍ରାଣବନ୍ଧୁ ବାବୁ ବାଛିଥିଲେ ସେ ଭଲ କଲେନାହିଁ । ତାଙ୍କ ବଦଳରେ ଅନ୍ୟ ଜଣଙ୍କୁ ଖୋଜାଗଲା । ମୋର ବନ୍ଧୁମାନେ ପ୍ରିନସ୍‌ପାଲ୍‌ଙ୍କୁ କହିଲେ, "ପୂର୍ଣ୍ଣବାବୁ ଏ ଚରିତ୍ରରେ ଭଲ ଅଭିନୟ କରିବେ ।" ପ୍ରିନସ୍‌ପାଲ୍ ମୋତେ ପଚାରିଲେ, "ତୁ ଏ ଚରିତ୍ରରେ ଅଭିନୟ କରିପାରିବୁ ?" ମୁଁ କହିଲି, "ମୋତେ ପରୀକ୍ଷା କରି ଦେଖନ୍ତୁ । ମୁଁ ଭାବୁଛି ମୁଁ ପାରିବି ।" ଶେଷରେ ସେ ଚରିତ୍ରରେ ମୁଁ ଅଭିନୟ କଲି । ନାଟକ ବେଶ୍ ସଫଳ ହେଲା । ତା ସହିତ ମୋର ଅଭିନୟ ଉଚ୍ଚ କୋଟିର ହେବାରୁ ମୁଁ ପ୍ରିନସ୍‌ପାଲ୍‌ଙ୍କର ପ୍ରିୟ ପାତ୍ର ହୋଇଗଲି ।

ନାଟକରେ ମୋର ଅଭିନୟ ସଫଳତା ପ୍ରାଣବନ୍ଧୁ ବାବୁଙ୍କର ପୂର୍ବ ରାଗକୁ ଦ୍ୱିଗୁଣିତ କରି ଦେଲା । ସେ ସବୁବେଳେ ବାଟ ଖୋଜିଲେ ମୋତେ ଅପଦସ୍ତ କରିବା ପାଇଁ । ଅଭ୍ୟାସ ପାଠ ସମୟରେ ମୋର ପଢାଇବା ଭଲ ହୋଇଥିଲେ ମଧ୍ୟ ସେ ଭଲ ମନ୍ତବ୍ୟ ଦିଅନ୍ତି ନାହିଁ । ସେ ଦିନେ ତାଙ୍କ ପ୍ରିୟ ଲୋକଙ୍କ ପାଖରେ କହିଲେ, "ୟେ ଟ୍ରେନିଂ କଲେଜ, Practical ପରୀକ୍ଷା ମୋ ହାତରେ ଅଛି, ବେଟା ଯିବ କୁଆଡେ ? ତାକୁ ଯଦି ଫେଲ କରି ନ ଦେଇଛି ।" ସେ ବର୍ଷ ପ୍ରିନ୍‌ସପାଲଙ୍କର ଭଣଜା B.Ed ପରୀକ୍ଷା ଦେଉ ଥିବାରୁ ସେ ଇତିହାସରେ Internal Examiner ହେଲେ ନାହିଁ । ନୂଆ ହୋଇ ଆମେରିକାରୁ ଫେରିଥିବା ଡକ୍ଟର ଗୌରୀଶ୍ୟାମ ମହାନ୍ତି ଇତିହାସ ଓ ଇଂରାଜିରେ Internal Examiner

ହେଲେ । ଏ ଉଭୟ Method ରେ ମୁଁ ଯେତେ ନମ୍ବର ପାଇବା କଥା ପାଇଲି ନାହିଁ । ଓଡିଆ Method ରେ ମୁଁ ଭଲ ପାଠ ପଢାଉଥିଲେ ମଧ୍ୟ ପ୍ରାଣବନ୍ଧୁ ବାବୁ ମୋତେ ଫେଲ୍ କରିବାକୁ ଚେଷ୍ଟା କଲେ । କିନ୍ତୁ ସଫଳ ହେଲେ ନାହିଁ । External Examiner ବାଧା ଦେଲେ, ଓଡିଆ Method ରେ ମୋର ଭଲ ନମ୍ବର ରହିଲା ।

B.Ed ପରୀକ୍ଷାରେ ଯେଉଁମାନେ Distinction ସହ ପାଶ୍ କରନ୍ତି ସେମାନେ Practical ନମ୍ବର ବଳରେ Distinction ପାଆନ୍ତି । ଖୁବ୍ କମ୍ ପିଲା ଅଛନ୍ତି ଯିଏ Theory ଓ Practical ଉଭୟରେ Distinction ନମ୍ବର ରଖନ୍ତି । ମୋର ଠିକ୍ ଓଲଟା ହେଲା । Practical ରେ ମୋର Distinction ନମ୍ବର ରହିଲା ନାହିଁ। Theory ରେ ମୋର ଯେଉଁ ନମ୍ବର ରହିଲା, ତାହା Practical ପରୀକ୍ଷାରେ କମ୍ ନମ୍ବରକୁ ସାହାଯ୍ୟ କଲା । ମୁଁ Distinction ସହିତ B.Ed ପାଶ୍ କଲି । ପ୍ରାଣବନ୍ଧୁ ବାବୁଙ୍କର ସମସ୍ତ ଚେଷ୍ଟା ବିଫଳ ହୋଇଥିବାର ପ୍ରତ୍ୟକ୍ଷ ପ୍ରମାଣ ମୋ ନିକଟରେ ଅଛି । ଓଡିଆ Method ରେ External Examiner ହୋଇ ଆସିଥିବା ଜୟକୃଷ୍ଣ ମିଶ୍ର ମୋତେ ପୂର୍ବରୁ ଖୁବ୍ ଭଲ ଭାବରେ ଜାଣିଥିବାରୁ ପ୍ରାଣବନ୍ଧୁଙ୍କ ଅପଚେଷ୍ଟା ସଫଳ ହେଲା ନାହିଁ ।

B.Ed. ପଢୁଥିବା ବେଳେ ମୁଁ ବହୁତ ଅଭାବ ଅସୁବିଧାର ସମ୍ମୁଖୀନ ହେଲି । କାରଣ ଆମର ଚାଷରୁ ଯାହା ମିଳେ ତାହା ପରିବାରର ଗୋଟିଏ ବର୍ଷରେ ଖାଦ୍ୟ ପାଇଁ ଅଣ୍ଟେ ନାହିଁ । ଚାଷରୁ ମୋତେ କିଛି ସାହାଯ୍ୟ ମିଳିଲା ନାହିଁ । ମୁଁ ଟ୍ରେନିଂ ପଢିବା ସମୟରେ ମାସିକ ଷ୍ଟାଇପେଣ୍ଡ ଟ.୪୦/- ଲେଖାଁଏ ପାଇଲି । ଆଉ ଟ.୧୦/- ଲେଖାଁଏ ହୋଇଥିଲେ ମୁଁ ଭଲରେ ଚଳି ଯାଇଥାନ୍ତି । ସେତିକି ମଧ୍ୟ ମିଳିଲା ନାହିଁ । ମୋର ସାଙ୍ଗସାଥୀମାନେ Practical ପରୀକ୍ଷା ପାଇଁ ସହାୟକ ଉପକରଣ ଯୋଗାଡ କରିବା ପାଇଁ ବହୁତ ଖର୍ଚ୍ଚ କରୁଥିଲେ । ମୋ ପାଖରେ ଟଙ୍କା ନ ଥିବାରୁ ମୁଁ ନିଜେ ସଂଗ୍ରହ କରି ସହାୟକ ଉପକରଣ ଯୋଗାଡ କଲି । ସେ ଉପକରଣ ଖୁବ୍ ଫଳପ୍ରଦ ହେଲା ।

ସବୁ ଅଭାବ ଅସୁବିଧା, ପ୍ରାଣବନ୍ଧୁ ବାବୁଙ୍କ ବିରୋଧ ସତ୍ତ୍ୱେ ମୁଁ ଡିଷ୍ଟିଙ୍କସନ୍ ସହ ବି.ଏଡ୍ ପାଶ୍ କରିଥିବାରୁ ମନ ଖୁସି ହେଲା । ଟ୍ରେନିଂ କଲେଜ ଛାଡିବା ପରଦିନ ମୁଁ କୁଶଳେଶ୍ୱର ହାଇସ୍କୁଲ ମୋର ପୁରୁଣା ସ୍ଥାନକୁ ଫେରିଗଲି ।



## ଦ୍ୱିତୀୟ ଅଧ୍ୟାୟ

# ସରକାରୀ ଚାକିରି

### ୨.୧ ସ୍କୁଲ ସବଇନିସ୍ପେକ୍ଟର

ଟ୍ରେନିଂ କଲେଜ ଛାଡି କୁଶଳେଶ୍ୱର ହାଇସ୍କୁଲରେ ମୋର ପୁରୁଣା ପୋଷ୍ଟରେ ଯୋଗ ଦେବାରେ କିଛି ଅସୁବିଧା ହେଲା ନାହିଁ । ଯେତେବେଳେ ବି.ଏଡ୍ ପରୀକ୍ଷା ଫଳ ବାହାରିଲା ଓ ଜଣାଗଲା ଯେ Distinction ସହ ମୁଁ ପାଶ୍ କରିଛି, ସେତେବେଳେ ଅସୁବିଧା ଆରମ୍ଭ ହେଲା । ଦେଓଗାଁର ଦଳେ ଲୋକ କହିଲେ,"ପୂର୍ଣ୍ଣବାବୁ ତ ବି.ଏ. (ଅନର୍ସ) ଓ ବି.ଏଡ୍ (ଡିଷ୍ଟିଙ୍କସନ୍) । ହେଡ୍‌ମାଷ୍ଟ୍ରେ ଅଡିନାରୀ ବି.ଏ, ଓ ବି.ଇଡି ପାଶ୍, ପୁଣି ପୂର୍ଣ୍ଣବାବୁ ସ୍କୁଲର ସମସ୍ତ କଥା ବୁଝାବୁଝି କରୁଛନ୍ତି । ହେଡମାଷ୍ଟରଙ୍କୁ ବାହାର କରି ପୂର୍ଣ୍ଣବାବୁଙ୍କୁ ହେଡମାଷ୍ଟର କରାଯାଉ । ଏ କଥା ମୋ କାନରେ ପଡି ନ ଥିଲା । ହେଡମାଷ୍ଟ କେଉଁଠୁ ଏ କଥା ଶୁଣି ମତେ ଡାକି ପଚାରିଲେ, "ବାହାରେ ଯାହା ଶୁଣାଯାଉଛି ସେଥିରେ ତମର କିଛି ହାତ ଅଛି କି ?" ମୁଁ କହିଲି, "ପ୍ରଥମଥର ମୁଁ ଏ କଥା ଆପଣଙ୍କ ମୁହଁରୁ ଶୁଣୁଛି। ମୋର ହାତ ଥିବା ପ୍ରଶ୍ନ ଉଠୁଛି କେଉଁଠୁ ? କିନ୍ତୁ ଥରେ ଏ ଘଟଣା ସାଧାରଣ ଲୋକଙ୍କ ମଧ୍ୟରେ ଆଲୋଚନା ହେବା ଅର୍ଥ ଆପଣ ଓ ମୁଁ ଏକାଠି ରହିବା ସମ୍ଭବ ନୁହେଁ । ଆପଣଙ୍କର ଜମି,ବାଡି, ବାପା, ମା, ଘର ସଂସାର ଛାଡି ଆପଣ ଅନ୍ୟ କୁଆଡେ ଯିବେ ? ବରଂ ମୁଁ ଚାଲି ଯାଉଛି ।" ହେଡ୍‌ମାଷ୍ଟ୍ରେ କହିଲେ, "କୁଆଡେ ଯିବ ?" ମୁଁ କହିଲି, "ସଂସାରରେ ମୋ ପାଇଁ ବହୁତ ଜାଗା ଅଛି । କେଉଁଠିକି ହେଲେ ଚାଲିଯିବି ।"

କଥାବାର୍ତ୍ତା ସାରି ମୁଁ ଆମ ରୁମ୍‌କୁ ଫେରି ଆସିଲା ପରେ ଖବର କାଗଜରେ ଆଖି ବୁଲାଇ ଆଣିଲା ବେଳକୁ ଦେଖିଲି, ବାଲେଶ୍ୱର ଜିଲ୍ଲାରେ ଚାରିଗୋଟି ସ୍କୁଲ୍ ସବ୍‌ଇନିସ୍ପେକ୍ଟର ପୋଷ୍ଟ ପାଇଁ ବିଜ୍ଞାପନ ବାହାରିଛି । ଦରଖାସ୍ତ ଖଣ୍ଡେ ଟାଇପ୍ କରି ଦସ୍ତଖତ କରି ହେଡ୍‌ମାଷ୍ଟରଙ୍କୁ ଦେଲି Forward କରିବା ପାଇଁ । ସେ କହିଲେ, "ସେକ୍ରେଟେରୀଙ୍କୁ ନ ପଚାରି ମୁଁ କେମିତି Forward କରିବି ? ମୁଁ କହିଲି, ଦରଖାସ୍ତ କରିଦେବା ଅର୍ଥ କ'ଣ ସ୍କୁଲ ଛାଡି ଚାଲିଯିବା ? ବର୍ତ୍ତମାନ ଦରଖାସ୍ତ କରୁଛି, ତା'ପରେ Interview ହେବ, ଯଦି ଚାକିରି

ହୋଇଯାଏ, ରିଲିଭ୍ ହେଲା ବେଳକୁ ପରିଚାଳନା ସମିତିର ଅନୁମତି ଦରକାର। ଏବେ Forward କରି ଦିଅନ୍ତୁ। ସେ Forward କରି ଦେଲେ । ୧୫ ଦିନ ପରେ Interview ପାଇଁ ଚିଠି ଆସିଲା । Interview ପାଇଁ ବାଲେଶ୍ୱର ଗଲି । ଦରଖାସ୍ତକାରୀଙ୍କ ଭିତରେ ମୁଁ ଏକମାତ୍ର ବ୍ୟକ୍ତିଯେ ବି.ଏ.(ଅନର୍ସ) ବି.ଏଡ୍ (ଡିଷ୍ଟିଙ୍କସନ୍) । ଜିଲ୍ଲା ବୋର୍ଡ ସ୍ପେଶାଲ ଅଫିସର ପଚାରିଲେ, "ତମେ କ'ଣ ସ୍କୁଲ ଛାଡି ସ୍କୁଲ ସବଇନିସ୍ପେକ୍ଟର ହେବାକୁ ଆସିବ?" ମୁଁ ରାଜି ହୋଇଗଲି । ୧୯୫୭ ମସିହା ଡିସେମ୍ବର ମାସରେ ମୋର ନିଯୁକ୍ତି ପତ୍ର ଆସିଗଲା । ମତେ ରିଲିଭ୍ କରିବା ପୂର୍ବରୁ ହେଡ୍‌ମାଷ୍ଟ୍ରେ ପରିଚାଳନା କମିଟିର ମିଟିଂ ଡାକିଲେ । ପରିଚାଳନା ସମିତି ସଭ୍ୟମାନେ ମତେ କହିଲେ, "ଆପଣ ସ୍କୁଲ ମଞ୍ଜୁର କରାଇଛନ୍ତି । ଏ ଆପଣଙ୍କ ସ୍କୁଲ । ଆପଣ ଛାଡି ଯିବାକୁ କେମିତି କହୁଛନ୍ତି ?" ମୁଁ ସମିତି ସଦସ୍ୟମାନଙ୍କୁ ଅନୁରୋଧ କରି କହିଲି, "ମୁଁ ସରକାରୀ ଚାକିରିରେ ଯୋଗ ଦେବାକୁ ସୁଯୋଗ ପାଇଛି । କିଏ ଜାଣେ ଭବିଷ୍ୟତରେ ମୁଁ ହୁଏତ ପଦୋନ୍ନତି ପାଇ ବଡ ଚାକିରି କରିପାରେ । ଆପଣମାନେ ମୋର ଭବିଷ୍ୟତ ଉନ୍ନତିର ପଥରୋଧ କରିବାକୁ ଚାହୁଁଛନ୍ତି କାହିଁକି ? ମୋ ଭାଗ୍ୟ ସହିତ ମତେ ଖେଳିବାକୁ ଛାଡି ଦିଅନ୍ତୁ ।" ନିଷ୍ପତ୍ତି ହେଲା ଯେ ମୋତେ ରିଲିଭ୍ କରି ଦିଆଯିବ । ୧୯୫୮ ମସିହା ଜାନୁଆରୀ ୧୭ ତାରିଖରେ ମୋ ପାଇଁ ବିଦାୟ କାଳୀନ ସଭା କରାଗଲା । ସେହିଦିନ ସନ୍ଧ୍ୟାରେ ସ୍କୁଲ ସବ୍‌ଇନିସ୍ପେକ୍ଟର ଚାକିରିରେ ଯୋଗ ଦେବାକୁ ଭଦ୍ରକ୍ ଗଲି ।

୧୮.୦୧.୧୯୫୮ ତାରିଖରେ ପୂର୍ବ ଭଦ୍ରକ୍ ସର୍କଲ ସବ୍‌ଇନିସ୍ପେକ୍ଟର ଭାବରେ ଭଦ୍ରକ୍ ସ୍କୁଲ ଡେପୁଟି ଇନିସ୍ପେକ୍ଟର ଅଫିସରେ ଯୋଗ ଦେଲି । ଡେପୁଟି ଇନିସ୍ପେକ୍ଟର ଦେବେନ୍ଦ୍ରନାଥ ପ୍ରଧାନ । ଅମାୟିକ ଲୋକ/ଯୋଗ୍ୟତା ଏମ୍.ଏ., ବି.ଏଡ୍, ଜ୍ଞାନୀ, କର୍ମଠ ଓ କର୍ତ୍ତବ୍ୟ ପରାୟଣ । ମୋତେ ଦେଖି ଖୁସି ହେଲେ ।

ଭଦ୍ରକ୍ ସଦର ସବ୍‌ଇନିସ୍ପେକ୍ଟର ଗୋପାଳଚନ୍ଦ୍ର ପାଣିଗ୍ରାହୀ ଆଇ.ଏ, ସି.ଟି । Lower Sub-Ordinate Education Service (L.S.E.S) ଚାକିରି । ଅଭିଜ୍ଞ ଲୋକ । ବହୁଦିନ ହେଲା ସବ୍‌ଇନିସ୍ପେକ୍ଟର ଚାକିରି କରି ପୋଖତ ହୋଇ ଗଲେଣି । ମୁଁ ସେଠାରେ ଯୋଗ ଦେବାରୁ ସେ ଖୁସି ନ ଥିଲେ । କାରଣ ତାଙ୍କଠାରୁ ମୁଁ ପାଠରେ ଅଧିକ । ଉଚ୍ଚ ପାହ୍ୟାର ଚାକିରି S.E.S (Sub-Ordinate Education Service)। ମୁଁ ସ୍କୁଲ ସବ୍‌ଇନିସ୍ପେକ୍ଟର ଭାବରେ ଯୋଗ ଦେବା ପରେ ମୋର ପ୍ରଥମ ଓ ପ୍ରଧାନ ସମସ୍ୟା ହେଲା ସବ୍‌ଇନିସ୍ପେକ୍ଟର କାମ ବିଷୟରେ ମୋର ଧାରଣା ନାହିଁ। ଆମେ ବି.ଏଡ୍. ପଢିଲୁ ମାଧମିକ ସ୍କୁଲରେ ପାଠ ପଢାଇବା ତାଲିମ ନେବା ପାଇଁ । ସେଠାରେ School Organisation ବ୍ୟତୀତ ଅନ୍ୟ

କୌଣସି ପାଠ ପ୍ରାଥମିକ ସ୍କୁଲ ସଂପୃକ୍ତ ନୁହେଁ । ଗୋଟିଏ ଦୁଇଟି ମାସ ମଧ୍ୟରେ କାମ ଶିଖିଯିବି ବୋଲି ମୋର ଦୃଢ ବିଶ୍ୱାସ ଥାଏ ।

ସେତେବେଳେ ଭଦ୍ରକ୍ ଏଲିମେଣ୍ଟାରୀ ଟ୍ରେନିଂ ସ୍କୁଲରେ ଦୁର୍ଗାପ୍ରସନ୍ନ ପଣ୍ଡା ନାମରେ ଜଣେ ପ୍ରଧାନ ଶିକ୍ଷକ ଥାନ୍ତି । ତାଙ୍କ ପାଖକୁ ଯାଇ ମୋର ପ୍ରଥମ ତାଲିମ୍ ଆରମ୍ଭ କଲି । ସେ ମୋତେ ସଂଖ୍ୟା ବିଶ୍ଳେଷଣ, ମାନସାଙ୍କ, ଶ୍ରୁତ ଲିଖନ ଆଦି ବିଷୟରେ ଧାରଣା ଦେଲେ । ମୁଁ ଯେତେବେଳେ ପ୍ରାଥମିକ ସ୍କୁଲ ପରିଦର୍ଶନ କରିବାକୁ ଗଲି  ପୂର୍ବତନ ସବଇନିସ୍ପେକ୍ଟର ମାନଙ୍କର ପରିଦର୍ଶନ ମନ୍ତବ୍ୟ ପଢିଲି। ୧୫ ଦିନ ମଧ୍ୟରେ ମୁଁ ମଧ ଜଣେ ଅଭିଜ୍ଞ ସବ୍‌ଇନିସ୍ପେକ୍ଟର ଭଳି ବ୍ୟବହାର କଲି । କିନ୍ତୁ ସଦର ସବଇନିସ୍ପେକ୍ଟର ଗୋପାଳ ଚନ୍ଦ୍ର ପାଣିଗ୍ରାହୀ ମୋର ଅନଭିଜ୍ଞତାର ସୁଯୋଗ ନେଇ ମୋତେ ଗଧ ଭଳି ଖଟାଇବାକୁ ଆରମ୍ଭ କଲେ । ମୋର ଧାରଣା ଥିଲା ଯେ ଆଉ ବୋଧହୁଏ କିଛି ଜ୍ଞାତବ୍ୟ ବିଷୟ ରହିଯାଇଛି  ଯାହା ଗୋପାଳ ପାଣିଗ୍ରାହୀ ଜାଣିଛନ୍ତି । ତେଣୁ ତାଙ୍କୁ ଅସନ୍ତୁଷ୍ଟ କରିବାକୁ ମୁଁ ଚାହିଁଲି ନାହିଁ । ତାଙ୍କୁ ଅନୁରୋଧ କରେ ଅଧିକ କିଛି ଜାଣିବାକୁ । ସେ ସବୁବେଳେ ମୋତେ ଠକା ଠକି କରିଦିଅନ୍ତି ଓ କହନ୍ତି ଆହୁରି ଅନେକ କଥା ଜାଣିବାର ଅଛି । ଶେଷକୁ କହିଲେ "ମୁଁ ବି.ଏ ପରୀକ୍ଷା ଦେବି । ମୋତେ ପାଠ ପଢାନ୍ତୁ । ମୁଁ ପାଶ୍ କରି ସାରିଲା ପରେ ବହୁତ କଥା ଶିଖାଇ ଦେବି ।" ମୁଁ ତାଙ୍କୁ ଇଂରାଜି, ଓଡିଆ, ଓ ଏଜୁକେସନ ତିନୋଟି ବିଷୟ ପଢାଇଲି, ସେ ପରୀକ୍ଷା ଦେଲେ ଓ ପାଶ୍ କଲେ । କିନ୍ତୁ କିଛି ଶିଖାଇଲେ ନାହିଁ । ମୁଁ ତଥାପି ଅପେକ୍ଷା କଲି ।

୧୯୫୮ ମସିହା ଦଶହରା ଛୁଟିରେ ୪ ଦିନ ପାଇଁ ମୁଁ ଘରକୁ ଆସିଲି । ଘରେ ପହୁଞ୍ଚିଛି କି ନାହିଁ ଅଫିସରୁ ଟେଲିଗ୍ରାମ ଆସିଲା, ତୁରନ୍ତ ଚାକିରିକୁ ଫେରିବାକୁ । ଫେରିଲି । ଦେଖିଲି ଯେ ଗୋପାଳ ବାବୁଙ୍କର ନୀଳଗିରିକୁ ବଦଳି ହୋଇଛି । ଚବିଶ ଘଣ୍ଟା ଭିତରେ ଦାୟିତ୍ୱ ହସ୍ତାନ୍ତର କରି ଯିବା ପାଇଁ ନିର୍ଦ୍ଦେଶ ଅଛି । ତାଙ୍କଠାରୁ ଚାର୍ଜ ନେଲି । ସେତେବେଳକୁ ଅଫିସ କାମ ସ୍କୁଲ ପରିଦର୍ଶନ ଇତ୍ୟାଦି ବିଷୟରେ ମୋର ଅଭିଜ୍ଞତା ହୋଇଗଲାଣି ।

## ୨.୨ ପ୍ରାଥମିକ ସ୍କୁଲର ପାଠ୍ୟକ୍ରମ ପରିବର୍ତ୍ତନ

ପୂର୍ବରୁ କୁହାଯାଇଛି ଯେ ବିହାର-ଓଡିଶା ଶିକ୍ଷା ପ୍ରଶାସନ ସମୟରେ ୧୯୩୩ ମସିହାରେ ପ୍ରାଥମିକ ଶିକ୍ଷା ପାଇଁ ଯେଉଁ ପାଠ୍ୟକ୍ରମ ପ୍ରସ୍ତୁତ ହୋଇ ଓଡିଶାର ପ୍ରାଥମିକ ସ୍କୁଲମାନଙ୍କରେ ଚଳୁଥିଲା ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ପରେ ମଧ ସେହି ପାଠ୍ୟକ୍ରମ ୧୯୪୩ ମସିହା ପର୍ଯ୍ୟନ୍ତ ଚାଲିଲା । ୧୯୪୩ ମସିହାରେ କିଛି ପରିବର୍ତ୍ତନ ହେଲା କିନ୍ତୁ କୌଣସି ମୌଳିକ ପରିବର୍ତ୍ତନ

ହୋଇ ନ ଥିଲା । ୧୯୫୭ ମସିହାରେ ପ୍ରାଥମିକ ଶିକ୍ଷା ପାଠ୍ୟକ୍ରମରେ ପରିବର୍ତ୍ତନ କରାଗଲା । ଯେତେବେଳେ ପାଠ୍ୟକ୍ରମ ପରିବର୍ତ୍ତନ କରାଯାଏ, ସାଧାରଣତଃ ଆଶା କରାଯାଏ ଯେ ପୂର୍ବ ପାଠ୍ୟକ୍ରମ ଅପେକ୍ଷା ନୂତନ ପାଠ୍ୟକ୍ରମ ଉନ୍ନତ ଓ ଅଧିକ ବ୍ୟବହାର ଉପଯୋଗୀ ହେବ । କିନ୍ତୁ ଦୁର୍ଭାଗ୍ୟର କଥା ଯେଉଁ ନୂଆ ପାଠ୍ୟକ୍ରମ ପ୍ରବର୍ତ୍ତିତ ହେଲା ତାହା ଉନ୍ନତ ନୁହେଁ । ସରକାର ତାଙ୍କର Resolution No, 5978 dated the 3rd June, 1957 ରେ ନୂଆ ସିଲାବସ୍ ପ୍ରଚଳନ ବିଷୟରେ ଅବଗତ କରାଇଲେ । ନୂଆ ସିଲାବସ୍ ପ୍ରଚଳନ ଦ୍ୱାରା କ'ଣ କ୍ଷତି ହେଲା । ସିଲାବସ୍‌ଟିକୁ ଜାଣି ସାରିବା ପରେ ଆଲୋଚନା କରାଯିବ ।

### ୧୯୫୭ ମସିହାରେ ପ୍ରବର୍ତ୍ତିତ ପ୍ରାଥମିକ ଶିକ୍ଷା ପାଠ୍ୟକ୍ରମ

| ଶ୍ରେଣୀ | ବୟସ | ବିଷୟ |
|---|---|---|
| ଶିଶୁ ଶ୍ରେଣୀ | | ଉଠାଇ ଦିଆଗଲା |
| ପ୍ରଥମ ଶ୍ରେଣୀ | ୫+ | ୧. ମୌଖିକ, ଆତ୍ମ ପ୍ରକାଶ, ପଠନ, ଆବୃତ୍ତି ଓ ହସ୍ତାକ୍ଷର<br>୨. ଗଣିତ<br>୩. ସଧାରଣ ଜ୍ଞାନ - ପର୍ଯ୍ୟବେକ୍ଷଣ, ବ୍ୟକ୍ତିଗତ ପରିଚ୍ଛନ୍ନତା ପରିବେଶ,ସାମାଜିକ ଶିକ୍ଷା<br>୪. ଚିତ୍ରାଙ୍କନ<br>୫. ହସ୍ତକର୍ମ<br>୬. ଉଦ୍ୟାନ କର୍ମ<br>୭. ଖେଳ<br>୮. ସୂତାକଟା |
| ଦ୍ୱିତୀୟ ଶ୍ରେଣୀ | ୬+ | ୧. ମୌଖିକ, ଆତ୍ମ ପ୍ରକାଶ, ପଠନ, ଆବୃତ୍ତି ଲିଖନ ଓ ରଚନା<br>୨. ଗଣିତ<br>୩. ସାଧାରଣ ଜ୍ଞାନ - ପର୍ଯ୍ୟବେକ୍ଷଣ, ନାଗରିକ ଶିକ୍ଷା, ସାମାଜିକଶିକ୍ଷା<br>୪. ଚିତ୍ରାଙ୍କନ<br>୫. ହସ୍ତକର୍ମ<br>୬. ଉଦ୍ୟାନ କର୍ମ<br>୭. ଖେଳ<br>୮. ସୂତାକଟା |

| ଶ୍ରେଣୀ | ବୟସ | ବିଷୟ |
|---|---|---|
| ଶିଶୁ ଶ୍ରେଣୀ | | ଉଠାଇ ଦିଆଗଲା |
| ତୃତୀୟ ଶ୍ରେଣୀ | ୭+ | ୧. ମୌଖିକ ଆତ୍ମ ପ୍ରକାଶ, ପଠନ, ଆବୃତ୍ତି, ଲିଖନ ଓ ରଚନା<br>୨. ଗଣିତ<br>୩. ସାଧାରଣ ଜ୍ଞାନ - ପର୍ଯ୍ୟବେକ୍ଷଣ କାର୍ଯ୍ୟକ୍ରମ, ନାଗରିକ ଜ୍ଞାନ, ସ୍ୱାସ୍ଥ୍ୟ ଓ ପରିଚ୍ଛନ୍ନତା<br>ସାମାଜିକ ଶିକ୍ଷା<br>୪. ଚିତ୍ରାଙ୍କନ<br>୫. ହସ୍ତକର୍ମ<br>୬. ଉଦ୍ୟାନ କର୍ମ<br>୭. ଖେଳ<br>୮. ସୂତାକଟା |
| ଚତୁର୍ଥ ଶ୍ରେଣୀ | ୮+ | ୧. ମୌଖିକ ଆତ୍ମ ପ୍ରକାଶ, ପଠନ, ଆବୃତ୍ତି, ଲିଖନ ଓ ରଚନା<br>୨. ଗଣିତ<br>୩. ସାଧାରଣ ଜ୍ଞାନ - ପର୍ଯ୍ୟବେକ୍ଷଣ କାର୍ଯ୍ୟକ୍ରମ, ନାଗରିକ ଜ୍ଞାନ, ସ୍ୱାସ୍ଥ୍ୟ ଓ ପରିମଳ<br>୪. ଚିତ୍ରାଙ୍କନ<br>୫. ହସ୍ତକର୍ମ<br>୬. ଉଦ୍ୟାନକର୍ମ<br>୭. ଖେଳ<br>୮. ସୂତାକଟା |
| ପଞ୍ଚମ ଶ୍ରେଣୀ | ୯+ | ୧. ମୌଖିକ, ଆତ୍ମ ପ୍ରକାଶ, ପଠନ, ଆବୃତ୍ତି, ଲିଖନ ଓ<br>. ରଚନା<br>୨. ଗଣିତ<br>୩. ସଧାରଣ ଜ୍ଞାନ - ପରିମଳ ଓ ସ୍ୱାସ୍ଥ୍ୟ ଶିକ୍ଷା, ଇତିହାସ, ନାଗରିକ ଜ୍ଞାନ, ଭୂଗୋଳ ଓ Practical ଶିକ୍ଷା<br>୪. ଚିତ୍ରାଙ୍କନ<br>୫. ହସ୍ତକର୍ମ<br>୬. ଉଦ୍ୟାନ କର୍ମ<br>୭. ଖେଳ<br>୮. ସୂତାକଟା |

ଏହି ପାଠ୍ୟକ୍ରମ ପୂର୍ବ ପାଠ୍ୟ କ୍ରମର ବିକାଶ ବା କ୍ରମ ପରିଣାମ ନୁହେଁ। ଏହାର କେତେ ଗୁଡିଏ ତ୍ରୁଟି ରହିଗଲା। ପ୍ରଥମତଃ ଶିଶୁ ଶ୍ରେଣୀ ଉଠାଇ ଦେଇ ଏକ ବିରାଟ ଭୁଲ କରାଗଲା। ଶିଶୁ ଶ୍ରେଣୀ ପିଲାମାନଙ୍କୁ ପ୍ରାଥମିକ ଶିକ୍ଷା ପାଇଁ ପ୍ରସ୍ତୁତ କରୁଥିଲା। ରାଜ୍ୟରେ ଯଦି ପ୍ରାକ୍ ପ୍ରାଥମିକ ଶିକ୍ଷା ବ୍ୟବସ୍ଥା ଥାନ୍ତା ଶିଶୁ ଶ୍ରେଣୀ ଉଠାଇ ଦେଇଥିଲେ କ୍ଷତି ହୋଇ ନଥାନ୍ତା। ଶିଶୁ ଶ୍ରେଣୀ ହିଁ ପ୍ରାକ୍ ପ୍ରାଥମିକ ଶିକ୍ଷାର ବିକଳ୍ପ ଥିଲା। ତାହା ଉଠି ଯାଇ ପିଲାମାନଙ୍କର ଶିକ୍ଷା ବିକାଶର ବାଧା ସୃଷ୍ଟି ହେଲା। ଆଜି ପର୍ଯ୍ୟନ୍ତ ସେ ଭୁଲ୍‌ର ପରିଣତି ଭୋଗ କରିବାକୁ ପଡୁଛି।

ଦ୍ୱିତୀୟତଃ ଶିଶୁ ଶ୍ରେଣୀରେ ପ୍ରବେଶ ବୟସ ଥିଲା ୫+। ଶିଶୁ ଶ୍ରେଣୀ ଉଠିଯିବା ପରେ ମଧ୍ୟ ପ୍ରଥମ ଶ୍ରେଣୀରେ ପ୍ରବେଶ ବୟସ ରହିଲା ୫ +। ପିଲାମାନଙ୍କର ଶାରୀରିକ ଓ ମାନସିକ ବିକାଶ ଦୃଷ୍ଟିରୁ ପ୍ରଥମ ଶ୍ରେଣୀରେ ପ୍ରବେଶ ବୟସ ଅନ୍ତତଃ ପକ୍ଷେ ୬ + ହେବାର କଥା। ପ୍ରଥମ ଶ୍ରେଣୀରେ ୫+ ପ୍ରବେଶ ବୟସ ରଖାଗଲା। ପ୍ରାଥମିକ ଶିକ୍ଷା ଶେଷ ହେବ ୯ + ବୟସରେ। ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଏହା ଠିକ୍ ନୁହେଁ। ପିଲାଙ୍କ ଉପରେ ବୟସ ଦୃଷ୍ଟିରୁ ଅଧିକ ପାଠର ଚାପ ପଡିଲା। Maturation ସ୍ତର ଓ ଶିକ୍ଷାର ସ୍ତର ଠିକ୍ ନ ରହିଲେ ପିଲାଙ୍କର ଶିକ୍ଷାର ଗୁଣାତ୍ମକ ବିକାଶ ଠିକ୍ ହେବ ନାହିଁ।

ତୃତୀୟତଃ ୧୯୩୮ ମସିହାଠାରୁ ମହାତ୍ମା ଗାନ୍ଧୀଙ୍କ ପ୍ରବର୍ତ୍ତିତ ମୌଳିକ ଶିକ୍ଷା ଭାରତର ବିଭିନ୍ନ ଅଞ୍ଚଳରେ ଚାଲୁ ହେଲାଣି। ଏକ ସମୟରେ ଆଶା କରା ଯାଉଥିଲା ଯେ ମୌଳିକ ଶିକ୍ଷା ଭାରତର ଜାତୀୟ ପ୍ରାଥମିକ ଶିକ୍ଷା ଭାବରେ ଘୋଷିତ ହେବ। ୧୯୪୪ Post-War Education Development Committee ବା ସର୍ଜେଣ୍ଟ କମିଟି ମଧ୍ୟ ମୌଳିକ ଶିକ୍ଷାକୁ ଜାତୀୟ ଶିକ୍ଷା ଭାବରେ ଗ୍ରହଣ କରିବାକୁ ସୁପାରିଶ୍ କରିଥିଲେ। ଅମଲାତାନ୍ତ୍ରିକ ଚାପ ଯୋଗୁଁ ତାହା ତ ହୋଇ ପାରିଲା ନାହିଁ। ଅନ୍ତତଃ ପକ୍ଷେ ଯେତେବେଳେ ପାଠ୍ୟକ୍ରମର ସଂସ୍କାର ହେଉଛି ସେତେବେଳେ ମୌଳିକ ଶିକ୍ଷାର ମୁଖ୍ୟ ଧାରାକୁ ଗ୍ରହଣ କରି କର୍ମ ଭିତ୍ତିକ ଶିକ୍ଷା ବା ଧନ୍ଦା ଭିତ୍ତିକ ଶିକ୍ଷା ପ୍ରବର୍ତ୍ତିତ ହୋଇ ପାରିଥାନ୍ତା। ନୂଆ ପାଠ୍ୟକ୍ରମରେ କେବଳ ସୂତାକଟାକୁ ମୌଳିକ ଶିକ୍ଷାରୁ ଗ୍ରହଣ କରାଯାଇଛି । ଆଉ କୌଣସି କାର୍ଯ୍ୟକ୍ରମ ଗ୍ରହଣ କରାଯାଇ ନାହିଁ।

ଚତୁର୍ଥତଃ ଧର୍ମ ଶିକ୍ଷା ପୂରାପୂରି ଉଠାଇ ଦିଆଗଲା । ତା ପରିବର୍ତ୍ତେ ନୈତିକଶିକ୍ଷା କି ଆଧ୍ୟାତ୍ମିକ ଶିକ୍ଷା ରଖାଯାଇ ନାହିଁ । ଏହା ଫଳରେ ପିଲାଙ୍କ ନୈତିକତା ଉପରେ ପ୍ରଭାବ ପଡିବାର ସମ୍ଭାବନା ରହିଛି । ଧର୍ମ ନିରପେକ୍ଷ

ଗଣତାନ୍ତ୍ରିକ ଦେଶରେ ଧର୍ମ ଶିକ୍ଷା ହୁଏତ ଆପତ୍ତିର କାରଣ ହୋଇପାରେ । କିନ୍ତୁ ନୀତିଶିକ୍ଷା ବା ଆଧ୍ୟାତ୍ମିକଶିକ୍ଷା ପାଇଁ କୌଣସି ଆପତ୍ତି ଉଠିବାର ସମ୍ଭାବନା ନ ଥିଲା । ତାହା କରାଗଲା ନାହିଁ ।

ପଞ୍ଚମତଃ ସ୍ୱାସ୍ଥ୍ୟରକ୍ଷା ଉଠାଇ ଦିଆଯାଇ ତା ବଦଳରେ ସ୍ୱାସ୍ଥ୍ୟ ଓ ପରିମଳଶିକ୍ଷା ରଖାଗଲା । ଅବଶ୍ୟ ସାଧାରଣ ଜ୍ଞାନ ଭିତରେ ବ୍ୟକ୍ତିଗତ ପରିଛନ୍ନତା ରଖାଯାଇଛି । ତଥାପି ସ୍ୱାସ୍ଥ୍ୟରକ୍ଷା ଅନ୍ତର୍ଗତ ବିଭିନ୍ନ ସଂକ୍ରାମକ ରୋଗ ଓ ଡିଆଁ ରୋଗ ବିଷୟରେ ସଂପୂର୍ଣ୍ଣ ଅବହେଳା କରାଯାଇଛି ।

ଷଷ୍ଠତଃ ପୂର୍ବ ପାଠ୍ୟକ୍ରମରେ ଚତୁର୍ଥ, ପଞ୍ଚମ ଶ୍ରେଣୀରେ ଉଦ୍ୟାନ କର୍ମ ରଖାଯାଇଥିଲା । ନୂଆ ସିଲାବସରେ ପ୍ରଥମ ଶ୍ରେଣୀଠାରୁ ଉଦ୍ୟାନ କର୍ମ ରଖାଯାଇଛି । ପ୍ରଥମ ଦ୍ୱିତୀୟ ଶ୍ରେଣୀ ପିଲା କି ଉଦ୍ୟାନ କର୍ମ କରିବେ ? ତା ଛଡ଼ା ସବୁ ସ୍କୁଲରେ ଉଦ୍ୟାନ କର୍ମ ପାଇଁ ସ୍ଥାନ ଥିବା ମଧ୍ୟ ସମ୍ଭବ ନୁହେଁ ।

ସପ୍ତମତଃ ୧୯୪୬-୧୯୪୭ ବେଳକୁ ହାଇସ୍କୁଲରେ ବିଜ୍ଞାନଶିକ୍ଷା ପ୍ରବର୍ତ୍ତିତ ହେଲାଣି । ତା'ର ଦଶ ବର୍ଷ ପରେ ପ୍ରାଥମିକ ଶିକ୍ଷା ପାଠ୍ୟକ୍ରମ ପରିବର୍ତ୍ତନ କରାଗଲା । ଅଥଚ ବିଜ୍ଞାନ ଶିକ୍ଷାକୁ ଅନ୍ତର୍ଭୁକ୍ତ କରାଗଲା ନାହିଁ ।

ସର୍ବୋପରି ଏହି ପାଠ୍ୟକ୍ରମରେ ଶିକ୍ଷକମାନଙ୍କ ପାଇଁ କିଛି ମାର୍ଗଦର୍ଶନ ନାହିଁ । ପାଠ୍ୟକ୍ରମ କାର୍ଯ୍ୟକାରୀ କରିବା ପାଇଁ ଦିଗ୍‌ଦର୍ଶନ ନ ଥିବାରୁ ଶିକ୍ଷକମାନେ ଏହାକୁ କାର୍ଯ୍ୟକାରୀ କରିବାରେ ଅସୁବିଧା ହେଲା ।

ଗୋଟିଏ ସାଧାରଣ ନିୟମ ହେଉଛି, ଯେତେବେଳେ ପାଠ୍ୟକ୍ରମ ପରିବର୍ତ୍ତନ ହେବ, ଶିକ୍ଷକମାନଙ୍କୁ ପରିବର୍ତ୍ତନ ସମ୍ବନ୍ଧରେ ଅବଗତ କରାଯିବ । ନୂଆ ପାଠ୍ୟକ୍ରମରେ ଶିକ୍ଷକମାନଙ୍କୁ Orient କରାଯିବ । ତଥାପି ଶିକ୍ଷକମାନେ ପରିବର୍ତ୍ତନକୁ ସହଜରେ ଗ୍ରହଣ କରି ପାରନ୍ତି ନାହିଁ । ଏ ନୂଆ ପାଠ୍ୟକ୍ରମ ପ୍ରବର୍ତ୍ତନ ସମୟରେ ଶିକ୍ଷକମାନଙ୍କୁ Orient କରାଗଲା ନାହିଁ । ତେଣୁ ଶିକ୍ଷକମାନେ ପୁରୁଣା ପାଠ୍ୟକ୍ରମର ଅନୁବର୍ତ୍ତନ କଲେ । ତା'ଛଡ଼ା ନୂଆ ପାଠ୍ୟକ୍ରମ କୌଣସି ଗୁଣରେ ପୂର୍ବ ପାଠ୍ୟକ୍ରମର କ୍ରମୋନ୍ନତି ନ ହୋଇଥିବାରୁ ଶିକ୍ଷକମାନେ ସ୍ୱତଃ ପ୍ରବୃତ୍ତ ହୋଇ ନୂଆ ପାଠ୍ୟକ୍ରମକୁ କାର୍ଯ୍ୟରେ ଲଗାଇଲେ ନାହିଁ ।

ଏ ପାଠ୍ୟକ୍ରମ ବେଶି ଦିନ ଚାଲିପାରିଲା ନାହିଁ । ୧୯୬୨ ମସିହାରେ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହେବା ପରେ ତାଙ୍କ ନେତୃତ୍ୱରେ ଓ ତାଙ୍କ ସଭାପତିତ୍ୱରେ ନୂତନ ପାଠ୍ୟକ୍ରମ ପ୍ରସ୍ତୁତ ହେଲା ।

ନୂଆ ପାଠ୍ୟକମ ପ୍ରବର୍ତ୍ତନ ବେଳକୁ ମୁଁ ପୂର୍ବ ଭଦ୍ରକ ସର୍କଲରେ ସବ୍‌ଇନିସ୍ପେକ୍ଟର ଭାବରେ ଯୋଗ ଦେଲି । ପୁରୁଣା ପାଠ୍ୟକ୍ରମ ଓ ନୂଆ ପାଠ୍ୟକ୍ରମ ମଧ୍ୟରେ ଗୋଳମାଳିଆ ପରିସ୍ଥିତି ସୁଧାରିବାକୁ ସରକାରୀ ସ୍ତରରେ ପରିଦର୍ଶକମାନଙ୍କୁ ମଧ୍ୟ ତାଲିମ୍ ଦିଆଗଲା ନାହିଁ । ଯଦି କୌଣସି ଶିକ୍ଷକ ଠିକ୍ ଭାବରେ ପାଠ୍ୟକ୍ରମ କାର୍ଯ୍ୟକାରୀ କରୁନାହାନ୍ତି ତାଙ୍କ ବିରୁଦ୍ଧରେ କିଛି କରିବାର ସମ୍ଭାବନା ନ ଥିଲା । କାରଣ ସେମାନଙ୍କୁ ନୂଆ ପାଠ୍ୟକ୍ରମ ପ୍ରୟୋଗ ବିଷୟରେ କିଛି କୁହାଯାଇ ନାହିଁ ।

## ୨.୩ ଭଦ୍ରକ ସଦର ସର୍କଲ ସବ୍‌ଇନିସ୍ପେକ୍ଟର

ଭଦ୍ରକ ସଦର ସର୍କଲ ସବ୍‌ଇନିସ୍ପେକ୍ଟର ଭାବରେ ଯୋଗ ଦେବା ପରେ ମୋର ପ୍ରଥମ କାମ ହେଲା ଶିକ୍ଷକ ମାନଙ୍କୁ ନୂଆ ପାଠ୍ୟକ୍ରମ ବିଷୟରେ ଅବଗତ କରାଇବା । ଭଦ୍ରକ ସଦର ସର୍କଲରେ ଅନେକ ହିନ୍ଦୁ ଓ ମୁସଲମାନ ଶିକ୍ଷକ ଥିଲେ ଯେଉଁମାନେ ପାଠ୍ୟକ୍ରମ, ପାଠ୍ୟପୁସ୍ତକ ଆଦି ବିଷୟରେ ଜାଣିବାକୁ ଭାରି ଆଗ୍ରହୀ । ସେମାନଙ୍କ ସହିତ ଅନ୍ୟ ଶିକ୍ଷକମାନଙ୍କୁ ଡକାଇ ଗୋଟିଏ ଆଲୋଚନା ସଭା କରାଇଲି । ସେଠାରେ ପୁରୁଣା ଓ ନୂଆ ପାଠ୍ୟକ୍ରମ ବିଷୟ ଆଲୋଚନା ହେଲା । ସେମାନେ ନୂଆ ପାଠ୍ୟକ୍ରମ ପୁରୁଣାଠାରୁ ଭଲ ନୁହେଁ ବୋଲି ମତ ଦେଲେ । ସହର ଶିକ୍ଷକମାନେ ଉଦ୍ୟାନ କର୍ମ ବିଷୟରେ ଆପତ୍ତି ଦର୍ଶାଇଲେ । ତାଙ୍କର ଉଦ୍ୟାନ କର୍ମ ପାଇଁ ସ୍ଥାନାଭାବ ସମସ୍ୟା ଉଠାଇଲେ । ସେ ସମସ୍ୟାର ସମାଧାନ ପାଇଁ ପରେ ସ୍ୱତନ୍ତ୍ର ଆଲୋଚନା କରିବା କଥା ସ୍ଥିର ହେଲା । ଶିକ୍ଷକମାନଙ୍କର ପାଠ୍ୟକ୍ରମ ବିଷୟରେ ଆଗ୍ରହ ଦେଖି ମୁଁ ଖୁସି ହେଲି ।

ଭଦ୍ରକ ସଦର ସର୍କଲରେ ଯୋଗ ଦେବା ପରେ ସର୍କଲର ପୂର୍ବତନ ସବ୍‌ଇନିସ୍ପେକ୍ଟରମାନଙ୍କ ବିଷୟରେ ମତାମତ ସଂଗ୍ରହ କଲି ମୁଖ୍ୟତଃ ଶିକ୍ଷକମାନଙ୍କ ଠାରୁ । ଜାଣିଲି ଯେ ଯେତେ ସବ୍‌ଇନିସ୍ପେକ୍ଟର ସଦର ସର୍କଲରେ କାମ କରିଛନ୍ତି କେହି ସୁନାମ ନେଇ ନାହାନ୍ତି । ସମସ୍ତଙ୍କ ବିରୁଦ୍ଧରେ ଶିକ୍ଷକମାନେ ଆପତ୍ତି କଲେ । ତାର କାରଣ ବିଷୟରେ ଅନୁସନ୍ଧାନ କରି ଜାଣିଲି ସଦର ସର୍କଲରେ ବହୁତ ମୁସଲମାନ ଶିକ୍ଷକ । ସେମାନଙ୍କ ସମସ୍ୟା ସବଇନିସ୍ପେକ୍ଟରମାନେ ବୁଝନ୍ତି ନାହିଁ । ବୁଝିଲେ ବି ସମାଧାନ ପାଇଁ କିଛି କାର୍ଯ୍ୟାନୁଷ୍ଠାନ କରନ୍ତି ନାହିଁ । ସେମାନଙ୍କର ମୁଖ୍ୟ ସମସ୍ୟା ହେଲା ତାଙ୍କର ପର୍ବ ପଡିବା ପୂର୍ବରୁ ତାଙ୍କୁ ଦରମା ଦେଇ ଦେଲେ ସେମାନେ ତାଙ୍କ ନିଜ ପାଇଁ ଓ ତାଙ୍କ ପିଲାଙ୍କ ପାଇଁ ନୂଆ

କୁର୍ତ୍ତା, ପାଇଜାମା, ଟୋପି ଓ ଝିଅଙ୍କ ପାଇଁ ପୋଷାକ ତିଆରି କରିବେ । ଦରମା ନ ପାଇଲେ ସେମାନେ ଟଙ୍କା ଋଣ କରି ପୋଷାକ ପତ୍ର ତିଆରି କରିବେ ଓ ସୁଧ ଗଣିବେ । ଅନ୍ୟ. ଯାହା ଅସୁବିଧା କଥା କହିଲେ ତାହା ହେଉଛି ସ୍କୁଲରେ ସ୍ଥାନାଭାବ, ନିମ୍ନ ଡେସ୍କ ଅଭାବ, ଉର୍ଦ୍ଦୁ ପାଠ୍ୟ ପୁସ୍ତକ ଅଭାବ ଇତ୍ୟାଦି ମୁଖ୍ୟ ଅସୁବିଧା । ପର୍ବ ପଡିବା ପୂର୍ବରୁ ଦରମା ଦେବା ସମସ୍ୟା ବିଷୟରେ ଡେପୁଟି ଇନିସ୍ପେକ୍ଟରଙ୍କ ସହିତ ଓ ଲୋକାଲ ବୋର୍ଡ ସ୍ପେଶାଲ ଅଫିସରଙ୍କ ସହିତ ଆଲୋଚନା କଲି । ସେମାନେ କହିଲେ ମାସ ଶେଷ ଆଡକୁ ତାଙ୍କ ପର୍ବ ପଡିଲେ ସେ ମାସର ଦରମା ଦେଇ ହେବ । ମାସ ଆରମ୍ଭରେ ପର୍ବହେଲେ ପୁର୍ବ ମାସର ଦରମା ସାମାନ୍ୟ ବିଳମ୍ବରେ ଦେଲେ ତାଙ୍କ ପର୍ବ ପାଳନରେ ସାହାଯ୍ୟ କରିବ । ଏ କଥା ମୁଁ ଶିକ୍ଷକମାନଙ୍କ ସହିତ ଆଲୋଚନା କଲି । ଏ ପ୍ରସ୍ତାବରେ ସେମାନେ ସଂପୂର୍ଣ୍ଣ ଏକମତ ହୋଇଗଲେ ।

ତାପର କାମ ହେଲା ସ୍କୁଲମାନଙ୍କର ପଢାପଢିରେ ଉନ୍ନତି ଆଣିବା । ସେଥିପାଇଁ ସବୁ ପ୍ରାଥମିକ ସ୍କୁଲ ପ୍ରଧାନ ଶିକ୍ଷକମାନଙ୍କର ଗୋଟିଏ ସଭା ଡକାଇଲି ? ସେମାନଙ୍କୁ କହିଲି, ସଦର ସର୍କଲ ପ୍ରତି କଥାରେ ଆଗୁଆ ରହିବାର କଥା । ଆମେ ଯଦି ପଛେଇ ଯିବା ଅନ୍ୟ ସର୍କଲ ମାନେ ଆମକୁ ନୀଚ ଦୃଷ୍ଟିରେ ଦେଖିବେ । ଅନ୍ତତଃ ପାଠପଢାରେ ଆମେ ଆଗରେ ରହିବା । ଏ ପ୍ରକାର କଥାରେ ଶିକ୍ଷକମାନେ ଉତ୍ସାହିତ ହୋଇଗଲେ । ଆମ ସ୍କୁଲମାନଙ୍କରେ ପାଠପଢାରେ ଉନ୍ନତି ହେଲା କି ନାହିଁ ଜାଣିବାର ଦୁଇଟି ଉପାୟ:- ପ୍ରଥମଟି ହେଲା ମୋର ପରିଦର୍ଶନ ସମୟରେ ମୁଁ ଦେଖିବି ପୂର୍ବ ପରିଦର୍ଶନ ବେଳେ ଯାହା ଦେଖା ଯାଇଥିଲା, ତା'ର ଉନ୍ନତି ହୋଇଛି କି ନାହିଁ, ଓ ଦ୍ୱିତୀୟଟି ହେଲା ଉଚ୍ଚ ପ୍ରାଥମିକ ବୃତ୍ତି ପରୀକ୍ଷାରେ ଆମେ କେତୋଟି ବୃତ୍ତି ନେଉଛନ୍ତି । ଏତିକି appeal କରିବାର ଚମତ୍କାର ଫଳ ଫଳିଲା । ଭଦ୍ରକ ସବ୍‌ଡିଭିଜନର ଭାଗ ଯେତୋଟି ବୃତ୍ତି, କେବଳ ସଦର ସର୍କଲ ସେଥିରୁ ଅଧା ନେଇଗଲା । ତା ଛଡା ମୋର ପରିଦର୍ଶନ ସମୟରେ ମୁଁ ଉନ୍ନତି ହୋଇଛି କି ନାହିଁ, ଯଦି ହୋଇଛି କେଉଁ ବିଷୟରେ ହୋଇଛି, ତାହା ମୁଁ ଦେଖିଲି । କେତୋଟି ନିର୍ଦ୍ଦିଷ୍ଟ ସ୍କୁଲ ପ୍ରତିବର୍ଷ ବୃତ୍ତି ନେଲେ । ବରପଦା, ଚଣ୍ଡି ଗାଁ, ବଙ୍କ , ଗେଲଟୁଆ, ଫ୍ରେଜର ବାଳିକା ଉଚ୍ଚ ପ୍ରାଥମିକ ସ୍କୁଲ ଗୁଡିକ ପ୍ରତିବର୍ଷ ଅନ୍ତତଃ ପକ୍ଷେ ଗୋଟିଏ ଉଚ୍ଚ ପ୍ରାଥମିକ ବୃତ୍ତି ନେଲେ । ଶିକ୍ଷକ ଶିକ୍ଷୟିତ୍ରୀମାନେ ଉତ୍ସାହିତ ହୋଇ କାମ କରିବାର ସୁଫଳ ପାଇଲେ । ଏଥିରେ ସେମାନଙ୍କର ଗର୍ବ ମୋର ବ ।

ସେତେବେଳେ ନିୟମ ଥିଲା ପ୍ରତି ସବ୍‌ଇନିସ୍ପେକ୍ଟର ମାସରେ ୨୧ ଦିନ ଗସ୍ତ କରିବେ । ସେଥିମଧ୍ୟରୁ ୧୦ ଦିନ ଗାଁ ମାନଙ୍କରେ Night halt କରି ସନ୍ଧ୍ୟାବେଳେ ଗ୍ରାମବାସୀମାନଙ୍କୁ ଡକାଇ ସଭା କରିବେ । ସେଠାରେ ସ୍କୁଲର ଭଲ ମନ୍ଦ ବିଷୟ ଆଲୋଚନା ସହିତ ସବୁ ପିଲାଙ୍କୁ ସ୍କୁଲକୁ ପଠାଇବାପାଇଁ ପ୍ରବର୍ତ୍ତାଇବେ। ଏବେ ବି ସେ ନିୟମ ବଳବତ୍ତର ଅଛି । କିନ୍ତୁ କାର୍ଯ୍ୟକାରୀ ହେଉନାହିଁ। ନିୟମ କାର୍ଯ୍ୟକାରୀ ହେଉଛି କି ନାହିଁ, ତାହା ବୁଝିବାକୁ କେହି ନାହିଁ । ନିୟମ ଖିଲାପ କରୁଥିବା ଅଫିସରଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ବି ନାହିଁ।

ପ୍ରତିସ୍କୁଲ ଛ ମାସରେ ଅନ୍ତତଃ ପକ୍ଷେ ଥରେ ପରିଦର୍ଶନ କରିବା ନିୟମ ସେବେ ଥିଲା, ଏବେ ବି ଅଛି । ସେତେବେଳେ ସବ୍‌ଇନିସ୍ପେକ୍ଟରମାନେ Tour Diary Form ପୂରଣ କରି ମାସ ଶେଷବେଳକୁ ଡେପୁଟି ଇନିସ୍‌ପେକ୍ଟରଙ୍କ ଅଫିସ୍‌ରେ ଦାଖଲ କରୁଥିଲେ । ତା ପର ମାସ ପ୍ରଥମ ସପ୍ତାହ ମଧ୍ୟରେ ଡେପୁଟି ଇନିସ୍ପେକ୍ଟର Tour Diary Check କରି ତାଙ୍କ ମନ୍ତବ୍ୟ ସହ ସବ୍‌ଇନିସ୍ପେକ୍ଟରଙ୍କୁ ଫେରାଉଥିଲେ । ଏ ପ୍ରକ୍ରିୟା ନିୟମିତ ଭାବରେ ଚାଲୁଥିଲା । ଏବେ ତ ପ୍ରାଥମିକ ସ୍କୁଲଗୁଡିକ ବର୍ଷକୁ ଥରେ ପରିଦର୍ଶିତ ହେଉନାହିଁ । ସବ୍‌ଇନିସ୍ପେକ୍ଟରମାନେ ୧୯୮୩ ମସିହାରୁ ବି.ଡି.ଓମାନଙ୍କ ଅଧୀନକୁ ଚାଲିଗଲା ପରେ ସେମାନେ ଅଧିକ ସମୟ ବ୍ଲକ୍ କାମରେ ବ୍ୟସ୍ତ ରହୁଛନ୍ତି । ସେମାନଙ୍କ Tour Diary ଉପରେ ଆଉ ଗୁରୁତ୍ୱ ନାହିଁ । ଶିକ୍ଷା ବିଭାଗ ଅଫିସରମାନେ ସବ୍‌ଇନିସ୍ପେକ୍ଟରଙ୍କ କାମ ତଦାରଖ କରୁନାହାଁନ୍ତି । ସେମାନଙ୍କର ପ୍ରକୃତ ମାଲିକ କିଏ ତାହା ସ୍ଥିର ହୋଇପାରି ନାହିଁ। ବି.ଡି.ଓମାନେ ପୂରା ଦମ୍‌ରେ ସବ୍‌ଇନିସ୍ପେକ୍ଟରଙ୍କର କାର୍ଯ୍ୟକ୍ରମ ନିୟନ୍ତ୍ରଣ କରୁଛନ୍ତି । ଶିକ୍ଷାବିଭାଗର କର୍ତ୍ତୃତ୍ୱ ସବ୍‌ଇନସ୍ପେକ୍ଟରମାନଙ୍କ ଉପରେ ଅଛି କି ନାହିଁ, ଥିଲେ ତାହା କେତେ ସେ ବିଷୟରେ ନିଷ୍ପତ୍ତି ନେବାକୁ ସରକାରଙ୍କର ଆଗ୍ରହ ନାହିଁ। ସବ୍‌ଇନିସ୍ପେକ୍ଟରମାନଙ୍କର ପୂର୍ବରୁ ଯେଉଁ Job Chart ଥିଲା ତାହା କାର୍ଯ୍ୟକାରୀ ହେଉ ନାହିଁ କି ନୂଆ Job Chart ପ୍ରସ୍ତୁତ କରାଯାଉ ନାହିଁ । ଏକ ପ୍ରକାର ଅରାଜକତା ଚାଲିଛି । ଅସାଧୁ, କର୍ତ୍ତବ୍ୟପରାୟଣ ହୋଇ ନ ଥିବା ସବ୍‌ଇନିସ୍ପେକ୍ଟରମାନେ ଏ ପ୍ରକାର ପରିସ୍ଥିତିର ସୁଯୋଗ ନେଇ କାମ କରୁନାହାନ୍ତି ।

୧୯୬୦ ମସିହାରେ ଯେତେବେଳେ ଜିଲ୍ଲା ପରିଷଦ ଅଧୀନକୁ ପ୍ରାଥମିକ ଶିକ୍ଷା ଚାଲିଯାଇଥିଲା, ସେତେବେଳେ ବି.ଡି.ଓମାନେ ସବ୍‌ଇନିସ୍ପେକ୍ଟରମାନଙ୍କ ଉପରେ ତାଙ୍କ କର୍ତ୍ତୃତ୍ୱ ଜାହିର କରିବାକୁ ଆଗଭର ହୋଇଥିଲେ । ଏହି ପ୍ରକାର ଅରାଜକତା ଦେଖା ଦେଇଥିଲା । ସେତେବେଳେ ମୁଁ ସବ୍‌ଇନିସ୍ପେକ୍ଟର ଥିଲି । ଅରାଜକତାର ମୁଁ ନିଜେ ଭୁକ୍ତଭୋଗୀ । ଜିଲ୍ଲା ପରିଷଦ ଆଇନ୍ ଅକାମି ହୋଇଯିବାରୁ ପରିସ୍ଥିତି ସୁଧୁରି ଯାଇଥିଲା ।

ନିୟମିତ ପରିଦର୍ଶନରେ ଅବହେଳା ଯୋଗୁଁ ଶିକ୍ଷାର ଗୁଣାତ୍ମକ ମାନ ବହୁ ତଳକୁ ଖସିଗଲାଣି । ସଙ୍ଗତି ସଂପନ୍ନ ଲୋକମାନେ ତାଙ୍କ ପିଲାଙ୍କୁ ସରସ୍ୱତୀ ବିଦ୍ୟାମନ୍ଦିର, କିମ୍ବା ଇଂରାଜି ମାଧମ ସ୍କୁଲ ବା ଅନ୍ୟ କୌଣସି ସ୍କୁଲରେ ଅଧିକ ଟଙ୍କା ଦେଇ ପଢାଇବାକୁ ପସନ୍ଦ କରୁଛନ୍ତି । ଯାହାର ଟଙ୍କା ନାହିଁ ସେ ବାଧ୍ୟ ହୋଇ ସରକାରୀ ପ୍ରାଥମିକ ସ୍କୁଲରେ ପିଲାଙ୍କୁ ପଢାଉଛନ୍ତି।

ମୁଁ ସଦର ସବ୍‌ଇନିସ୍ପେକ୍ଟର ହୋଇଥିବାରୁ ମୋ ପାଇଁ ନିୟମ ଅନ୍ୟ ପ୍ରକାର ଥିଲା । ଯେତେଦିନ ମୁଁ ଡେପୁଟି ଇନିସ୍ପେକ୍ଟରଙ୍କ ଅଫିସରେ କାମ କରିବି ସେତେଅଧଦିନ ଲେଖାଁଏ ଗସ୍ତ ବାବଦକୁ ହିସାବ ହେବ । ଅନ୍ୟ ସ୍କୁଲ ସବ୍‌ଇନିସ୍ପେକ୍ଟରମାନେ ଯେତେ ଦିନ ଗସ୍ତ କରିବେ ତାର ଅଧାଦିନ ସଦର ସବ୍‌ଇନସ୍ପେକ୍ଟର କରିବେ । ସେଇ ଅନୁସାରେ Night halt ହିସାବ । କିନ୍ତୁ ପ୍ରତି ସ୍କୁଲ ବର୍ଷକୁ ଦୁଇଥର ପରିଦର୍ଶନ କରିବାରେ ରିହାତି ନାହିଁ । ମୁଁ ପ୍ରତିମାସ ୧୦ ଦିନ ସ୍କୁଲ ପରିଦର୍ଶନ ଓ ପାଞ୍ଚ ଗୋଟି Night halt କରେ । ପ୍ରତି ଛ ମାସରେ ପ୍ରତି ସ୍କୁଲ ପରିଦର୍ଶନ କରେ । ପରିଦର୍ଶନ ସମୟରେ ଶିକ୍ଷକମାନଙ୍କ ସହିତ ଆଲୋଚନା ଗ୍ରାମବାସୀଙ୍କ ସହିତ ସ୍କୁଲର ସମସ୍ୟା, ଅଭାବ, ଅସୁବିଧା, ଶିକ୍ଷକଙ୍କର ଅସୁବିଧା ବିଷୟରେ କଥାବାର୍ତ୍ତା କରେ ।

## ୨.୪ ଚଣ୍ଡିଗାଁ ସ୍କୁଲ କଥା

ମୁଁ ସଦର ସବ୍‌ଇନ୍ସପେକ୍ଟର ଭାବରେ ଯୋଗ ଦେବା ଦିନ ଠାରୁ ଚଣ୍ଡିଗାଁ ଉଚ୍ଚ ପ୍ରାଥମିକ ସ୍କୁଲ ଓ ତାର ପ୍ରଧାନ ଶିକ୍ଷକ ମହେଶ୍ୱର ପରିଡାଙ୍କ ବିରୁଦ୍ଧରେ ବେନାମି ଦରଖାସ୍ତ ପାଇଲି । କେହି କେହି ଲୋକ ବି କହିଲେ ଚଣ୍ଡଗାଁ ଉଚ୍ଚ ପ୍ରାଥମିକ ସ୍କୁଲ ପ୍ରଧାନ ଶିକ୍ଷକ ମହେଶ୍ୱର ପରିଡା ସ୍କୁଲରେ ରହନ୍ତି ନାହିଁ କି ପାଠ ପଢାନ୍ତି ନାହିଁ । ସେ ସବୁଦିନେ ଭଦ୍ରକ କଚେରୀରେ ଟାଉଟରି କରନ୍ତି । ସତ୍ୟାସତ୍ୟ

ଜାଣିବା ପାଇଁ ମୁଁ ସିଧା ଘରୁ ବାହାରି ଚଣ୍ଡିଗାଁ ଉଚ୍ଚ ପ୍ରାଥମିକ ସ୍କୁଲରେ ପହଞ୍ଚିଲି । ଦେଖିଲି ମହେଶ୍ୱର ପରିଡା ଉପସ୍ଥିତ ଥାଇ ପାଠ ପଢାଉଛନ୍ତି । ସ୍କୁଲ ପରିଦର୍ଶନ କରି ଦେଖିଲି ପିଲାମାନଙ୍କର ପାଠ ପଢାର ମାନ ବେଶ୍ ଭଲ । ପ୍ରଶ୍ନ ପଚାରିଲା କ୍ଷଣି ପିଲାମାନେ ଉତ୍ତର ଦେଉଛନ୍ତି । ଏହିପରି ଭାବରେ ମାସେ ଦେଢ ମାସ ବ୍ୟବଧାନରେ ତିନିଥର ତାଙ୍କ ସ୍କୁଲ ପରିଦର୍ଶନ କଲି । ପ୍ରିତଥର ଦେଖିଲି ମହେଶ୍ୱର ପରିଡା ଉପସ୍ଥିତ ଥାଇ ପାଠ ପଢାଉଛନ୍ତି । ତା ବ୍ୟତୀତ ସ୍କୁଲ ପ୍ରତିବର୍ଷ ଉଚ୍ଚ ପ୍ରାଥମିକ ବୃତ୍ତି ପାଉଛି । ତୃତୀୟ ଥର ପରିଦର୍ଶନ ପରେ ସେଇ ସ୍କୁଲରେ ରାତିରେ ରହିଲି । ଲୋକମାନଙ୍କ ସହ  ଆଲୋଚନା କଲି । କେହି ମହେଶ୍ୱର ପରିଡାଙ୍କ ବିରୁଦ୍ଧରେ କିଛି କହିଲେ ନାହିଁ । ମହେଶ୍ୱର ପରିଡାଙ୍କୁ ଏକାନ୍ତରେ ପଚାରିଲି ଓ ବେନାମୀ ଦରଖାସ୍ତ ମଧ୍ୟ ଦେଖାଇଲି । ସେ କହିଲେ , " ଆପଣ ମୋ ବିଷୟରେ ଯାହା ଶୁଣିଛନ୍ତି ତାହା ଠିକ୍ । ମୁଁ ଭଦ୍ରକ କଚେରୀକୁ ଅଧିକାଂଶ ଦିନ ଯାଉଥିଲି ।" ମୁଁ କହିଲି, ମୋର "ତିନିଥର ପରିଦର୍ଶନରେ ମୁଁ ତୁମକୁ ଏଇଠି ଦେଖିଲି ।" ସେ କହିଲେ, " ତାହା ବି ଠିକ୍ । ଯେଉଁଦିନୁ ଆପଣ ସଦର ସବ୍‌ଇନ୍‌ସ୍ପେକ୍ଟର ଭାବରେ ଯୋଗ ଦେଲେ ସେଇ ଦିନଠାରୁ ମୁଁ ସ୍କୁଲରେ ରହୁଛି ଓ ଆପଣ ଥିବା ପର୍ଯ୍ୟନ୍ତ ମୁଁ ମୋର କର୍ତ୍ତବ୍ୟ ନିୟମିତ ଭାବରେ କରିବି । ମୁଁ ଜାଣେ ଆପଣଙ୍କ ପାଖରେ କର୍ତ୍ତବ୍ୟରେ ଅବହେଳା ଚଳିବ ନାହିଁ ।

ମୁଁ ବେନାମୀ ଦରଖାସ୍ତ କଥା ଉଠାଇଲି ଓ ପଚାରିଲି, " ଆପଣଙ୍କ ଗାଁ ଲୋକେ ଆପଣଙ୍କ ବିରୁଦ୍ଧରେ କିଛି କହିଲେ ନାହିଁ । ଏବେ ବେନାମୀ ଦରଖାସ୍ତ ଆସୁଛି କାହିଁକି ?" ସେ କହିଲେ, " ଆମ ଗାଁରେ ରମାନାଥ ନାୟକ ନାମରେ ଜଣେ ଶିକ୍ଷକ ଅଛନ୍ତି । ସେ ରାହାଞ୍ଜ ସ୍କୁଲରେ ଶିକ୍ଷକତା କରନ୍ତି । ତାଙ୍କର କାମ ହେଉଛି ସମସ୍ତଙ୍କ ବିରୁଦ୍ଧରେ ବେନାମୀ ଦରଖାସ୍ତ ଲେଖି ପଠାଇବା, ବିଭିନ୍ନ ବିଷୟରେ ସେ କଲେକ୍ଟରଙ୍କୁ, ଆପଣଙ୍କୁ ଓ ଅନ୍ୟାନ୍ୟ ବଡ ହାକିମମାନଙ୍କ ପାଖକୁ ଦରଖାସ୍ତ ପଠାନ୍ତି । ଏ କଥା ଏ ଅଞ୍ଚଳରେ ସମସ୍ତେ ଜାଣନ୍ତି ।" ମୁଁ ପୁଣି ପଚାରିଲି " ଆପଣଙ୍କ ସ୍କୁଲ ପ୍ରତିବର୍ଷ ଉଚ୍ଚ ପ୍ରାଥମିକ ବୃତ୍ତି ପାଉଛି କେମିତି ?" ସେ କହିଲେ, " ଆମ ସ୍କୁଲର ଦ୍ୱିତୀୟ ଶିକ୍ଷକ ରାମଚନ୍ଦ୍ର ପଣ୍ଡା ଜଣେ କର୍ତ୍ତବ୍ୟନିଷ୍ଠ ଆଦର୍ଶ ଶିକ୍ଷକ । ତାଙ୍କ ପରିଶ୍ରମ ଓ ଉଦ୍ୟମ ଫଳରେ ଆମ ସ୍କୁଲ ପ୍ରତିବର୍ଷ ଉଚ୍ଚ ପ୍ରାଥମିକ ବୃତ୍ତି ପାଉଛି । ତାଙ୍କୁ ସାହାଯ୍ୟ କରିବାକୁ ଦିବାକର ସାହୁ ନାମରେ ଆଉ ଜଣେ ଶିକ୍ଷକ ଅଛନ୍ତି । ତା ବ୍ୟତୀତ ମୁଁ ଯୁଆଡେ ଗଲେ ମଧ୍ୟ ସ୍କୁଲ ଉପରେ ସବୁବେଳେ ନଜର ରଖିଥାଏ ।

ରାମଚନ୍ଦ୍ର ପଣ୍ଡାଙ୍କ ସହିତ ଆଲୋଚନା କରି ଜାଣିଲି ତାଙ୍କ ଘର ଦୋଳସାହି ନିକଟ ଜିତାନଗା । ସେଠାକାର ଜମି ଭାରି ଦାମିକା । ତାଙ୍କର ଏକ ଏକର ଜମି ସେ ଜିତାନଗା ସ୍କୁଲକୁ ଦାନ କରି ଦେଇଛନ୍ତି । ତାଙ୍କର ପୁଅ, ବୋହୂ, ନାତି, ନାତୁଣି ସବୁ ଅଛନ୍ତି । କିନ୍ତୁ ସେ ଘରକୁ କେବେ ନ ଯାଇ ସ୍କୁଲରେ ରହି ପିଲାଙ୍କ ପାଠପଢାରେ ଲାଗିଥାନ୍ତି । ମୋର ପରିଦର୍ଶନ ମନ୍ତବ୍ୟରେ ମୁଁ ତାଙ୍କର ଅବଦାନ ବିଷୟରେ ଉଲ୍ଲେଖ କରିଛି । ମୋର ପରିଦର୍ଶନ ମନ୍ତବ୍ୟ ତାଙ୍କୁ ଆହୁରି ଉତ୍ସାହିତ କରିଛି ।

କହିବା ବାହୁଲ୍ୟ ଯେ ମହେଶ୍ୱର ପରିଡାଙ୍କ ଉଦ୍ୟମରେ ଚଣ୍ଡିଗାଁ ରେ ଗୋଟିଏ ମଧ୍ୟ ଇଂରାଜି ସ୍କୁଲ ଓ ହାଇସ୍କୁଲ ପ୍ରତିଷ୍ଠିତ ହୋଇଛି ।

## ୨.୫ ବିଶ୍ୱନାଥପୁରର ବିଶ୍ୱନାଥ ଦାସ

ଚଣ୍ଡିଗାଁ ନିକଟରେ ବିଶ୍ୱନାଥପୁର ନାମରେ ଗୋଟିଏ ଗାଁରେ ସ୍ପେଶାଲ ପ୍ରାଥମିକ ସ୍କୁଲଟିଏ ଖୋଲିଥିଲା । ପ୍ରାଥମିକ ଶିକ୍ଷାର ସାର୍ବଜନୀନିକରଣ ଯୋଜନାରେ ସେତେବେଳେ ସ୍ପେଶାଲ ପ୍ରାଥମିକ ସ୍କୁଲ ଖୋଲା ଯାଉଥିଲା । ସେଇ ଯୋଜନାରେ ବିଶ୍ୱନାଥପୁରରେ ଗୋଟିଏ ପ୍ରାଥମିକ ସ୍କୁଲ ଖୋଲିଥିଲା ଓ ବିଶ୍ୱନାଥ ଦାସ ନାମରେ ଜଣେ ଶିକ୍ଷକ ସେଠାରେ ନିଯୁକ୍ତି ପାଇଥିଲେ । ମୁଁ ସେ ସ୍କୁଲ ପରିଦର୍ଶନରେ ଯାଇ ଦେଖିଲି ଯେ ପିଲାମାନେ କିଛି ପାଠ ପଢିନାହାନ୍ତି । ପ୍ରାଥମିକ ସ୍କୁଲର ପାଠ୍ୟକ୍ରମ ବିଷୟରେ ଶିକ୍ଷକଙ୍କର କିଛି ଧାରଣା ନାହିଁ । କ'ଣ କ'ଣ ପଢା ଯିବାର କଥା ସେ କଥା ମଧ୍ୟ ଶିକ୍ଷକ ଜାଣି ନାହାନ୍ତି । ବିଶ୍ୱନାଥଙ୍କୁ ପଚାରିଲି, ପିଲାମାନେ କିଛି ଶିଖି ନାହାନ୍ତି । ତମେ କ'ଣ ପାଠ ପଢାଇଛ ? ସ୍କୁଲର କେବଳ ଚାଳ ଘର ଖଣ୍ଡିଏ ଅଛି । ଶିକ୍ଷକଙ୍କ ପାଇଁ ଟେବୁଲ ଚେୟାର ଅଛି । ପିଲାମାନଙ୍କ ପାଇଁ ଆଠ ଦଶଖଣ୍ଡ ନିମ୍ନ ଡେସ୍କ ଅଛି । ସ୍କୁଲରେ ସିଲାବସ୍ ନାହିଁ । ଅନ୍ୟ ରେକର୍ଡ ପତ୍ର ନାହିଁ । କେବଳ ଶିକ୍ଷକ ଉପସ୍ଥାନ ଓ ଛାତ୍ର ଉପସ୍ଥାନ ବହି ଅଛି । ସ୍କୁଲର ଏ ଦୟନୀୟ ଅବସ୍ଥା ଦେଖି ମୁଁ ବିସ୍ମିତ ହେଲି । ବୁଝାବୁଝି କରିବାରୁ ଜଣାଗଲା ଯେ ବିଶ୍ୱନାଥ କେଉଁଠୁ ଗୋଟେ ଜାଲ୍ ଅଷ୍ଟମ ଶ୍ରେଣୀ ସାର୍ଟିଫିକେଟ୍ ଯୋଗାଡ କରି ତଫସିଲ ଭୁକ୍ତ ଜାତି ହୋଇଥିବାରୁ ଚାକିରିରେ ଭର୍ତ୍ତି ହୋଇଯାଇଚି । ଡେପୁଟି ଇନ୍‌ସ୍ପେକ୍ଟର ଚଣ୍ଡିଗାଁ ମାଇନର ସ୍କୁଲ ମଞ୍ଜୁର କରିବା ପୂର୍ବରୁ ପରିଦର୍ଶନରେ ଆସିଥିଲେ । ତାଙ୍କ ସହିତ ମୁଁ ଥିଲି । ଫେରିଲା ବେଳେ ବିଶ୍ୱନାଥପୁର ସ୍ପେଶାଲ ପ୍ରାଥମିକ ସ୍କୁଲ ଭିତରେ ପଶିଗଲୁ । ଦେଖିଲୁ

ଶିକ୍ଷକଙ୍କ ଛତା ଓ ଜୋତା ସେଠାରେ ଅଛି । ପିଲା ନାହାନ୍ତି କି ଶିକ୍ଷକ ବି ନାହାନ୍ତି । ଛତା ଜୋତା ଦେଖି ମୁଁ ଜାଣିଲି ସେଇ ପାଖରେ କେଉଁଠି ଶିକ୍ଷକ ଥିବେ । ଚାରିପଟେ ବୁଲି ଆସିଲା ବେଳକୁ ଦେଖିଲି, ପାଖ ରୁମରେ କିଛି ଟାଇଲ୍ ଥୁଆ ଯାଇଛି । ସେଇ ପାଖରେ ଶିକ୍ଷକ ଶୋଇଛନ୍ତି । ତାଙ୍କୁ ଡାକି ଆଣିଲି । ପଚାରିଲି ପିଲାମାନେ କୁଆଡେ ଗଲେ ? ଶିକ୍ଷକ କହିଲେ, "ଛୁଟି କରି ଦେଇଛି ।" ଶିକ୍ଷକ ଉପସ୍ଥାନ ବହି ଦେଖିଲୁ । ସେଥିରେ ଲେଖା ଅଛି, "Rain day" ଶିକ୍ଷକଙ୍କୁ ପଚାରିଲୁ, ପାଗ ତ ଭଲ ଅଛି "Rain day" ଲେଖିଛ କାହିଁକି ? ଶିକ୍ଷକ କିଛି କହିଲେ ନାହିଁ । ମୁଁ ଡେପୁଟି ଇନ୍‌ସ୍ପେକ୍ଟରଙ୍କୁ ସବୁ କଥା କହିବାରୁ ଡେପୁଟି ଇନ୍‌ସ୍ପେକ୍ଟର ତାଙ୍କୁ ଆମ ସହିତ ଭଦ୍ରକ ଯିବାକୁ କହିଲେ, ତାଙ୍କୁ ପରୀକ୍ଷା କରିବାକୁ ଡେପୁଟି ଇନ୍‌ସ୍ପେକ୍ଟର କହିଲେ । ତାଙ୍କୁ ଦୁଇଟି ପ୍ରଶ୍ନ ଦିଆଗଲା, ପ୍ରଥମ "ଗାଈ"ବିଷୟରେ ଗୋଟିଏ ରଚନା ଲେଖ ଓ ଦ୍ୱିତୀୟ ପ୍ରଶ୍ନ, ଦ୍ୱିତୀୟ ଶ୍ରେଣୀ ଗଣିତ ବହିରୁ ଯେ କୌଣସି ଦୁଇଖଣ୍ଡ ଅଙ୍କ କର । ସେ ଗାଈ ବିଷୟରେ ଅଧ ପୃଷ୍ଠାଏ ରଚନା ଲେଖିଲେ ଓ ଦ୍ୱିତୀୟ ଶ୍ରେଣୀ ଅଙ୍କ ବହିରୁ ଖଣ୍ଡିଏ ବି ଅଙ୍କ କରିପାରିଲେ ନାହିଁ । ଯେଉଁ ରଚନାଟି ଅଧ ପୃଷ୍ଠାରେ ଲେଖିଥିଲେ ସେଥିରେ ୩୨ ଟି ବନାନ୍ ଭୁଲ ଥିଲା । ବିଷୟ ବସ୍ତୁ କଥା ଛାଡ । ତେଣୁ ଆମେ ତାଙ୍କୁ ଚାକିରିରୁ ବାହାର କରିଦେବା ପାଇଁ କଥାବାର୍ତ୍ତା ହେଲୁ ଓ ତା'ର ସାର୍ଟିଫିକେଟ୍ ମାଗିଲୁ ।

ବିଶ୍ୱନାଥ ଘର ଓଡିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ଗାଁ ଆଗର ପଡାରେ । ସେ ଯାଇ ମହତାବଙ୍କ ପାଖରେ ଫେରାଦ ହେଲା । ମହତାବ ଭଦ୍ରକ ଗସ୍ତ ସମୟରେ ମତେ ଡକାଇଲେ ଓ କହିଲେ, "ବିଶୁକୁ ଚାକିରିରୁ ବାହାର କରି ଦେଉଛ କାହିଁକି ? ସେ ଆମ ଗାଁ ପିଲା ।" ମୁଁ କହିଲି , " ସେ ପାଠ ପଢି ନାହିଁ । କୋଉଠୁ ଗୋଟେ ଜାଲ ଅଷ୍ଟମ ଶ୍ରେଣୀ ସାର୍ଟିଫିକେଟ୍ ଯୋଗାଡ କରି ଆଣିଛି । ସେଇ ସାର୍ଟିଫିକେଟ୍ ବଳରେ ସେ ଚାକିରି କରିଛି । ସେ ପିଲାଙ୍କୁ ପାଠ ପଢାଇବ କେମିତି ? ମହତାବ କହିଲେ, "ତାଙ୍କୁ ଋକିରୀ ଦେଇଥିଲ କାହିଁକି ? ସେ ଚାକିରିରେ ରହିବ ।" ମୁଁ ହଁ ମାରି ଚାଲି ଆସିଲି । ଡେପୁଟି ଇନ୍‌ସ୍ପେକ୍ଟରଙ୍କୁ କହି ତାଙ୍କୁ ମହତାବଙ୍କ ମାଙ୍କ ନାଁରେ ହୋଇଥିବା ତୋଫା ବିବି ବାଳିକା ଉଚ୍ଚ ପ୍ରାଥମିକ ସ୍କୁଲରେ ପୋଷ୍ଟିଂ କରିଦେଲୁ । ମହତାବ ଯେତେବେଳେ ତା ପରେ ଆଗରପଡା ଗଲେ, ଲୋକେ ତାଙ୍କୁ କହିଲେ, "ଏ ବିଶୁଆ ପାଠ ପଢିଛି ? ତାଙ୍କୁ ଏଠିକି ଆପଣ ଆଣିଛନ୍ତି ବୋଲି ସେ କହୁଛି । ସେ ପାଠ ପଢାଇ ପାରିବ ?" ତା ପରେ ମହତାବ ଭଦ୍ରକ ଗସ୍ତ ସମୟରେ ମତେ

ଡାକି କହିଲେ, " ସେ ବିଶୁଆକୁ ଶେଷକୁ ଆମରି ସ୍କୁଲକୁ ପଠାଇଲ। ତାକୁ ଶୀଘ୍ର ଧାମନଗର କି ଚାନ୍ଦବାଲି ଆଡେ ବଦଳି କର। ଆମେ ତାକୁ କୋଠାର ସର୍କଲକୁ ବଦଳି କରିଦେଲୁ।

## ୨.୬ ଶତ୍ରୁଘ୍ନ ନାଥଙ୍କ ଗାଁ - ଉତ୍ତରବାହିନୀ ସ୍କୁଲ କଥା

ବିଶିଷ୍ଟ ଶିକ୍ଷାବିତ୍ ଶତ୍ରୁଘ୍ନ ନାଥଙ୍କ ଗାଁ ହେଉଛି ଉତ୍ତର ବାହିନୀ, ଭଦ୍ରକଠାରୁ ୩ । ୪ କିଲୋମିଟର ଦୂର। ସେ ମଝିରେ ମଝିରେ ଗାଁକୁ ଆସନ୍ତି। ଦିନେ ମୁଁ ଅଫିସରେ ପହଞ୍ଚିଲା ବେଳକୁ ଶତ୍ରୁଘ୍ନ ବାବୁ ଡେପୁଟି ଇନ୍ସପେକ୍ଟର ଅଫିସରେ ବସିଛନ୍ତି। ମୁଁ ତାଙ୍କୁ ବେସିକ୍ ଟ୍ରେନିଂ କଲେଜ, ଅନୁଗୁଳର ପ୍ରିନ୍ସିପାଲ ବୋଲି ଜାଣେ। ଆଗରୁ ତାଙ୍କୁ କେବେ ଦେଖି ନଥିଲି । ସେ ଦିନ ଦେଖିଲି। ସାଧାସିଧା ଲୋକଟିଏ। ଆଣ୍ଠୁଲୁଚା ଖଦଡ ଧୋତିଟିଏ ଓ ପଞ୍ଜାବୀଟିଏ ପିନ୍ଧିଛନ୍ତି। ତାଙ୍କୁ ଗାଁ ଲୋକେ ପଠାଇଥିଲେ ତାଙ୍କ ଗାଁ ମାଷ୍ଟ୍ରଙ୍କୁ ବଦଳି କରାଇବାକୁ। ମୁଁ ଯେତେବେଳେ ତାଙ୍କୁ ଅଫିସ ଆସିବାର କାରଣ ପଚାରିଲି, ସେ ଶିକ୍ଷକଙ୍କ ବଦଳି କଥା କହିଲେ ନାହିଁ। କହିଲେ, " ଆମ ଗାଁ  ସ୍କୁଲଟା ଟିକିଏ ଆପଣ ଦେଖିବେ। ସ୍କୁଲଟା କାହିଁକି ଉନ୍ନତି କରୁନାହିଁ। ଆପଣ ଦେଖିଲେ ଜାଣିପାରିବେ । ମୁଁ ଗଲି। ଦେଖିଲି ପିଲା ସଂଖ୍ୟା ବିଗତ ପାଞ୍ଚ ବର୍ଷ ଧରି ୫୧ । ଶିକ୍ଷକଙ୍କୁ ପଚାରିଲି "ଏ ଅଞ୍ଚଳରେ ଆଉ ପିଲା ନାହାନ୍ତି ?"ଶିକ୍ଷକମାନେ କହିଲେ, "ବହୁତ ଅଛନ୍ତି। କିନ୍ତୁ ତାଙ୍କ ନାଁ କାହିଁକି ଲେଖାଇବୁ? ୫୧ ଜଣ ପିଲାଙ୍କୁ ଦୁଇ ଜଣ ଶିକ୍ଷକ ରହିବାର କଥା । ଆମେ ଦୁଇ ଜଣ ଶିକ୍ଷକ ଅଛୁ। ତେଣୁ ୫୧ ପିଲା ରଖିଛୁ।" ମୁଁ ଭୀଷଣ ବିରକ୍ତ ହୋଇ କହିଲି, "ଭାରତ ସରକାର ତଥା ଓଡିଶା ସରକାର ସାର୍ବଜନୀନ ପ୍ରାଥମିକ ଶିକ୍ଷା ପାଇଁ ବ୍ୟାକୁଳ ହେଉଛନ୍ତି। ସଂବିଧାନର ନିର୍ଦ୍ଦେଶ ଅନୁସାରେ ୧୯୬୦ ମସିହା ସୁଦ୍ଧା ୧୪ ବର୍ଷ ବୟସର ସବୁ ପିଲାଙ୍କୁ ସ୍କୁଲକୁ ଆଣିବାର କଥା। ଆପଣମାନେ ଏଠି ପିଲାଙ୍କୁ ଶିକ୍ଷାରୁ ବଞ୍ଚିତ କରୁଛନ୍ତି ? ଏ ଅଞ୍ଚଳରେ ଯେତେ ପିଲା ଅଛନ୍ତି ସମସ୍ତଙ୍କ ନାଁ ସ୍କୁଲରେ ଲେଖାନ୍ତୁ। ଯେତେ ଶିକ୍ଷକ ଦରକାର ମୁଁ ଦେବି।" ୧୫ ଦିନ ଭିତରେ ୧୦୦ ପିଲାଙ୍କ ନାଁ ଲେଖା ହୋଇଗଲା। ସେଥିପାଇଁ ଅଧିକ ଦୁଇ ଜଣ ଶିକ୍ଷକ ତାଙ୍କୁ ଦିଆଗଲା। ସେଠାରେ ତା' ପର ବର୍ଷ ଚତୁର୍ଥ ଶ୍ରେଣୀ ଖୋଲିବାକୁ ମଧ୍ୟ ମୁଁ ପରିଦର୍ଶନ ମନ୍ତବ୍ୟରେ ଲେଖି ଦେଇ ଆସିଲି। ଗାଁ ଲୋକମାନେ ଆସି ମୋ ପାଖରେ ଶିକ୍ଷକମାନଙ୍କ ଅବହେଳା ବିଷୟରେ କହିଲେ, ଗାଁ ଲୋକଙ୍କ ଆପତ୍ତି ଯୋଗୁ ମୁଁ ପୁରୁଣା ଶିକ୍ଷକ ଦୁଇ

ଜଣଙ୍କୁ ବଦଳି କରିଦେଲି ।

ସେତେବେଳେ ଆବଶ୍ୟକତା ଅନୁଯାୟୀ ଛାତ୍ରଛାତ୍ରୀ ସଂଖ୍ୟା ବିଚାରରେ ଅଧିକ ଶିକ୍ଷକ ଡେପୁଟି ଇନିସ୍ପେକ୍ଟର ମଞ୍ଜୁର କରୁଥିଲେ । ମୁଁ ଶିକ୍ଷକ ମଞ୍ଜୁର ଦାୟିତ୍ୱରେ ଥିଲି । ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବାକୁ ସେତେବେଳେ ସମସ୍ତେ ବ୍ୟାକୁଳ । ସଂବିଧାନରେ ଯେଉଁ ଦଶ ବର୍ଷ ଭିତରେ ପ୍ରାଥମିକ ଶିକ୍ଷା ସାର୍ବଜନୀନ ହେବା ପାଇଁ ତାରିଖ ଧାର୍ଯ୍ୟ ହୋଇଥିଲା ସେତେବେଳେ ତାହା ଶେଷ ହୋଇ ଆସୁଛି । କିନ୍ତୁ ଶିକ୍ଷକମାନଙ୍କ ଠାରେ କୌଣସି ବ୍ୟଗ୍ରତା ନାହିଁ । କାରଣ ସେମାନେ ସଂବିଧାନ ବ୍ୟବସ୍ଥା ବିଷୟରେ ଅବଗତ ନୁହନ୍ତି ।

ଉତ୍ତରବାହିନୀ ସ୍କୁଲରୁ ଶିକ୍ଷା ଲାଭ ପରେ ମୁଁ ଅନ୍ୟ ସବୁ ସ୍କୁଲରେ ସେହି ନୀତି ପ୍ରୟୋଗ କଲି । କେଶପୁର, ରାନ୍ଧିଆ, କୁଆଁସ, ଚଢେଇୟା ପ୍ରଭୃତି ସ୍କୁଲ ଗୁଡିକର ଛାତ୍ରଛାତ୍ରୀ ସଂଖ୍ୟା ବଢିବା ସହିତ ସେଠାରେ ଚତୁର୍ଥ ଓ ପଞ୍ଚମ ଶ୍ରେଣୀ ଖୋଲାଗଲା । ଉତ୍ତର ବାହିନୀ ପ୍ରାଥମିକ ସ୍କୁଲ ଉଚ୍ଚ ପ୍ରାଥମିକ, ମଧ୍ୟ ଇଂରାଜି ଓ ଶେଷରେ ହାଇସ୍କୁଲକୁ ଉନ୍ନୀତ ହୋଇ ଯାଇଛି । ଏ ସବୁର ମୂଳଦୁଆ ଶତ୍ରୁଘ୍ନବାବୁ ଦେଇଥିଲେ ବୋଲି କହିଲେ ଭୁଲ ହେବ ନାହିଁ । ଶତ୍ରୁଘ୍ନବାବୁ ଯଦି ଶିକ୍ଷକମାନଙ୍କୁ ବଦଳି କରିବା କଥା କହିଥାନ୍ତେ, ଶିକ୍ଷକମାନେ ବଦଳି ହୋଇଥାନ୍ତେ । କିନ୍ତୁ ସ୍କୁଲର ଯେଉଁ କ୍ରମୋନ୍ନତି ହେଲା ସେତିକି ହୋଇ ନଥାନ୍ତା । ଏହା ହିଁ ଶତ୍ରୁଘ୍ନ ବାବୁଙ୍କ ବିଶେଷତ୍ୱ । ତାଙ୍କର କାର୍ଯ୍ୟ ଅଧିକ ସୃଜନାତ୍ମକ ଓ ରଚନାତ୍ମକ ।

## ୨.୭ ଗେଲଟୁଆ ଉପାଖ୍ୟାନ

ଶିକ୍ଷାବର୍ଷ ଆରମ୍ଭ ହେଲା କ୍ଷଣି ଶିକ୍ଷକମାନଙ୍କର ଧାଡି ଛୁଟେ । ସମସ୍ତଙ୍କର ଗୋଟିଏ ଅନୁରୋଧ । ଆମକୁ ଗେଲଟୁଆ ସ୍କୁଲକୁ ବଦଳି କରିବେ ନାହିଁ । ସେମାନଙ୍କ ଭିତରେ ଗେଲଟୁଆ ଶିକ୍ଷକ ବି ଥା'ନ୍ତି, ଆମକୁ ଏଠୁ ବଦଳି କରି ଦିଅନ୍ତୁ । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଶିକ୍ଷକମାନେ ଗେଲଟୁଆ ଯିବାକୁ ଡରୁଛନ୍ତି କାହିଁକି ? ଭଦ୍ରକରୁ ଦୁଇ କିଲୋମିଟର ଦୂରରେ ଗେଲଟୁଆ । ରାସ୍ତା କିଛି ଖରାପ ନୁହେଁ । ତଥାପି ଏତେ ଶିକ୍ଷକ କାହିଁକି ଭୟଭୀତ । ମୁଁ ଗେଲଟୁଆ ଗଲି । ଦଶଟା ପୂର୍ବରୁ ପହଞ୍ଚିଲି । ଦେଖିଲି ଜଣେ ବ୍ୟକ୍ତି ହାତରେ ଗୋଟିଏ ଫୋଲଡିଙ୍ଗ ଚେୟାର ଓ ଗୋଟିଏ ଟେବୁଲ ଘଡି ଧରି ଆସିଲେ ଓ ସ୍କୁଲ ଗେଟ୍ ପାଖରେ ଚେୟାରଟିକୁ ପକାଇ ବସିଲେ । ଶିକ୍ଷକ ଆସିଲା କ୍ଷଣି ଘଡିଟି ଦେଖାଇ ଦିଅନ୍ତି ଓ ଯେଉଁ ସମୟରେ ସେ ଆସିଲେ, ସେଇ ସମୟ ଶିକ୍ଷକ ଉପସ୍ଥାନରେ ଦରଜ କରାଯାଏ ।

ଏ ବ୍ୟବସ୍ଥାରେ ଶିକ୍ଷକମାନେ ଅଣନିଶ୍ୱାସୀ ହୋଇଯାନ୍ତି । ଦିନେ ବି ଫାଙ୍କ୍ ନାହିଁ । ମୁଁ ସେ ଭଦ୍ର ବ୍ୟକ୍ତିଙ୍କ ସହ କଥାବାର୍ତ୍ତା କରି ଜାଣିଲି ସେ ଜଣେ ଅବସର ପ୍ରାପ୍ତ ଅଫିସର । ମୋର ପରିଚୟ ପାଇ ସେ କହିଲେ, ଏ ଶିକ୍ଷକମାନେ କ'ଣ ପାଠ ପଢାଉଛନ୍ତି ମୁଁ ଜାଣିବାର ବାଟ ନାହିଁ । ଅନ୍ତତଃ ପକ୍ଷେ ଠିକ୍ ସମୟରେ ସ୍କୁଲକୁ ଆସନ୍ତୁ, ସେତିକି ମୁଁ ଦେଖୁଛି । ମୁଁ ପୁଣି ୩.୫୫ ମିନିଟ୍ ବେଳକୁ ଅସିବି । ସେମାନେ ଠି଼କ ସମୟରେ ଯାଉଛନ୍ତି ନା ଆଗରୁ ଚାଲି ଯାଉଛନ୍ତ. ଦେଖିବି ।

ଏଇ ଭଦ୍ରଲୋକଙ୍କ ପାଇଁ ଶିକ୍ଷକମାନଙ୍କ ମଧ୍ୟରେ ଭୟ । ଏଠିକାର ଶିକ୍ଷକ ଅଣନିଶ୍ୱାସୀ ହୋଇ ପଳାଇଯିବା ରାସ୍ତା ଖୋଜୁଛନ୍ତି, ଅନ୍ୟ ଶିକ୍ଷକମାନେ ନ ଆସିବା ପାଇଁ ବାଟ କରୁଛନ୍ତି । ମୁଁ ମନେ ମନେ ଭାବିଲି, ପ୍ରତି ଗାଁରେ ଯଦି ଏ ପ୍ରକାର ଅବସର ପ୍ରାପ୍ତ ଅଫିସର ମିଳନ୍ତେ ଓ ଶିକ୍ଷକମାନଙ୍କୁ ଉପସ୍ଥାନ ସମୟ ବିଷୟରେ ଅବହିତ କରାନ୍ତେ ସ୍କୁଲ ଗୁଡିକ କେତେ ଉନ୍ନତି ନ କରନ୍ତେ । ଗେଲଟୁଆ ଉଚ୍ଚ ପ୍ରାଥମିକ ସ୍କୁଲର ଶିକ୍ଷକମାନଙ୍କ ଅନିୟମିତ ଯିବା ଆସିବା ବିଷୟରେ ମୁଁ କେବେ କିଛି ରିପୋର୍ଟ ପାଇନାହିଁ ।

## ୨.୮ ବେନ୍ତାଳ ସ୍କୁଲର ଧଣିଚ୍ଚ ଚାଷ

ଦିନେ ମୁଁ ସ୍କୁଲ ପରିଦର୍ଶନରେ ଯାଉଥିବା ସମୟରେ ବେନ୍ତାଳ ନିମ୍ନ ପ୍ରାଥମିକ ସ୍କୁଲର ଶିକ୍ଷକ ମୋତେ ଇଛାପୁର ଛକ ନିକଟରେ ଅଟକାଇ କହିଲେ," ସାର୍, ଆପଣ ଜାଣନ୍ତି ଆମ ସ୍କୁଲରେ ଜାଗା ନାହିଁ । ଗ୍ରାମସେବକ ମୋତେ ବାଧ କରୁଛନ୍ତି ଦୁଇ କିଲୋଗ୍ରାମ ଧଣିଚ୍ଚ ମଞ୍ଜି ନେଇ ସ୍କୁଲ ହତାରେ ବୁଣିବାକୁ । ସେଥିରୁ ଯେଉଁ ମଞ୍ଜି ବାହାରିବ ସେଥିରୁ ଦୁଇ କିଲୋଗ୍ରାମ ତାଙ୍କୁ ଆସନ୍ତା ବର୍ଷ ଦେବା ପାଇଁ । ମୁଁ ତାଙ୍କୁ କହିଲି ଗ୍ରାମ ସେବକଙ୍କୁ ମନା କରିଦିଅ ଧଣିଚ୍ଚ ମଞ୍ଜି ନେବା ପାଇଁ । ସେଇଠି ଗ୍ରାମସେବକ ଥିଲେ ।" ସେ ମୋତେ କହିଲେ, " ଧଣିଚ୍ଚ ଚାଷ ସରକାରୀ ଯୋଜନା । ଆପଣ ଜଣେ ଦାୟିତ୍ୱ ସଂପନ୍ନ ଅଫିସର ହୋଇ କିପରି ସରକାରୀ ସ୍କିମ୍‌ର ବିରୋଧ କରୁଛନ୍ତି ?" ମୁଁ କହିଲି "ସ୍କୁଲରେ ଜାଗା ନାହିଁ । ମଞ୍ଜି ନେଇ ବୁଣିବେ କେଉଁଠି ?" ଏ ଘଟଣା ଗ୍ରାମ ସେବକ ରିପୋର୍ଟ କଲେ ବି.ଡି.ଓ ଙ୍କୁ । ବି.ଡି.ଓ ଙ୍କର ପୂର୍ବରୁ ମୋ ଉପରେ ରାଗ ଥିଲା । ସେ ସାତ ଜଣ ଶିକ୍ଷକଙ୍କୁ କମ୍ପୋଷ୍ଟ ଖତ ତିଆରି ଟ୍ରେନିଂ ପାଇଁ ବାଛି ପଠାଇଥିଲେ । ଶିକ୍ଷା ବିଭାଗରେ କାହାକୁ ପଚାରିଲେ ନାହିଁ । ଜିଲ୍ଲା ପରିଷଦ ଆଇନ୍ କାର୍ଯ୍ୟକାରୀ ହେବା ପରେ ବି.ଡି.ଓ ମାନେ ନିଜକୁ ଜିଲ୍ଲା ପରିଷଦ ତରଫରୁ ପ୍ରାଥମିକ ଶିକ୍ଷାର

ନିୟନ୍ତ୍ରଣକାରୀ ଭାବରେ ମନେ କଲେ। ଶିକ୍ଷା ବିଭାଗର କାହାକୁ ନ ପଚାରି ଶିକ୍ଷକମାନଙ୍କୁ ବିଭିନ୍ନ କାମରେ ଲଗାଇବାକୁ ଆରମ୍ଭ କଲେ। ମୁଁ ତାହାକୁ ବିରୋଧ କରି ଜିଲ୍ଲା ଶିକ୍ଷାଧିକାରୀଙ୍କ ନିକଟକୁ ଚିଠି ଲେଖିଲି। ଦୈବାତ୍ ସେତେବେଳେ ଡି.ପି.ଆଇ ପ୍ରତି ଜିଲ୍ଲାରେ ଗୋଟିଏ ଗୋଟିଏ କମିଟି କରି ଭଲ ଶିକ୍ଷକମାନଙ୍କୁ କମ୍ପୋଷ୍ଟ ଖତ ତିଆରି ଟ୍ରେନିଂ ପାଇଁ ପଠାଇବାକୁ ନିର୍ଦ୍ଦେଶ ଦେଲେ। ସେଥିରେ ବି.ଡି.ଓ ଅପମାନିତ ବୋଧ କଲେ। ସେ ଭାବିଲେ ମୁଁ ବିରୋଧ ନକରିଥିଲେ ତାଙ୍କଦ୍ୱାରା ପ୍ରେରିତ ଶିକ୍ଷକମାନେ ଟ୍ରେନିଂ ପାଇଁ ଚାଲିଯାଇଥାନ୍ତେ। ପୂର୍ବ ରାଗ ଯୋଗୁଁ ବି.ଡି.ଓ ଧଣିଚ ଋଷକୁ ମୁଁ ବିରୋଧ କରୁଛି ବୋଲି କଲେକ୍ଟରଙ୍କୁ ରିପୋର୍ଟ କରିଦେଲେ। ବାଲେଶ୍ୱର କଲେକ୍ଟର ସେତେବେଳେ L.I.Parija ବି.ଡି.ଓଙ୍କ ରିପୋର୍ଟ ପାଇଲା ପରେ ସେ District Inspector ଙ୍କୁ କହିଲେ ଏ କଥା ବୁଝିବାକୁ। D.I ମୋ ଉପରେ ବିରକ୍ତ ହୋଇ କହିଲେ, ତମର କ'ଣ ଦରକାର ଥିଲା, ଧଣିଚ ଚାଷକୁ ବିରୋଧ କରିବାକୁ।" ମୁଁ କହିଲି, " ଅନ୍ୟ ସ୍କୁଲ ଯାହାର ହତାବାଡି ଅଛି ସେଠାରେ ଧଣିଚ ଋଷ କରାଯାଇଛି। କିନ୍ତୁ ବେନ୍ତାଳ ସ୍କୁଲର ଜାଗା ନାହିଁ। ସେ ଶିକ୍ଷକ ଦୁଇ କିଲୋ ମଞ୍ଜି ନେଇ ବୁଣିବ କେଉଁଠି ? ଯଦି କଲେକ୍ଟରଙ୍କର ସତ୍ୟ ଜାଣିବାକୁ ଇଚ୍ଛା ଥାଏ, ତାଙ୍କୁ କୁହନ୍ତୁ ସେ ସରଜମିନ୍ ତଦନ୍ତ କରିବାକୁ ଆସନ୍ତୁ।

କଲେକ୍ଟର ସାତ ଦିନ ଭିତରେ ଆସି ପହଞ୍ଚିଗଲେ ଓ ମୋତେ ଡ଼କାଇଲେ। ତାଙ୍କୁ ନେଇ ବେନ୍ତାଳ ନିମ୍ନ ପ୍ରାଥମିକ ସ୍କୁଲକୁ ଗଲି। ସେ ଦେଖିଲେ ୭ ଫୁଟ ଓସାର ଓ ୩୫ ଫୁଟ ଲମ୍ବର ଖଣ୍ଡିଏ ଜାଗା ସ୍କୁଲ ସାମନାରେ ଅଛି। ମଝିରେ ପତାକା ସ୍ତମ୍ଭ ଓ ଚଉତରା ତା ପାଖକୁ ଫୁଲ ଗଛ ଲାଗିଛି। ଯେଉଁ ଲୋକମାନେ ସେଇ ବାଟ ଦେଇ ଗଲେ ତାଙ୍କୁ ପଚାରିଲେ, "ସ୍କୁଲ ନାଁ କ'ଣ ?" ସ୍କୁଲର ଜାଗା କେଉଁଠୁ କେତେ ? ଆଗ ପଛରେ ସ୍କୁଲର ଜାଗା ଅଛି କି ? ଇତ୍ୟାଦି। ଲୋକେ କହିଲେ, "ସ୍କୁଲ ନା ବେନ୍ତାଳ ପ୍ରାଥମିକ ସ୍କୁଲ। ସ୍କୁଲର ଯେତିକି ଜାଗା ସବୁ ବାଡବନ୍ଦୀ ହୋଇଛି। ଆଉ ଜାଗା ଥିଲେ ବାଡବନ୍ଦୀ ହୋଇନଥାନ୍ତା ? ସେଠାରୁ କଲେକ୍ଟର ଫେରି ଆସିଲେ। ଭଦ୍ରକ ସବ୍‌ଡିଭିଜନ୍ ଅଫିସରେ ବସି Camp Order କରି ଗ୍ରାମ ସେବକ ଶବର ମଳିକଙ୍କୁ Suspend କରିଦେଲେ ଓ ବି.ଡି.ଓ ଙ୍କୁ ଡାକି ପଚାରିଲେ, "ରିପୋର୍ଟ କରିବା ପୂର୍ବରୁ ଆପଣ ବେନ୍ତାଳ ସ୍କୁଲକୁ ପରିସ୍ଥିତି ଦେଖିବାକୁ ଯାଇଥିଲେ ?" ସେ ଥତମତ ହେବାରୁ ଜାଣିଲେ ଯେ ବି.ଡି.ଓ ବେନ୍ତାଳ ଦେଖି ନାହାଁନ୍ତି। ତାଙ୍କୁ Warning order issue କରି

ଫେରିଗଲେ। କଲେକ୍ଟର ସତ୍ୟ ଉଦ୍ଘାଟନ କରି ଚାଲିଗଲେ। ସେ ଯଦି ଅନ୍ୟ ଧରଣର ଲୋକ ହୋଇଥାନ୍ତେ, ବୋଧ ହୁଏ ମୋ ଉପରେ କିଛି କାର୍ଯ୍ୟାନୁଷ୍ଠାନ ହୋଇଥାନ୍ତା।

## ୨.୯ ବଙ୍କ ଉନ୍ନୀତ ମଧ୍ୟ ଇଂରାଜି ସ୍କୁଲର ମୂଳକଥା

ଭଦ୍ରକ ହାଇସ୍କୁଲ ପରିସର ମଧ୍ୟରେ ଗୋଟିଏ ନିମ୍ନ ପ୍ରାଥମିକ ସ୍କୁଲ ଥିଲା। ହାଇସ୍କୁଲରେ ଚତୁର୍ଥ ଶ୍ରେଣୀରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଥିଲା। ସେତେବେଳେ ନିୟମ ହେଲା ଯେ ହାଇସ୍କୁଲରେ ପ୍ରାଥମିକ ଶ୍ରେଣୀ ରହିବ ନାହିଁ। ପ୍ରାଥମିକ ଶ୍ରେଣୀ ଗୁଡିକୁ ହାଇସ୍କୁଲରୁ ବିଚ୍ଛିନ୍ନ କରାଯିବ। ଏହି ନିୟମ ପାଳନ କରିବାକୁ ଯାଇ ଭଦ୍ରକ ହାଇସ୍କୁଲରୁ ବିଚ୍ଛିନ୍ନ ହୋଇଥିବା ନିମ୍ନ ପ୍ରାଥମିକ ଶ୍ରେଣୀଗୁଡିକ ନିକଟରେ ଗୋଟିଏ ମିଶନ ପରିସରରେ ଥିବା ଘରକୁ ଉଠାଇ ନିଆଗଲା। ରାମକୃଷ୍ଣ ମିଶ୍ର ନାମକ ଜଣେ ପ୍ରଧାନ ଶିକ୍ଷକ ସେ ସ୍କୁଲରେ ରହି ନିଜ କର୍ତ୍ତବ୍ୟରେ ତ ଅବହେଳା କରୁଥିଲେ, ସ୍କୁଲଟିର ସଂପ୍ରସାରଣ କରାଇ ଦେଉନଥିଲେ। ଛାତ୍ରଛାତ୍ରୀ ସଂଖ୍ୟା ବିଗତ ପାଞ୍ଚବର୍ଷ ଧରି ୫୧। ରାମକୃଷ୍ଣ ବାବୁ ଉତ୍ତରବାହିନୀ ପ୍ରଧାନ ଶିକ୍ଷକ ଯେଉଁ ଉତ୍ତର ଦେଇଥିଲେ ଠିକ୍ ସେଇ ଉତ୍ତର ଦେଇ କହିଲେ, " ପିଲା ଏଠାରେ ଯଥେଷ୍ଟ ଅଛନ୍ତି। ଆମେ ନାଁ ଲେଖାଉ ନାହୁଁ।" ତାଙ୍କୁ ମୁଁ କହିଲି, "ଅଧିକ ଶିକ୍ଷକ ଦରକାର ହେଲେ ମୁଁ ଦେବି। ତମେ ପିଲାଙ୍କ ନାମ ଲେଖାଅ।"କିନ୍ତୁ ସେ ଲେଖାଇଲେ ନାହିଁ। ତାଙ୍କର ବଳଥିଲେ ସ୍କୁଲ ସେକ୍ରେଟେରୀ ଅବଦୁଲ ରଜାକ୍। ମୁଁ ତାଙ୍କୁ ବଦଳି କରିଦେଲି କୁଆଁସ. ପ୍ରାଥମିକ ସ୍କୁଲକୁ ଓ ସେଠାକାର ପ୍ରଧାନ ଶିକ୍ଷକ ଗଦାଧର ନାୟକଙ୍କୁ ତାଙ୍କ ସ୍ଥାନରେ ଆଣିଲି। ସ୍କୁଲ ସେକ୍ରେଟେରୀଙ୍କୁ ସାଙ୍ଗରେ ନେଇ ସେ ଡେପୁଟି ଇନ୍ସ୍ପେକ୍ଟରଙ୍କ ପାଖକୁ ଗଲେ ବଦଳି ହୁକୁମ ରଦ୍ଦ କରିବା ପାଇଁ। ଅବଦୁଲ୍ ରଜାକ୍ କହିଲେ ରାମକୃଷ୍ଣ ବାବୁ ଭଲ ଶିକ୍ଷକ। ତେଣୁ ତାଙ୍କୁ ବଦଳି କରା ନଯାଉ। ମୁଁ ତାଙ୍କୁ କହିଲି, "ସ୍କୁଲ ପିଲାଙ୍କର Standard ଭଲ ନାହିଁ। ପିଲା ସଂଖ୍ୟା ବଢୁ ନାହିଁ। ସ୍କୁଲର ଅନ୍ୟ କୌଣସି ପ୍ରକାର ଉନ୍ନତି ହୋଇ ନାହିଁ। ରାମକୃଷ୍ଣ ବାବୁ କିପରି ଭଲ ଶିକ୍ଷକ ହେଲେ ? ଆପଣ ନୂଆ ଶିକ୍ଷକଙ୍କ କାମ ଦେଖନ୍ତୁ। ସେ ଯଦି ଭଲ କାମ ନ କରିବେ ବଦଳାଇ ଦେବା। ଗଦାଧର ନାୟକ ସେ ସ୍କୁଲର ପ୍ରଧାନ ଶିକ୍ଷକ ଭାବେ ଯୋଗ ଦେଲେ।

ବାଲେଶ୍ୱର ଜିଲ୍ଲା ବୋର୍ଡରେ ପୂର୍ବରୁ Special Officer ଥିବା ମଦନ ମୋହନ ମହାନ୍ତି ବଲାଙ୍ଗୀର ଜିଲ୍ଲାକୁ ସବ୍‌ଡିଭିଜିନାଲ୍ ଅଫିସର ଭାବରେ ବଦଳି ହୋଇ ଯାଇଥିଲେ। ୧୯୬୧ ମସିହା ଡିସେମ୍ବର ମାସରେ ସେ ଭଦ୍ରକ ଏସ୍.ଡି.ଓ ଭାବରେ ବଦଳି ହୋଇ ଆସିଲେ। ସେ ଆସିବା ବେଳକୁ ଉଚ୍ଚ ପ୍ରାଥମିକ ବୃତ୍ତି ପରୀକ୍ଷା ପାଇଁ Descriptive Roll ପୂରଣ ହୋଇ ସାରିଲାଣି। ମଦନବାବୁଙ୍କ ପୁଅ ଶୁଭେନ୍ଦୁ କୁମାର ମହାନ୍ତି ସେତେବେଳେ ପଞ୍ଚମ ଶ୍ରେଣୀ ଛାତ୍ର। ଡିସେମ୍ବର ମାସରେ ତା'ର ନାଁ ଲେଖା ହେଲେ Late admission condonation ଦରକାର। ଶୁଭେନ୍ଦୁ କୁମାର ଭଲ ପଢୁଥିବାରୁ ମଦନ ବାବୁ ତାଙ୍କୁ ବୃତ୍ତି ପରୀକ୍ଷାକୁ ପଠାଇବାକୁ ଋହୁଁଥିଲେ। ସେତେବେଳେ ଗଦାଧର ବହୁ ଚେଷ୍ଟା କରି ଶୁଭେନ୍ଦୁ କୁମାର ନାମ ଲେଖା, ବିଳମ୍ବିତ ନାମ ଲେଖା ପାଇଁ ମଞ୍ଜୁରୀ ତଥା ଉଚ୍ଚ ପ୍ରାଥମିକ ବୃତ୍ତି ପରୀକ୍ଷା ପାଇଁ ସାନି Descriptive Roll ଦେବା ଆଦି କାର୍ଯ୍ୟ କରିବାରୁ ମଦନ ବାବୁ ଖୁସି ହୋଇ ତାଙ୍କୁ ପୁରସ୍କୃତ କରିବା ପାଇଁ ଋହିଁଲେ। ଗଦାଧର କିନ୍ତୁ ନିଜ ପାଇଁ କିଛି ନ ମାଗି ସ୍କୁଲ ପାଇଁ ଖଣ୍ଡେ ଜାଗା ଓ ଗୋଟିଏ ଘର ପାଇଁ ଅର୍ଥ ବ୍ୟବସ୍ଥା ପାଇଁ ତାଙ୍କୁ ଅନୁରୋଧ କଲେ। ବର୍ତ୍ତମାନ ଯେଉଁ ବଙ୍କ ଉନ୍ନୀତ ମଧ ଇଂରାଜି ସ୍କୁଲ ଅଛି, ତାହା ଗଦାଧର ନାୟକଙ୍କ ଉଦ୍ୟମରେ ସେହି ସ୍ଥାନରେ ପ୍ରତିଷ୍ଠିତ ହୋଇଛି, ତାହା ମଦନ ମୋହନ ମହାନ୍ତିଙ୍କ ଦୟାରୁ ସମ୍ଭବ ହୋଇଛି।

ଗଦାଧର ସେ ସ୍କୁଲରେ ଯୋଗ ଦେବାପରେ ମୋ ପରାମର୍ଶ ଅନୁସାରେ ପିଲାଙ୍କର ନାମ ଲେଖା ବଢାଇବାକୁ ଆରମ୍ଭ କରିଦେବାରୁ ଏକଦା ସେ ସ୍କୁଲରେ ଏକ ହଜାରରୁ ଅଧିକ ପିଲା ପଢିଲେ ଓ ଶିକ୍ଷକ ସଂଖ୍ୟା ବଢି ୧୫ ହୋଇଥିଲା। ଇତିହାସରେ ଏହା ଲିପିବଦ୍ଧ ନ ହୋଇ ପାରେ। କିନ୍ତୁ ଗଦାଧରର ଅବଦାନ ଅବଶ୍ୟ ସ୍ୱୀକାର୍ଯ୍ୟ।

## ୨.୧୦ ଡେପୁଟି ଇନ୍‌ସ୍ପେକ୍ଟରର ଅଫିସ ଓ ଭଦ୍ରକ ଲୋକାଲ ବୋର୍ଡ ବିବାଦ

ଡେପୁଟି ଇନିସ୍ପେକ୍ଟରର ଅଫିସ୍ ସହିତ ଭଦ୍ରକ ଲୋକାଲ୍ ବୋର୍ଡ ଅଫିସର ସବୁଦିନ ବିବାଦ ଲାଗି ରହିଥାଏ। ବିବାଦର ମୂଳ କାରଣ ହେଲା ଶିକ୍ଷକଙ୍କ ବଦଳି। ଆଇନ୍ ଅନୁସାରେ ସବ୍‌ଇନ୍‌ସ୍ପେକ୍ଟର ଓ ଡେପୁଟି ଇନ୍‌ସ୍ପେକ୍ଟରଙ୍କ Sug-

gestion ନେଇ ଲୋକାଲ୍ ବୋର୍ଡ ପ୍ରାଥମିକ ଶିକ୍ଷକମାନଙ୍କୁ ବଦଳି କରିବାର କଥା। କିନ୍ତୁ ଲୋକାଲ୍ ବୋର୍ଡ ତାଙ୍କ ଇଚ୍ଛା ଅନୁସାରେ ଶିକ୍ଷକଙ୍କୁ ବଦଳି କରି ଚାଲନ୍ତି । ସେ ବିଷୟରେ ପ୍ରଶ୍ନ ଉଠାଇଲେ ହେଲା ବିବାଦ। ସ୍ଥାନୀୟ ସବ୍‌ଡିଭିଜନ୍ ଅଫିସରେ Second officer ଭାବରେ ଯେଉଁ ଅଫିସର କାମ କରନ୍ତି ସେ ଲୋକାଲ ବୋର୍ଡରେ Special officer ଭାବରେ Part time କାମ କରନ୍ତି । ସେମାନେ ଲୋକାଲ୍ ବୋର୍ଡ କାମ ପାଇଁ ଯଥେଷ୍ଟ ସମୟ ଓ ଧ୍ୟାନ ଦେଇ ପାରନ୍ତି ନାହିଁ। ତା'ର ସୁଯୋଗ ନେଇ ଲୋକାଲ ବୋର୍ଡର କିରାଣୀମାନେ ସ୍ପେସାଲ ଅଫିସରଙ୍କୁ ଭୁଲ ପରାମର୍ଶ ଦେଇ କାମ ହାସଲ କରି ନିଅନ୍ତି । ତାଙ୍କର ମୁଖ୍ୟ ଅସ୍ତ୍ର ହେଲା ଯେ ଲୋକାଲ ବୋର୍ଡ ପ୍ରାଥମିକ ସ୍କୁଲର ମାଲିକ। କାରଣ ସେମାନେ ଶିକ୍ଷକମାନଙ୍କୁ ଦରମା ଦିଅନ୍ତି। ଥରେ ସ୍ପେଶାଲ୍ ଅଫିସରଙ୍କ ଦସ୍ତଖତରେ କିଛି ବେନିୟମ କାମ ହୋଇଗଲେ ସେମାନେ ବାଧ ହୋଇ ସମର୍ଥନ କରନ୍ତି। ଏ ଗୋଳମାଳ ସବୁବେଳେ ଲାଗି ରହିଲା। ମଝିରେ ମଝିରେ ଜିଲ୍ଲା ବୋର୍ଡ ସ୍ପେଶାଲ୍ ଅଫିସର ଓ ଜିଲ୍ଲା ଶିକ୍ଷାଧିକାରୀ ମିଳିତ ଭାବରେ ତଦନ୍ତ କରିବାକୁ ଆସନ୍ତି। ତାଙ୍କ ସହିତ ଆଲୋଚନା କରିବାକୁ ମୁଁ ଯାଏ ନାହିଁ। କାରଣ ଆଇନତଃ ସଦର ସବ୍‌ଇନ୍‌ସ୍ପେକ୍ଟରଙ୍କର ସେ ତଦନ୍ତରେ ଭାଗ ନେବାର କିଛି ନାହିଁ। ତଥାପି ଜିଲ୍ଲା ବୋର୍ଡ ସ୍ପେଶାଲ ଅଫିସରମାନେ ସବୁବେଳେ ବିବାଦ ପାଇଁ ମୋତେ ଦାୟୀ କରନ୍ତି । ତାଙ୍କର ଯୁକ୍ତି ହେଲା ମୁଁ ସଦର ସବ୍‌ଇନ୍‌ସ୍ପେକ୍ଟର ନ ହୋଇଥିବା ବେଳେ ଏତେ ବିବାଦ ହେଉନଥିଲା। ଏବେ ହେଉଛି। ସେ କଥା ସତ। ପୂର୍ବେ ସବୁ ବେନିୟମ କାମକୁ ଚଳାଇ ନିଆ ଯାଉଥିଲା। ଏବେ ମୁଁ ଚଳାଇ ନେବା ପାଇଁ ପ୍ରସ୍ତୁତ ନୁହେଁ। ସ୍ପେଶାଲ୍ ଅଫିସର ମୋତେ କହିଲେ, " ଏ ଗୋଳମାଳ ସବୁ କାହିଁକି କରୁଛ" ? ମୁଁ ତାଙ୍କୁ, କହିଲି, "ଲୋକାଲ୍ ବୋର୍ଡ କିରାଣୀମାନେ ଲାଞ୍ଚ ନେଇ ସବୁ ବେଆଇନ୍ କାମ କରୁଛନ୍ତି। ଲୋକାଲ ବୋର୍ଡର Part time ସ୍ପେଶାଲ ଅଫିସରଙ୍କର ସମୟ ନଥିବାରୁ ସେ ଭିତରେ ପଶି ପାରୁ ନାହାନ୍ତି। ଆମେ ସେ ସବୁ ଅନ୍ୟାୟକୁ ବେନିୟମ କାମକୁ ସମର୍ଥନ କରିଯିବୁ ବୋଲି ଆପଣ ଭାବୁଛନ୍ତି ? ଯଦି ଭାବୁଥାନ୍ତି, ତା ହେଲେ ତାହା ଠିକ ନୁହେଁ।

ଏ ବିବାଦରେ ଏତିକି ଲାଭ ହେଲା ଯେ ଲୋକାଲ ବୋର୍ଡ କିରାଣୀମାନଙ୍କର ଲାଞ୍ଚ ନେଇ ଭୁଲ୍ କାମ କରିବାର ପରିମାଣ ବହୁତ କମିଗଲା ଓ ସେମାନେ ସାବଧାନ ହୋଇଗଲେ।

## ୨.୧୧ ପାଠମା ପ୍ରକଳ୍ପ

## (School mother project)

ସାର୍ବଜନୀନ ପ୍ରାଥମିକ ଶିକ୍ଷାର ଲକ୍ଷ୍ୟ ହାସଲ ପାଇଁ ୧୯୫୮-୫୯ ବେଳକୁ ସରକାର ଗୁରୁତ୍ୱର ସହ ଚିନ୍ତା କରିବା ଆରମ୍ଭ କଲେଣି। ୧୯୫୫-୫୬ ବେଳକୁ ପ୍ରାଥମିକ ଶ୍ରେଣୀରେ ( ୧ମ ରୁ ୫ ମ ଶ୍ରେଣୀ) ୩୩୫୦୦୦ ଛାତ୍ର ଓ ୯୭୦୦୦ ଛାତ୍ରୀ ନାମ ଲେଖାଇ ଥିଲେ। ପ୍ରାଥମିକ ସ୍କୁଲକୁ ଯିବା ବୟସର ପିଲାଙ୍କ ମଧ୍ୟରୁ ଛାତ୍ରଙ୍କ ଅନୁପାତ ହେଉଛି ଶତକଡା ୩୬ ଓ ଛାତ୍ରୀଙ୍କ ଅନୁପାତ ଶତକଡା ୧୦। ଅଧିକ ଛାତ୍ରୀମାନଙ୍କୁ ସ୍କୁଲକୁ ଆଣିବା ପାଇଁ ସରକାର ପାଠ ମା (School mother) ପ୍ରକଳ୍ପ କାର୍ଯ୍ୟକାରୀ କଲେ। ପ୍ରତି ସ୍କୁଲରେ ଜଣେ ଲେଖାଏଁ ମହିଳା ନିଯୁକ୍ତ କରିବା ପାଇଁ ଗୋଟିଏ ପ୍ରକଳ୍ପ ପ୍ରସ୍ତୁତ କଲେ। ନିଯୁକ୍ତ ମହିଳାମାନେ ବାଳିକାମାନଙ୍କୁ ପ୍ରବର୍ତ୍ତାଇ ସ୍କୁଲକୁ ଆଣିବାର ବ୍ୟବସ୍ଥା ରଖାଗଲା। ମହିଳାମାନେ ପାଠ ପଢିଥାନ୍ତୁ ବା ନ ପଢିଥାନ୍ତୁ ସେଥିରେ କିଛି ଯାଏ ଆସେ ନାହିଁ । ଏ ଯୋଜନା କାର୍ଯ୍ୟକାରୀ ହେଲା। ଛାତ୍ରୀ ସଂଖ୍ୟା କିଛି ବଢିଲା। ଶିକ୍ଷିତା ପାଠ ମା ମାନେ ଅନେକ ସ୍କୁଲରେ ପାଠ ପଢାଇଲେ। ଜଣିକିଆ ଶିକ୍ଷକ ଥିବା ସ୍କୁଲରେ ପାଠ ମା ବ୍ୟବସ୍ଥା ବହୁତ ସହାୟକ ହେଲା। ଶିକ୍ଷକଙ୍କ ଅନୁପସ୍ଥିତିରେ ଯେ ସ୍କୁଲ ବନ୍ଦ ହୋଇ ଯାଉଥିଲା, ତାହା ଆଉ ହେଲା ନାହିଁ। ପାଠ ମା ମାନେ ଅବସ୍ଥା ସମ୍ଭାଳି ନେଲେ। ପାଠ ମା ମାନଙ୍କର ପାଇଣା ମଧ ଖୁବ୍ କମ୍ ଥିଲା। ଏ ଯୋଜନା ଚାଲିଥିଲେ ସାର୍ବଜନୀନ ପ୍ରାଥମିକ ଶିକ୍ଷା ଲକ୍ଷ୍ୟ ପ୍ରାପ୍ତି ଦ୍ରୁତତର ହୋଇଥାନ୍ତା। ଭଲ ଫଳାଫଳ ସତ୍ତ୍ୱେ କିଛି ଦିନ ପରେ ଯୋଜନା ବନ୍ଦ ହୋଇଗଲା। ଅବଶ୍ୟ କେତେକ ସ୍କୁଲରେ ପାଠ ମା ମାନଙ୍କର ମିଥ୍ୟା ଉପସ୍ଥାନ, କାର୍ଯ୍ୟରେ ଅବହେଳା ଆଦି ଦେଖା ଯାଉଥିଲା। କିନ୍ତୁ ସେ ଅସୁବିଧା ଏତେ ଗୁରୁତର ନୁହେଁ ଯେଉଁଥିପାଇଁ ଏତେ ଭଲ ଯୋଜନା ବନ୍ଦ ହୋଇଯିବ। ସରକାରୀ ନିଷ୍ପତ୍ତି ଉପର ସ୍ତରରେ ହୁଏ। ତଳ ସ୍ତର କାର୍ଯ୍ୟ ସହିତ ତା'ର ସଂପର୍କ କମ୍।

## ୨.୧୨ ଘାଟସାହି ଓ ଗାନ୍ଧିଘାଟ ବିବାଦ

ଧାମନଗର ସର୍କଲ ସବ୍‌ଇନ୍‌ସ୍ପେକ୍ଟର ଘାଟ ସାହିରେ ଗୋଟିଏ ନୂଆ ପ୍ରାଥମିକ ସ୍କୁଲ ଖୋଲିବାପାଇଁ ପ୍ରସ୍ତାବ ଦେଇଥିଲେ। ସେ ପ୍ରସ୍ତାବ ଡି.ପି.ଆଇ

ଅଫିସରୁ ମଞ୍ଜୁର ହୋଇ ଆସିଲା। ସ୍କୁଲ ଖୋଲିବା ବେଳକୁ ପ୍ରସ୍ତାବ ଦେଇଥିବା ସବ୍‌ଇନ୍‌ସ୍ପେକ୍ଟର ଛୁଟିରେ। କୋଠାର ସର୍କଲ ସବ୍‌ଇନ୍‌ସ୍ପେକ୍ଟର ଚାର୍ଜରେ ଥାନ୍ତି। ତାଙ୍କୁ ଜଣା ନଥାଏ ଘାଟସାହି କେଉଁଠି। ଘାଟସାହି ବିଷୟରେ ଆଲୋଚନା ଚାଲିଥିବା ବେଳେ ଧାମନଗରର ତତ୍‌କାଳୀନ ବିଧାନ ସଭା ସଦସ୍ୟ ମୁରଲୀଧର ଜେନା ଉପସ୍ଥିତ ଥିଲେ। ସେ କହିଲେ ଘାଟସାହି ବୋଲି କୌଣସି ଗାଁ ନାହିଁ। ଗାନ୍ଧିଘାଟକୁ ଘାଟସାହି ବୋଲି କହନ୍ତି। ଯେତେବେଳେ ସ୍ୱୟଂ ଏମ୍.ଏଲ୍.ଏ ଏ କଥା କହୁଛନ୍ତି, ଅବିଶ୍ୱାସ କରିବାର କାରଣ ନାହିଁ। ଡେପୁଟି ଇନ୍‌ସ୍ପେକ୍ଟର କହିଲେ, " MLA ଯେତେବେଳେ କହୁଛନ୍ତି, ସେଥିରେ ଅବିଶ୍ୱାସ କରିବାର କ'ଣ ଅଛି ? ଗାନ୍ଧିଘାଟରେ ସ୍କୁଲ ଖୋଲିଦିଅ।"

ଗାନ୍ଧିଘାଟରେ ସ୍କୁଲ ଖୋଲିଲା। ଶିକ୍ଷକ ନିଯୁକ୍ତି ହେଲା। ନିମ୍ନ ଡେସ୍କ କଳାପଟା, ଚେୟାର, ଟେବୁଲ୍ ସବୁ ଯୋଗାଇ ଦିଆଗଲା। ସେଠାରେ ସ୍କୁଲ ଚାଲିଲା। ଇତି ମଧ୍ୟରେ ଧାମନଗର ସବ୍‌ଇନ୍‌ସ୍ପେକ୍ଟର ଛୁଟିରୁ ଫେରି କାମରେ ଯୋଗ ଦେଲେ। ଘାଟସାହି ଲୋକେ ଜାଣିଲେ ତାଙ୍କ ଗାଁ ପାଇଁ ମଞ୍ଜୁର ହୋଇଥିବା ସ୍କୁଲ ଗାନ୍ଧିଘାଟରେ ଖୋଲା ଯାଇଛି। ଯଥା ସମ୍ଭବ ସବ୍‌ଇନ୍‌ସ୍ପେକ୍ଟର ତାଙ୍କୁ ଜଣାଇ ଦେଇଥିବେ। ଘାଟସାହି ଲୋକମାନେ ଡି.ପି.ଆଇଙ୍କୁ ଦରଖାସ୍ତ କଲେ। ଡି.ପି.ଆଇ କୈଫିୟତ ତଲବ କଲେ କାହିଁକି ଓ କିପରି ଏହା ହେଲା।

ଡେପୁଟି ଇନ୍‌ସ୍ପେକ୍ଟର ଦେବେନ୍ଦ୍ରନାଥ ପ୍ରଧାନ ବିବ୍ରତ ହୋଇ କହିଲେ ଗାନ୍ଧିଘାଟରୁ ସ୍କୁଲଟାକୁ ଉଠାଇ ଆଣି ଘାଟସାହିରେ ଖୋଲି ଦେବା। ମୁଁ ମନା କଲି। ଏ ବର୍ଷର ଆଠ ମାସ ଶେଷ ହୋଇଗଲାଣି। ଅମେ ଗାନ୍ଧିଘାଟରେ ଗୋଟିଏ ନୂଆ ସ୍କୁଲ ଖୋଲିବା ପାଇଁ ଡି.ପି.ଆଇଙ୍କୁ ପ୍ରସ୍ତାବ ଦେବା। ଦୁଇ ମାସ ଭିତରେ ସ୍କୁଲ ମଞ୍ଜୁର ହୋଇଯିବ। ସେଇ ସ୍କୁଲଟାକୁ ଘାଟସାହିରେ ଖୋଲି ଦେବା। ତା ଛଡା ଗାନ୍ଧିଘାଟରେ ବି ତ ସ୍କୁଲ ଦରକାର। ସେଠୁ ଉଠାଇବା କାହିଁକି ? ସେଠାରେ ଲୋକେ ଅସନ୍ତୁଷ୍ଟ ହୋଇ ପୁଣି ଡି.ପି.ଆଙ୍କୁ ଦରଖାସ୍ତ କରିବେ। ପୁଣି କୈଫିୟତ୍ ଦେବାକୁ ପଡିବ।

ଡେପୁଟି ଇନ୍‌ସ୍ପେକ୍ଟର ମୋ ପରାମର୍ଶ ନ ମାନି ଗାନ୍ଧିଘାଟକୁ ଚାଲିଗଲେ ଓ ସେ ଶିକ୍ଷକଙ୍କୁ କହିଲେ," ଗୋଟାଏ ବଳଦ ଗାଡିରେ ଟେବୁଲ, ଚେୟାର୍, କଳାପଟା, ନିମ୍ନଡେସ୍କ ସବୁ ଲଦି ଏଠୁ ଘାଟସାହିକୁ ନେଇଚାଲ।" ଗାନ୍ଧିଘାଟ ଲୋକେ ଏ କଥା ଜାଣି ଚାଲି ଆସି ବାଟ ଓଗାଳିଲେ। କହିଲେ, " ଏଠୁ ସ୍କୁଲ ଉଠି ଯାଇ ପାରିବ ନାହିଁ। ଫଳରେ ସେ ସ୍କୁଲ ସେଠାରେ ରହିଲା।

ଧାମ ନଗର ଏମ୍.ଏଲ୍. ଏ ଏ କଥା ଶୁଣି ଭୀଷଣ ଭାବରେ ଉତକ୍ଷିପ୍ତ ହେଲେ। ସେ ଯାଇ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବଙ୍କୁ କହିଲେ, "ଭ୍ରକ ଭଳି ଗୋଟାଏ ବ୍ୟସ୍ତ ଓ ବିରାଟ ସବ୍‌ଡିଭିଜନରେ୍ ଗୋଟାଏ ପାଗଳ ଡେପୁଟି ଇନ୍‌ସ୍ପେକ୍ଟର ରଖା ଯାଇଛି। ଯାହା ଇଚ୍ଛା ତାହା କରୁଛି।"ମୁଖ୍ୟମନ୍ତୀ ଡି.ପି.ଆଇ ବାମା ଚରଣ ଦାସଙ୍କୁ ଡକାଇ କହିଲେ, " ଭଦ୍ରକ ଡେପୁଟି ଇନ୍‌ସ୍ପେକ୍ଟରଙ୍କୁ ଶୀଘ୍ର ବଦଳି କର। ମୁଖ୍ୟମନ୍ତ୍ରୀଙ୍କ ହୁକୁମ। ସାଙ୍ଗେ ସାଙ୍ଗେ ବଦଳି ଆଦେଶ ଆସିଗଲା କଳାହାଣ୍ଡି ଜିଲ୍ଲା ନୂଆପଡାକୁ।

ଡେପୁଟି ଇନ୍‌ସ୍ପେକ୍ଟର ଦେବେନ୍ଦ୍ର ବାବୁ ଧାଇଁଲେ ଇନ୍‌ସ୍ପେକ୍ଟର ଗୌରୀଶ୍ୟାମ ମହାନ୍ତିଙ୍କ ପାଖକୁ, କହିଲେ,"ବଦଳି ପଛେ ହେଉ, କିନ୍ତୁ ବାଲେଶ୍ୱର ମୟୁରଭଞ୍ଜ, କେଉଁଝର ଜିଲ୍ଲା ଭିତରେ ହେଉ। ଇନ୍‌ସ୍ପେକ୍ଟର ତାଙ୍କ ଶିକ୍ଷକ ଡି.ପି.ଆଇ ବାମା ଚରଣ ଦାସଙ୍କୁ କହି ତାଙ୍କ ବଦଳି ମୟୁରଭଞ୍ଜ ଜିଲ୍ଲା ଉଦଳା ସବ୍‌ଡିଭିଜନ୍‌କୁ ବଦଳାଇ ଦେଲେ।

ଦେବେନ୍ଦ୍ର ବାବୁଙ୍କର ବଦଳି ହେଲା। ତାଙ୍କ ସ୍ଥାନରେ ଈଶ୍ୱର ଚନ୍ଦ୍ର ପରିଡା ଆସି ଯୋଗ ଦେଲେ। ଖଦଡ ପିନ୍ଧା ଲୋକ। ମୌଳିକ ଶିକ୍ଷାରେ ତାଲିମ। ଏ ପର୍ଯ୍ୟନ୍ତ ମୌଳିକ ସ୍କୁଲରେ ପ୍ରଧାନ ଶିକ୍ଷକ ଥିଲେ। ପ୍ରଶାସନରେ ଅଭିଜ୍ଞତା ନାହିଁ। କିଛି ନୂଆ ଶିଖିବାର ସ୍ପୃହା ବି ନାହିଁ। ଅଫିସ୍ କାମରେ ତାଙ୍କର ଦକ୍ଷତା ନଥିବା ସ୍ୱାଭାବିକ। ସ୍କୁଲ ପରିଦର୍ଶନରେ ବି ସ୍ଥାନ, କାଳ, ପାତ୍ର ଜ୍ଞାନର ଅଭାବ। ସବୁ ସ୍କୁଲରେ ମୌଳିକ ଶିକ୍ଷା ନୀତିର ପ୍ରବର୍ତ୍ତନ କ'ଣ ସମ୍ଭବ? ଯେଉଁ ସ୍କୁଲ ଗୁଡିକ ଅଣମୌଳିକ ଢାଞ୍ଚାରେ ବର୍ଷ ବର୍ଷ ଧରି ପରିଚାଳିତ ହେଲାଣି, ସେମାନେ ରାତାରାତି ମୌଳିକ ଶିକ୍ଷା ପଦ୍ଧତି ଅନୁସରଣ କରିବା ଏତେ ସହଜ ନୁହେଁ। ତାଙ୍କର ଉଦ୍ୟମ ପ୍ରଶଂସନୀୟ। ମୌଳିକ ଶିକ୍ଷା ପଦ୍ଧତି ଅନୁସରଣ କରିବା ପାଇଁ ସେ ସ୍କୁଲ ଶିକ୍ଷକ ମାନଙ୍କୁ ପ୍ରବର୍ତ୍ତାଇଲେ।

## ୨.୧୩ : ଛାତ୍ରବୃଦ୍ଧି ଆନ୍ଦୋଳନ

ସାର୍ବଜନୀନ ପ୍ରାଥମିକ ଶିକ୍ଷା ପାଇଁ ୧୯୫୯-୧୯୬୦ ମସିହାରେ ଦୁଇଟି ମୁଖ୍ୟ କାର୍ଯ୍ୟ କରାଯାଉଥିଲା ।

(୧) ଛାତ୍ରବୃଦ୍ଧି ଆନ୍ଦୋଳନ (୨) ନୂଆ ପ୍ରାଥମିକ ସ୍କୁଲ୍ ଖୋଲିବା। ସ୍କୁଲ ଆରମ୍ଭ ପରେ ପ୍ରତିଦିନ ଛାତ୍ରଛାତ୍ରୀମାନେ ହାତରେ ପ୍ଲାକାର୍ଡ ଧରି ଗାଁ ଭିତରକୁ ଶୋଭା ଯାତ୍ରାରେ ଯାଉଥିଲେ। ଶିକ୍ଷକମାନଙ୍କୁ ନିର୍ଦ୍ଦେଶ ଥିଲା ସେମାନେ

ସକାଳେ ସନ୍ଧ୍ୟାବେଳେ ଗାଁ ଭିତରକୁ ଯାଇ ଯାହାଙ୍କର ପିଲାମାନେ ସ୍କୁଲରେ ନାଁ ଲେଖାଇ ନାହାଁନ୍ତି ତାଙ୍କ ପିଲାଙ୍କୁ ସ୍କୁଲରେ ନାଁ ଲେଖାଇବାକୁ ପ୍ରବର୍ତ୍ତାଇବେ । ଶିକ୍ଷକମାନେ ଗାଁକୁ ଯାଇ ଲୋକଙ୍କୁ ପ୍ରବର୍ତ୍ତାଇବା କାମ ଠିକ୍‌ଭାବେ କରୁ ନ ଥିଲେ । ଖୁବ୍ କମ୍ ଶିକ୍ଷକ ସେ କାମ କରୁଥିଲେ । କିନ୍ତୁ ସ୍କୁଲ ଆରମ୍ଭ ବେଳକୁ ପିଲାମାନଙ୍କର ଶୋଭାଯାତ୍ରା ନିୟମିତ କରାଯାଉଥିଲା । ତା'ର କିଛି ସୁଫଳ ବି ମିଳୁଥିଲା । ଛାତ୍ରଛାତ୍ରୀ ସଂଖ୍ୟା କ୍ରମଶଃ ବୃଦ୍ଧି ପାଉ ଥିଲା । କିନ୍ତୁ ଗୋଟିଏ ଘଟଣା ସମସ୍ତଙ୍କୁ ଚମତ୍କୃତ କରିଦେଲା ।

ତିହିଡି ସର୍କଲ କାଁ ପଡା ବିନ୍ଧା ଗାଁ । ଗାଁରେ ମୁଖତଃ ମତ୍ସ୍ୟଜୀବୀମାନେ ରହନ୍ତି । ସ୍କୁଲର ଛାତ୍ରଛାତ୍ରୀ ସଂଖ୍ୟା ୧୫୦ ଥିଲା । ଛାତ୍ରବୃଦ୍ଧି ଆନ୍ଦୋଳନ ଫଳରେ ପିଲା ସଂଖ୍ୟା ବଢି ୧୦୫୦ରେ ପହଞ୍ଚି ଗଲା । ସେ ଅଞ୍ଚଳର କୈବର୍ତ୍ତମାନେ ତାଙ୍କ ପିଲାଙ୍କୁ ମାଛଧରା କାମରେ ଲଗାନ୍ତି । ଅନେକ କ୍ଷେତ୍ରରେ ପିଲାମାନେ ସ୍ୱତଃପ୍ରବୃତ୍ତ ହୋଇ ମାଛଧରା କାମ କରନ୍ତି । ମୁରବୀମାନେ ମଧ୍ୟ ପିଲାଙ୍କୁ ସ୍କୁଲକୁ ପଠାଇବା ପାଇଁ ଯତ୍ନ କରନ୍ତି ନାହିଁ । ଏ ଆନ୍ଦୋଳନ ଫଳରେ ସେମାନେ ତାଙ୍କ ପିଲାଙ୍କୁ ସ୍କୁଲକୁ ପଠାଇଲେ । ଫଳରେ ରାତାରାତି ଛାତ୍ରଛାତ୍ରୀ ସଂଖ୍ୟା ୯୦୦ ବଢିଗଲା । ହଠାତ୍ ସମସ୍ୟା ହେଲା ପିଲାମାନେ ବସିବେ କେଉଁଠି ? ଶିକ୍ଷକ କେତେ ଦରକାର ? ସେ ଅଞ୍ଚଳରେ ଯେତେ ତାଳଗଛ ଥିଲା ତା'ର ବାହୁଙ୍ଗା ହାଣି ତାଟି ତିଆରି କରାଗଲା ଓ ସେଥିରେ ଅସ୍ଥାୟୀ ଘର ତିଆରି ହେଲା । ଶିକ୍ଷକ ନିଯୁକ୍ତି କରି ପଠାଇ ଦିଆଗଲା । ସେ ପିଲାମାନେ କିଛିଦିନ ସ୍କୁଲକୁ ଆସିଲେ । ଧୀରେଧୀରେ ତାଙ୍କ ସଂଖ୍ୟା କମିବାକୁ ଆରମ୍ଭ କଲା । ୬ମାସରେ ଅଧିକାଂଶ ପିଲା ଚାଲିଗଲେ । ଅଳ୍ପକିଛି ପିଲା ରହିଲେ ।

ଏ ଘଟଣାରୁ ଗୋଟିଏ ଶିକ୍ଷା ମିଳିଲା ଯେ ଆନ୍ଦୋଳନ ପାଇଁ ପ୍ରସ୍ତୁତି ଦରକାର । ସମସ୍ତ ସମ୍ଭାବ୍ୟ ସ୍ଥିତିକୁ ବିଚାରକୁ ନେଇ ଆନ୍ଦୋଳନ କରାଯାଇପାରେ । ତା ଛଡା ଆବେଗରେ କାମ କଲେ ଫଳାଫଳ ଅସ୍ଥାୟୀ ହୁଏ ବୋଲି ଜଣାଥିଲେ ମଧ୍ୟ ଏଠାରେ ଆବେଗରେ ହିଁ କାମ କରାଗଲା । ଲୋକମାନେ ସେମାନଙ୍କ ପିଲାମାନଙ୍କ ସ୍କୁଲ ଶିକ୍ଷା ପାଇଁ ପ୍ରସ୍ତୁତ ହେବା ପୂର୍ବରୁ ପିଲାଙ୍କୁ ପଠାଇ ଦେଲେ ।

## ୨.୧୪ : ଜିଲ୍ଲା ପରିଷଦ, 1960

ଅତୀତର ଅଭିଜ୍ଞତାରୁ ଶିକ୍ଷାଲାଭ ପାଇଁ ଇତିହାସ ପଢାଯାଏ । ପ୍ରଶାସନ କ୍ଷେତ୍ରରେ ଅତୀତର ସଫଳତା ଅପେକ୍ଷା ବିଫଳତା ଅଧିକ ଶିକ୍ଷଣୀୟ । ୧୯୫୯ - ୧୯୬୦ ମସିହାରେ ଜିଲ୍ଲା ପରିଷଦ ଆଇନ୍ ହୋଇ କାର୍ଯ୍ୟକାରୀ ହୋଇଥିଲା । କିନ୍ତୁ ଦୁଇବର୍ଷ ପରେ ଜିଲ୍ଲାପରିଷଦ ଶାସନ ବିଫଳ ହୋଇଗଲା । କେଉଁ ପରିସ୍ଥିତିରେ ଜିଲ୍ଲା ପରିଷଦ ବିଫଳ ହେଲା ତାହା ଅଧ୍ୟୟନ ନ କରି ଏବେ ପୁଣି ଜିଲ୍ଲା ପରିଷଦ ଆଇନ୍ କରାଯାଇ କାର୍ଯ୍ୟକାରୀ ହେଉଛି । ଗତଥର ଏଥର ମଧ୍ୟରେ ସମୟ ବ୍ୟବଧାନ ହେଉଛି ୪୦ ବର୍ଷ । ଏ ମଧ୍ୟରେ ଲୋକେ କେତେ ଗଣତନ୍ତ୍ର ମନୋଭାବାପନ୍ନ ହୋଇଛନ୍ତି ଓ ପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦ ସ୍ତରରେ ଶାସନ ଚଳାଇବାକୁ କେତେ ସମର୍ଥ ହୋଇଛନ୍ତି ତାହା ଅନୁଧ୍ୟାନ କରାଯାଇ ନାହିଁ । ବରଂ ଗତଥର ଯେତେ ଦୁର୍ବଳତା ଦେଖା ଦେଉଥିଲା ଏଥର ତା'ଠାରୁ ବେଶୀ ଦେଖାଯାଉଛି । ଏହାର ସ୍ଥାୟିତ୍ୱ କେତେଦିନ ଓ ସଫଳତା କେତେ ଦେଖାଯାଉ ।

୧୯୬୦ ମସିହାରେ ଜିଲ୍ଲା ପରିଷଦ ଆଇନ୍ କାର୍ଯ୍ୟକ୍ରମ ହେଲାକ୍ଷଣି ପ୍ରଥମ ଦୃଷ୍ଟି ପଡିଲା ପ୍ରାଥମିକ ଶିକ୍ଷା ଉପରେ । କ୍ଷମତାଗୁଡିକ ଶୀଘ୍ର ଶୀଘ୍ର ହାତକୁ ନେଇ ଆସିବାକୁ ନିର୍ବାଚିତ ପ୍ରତିନିଧିମାନେ ଉଚିତ୍ ମଣିଲେ । ଏକ ବିରାଟ ଫର୍ମାରେ ପ୍ରତ୍ୟେକ ସ୍କୁଲ୍ ଓ ଶିକ୍ଷକଙ୍କର ବିସ୍ତୃତ ବିବରଣୀ ପ୍ରସ୍ତୁତ କରି ଜିଲ୍ଲା ପରିଷଦକୁ ହସ୍ତାନ୍ତର କରାଗଲା । ଜିଲ୍ଲାବୋର୍ଡ ଓ ଲୋକାଲ ବୋର୍ଡ ଶାସନର ପରି ସମାପ୍ତି ଘଟିଲା । ଶିକ୍ଷକମାନଙ୍କୁ ପୂର୍ବରୁ ଲୋକାଲ ବୋର୍ଡ ଦରମା ପ୍ରଦାନ କରୁଥିଲେ । ଏବେ ବ୍ଲକ୍‌ମାନେ ଦରମା ଦେବେ । ଯେଉଁ ପ୍ରକାର ଅପଶାସନ ଲୋକାଲ ବୋର୍ଡ ଅମଳରେ ଚାଲୁଥିଲା ତାହା କିଞ୍ଚିତ୍ କମିଗଲା । ଲୋକାଲ୍ ବୋର୍ଡର ମନମୁଖୀ ଶାସନ ସ୍ଥାନରେ ବ୍ଲକର ମନମୁଖୀ ଶାସନ ଚାଲିଲା । ଶାସନ ପରିସର ବ୍ଲକ୍ ମଧ୍ୟରେ ସୀମିତ ହେବାରୁ ଅପଶାସନ ବି ସୀମିତ ହୋଇଗଲା । ଶିକ୍ଷାର ଅବସ୍ଥାରେ ସାମାନ୍ୟ ପରିବର୍ତ୍ତନ ବି ହେଲା ନାହିଁ ।

ଶିକ୍ଷକମାନଙ୍କୁ ଦରମା ଦେବାର ଦାୟିତ୍ୱ ବ୍ଲକକୁ ଦିଆଯିବାରୁ ସେମାନେ ପ୍ରତି ବ୍ଲକକୁ ଜଣେ ଜଣେ କିରାଣୀ ଦାବି କଲେ । ତାଙ୍କର ସେ ଦାବି ପୂରଣ ହେଲା । ତଥାପି ଶିକ୍ଷକମାନେ ଠିକ୍ ସମୟରେ ନିୟମିତ ଭାବରେ ଦରମା ପାଇଲେ ନାହିଁ ।

ଜିଲ୍ଲା ପରିଷଦ ଆରମ୍ଭ ବେଳେ ସ୍କୁଲ ଓ ଶିକ୍ଷକମାନଙ୍କ ବିଷୟରେ ଯେଉଁ ବିସ୍ତୃତ ବିବରଣୀ ଦିଆ ଯାଇଥିଲା ସେଥିରେ କେଉଁ କେଉଁ ସ୍କୁଲରେ କେତୋଟି ସ୍ଥାନ ଖାଲି ଥିଲା ତାହା ଦିଆ ଯାଇଥିଲା । ଦୁଇମାସ ପରେ ପୁଣି ଥରେ ଜିଲ୍ଲା ପରିଷଦ Vacancy List ମାଗିଲେ । ଦୁଇଟି ବିବରଣୀରେ ସେଇ ଗୋଟିଏ Vacancy List ରହିଥିଲେ ମଧ କୌଣସି କୌଣସି ସ୍କୁଲରେ ଗୋଟିଏ Vacancy ପାଇଁ ଦୁଇଟି ନିଯୁକ୍ତି ଭୁଲ୍ କ୍ରମେ ଦିଆଗଲା । ଏ ପ୍ରକାର ଗୋଟିଏ ଭୁଲ୍ ମୋ ସର୍କଲର ଚରମ୍ପା ପ୍ରାଥମିକ ସ୍କୁଲରେ ହେଲା । ଯେତେବେଳେ ଦ୍ୱିତୀୟ ଲୋକ ନିଯୁକ୍ତି ପତ୍ର ନେଇ ଆସିଲା ସେତେବେଳକୁ ପ୍ରଥମ ଲୋକ ଯୋଗ ଦେଇ ମାସେ କାମ କରି ସାରିଲାଣି । ତେଣୁ ଦ୍ୱିତୀୟ ଲୋକକୁ ମୁଁ ଫେରାଇ ଦେଲି । ବି.ଡି.ଓ ଜିଦ୍ ଧରିଲେ ସେ ସେଇ ଚରମ୍ପା ସ୍କୁଲରେ କାମ କରିବ । ସେ ଶିକ୍ଷକଙ୍କୁ ସେ ଚରମ୍ପା ପ୍ରାଥମିକ ସ୍କୁଲକୁ ପଠାଇ ଦେଲେ । ମୁଁ ଗୋଟିଏ ରିପୋର୍ଟରେ ଗୋଟିଏ Post ରେ ଦୁଇଜଣ ଶିକ୍ଷକ କାମ କରିବା ଆଇନ୍ ସମ୍ମତ ନୁହେଁ ବୋଲି ଲେଖି ଏହି ନିଯୁକ୍ତି ଭୁଲ୍ କ୍ରମେ ହୋଇଯାଇଛି ବୋଲି ସ୍ପଷ୍ଟ ଉଲ୍ଲେଖକରି ଭଦ୍ରକ ବି.ଡି.ଓ ବାଲେଶ୍ୱର ଜିଲ୍ଲା ଶିକ୍ଷାଧିକାରୀ, ବାଲେଶ୍ୱର ଓ ବାଲେଶ୍ୱର ଜିଲ୍ଲା ପରିଷଦ ଚେୟାରମ୍ୟାନଙ୍କୁ ପଠାଇ ଦେଲି । ଇତିମଧ୍ୟରେ ଦୁଇ ମାସ ବିତିଗଲା । କେହି ମୋ ରିପୋର୍ଟ ଉପରେ ଧ୍ୟାନ ଦେଲେ ନାହିଁ ।

ଶିକ୍ଷକମାନଙ୍କର ଦରମା ବିଲ୍ କରିବା ଦାୟିତ୍ୱ ସବ୍‌ଇନିସ୍ପେକ୍ଟରଙ୍କର । ଯେତେବେଳେ ଶିକ୍ଷକଙ୍କର ଦରମା ବିଲ୍ କରିବା କଥା ଆସିଲା ମୁଁ ଚିଠି ଲେଖିଲି । ଗୋଟିଏ Post ରେ ଦୁଇଜଣଙ୍କୁ ଦରମା ଦେବା ସମ୍ଭବ ନୁହେଁ । ଦ୍ୱିତୀୟ ଶିକ୍ଷକଙ୍କ ପାଇଁ ମୁଁ ଦରମା ବିଲ୍ ଦେଇ ପାରିବି ନାହିଁ । ଯେହେତୁ ବିଡିଓଙ୍କ ଆଦେଶ ଅନୁସାରେ ସେ ଦୁଇମାସ କାମ କଲେଣି ଦରମା ତାଙ୍କର ପ୍ରାପ୍ୟ । ମୋର ବାରଣ ସତ୍ତ୍ୱେ ବି.ଡି.ଓ ତାଙ୍କୁ ସେଠାରେ କାମ କରିବାକୁ ଆଦେଶ ଦେଇଥିବାରୁ ତାଙ୍କର ଦୁଇ ମାସର ଦରମା ବି.ଡି.ଓଙ୍କ ଦରମାରୁ Surcharge କରାଯାଉ ଓ ବର୍ତ୍ତମାନ ତାଙ୍କୁ ଅନ୍ୟ Vacancy ରେ ନିଯୁକ୍ତି ଦିଆଯାଉ । ଯେଉଁ ଶିକ୍ଷକ ପ୍ରଥମେ ଯୋଗ ଦେଇ କାମ କରୁଛନ୍ତି ମୁଁ ତାଙ୍କର ଦରମା ବିଲ୍ କରିଦେବି ।

ସେତେବେଳେ ବାଲେଶ୍ୱର ଜିଲ୍ଲା ପରିଷଦ ଚେୟାରମ୍ୟାନ୍ ଥିଲେ ସତ୍ୟ ନାରାୟଣ ଦାସ । ଭଲ ଲୋକ । ସେ ଭଦ୍ରକ ଆସି ମୋତେ ଡକାଇଲେ ଓ କହିଲେ, "ତମ ଚିଠି ମୁଁ ପଢିଛି । ତମେ ଯାହା କହୁଛ ଠିକ୍ । ବି.ଡି.ଓଙ୍କର

ଭୁଲ୍ ହୋଇଛି । ତମ ପରାମର୍ଶ ଅନୁସାରେ ସେ ଶିକ୍ଷକଙ୍କର ଦୁଇ ମାସର ଦରମା ବି.ଡି.ଓଙ୍କ ଦରମାରୁ Surcharge କଲେ ତାଙ୍କ ଚାକିରି ରହିବ ? ସେ ଜିଦ୍ ଛାଡ । ଦ୍ୱିତୀୟ ଶିକ୍ଷକଙ୍କୁ ଅନ୍ୟ Vacancy ରେ ଦେଖାଇ ତାଙ୍କ ଦରମା ବିଲ୍ କରିଦିଅ"। ମୁଁ କହିଲି, "ବି.ଡି.ଓ ଭୁଲ୍ ମାଗନ୍ତୁ । ଅନ୍ୟ Vacancy ରେ Adjust କରି ସେ ଚିଠି ଲେଖନ୍ତୁ । ତାହା ଜିଲ୍ଲା ପରିଷଦ ଗ୍ରହଣ କରି ଆଦେଶ ଦେଉ । ତାପରେ ମୁଁ ବିଲ୍ କରିବି । ତାହାହିଁ ହେଲା ।

ବେଳେବେଳେ ହାକିମମାନେ କ୍ଷମତାନ୍ଧ ହୋଇ ଅପରିଣାମଦର୍ଶୀ କାମ କରିବାର ଇଏ ଗୋଟିଏ ଉଦାହରଣ । ସେଥିପାଇଁ ନୂଆ ଆଇନ ପ୍ରବର୍ତ୍ତନବେଳେ ପ୍ରତ୍ୟେକ କର୍ମଚାରୀଙ୍କର ସ୍ପଷ୍ଟ Job chart ପ୍ରସ୍ତୁତ କରି କାର୍ଯ୍ୟକାରୀ କରାଯିବା ଉଚିତ୍ ।

## ୨.୧୫ : ପ୍ରାଥମିକ ଶିକ୍ଷାର ନୂତନ ପାଠ୍ୟକ୍ରମ

## ବିଜୁବାବୁଙ୍କର ଆସ୍ପୃହା

ଜିଲ୍ଲା ପରିଷଦ ଆଇନ୍ କାର୍ଯ୍ୟକାରୀ ହେବାପରେ ପ୍ରାଥମିକ ଶିକ୍ଷା ପ୍ରଶାସନ କ୍ଷେତ୍ରରେ ଯେ କେବଳ ବିରାଟ ପରିବର୍ତ୍ତନ ହେଲା ତାହା ନୁହେଁ, ଶିକ୍ଷା ବିଷୟବସ୍ତୁ, ଶିକ୍ଷା ପଦ୍ଧତିରେ ମଧ୍ୟ ବୈପ୍ଳବିକ ପରିବର୍ତ୍ତନ ହେଲା । ୨୨.୦୬.୧୯୬୧ ତାରିଖରେ ବିଜୁ ପଟ୍ଟନାୟକ ଓଡିଶାର ମୁଖ୍ୟମନ୍ତ୍ରୀ ହେଲେ । ବିଜୁବାବୁଙ୍କର ବହୁ ଉଚ୍ଚ ଆକାଂକ୍ଷା ଥିଲା ଯେ ଓଡିଶାର ତଥା ଓଡିଆମାନଙ୍କର ଉନ୍ନତି ହେଉ । ସେ ଜାଣିଥିଲେ ଯେ ଶିକ୍ଷାର ଉନ୍ନତି ନ ହେଲେ ରାଜ୍ୟର ଉନ୍ନତି ସମ୍ଭବ ନୁହେଁ । ତେଣୁ ସେ ପ୍ରଥମେ ପ୍ରାଥମିକ ଶିକ୍ଷା ସିଲାବସ୍ ଉପରେ ଆଖି ପକାଇଲେ । ପ୍ରଚଳିତ ସିଲାବସ୍ ଦେଖି ସେ ଭୀଷଣ ବିରକ୍ତ ହେଲେ ଓ କହିଲେ, "ପୃଥିବୀ ଯାଇ କେଉଁଠି ହେଲାଣି ଆମ ପିଲାମାନେ ପ୍ରାଥମିକ ଶ୍ରେଣୀରେ ଏଇ ଶିକ୍ଷା ପାଇବେ ? ଅତିଶୀଘ୍ର ଏ ସିଲାବସ୍ ପରିବର୍ତ୍ତନ କର । ପ୍ରାଥମିକ ଶ୍ରେଣୀରୁ ବିଜ୍ଞାନ ଶିକ୍ଷା ଆରମ୍ଭ ହେବ ।" ସେ ନିଜେ ମୁଖ୍ୟମନ୍ତ୍ରୀ ହେଲେ ବି ପ୍ରାଥମିକ ଶିକ୍ଷା ସିଲାବସ୍ କମିଟିର ଚେୟାରମ୍ୟାନ ରହିଲେ । ଗୋଟିଏ କମିଟି ଗଠନ କରି ତାକୁ ସିଲାବସ୍ ପ୍ରସ୍ତୁତି ଦାୟିତ୍ୱ ଦେଲେ । କମିଟି ନାଁ ହେଲା "Press, Preparation And Publication (PPP)"କମିଟି ଓ ତା'ର ସଭାପତି ରହିଲେ ଜାତୀୟ କବି ବୀରକିଶୋର ଦାସ ଓ ସଂପାଦକ ଅନନ୍ତ ପଟ୍ଟନାୟକ । ସେତେବେଳେ ଶିକ୍ଷାମନ୍ତ୍ରୀ ଥିଲେ ପବିତ୍ର ମୋହନ ପ୍ରଧାନ ଓ ଡି.ପି.ଆଇ ଥିଲେ

ଡକ୍ଟର ସଦାଶିବ ମିଶ୍ର । ସିଲାବସ୍ ପରିବର୍ତ୍ତନ ଓ ନୂଆ ସିଲାବସ୍ ପ୍ରସ୍ତୁତି ସହିତ ଡି.ପି.ଆଇ ଙ୍କର କିଛି ସଂପର୍କ ନ ଥିଲା, କେବଳ ବିଭାଗୀୟ ମୁଖ୍ୟ ଭାବରେ ଆନୁଷ୍ଠାନିକ ସମ୍ପର୍କ ଥିଲା । ବିଜୁବାବୁଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସିଲାବସ୍ ତିଆରି ହେଲା ଓ ପାଠ୍ୟ ପୁସ୍ତକ ବି ଲେଖା ହେଲା । ୧୯୬୨ ରେ ଏହି ସିଲାବସ୍ ପ୍ରଚଳିତ ହେଲା ।

ନୂଆ ସିଲାବସ୍‌ରେ ମୁଖ୍ୟତଃ ଛଅଗୋଟି ବିଷୟ ରହିଲା ।

ଯଥା :- ୧. ମାତୃଭାଷା

୨. ଗଣିତ

୩. ସାଧାରଣ ବିଜ୍ଞାନ

୪. ସାମାଜିକ ପାଠ

୫. କଳା ଓ ହସ୍ତକର୍ମ

(କ) ମୌଳିକ କୃଷି ଓ ଉଦ୍ୟାନ କର୍ମ

(ଖ) ଚିତ୍ରାଙ୍କନ ଓ Clay Modelling

(ଗ) ସରଳ ଯନ୍ତ୍ରପାତି କାମ

(ଘ) ସଂଗୀତ

(ଙ) କାଗଜ କାମ

(ଚ) ସୂତାକଟା ଓ ତତ୍ ସଂପର୍କିତ କାର୍ଯ୍ୟ

(ଛ) ସୂଚୀ କାମ (ଝିଅ ମାନଙ୍କ ପାଇଁ)

୬. ଶାରୀରିକ ଶିକ୍ଷା

ଏହି ସିଲାବସ୍‌ର କାର୍ଯ୍ୟକାରିତା ପାଇଁ ନିମ୍ନଲିଖିତ ନିର୍ଦ୍ଦିଷ୍ଟ ଓ ସ୍ପଷ୍ଟ ଦିଗ୍‌ଦର୍ଶନ ରହିଲା ।

୧. ସ୍ଥାନୀୟ ଲୋକଙ୍କର ଜୀବନଧାରଣ ଶୈଳୀ, ଜୀବିକା ଓ ଅନ୍ୟାନ୍ୟ ସୁବିଧା ଅନୁଯାୟୀ ସ୍କୁଲ ସମୟ ନିର୍ଦ୍ଧାରିତ ହେବ । ଉପରିସ୍ଥ ହାକିମମାନେ ନିଜ ସୁବିଧା ପାଇଁ ବିଦ୍ୟାଳୟ କାର୍ଯ୍ୟ ନିର୍ଘଣ୍ଟ ନିର୍ଦ୍ଧାରଣ ନ କରି ଲୋକଙ୍କର ସୁବିଧା ପ୍ରତି ଦୃଷ୍ଟି ଦେବେ ।

୨. ସ୍କୁଲର କାର୍ଯ୍ୟ ନିର୍ଘଣ୍ଟ ୬ ଘଣ୍ଟା ହେବ । ପ୍ରଥମ ଅଧଘଣ୍ଟା ସଫେଇ, ଗଛରେ ପାଣିଦେବା, ସମୂହ ପ୍ରାର୍ଥନା, ମୁଖ୍ୟ ଖବର ପଢିବାରେ ବ୍ୟୟିତ ହେବ । ପ୍ରଥମେ ଦୁଇଟି ପିରିଅଡ୍ ୪୦ ମିନିଟ୍ ଲେଖାଁଏ, ତା'ପର ଦୁଇ ପିରିୟଡ୍ ୩୦ ମିନିଟ୍ ଲେଖାଁଏ ଓ ଶେଷ ୩ ପିରିୟଡ୍ ୪୦ ମିନିଟ୍ ଲେଖାଁଏ ହେବ । ମଝିରେ ଏକ ଘଣ୍ଟା ଖେଳ ଛୁଟି ଦିଆଯିବ ।

୩. ପ୍ରଥମ ଶ୍ରେଣୀରେ ସପ୍ତାହକୁ ୨୬ ପିରିୟଡ୍, ୨ୟ ଶ୍ରେଣୀ ୩୨ ପିରିୟଡ୍, ୩ୟ, ୪ର୍ଥ ଓ ୫ମ ଶ୍ରେଣୀ ପ୍ରତ୍ୟେକ ୩୬ ପିରିୟଡ୍ ହେବ ।

୪. ପ୍ରତି ଶନିବାର ଦିନ ୨ୟ ପିରିୟଡ୍ ପରେ ସ୍କୁଲରେ ବାଳସଭା ଅନୁଷ୍ଠିତ ହେବ ଓ ସେଥିରେ ଶିକ୍ଷା ଓ ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହେବ ।

ନୂଆ ସିଲାବସ୍‌ର ବୈଶିଷ୍ଟ୍ୟ ହେଲା ପ୍ରାଥମିକ ଶ୍ରେଣୀରେ ସାଧାରଣ ବିଜ୍ଞାନ ଶିକ୍ଷା । ଭାରତର ଅନ୍ୟ ସବୁ ରାଜ୍ୟ ଓଡିଶାର ଅନୁକରଣ କରି ପ୍ରାଥମିକ ଶ୍ରେଣୀରେ ବିଜ୍ଞାନ ଶିକ୍ଷା ପ୍ରବର୍ତ୍ତନ କଲେ ।

ବିଜ୍ଞାନ ପାଠର ମୁଖ୍ୟ ଉଦ୍ଦେଶ୍ୟ ହେବ ପିଲାଙ୍କ ମନରେ ବୈଜ୍ଞାନିକ କୌତୁହଳ ଜାଗ୍ରତ କରିବା, ବୈଜ୍ଞାନିକ ମନୋବୃତ୍ତି ବୃଦ୍ଧି କରିବା ଓ ବୈଷୟିକ ଧାରଣା ସୃଷ୍ଟି କରିବା । ବୈଜ୍ଞାନିକ ଓ ବୈଷୟିକ ଗ୍ୟାଜେଟ୍ ମଡେଲ ସାହାଯ୍ୟରେ ପିଲାଙ୍କ ମନରେ ବିଜ୍ଞାନ ଓ ଶିଳ୍ପପ୍ରତି ଉଦ୍ଦୀପନା ସୃଷ୍ଟି । ପ୍ରତି ସ୍କୁଲରେ ଗୋଟିଏ କଳଘର (Workshop) ରହିବ ଓ ସେଠାରେ ପିଲାମାନେ କାମ କରିବାର ସୁବିଧା ପାଇବେ । କାଠରେ ତିଆରି ଘର ମଡେଲ, ସାଇକେଲ୍, ମଟର, ବସ୍, ଟ୍ରକ୍,ଓ ଅନ୍ୟାନ୍ୟ ମେସିନର ମଡେଲ ସହିତ ଟେଲିଫୋନ୍, ଟେଲିଗ୍ରାମ୍, ସିଲେଇ ମେସିନ୍‌ର ଖେଳଣା ମଧ୍ୟ ରହିବ । ଓଡିଶାର କଳକାରଖାନା, ଛାପାଖାନା, ସମୁଦ୍ର ଯାତ୍ରା, ବିଦେଶର ପିଲାମାନଙ୍କ ଚିତ୍ର ଆଦି ରହିବ । ତା ବ୍ୟତୀତ ବିଶିଷ୍ଟ ବୈଜ୍ଞାନିକ ଯଥା :- ଡାରଓ୍ୱିନ, ନିଉଟନ୍, ପାଷ୍ଟାର, ହାର୍ଭେ, କୋପର ନିକସ, ଫ୍ଲେମିଂ, ଆର୍କମେଡିସ୍ ଆଦିଙ୍କ କାର୍ଟୁନଙ୍କା ଚିତ୍ର ମଧ ରହିବ । ପିଲାମାନଙ୍କ ମନକୁ ବୈଜ୍ଞାନିକ ଚିନ୍ତା ଧାରାରେ ଉଦ୍ଦୀପିତ କରିବା ପାଇଁ ବ୍ୟବସ୍ଥା କରାଯିବ ।

ସାମାଜିକ ପାଠ ପାଇଁ ଏକ ସଂପୂର୍ଣ୍ଣ ନୂଆ ବ୍ୟବସ୍ଥା କରାଗଲା । ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଶ୍ରେଣୀ ପାଇଁ କୌଣସି ପାଠ୍ୟପୁସ୍ତକ ନ ରଖିବାର ବ୍ୟବସ୍ଥା ହେଲା । ପିଲାମାନଙ୍କ ନିଜ ପରିବେଶ ସମ୍ବନ୍ଧରେ ଜ୍ଞାନ ଓ ଅଭ୍ୟାସ ଗଠନ ଉପରେ

ଗୁରୁତ୍ୱ ଦିଆଗଲା । ପ୍ରଥମ ଶ୍ରେଣୀରେ ନିଜ ଘର, ବାପା, ମା, ଦାଦା, ଖୁଡୀ, ଭାଇ ଭଉଣୀ ଓ ପଡୋଶୀମାନଙ୍କ ବିଷୟରେ ଧାରଣା ସହିତ ସ୍କୁଲ୍ ଶିକ୍ଷକ ସହପାଠୀଙ୍କ ବିଷୟରେ ଜ୍ଞାନ ଆହରଣ କରିବେ । ଧାଡିରେ ଠିଆ ହେବା, ନିଜ ପାଳି ପଡିବା ପର୍ଯ୍ୟନ୍ତ ଅପେକ୍ଷା କରିବା, ଠିକ୍ ଭାବରେ ଚାଲିବା, ଭଦ୍ର ବ୍ୟବହାର କରିବା, "ଦୟାକରି", "କ୍ଷମା କରିବେ", "ଧନ୍ୟବାଦ" ଆଦି କହିବାକୁ ଅଭ୍ୟାସ କରିବେ ।

ଦ୍ୱିତୀୟ ଶ୍ରେଣୀରେ ପିତା ମାତା, ବୟସ୍କ, ଅତିଥିଙ୍କୁ ସମ୍ମାନ ଦେଖାଇବା, ସହାନୁଭୂତିପୂର୍ଣ୍ଣ ବ୍ୟବହାର କରିବା, ଅନ୍ୟ ଲୋକଙ୍କ ଘରକୁ ଗଲେ କିପରି ବ୍ୟବହାର କରାଯିବ ଇତ୍ୟାଦି ଶିଖିବେ । ଡାକ୍ତର, ନର୍ସ, ସମାଜସେବୀମାନଙ୍କ କାମ, ବଢେଇ, କମାର, କୁମ୍ଭାର ପ୍ରଭୃତିଙ୍କ ସେବା, ଆମର ଖାଦ୍ୟ ପାନୀୟ, ପୋଷାକପତ୍ର ସମ୍ବନ୍ଧରେ ଜ୍ଞାନ ଆହରଣ କରିବେ । ସାମାଜିକ ବିଧି ବ୍ୟବସ୍ଥା, ଗ୍ରାମ ପରିମଳ, ପରିବେଶ, ଫୁଲ, ଫଳ ଇତ୍ୟାଦି ସମ୍ବନ୍ଧରେ ଜ୍ଞାନ ଲାଭ କରିବେ ।

ତୃତୀୟ ଶ୍ରେଣୀରେ ଥାନା, ତହସିଲ୍, ଜିଲ୍ଲା ଶାସନ ସମ୍ବନ୍ଧରେ ଜାଣିବେ । ସ୍କୁଲ୍, କଲେଜ, ଡାକ୍ତରଖାନା, ଗ୍ରେନ୍ ଗୋଲା, ପୋଷ୍ଟ ଅଫିସ୍, ବ୍ୟାଙ୍କ, କଳ କାରଖାନା ସମ୍ବନ୍ଧରେ ଓ ତାଙ୍କ କାର୍ଯ୍ୟ ପ୍ରଣାଳୀ ସଂପର୍କରେ ଧାରଣା ପାଇବେ ।

ଚତୁର୍ଥ ଓ ପଞ୍ଚମ ଶ୍ରେଣୀରେ ସେମାନଙ୍କୁ ବହି ପଢିବାକୁ ଦିଆ ଯାଇପାରେ ।

ଏହି ନୂଆ ସିଲାବସ୍‌ରେ ଷଷ୍ଠ ଶ୍ରେଣୀ ବଦଳରେ ୪ର୍ଥ ଶ୍ରେଣୀରୁ ଇଂରାଜୀ ପଢାହେବରାର ବ୍ୟବସ୍ଥା ରହିଛି । ପ୍ରଥମ ଛଅ ମାସ ମୌଖିକ କାର୍ଯ୍ୟ ଉପରେ ଗୁରୁତ୍ୱ ଦିଆଯିବ । ଯଥେଷ୍ଟ ଛବି, ମଡେଲ୍, ଚଳନ୍ତି ମଡେଲ୍, ଟେପ୍ ରେକର୍ଡର ସାହାଯ୍ୟରେ ଶିକ୍ଷା ଦିଆଯିବ ।

କଳା ଓ ହସ୍ତକର୍ମ ଭିତରେ ମୌଳିକ କୃଷି, କାଦୁଅରେ ଫଳ, ମୂଳ ତିଆରି ଓ ସରଳ ଯନ୍ତପାତି ବ୍ୟବହାର ସମସ୍ତଙ୍କ ପାଇଁ ବାଧ୍ୟତା ମୂଳକ ହେବ । ସଂଗୀତ, କାଗଜ, ତୁଳା ଓ ସୂଚୀକାମ ଆଦି ଐଚ୍ଛିକ ବିଷୟ ଭାବରେ ପ୍ରତି ଶ୍ରେଣୀରେ ଶିକ୍ଷା ଦିଆଯିବ ।

ମୋଟ ଉପରେ ୧୯୬୨ ସିଲାବସ୍ ଏକ ସଂପୂର୍ଣ୍ଣ ନୂଆ ଦିଗ୍‌ଦର୍ଶନ ଦେଲା । ପ୍ରାଥମିକ ଶ୍ରେଣୀରେ କିପରି କ'ଣ କ'ଣ ପଢାଯିବ ସେ ବିଷୟରେ ଶିକ୍ଷକ ଓ ଶିକ୍ଷାବିତ୍‌ମାନଙ୍କରଂ ଏକ ନୂଆ ଅନୁଭବ ହେଲା । ପ୍ରାଥମିକ ଶିକ୍ଷାର ମାନ ନିଶ୍ଚିତ ଭାବରେ ବଢିଗଲା । କିନ୍ତୁ ସେ ଉତ୍ସାହ ଓ ଆଗ୍ରହ ବେଶୀଦିନ

ରହିଲା ନାହିଁ । ଶିକ୍ଷକମାନଙ୍କର କର୍ମ କୁଣ୍ଠତା ଯୋଗୁଁ ପୁଣି ପୂର୍ବାବସ୍ଥା ଫେରିଆସିଲା ।

ପ୍ରାଥମିକ ଶିକ୍ଷାପାଇଁ ପ୍ରସ୍ତୁତ ନୂଆ ପାଠ୍ୟକ୍ରମ ବେଶ୍ ପ୍ରଶଂସିତ ହୋଇଥିଲା । ଅନ୍ୟ ରାଜ୍ୟମାନେ ଏହା ଦ୍ୱାରା ପ୍ରଭାବିତ ହେଲେ । ଏହାର ପ୍ରୟୋଗ ବେଳକୁ ମୁଁ ସବ୍‌ଇନିସ୍ପେକ୍ଟର ଚାକିରି ଶେଷ କରି ଓଡିଶା ପବ୍ଲିକ ସର୍ଭିସ୍ କମିଶନ୍ ଦ୍ୱାରା ମନୋନୀତ ହୋଇ ଉତ୍କଳ କୃଷି ମହା ବିଦ୍ୟାଳୟରେ ଅଧ୍ୟାପକ ଭାବରେ ଯୋଗ ଦେଇ ସାରିଥିଲି । ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଯେଉଁ ଆନ୍ତରିକତା ଆଗ୍ରହ ଓ କର୍ମ ପ୍ରବଣତା ଦରକାର ତାହା ସବ୍‌ଇନିସ୍ପେକ୍ଟର ମାନଙ୍କ ଠାରେ ବା ପ୍ରାଥମିକ ଶିକ୍ଷକ ମାନଙ୍କଠାରେ ଦେଖାଗଲା ନାହିଁ । ଏହି ପାଠ୍ୟକ୍ରମ ୧୮ ବର୍ଷ ଚାଲିବା ପରେ SCERT ରେ ୧୯୮୨ ରେ ନୂଆ ପାଠ୍ୟକ୍ରମ ପ୍ରସ୍ତୁତ କରାଗଲା କିନ୍ତୁ ତାହା ପୁରୁଣା ପାଠ୍ୟକ୍ରମ ଭଳି ଉନ୍ନତ ବା ବ୍ୟବହାର ଉପଯୋଗୀ ହେଲା ନାହିଁ , ବରଂ ଅନେକ ଗୁଣରେ ୧୯୬୨ ପାଠ୍ୟକ୍ରମଠାରୁ ନିକୃଷ୍ଟ ହେଲା । ଅନ୍ତତଃପକ୍ଷେ ୧୯୬୨ ପାଠ୍ୟକ୍ରମକୁ ଆଖିଆଗରେ ରଖି ସେହି ଆଦର୍ଶରେ ଓ ଢାଞ୍ଚାରେ ନୂଆ ଭାବେ ଅଧିକ ଉନ୍ନତ ପାଠ୍ୟକ୍ରମ ପ୍ରସ୍ତୁତ କରାଯାଇ ପାରିଥାନ୍ତା । ତାହା ନ କରି ଏକ ନିକୃଷ୍ଟ ପାଠ୍ୟକ୍ରମ ପ୍ରବର୍ତ୍ତନରେ ଓଡିଶାର ଶିକ୍ଷାରେ ବରଂ କ୍ଷତି ହେଲା ।

## ୨.୧୬ : ଜୀବନର ଅଗ୍ନିପରୀକ୍ଷା

୧୯୬୦ ମସିହା ଜୁଲାଇ ମାସ ମଧ ଭାଗରେ ଇନିସ୍ପେକ୍ଟର ଗୌରୀଶ୍ୟାମ ମହାନ୍ତି ଭଦ୍ରକରେ ପ୍ରାୟ ଦିନ ୩ଟା ବେଳେ ପହଞ୍ଚି ମୋତେ ଡକାଇ ପଠାଇଲେ । ମୁଁ ଗୋଟିଏ ଜରୁରୀ କାମ କରୁଥିବାରୁ ତାଙ୍କ ପାଖକୁ ଯିବାକୁ ସାମାନ୍ୟ ବିଳମ୍ବ ହେଲା । ସେଥିରେ ସେ ରାଗିଯାଇ ବିଳମ୍ବର କାରଣ ପଚାରିଲେ । ମୁଁ ଜରୁରୀ କାମ କଥା କହିବାରୁ ସେ କହିଲେ, "ଇନିସ୍ପେକ୍ଟରଙ୍କ କାର୍ଯ୍ୟକ୍ରମଠାରୁ ସେ କାମ ଏତେ ଗୁରୁତ୍ୱପୂର୍ଣ୍ଣ ? ଦାୟିତ୍ୱପୂର୍ଣ୍ଣ ଭାବରେ କିପରି କର୍ତ୍ତବ୍ୟ ସଂପାଦନ କରାଯାଏ ତମେ ଜାଣି ନାହଁ" । ମୁଁ କହିଲି, "ମୁଁ ଯାହା କରିଛି ଠିକ୍ କରିଛି । କେଉଁକାମ କେତେବେଳେ କରିବାକୁ ହେବ ମତେ ଜଣା ଅଛି"। ତା ପରେ ସେ କହିଲେ, "କ'ଣ ଚାକିରି କରିବାକୁ ଇଛା ନାହିଁ ? ମୁଁ କହିଲି, "ଏ ଚାକିରି କରିବାକୁ ଆଉ ଇଛା ନାହିଁ", ଏହା କହି ମୁଁ ଉଠି ଚାଲିଗଲି । ସେହିଦିନ ଠାରୁ ଘରୋଇ ଭାବରେ ଏମ୍.ଏ.ପରୀକ୍ଷା ଦେବା ପାଇଁ ପଢାପଢି ଆରମ୍ଭ କଲି ।

ସେତେବେଳର ପରିସ୍ଥିତି ମୋ ପାଇଁ ଅନୁକୂଳ ନ ଥିଲା । ଏକେ ତ ଡେପୁଟି ଇନସ୍ପେକ୍ଟର ସହିତ ଭଲ ପଡୁ ନ ଥିଲା । ତା ପରେ ଇନିସ୍ପେକ୍ଟରଙ୍କର ବିରକ୍ତି ଭାଜନ ହୋଇଗଲି । ତେଣୁ ମୁଁ ସାବଧାନ ହୋଇ ମୋର କର୍ତ୍ତବ୍ୟ ସଂପାଦନ କରିବାରେ ଲାଗିଗଲି । ଗୌରୀଶ୍ୟାମ ବାବୁ କେବଳ ମୋର ଇନିସ୍ପେକ୍ଟର ନ ଥିଲେ, ସେ ମଧ୍ୟ ମୋର ଟ୍ରେନିଂ କଲେଜର ଶିକ୍ଷକ । ଛାତ୍ର ଭାବରେ ମୁଁ ତାଙ୍କର ସେବା କରେ ଅଧସ୍ତନ କର୍ମଚାରୀ ଭାବରେ ନୁହେଁ । ସେ ମୋତେ ଯାହା କହିଲେ ସେ ସବୁକେବଳ ଅଧସ୍ତନ କର୍ମଚାରୀଙ୍କୁ କୁହାଯାଏ । ତେଣୁ ମୋର ପ୍ରତିକ୍ରିୟା ହେଲା ।

ସେହିଦିନଠାରୁ ସକାଳ ୭ଟା ରୁ ୯ଟା ପର୍ଯ୍ୟନ୍ତ ମୋ ନିଜ ଅଫିସ୍ କାମ କରେ । ସାଢେ ଦଶଟାରୁ ୫ଟା ପର୍ଯ୍ୟନ୍ତ ଡେପୁଟି ଇନିସ୍ପେକ୍ଟର ଅଫିସ କାମ । ତା'ପରେ ବଜାର କରି ଘରକୁ ଆସି ପଢାରେ ବସିଯାଏ । ରାତି ଖାଇ ସାରିବା ପରେ ମଧ୍ୟ ଘଣ୍ଟେ ଦିଘଣ୍ଟା ପଢି ଶୋଇଯାଏ । ଯେଉଁଦିନ ସ୍କୁଲ ପରିଦର୍ଶନରେ ଯାଏ ସାଙ୍ଗରେ ଦିଖଣ୍ଡ ବହି ନେଇ ଯାଇଥାଏ । ସନ୍ଧ୍ୟାବେଳେ ଗାଁ ଲୋକଙ୍କ ସହିତ ଆଲୋଚନା ଶେଷ କରି ୮ଟା ଭିତରେ ତାଙ୍କୁ ବିଦା କରିଦେଇ ମୁଁ ପଢିବସେ । କର୍ତ୍ତବ୍ୟରେ କେବେ ଅବହେଳା କରେନାହିଁ । କାରଣ ଇନିସ୍ପେକ୍ଟର ରାଗ ରଖିଛନ୍ତି । ଡେପୁଟି ଇନିସ୍ପେକ୍ଟର ଉଦାର ଲୋକ ନୁହେଁ । ଟିକିଏ ଦୋଷ ଦେଖିଲେ ମାଡି ବସିବେ । ମୁଁ ସବୁବେଳେ ସାବଧାନ ଥାଏ ।

ଇତିମଧ୍ୟରେ ବାଲେଶ୍ୱର ଜିଲ୍ଲା ଶିକ୍ଷାଧିକାରୀ ଦୁର୍ଯ୍ୟୋଧନ ରାଉତଙ୍କର ବଦଳି ହେଲା । ତାଙ୍କ ସ୍ଥାନରେ ଯଦୁମଣି ମହାପାତ୍ର ଯୋଗଦେଲେ । ତାଙ୍କ ଅଫିସରେ ଗୋଟେ ମିଟିଂରେ ଯୋଗ ଦେବାକୁ ମୁଁ ଯାଇଥାଏ । ସେ କେଉଁଠି ଶୁଣିଲେ ଯେ ମୁଁ ଓଡିଆରେ ଏମ୍.ଏ.ପରୀକ୍ଷା ଘରୋଇ ଭାବରେ ଦେବାକୁ ପ୍ରସ୍ତୁତ ହେଉଛି । ମୋତେ ପଚାରିଲେ ବହିପତ୍ର ସବୁ ପାଇ ଯାଇଛନ୍ତି ? ମୁଁ କହିଲି, "ଯେତିକି ମିଳିଲା ତାକୁ ପଢାପଢି କରୁଛି । ବାକି ଯାହା ରହିବ ଛୁଟିରେ ଗଲେ କଟକ ରେଭେନ୍ସା କଲେଜ ଲାଇବ୍ରେରୀରେ ପଢି ଦେବି ।" ସେ କହିଲେ, "ମୋ ପାଖରେ କେତେକ ବହି ଓ "Grierson's Linguistic Survey of India" ରିପୋର୍ଟର ନୋଟ୍ ମୋ ପାଖରେ ଅଛି । ମୁଁ ସେ ସବୁ ଆପଣଙ୍କୁ ଦେଇଦେବି । ମୋ ପାଖରେ ଥିଲେ ବର୍ତ୍ତମାନ ମୁଁ ଦେଇଥାନ୍ତି । ଆପଣ ଯାଆନ୍ତୁ ଆଉ ଆଠ ଦଶ ଦିନ ଭିତରେ ମୁଁ ନେଇ ଆପଣଙ୍କୁ ଭଦ୍ରକରେ ଦେଇ ଆସିବି ।"

ସତକୁ ସତ ଆଣୁଏ ଉଚରେ ଦୁଷ୍ପ୍ରାପ୍ୟ ବହି ଓ ନୋଟସ୍ ସେ ନେଇ ଭଦ୍ରକରେ ମୋତେ ଦେଲେ। ତାଙ୍କର ଏ କାର୍ଯ୍ୟରୁ ଯେ କୌଣସି ଲୋକ ସହଜରେ ଅନୁମାନ କରି ପାରିବ ଯେ ସେ ଜଣେ ବିଦ୍ୱାନ ଲୋକ । ବିଦ୍ୟା ବାଣ୍ଟିଲେ ତାହା ବୃଦ୍ଧିପାଏ । କମିଯାଏ ନାହିଁ। ସେ ଅତ୍ୟନ୍ତ ସହାନୁଭୂତିଶୀଳ ଓ ଦୟାଳୁ ଲୋକ ନ ହେଲେ ମୋ ପାଇଁ ଏତେ ବଡ ବିରାଟ ଗଣ୍ଡିରା ଧରି ବାଲେଶ୍ୱରରୁ ଭଦ୍ରକ ପର୍ଯ୍ୟନ୍ତ ଆସି ନଥାନ୍ତେ। ମୁଁ ଅତ୍ୟନ୍ତ କୃତକୃତ୍ୟ ହୋଇ ବହିଗୁଡିକ ତାଙ୍କ ପାଖରୁ ରଖିଲି ଓ ପଢାପଢିରେ ଅଧିକ ମନୋଯୋଗ ଦେଲି। ମୁଁ ଯେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡିଆ ଏମ୍.ଏରେ ପ୍ରଥମ ସ୍ଥାନ ଅଧିକାର କଲି ସେଥିରେ ଯଦୁମଣି ବାବୁଙ୍କର ଅବଦାନ ବହୁତ ବେଶୀ, ଅତି ମୂଲ୍ୟବାନ ।

ଏମ୍.ଏ ପରୀକ୍ଷା ୧।୫।୧୯୬୧ ରୁ ଆରମ୍ଭ ହେବା ପାଇଁ କାର୍ଯ୍ୟକ୍ରମ ନିର୍ଦ୍ଧାରିତ ହୋଇ ସାରିଥିଲା। ତେଣୁ ମୁଁ ନଭେମ୍ବର ମାସ ୨ ତାରିଖରୁ ମାର୍ଚ୍ଚ, ଏପ୍ରିଲ ଓ ମେ ତିନି ମାସ ଛୁଟି ପାଇଁ ଦରଖାସ୍ତ କରିଦେଲି। ଫେବୃୟାରୀ ମାସ ଶେଷ ଆଡକୁ ଇନ୍ସପେକ୍ଟର ଭଦ୍ରକ ଆସିଥିଲେ। ମତେ, କହିଲେ, "ପୂର୍ଣ୍ଣ !ପରୀକ୍ଷା ପାଇଁ ତମକୁ ଛୁଟି ଦିଆଯାଇପାରିବ ନାହିଁ।" ମୁଁ କହିଲି, "ଭଲ ହେଲା ପାଠତ କିଛି ପଢି ନାହିଁ"। ଏ ବର୍ଷ ପରୀକ୍ଷାରେ ବସି ଫେଲ ହେବା ଅପେକ୍ଷା ଆସନ୍ତା ବର୍ଷ ପରୀକ୍ଷା ଦେଲେ First class ପାଇଯିବି। ମାର୍ଚ୍ଚ ୧୦ ତାରିଖରେ ଇନସ୍ପେକ୍ଟର ଠାରୁ ଚିଠି ଆସିଲା ମାର୍ଚ୍ଚ ୩୧ ତାରିଖ ପରେ ପୂର୍ଣ୍ଣଚନ୍ଦ୍ର ରାଉତଙ୍କୁ ଏମ୍.ଏ ପରୀକ୍ଷା ପାଇଁ ରିଲିଭ କରି ଦିଅ। ସେ ବୋଧ ହୁଏ ଭାବିଲେ ଆସନ୍ତା ବର୍ଷ First class ପାଇବ କାହିଁକି, ଏଇ ବର୍ଷ ଯାଇ ଫେଲ ହୋଇ ଆସୁ। ପାହିମହୁରା ଇ.ଟି. ସ୍କୁଲର ହେଡମାଷ୍ଟର ନାରାୟଣ ଜେନା ମୋ ସହିତ ଏମ.ଏ. ପରୀକ୍ଷା ଦେବାକୁ ବାହାରିଥାନ୍ତି। ମଝିରେ ମଝିରେ ମୋ ପାଖକୁ ପଢିବାକୁ ଆସନ୍ତି। ଇନସ୍ପେକ୍ଟରଙ୍କ ଚିଠି ଦେଖି ସେ କହିଲେ ଏ ବର୍ଷ ପରୀକ୍ଷା ଦେବାକୁ ଯିବାନାହିଁ। ଏତେ କମ୍ ଦିନ ମିଳୁଛି। ପ୍ରସ୍ତୁତି ଭଲ ହୋଇ ପାରିବ ନାହିଁ। ମୁଁ କହିଲି, "ଏତ ୨୫-୨୬ ଦିନ ମିଳୁଛି, ଯଦି ୫ ଦିନ ମିଳେ ବି ମୁଁ ପରୀକ୍ଷା ଦେବାକୁ ଯିବି। ଆପଣ ଆସନ୍ତା ବର୍ଷକୁ ରହନ୍ତୁ। ମୁଁ ଏଇ ବର୍ଷ ପରୀକ୍ଷା ଦେଇ ଦିଏ। ସେ ବାଧ ହୋଇ ମୋ ସହିତ ବାହାରିଲେ। ଆମେ କଟକରେ ପାଟରା ସାହିରେ ଖଣ୍ଡେ ଘର ଭଡା ନେଇ ରହିଲୁ। ପିଲାଟିଏ ନେଇଥାଉ। ରୋଷେଇ ବାସ କରିଦେବା ପାଇଁ । ଥାଉ ମଝିରେ ମଝିରେ ରେଭେନ୍ସା କଲେଜକୁ ଯାଉ ଦେଖିବାକୁ କଲେଜ ପିଲାମାନେ କିପରି ପ୍ରସ୍ତୁତ ହେଉଛନ୍ତି।

ଆମେ କଟକରେ ପହଞ୍ଚିବାର ଆଠଦିନ ପରେ ଓଡିଶାରେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ହେବା ପାଇଁ ଘୋଷଣା ହୋଇଗଲା। ଫଳରେ ଆମ ପରୀକ୍ଷା ମାସେ ବାର ଦିନ ଘୁଞ୍ଚିଗଲା। ପ୍ରସ୍ତୁତି ପାଇଁ ଯଥେଷ୍ଟ ସମୟ ମିଳିଗଲା। ଆମେ ଛୁଟିରେ ଥିଲେ ବି ଆମକୁ ନିର୍ବାଚନ Duty ଦିଆଗଲା। ଆମକୁ ଅସୁବିଧାରେ ପକାଇବାକୁ ଇଏ ଗୋଟାଏ ମୌକା ମିଳିଗଲା। ଆମକୁ ନିର୍ବାଚନ କାର୍ଯ୍ୟରେ ଯୋଗ ଦେବା ପାଇଁ ପ୍ରସ୍ତୁତ୍ ହୋଇ ରହିବା ପାଇଁ ଚିଠି ଗଲା। କିନ୍ତୁ ନିର୍ଦ୍ଦିଷ୍ଟ କାମ ଦିଆଗଲା ନାହିଁ। ଜୁନ୍ ମାସରେ ପରୀକ୍ଷା ସାରି ଆମେ ଆମ ଚାକିରିରେ ଯୋଗ ଦେବା ପାଇଁ ଗଲୁ।

ପରୀକ୍ଷାର ତୃତୀୟ ଦିନ ପ୍ରାୟ ୫୦ ଜଣ ପିଲା ଉଠି ଠିଆ ହେଲେ। ଆମେ ପଚାରିଲୁ, "କ'ଣ ହେଲା ?" ସେମାନେ କହିଲେ, "ପ୍ରଶ୍ନ ଭିତ ପଡିଗଲା। ଆମେ ପରୀକ୍ଷା Drop କରିବୁ।" ତାଙ୍କ ସହିତ ଆମ ନାରଣବାବୁ ମଧ୍ୟ ଉଠି ଆସିଲେ ଓ ମତେ କହିଲେ ପରୀକ୍ଷା Drop କରିଦେବା । ମୁଁ ମନା କଲି, କହିଲି, "ସେମାନେ ବାପ ପଇସାରେ ପଢୁଛନ୍ତି।, ତେଣୁ ପରୀକ୍ଷା Drop କରିବେ। ଆମେ ପରା ଆମ ସ୍ୱଚ୍ଛ ରୋଜଗାରରୁ ଖର୍ଚ୍ଚ କରି ପରୀକ୍ଷା ଦେଉଛନ୍ତି, ଆମେ କେମିତି Drop କରିବା" ସେ ବାଧ ହୋଇ ବସି ପରୀକ୍ଷା ଦେଲେ।

ପରୀକ୍ଷା ଫଳ ବାହାରିବାକୁ ଅଗଷ୍ଟ ମାସ ହୋଇଗଲା। ପରୀକ୍ଷା ଫଳ ଅତ୍ୟନ୍ତ ଅପ୍ରତ୍ୟାଶିତ ଥିଲା। ଖବର କାଗଜ ଦେଖିଲା ବେଳକୁ ମୁଁ ଓ ବନବାଳା ପଟ୍ଟନାୟକ ଦୁହେଁ Brackted First Position ରଖିଛୁ. ସମସ୍ତେ ଖୁସି ହେଲେ, ମୋ ସାଙ୍ଗମାନେ, ଆମ ଶିକ୍ଷକମାନେ ଓ ଅନ୍ୟ ସମସ୍ତେ କେବଳ ଇନ୍ସପେକ୍ଟର ଓ ଡେପୁଟି ଇନ୍ସପେକ୍ଟରଙ୍କର ଦୁଃଖ ହେଲା। ମୁଁ ବାଗୁରାଇ ହାଇସ୍କୁଲ ଆଡେ ଆସିଲା ବେଳେ ଦେଖିଲି ଭଦ୍ରକ କଲେଜ ସେକ୍ରେଟେରୀ ନରେନ୍ଦ୍ର ପ୍ରସାଦ ଦାସ ଠିଆ ହୋଇଛନ୍ତି। ମୋତେ ଦେଖି କହିଲେ, ପୂର୍ଣ୍ଣବାବୁ ମୁଁ ପରୀକ୍ଷା ଫଳ ଦେଖିଲିଣି। ଆମ କଲେଜରେ ଗୋଟାଏ ଓଡିଆ ଅଧ୍ୟାପକ ଚାକିରି ଖାଲି ଅଛି। ଆପଣ ଆସନ୍ତୁ, ମୁଁ କହିଲି, ସାର୍ ପାଶ୍ କରୁକରୁ ଚାକିରି କେତେ ଜଣଙ୍କ ଭାଗ୍ୟରେ ଜୁଟେ ? ମତେ ଗୋଟାଏ Chance ଦିଅନ୍ତୁ Public Service Commission ରେ ଭାଗ୍ୟ ପରୀକ୍ଷା କରିବାକୁ। ପ୍ରଥମ ଥର ଯଦି ହେଲା ତ ଭଲ, ନ ହେଲେ ସିଧା ଆପଣଙ୍କ କଲେଜ।

## ୨.୧୭ - ଲୋକସେବା ଆୟୋଗ ସାକ୍ଷାତକାର

ବହୁ ପ୍ରତୀକ୍ଷିତ ଲୋକ ସେବା ଆୟୋଗ ବିଜ୍ଞାପନ ବାହାରିଲା। ଉତ୍କଳ

କୃଷି ମହାବିଦ୍ୟାଳୟର ଓଡିଆ ଅଧ୍ୟାପକ ଚାକିରି ପାଇଁ, ଗୋଟାଏ ମାତ୍ର ପୋଷ୍ଟ। ଫର୍ମ ପୂରଣ କରିନେଲି ଇନସ୍ପେକ୍ଟରଙ୍କ ପାଖକୁ Forward କରିଦେବା ପାଇଁ। ସେ କହିଲେ, "ଲୋକେ ୧୫।୨୦ ଥର ଲୋକ ସେବା ଆୟୋଗକୁ ଯାଉଛନ୍ତି" ସାକ୍ଷାତକାର ପାଇଁ, ତୁତ ସରକାରୀ ଚାକିରିରେ ଅଛୁ। ୧୫।୨୦ ଥର ଇଣ୍ଟରଭିଉ ଦେବାକୁ ମାନସିକ ପ୍ରସ୍ତୁତି କରିନେ। "ମୁଁ କହିଲି" ନାଇ ସାର୍ ଥରେ ମାତ୍ର ଯିବି। ଯଦି ହେଲା ତ ଭଲ। ନ ହେଲେ ଭଦ୍ରକ କଲେଜ। ପୋଷ୍ଟ ଖାଲି ଅଛି। ସେକ୍ରେଟେରୀ Offer ଦେଇଛନ୍ତି। ସେ ଦରଖାସ୍ତ Forward କରିଦେଲେ।

ଲୋକ ସେବା ଆୟୋଗରୁ ଚିଠି ଆସିଲା। ୧୯୬୨ ମସିହା ଏପ୍ରିଲ ମାସ ୧୦ ତାରିଖରେ ସାକ୍ଷାତକାର। ଗୋଟିଏ ପ୍ୟାଣ୍ଟ ଓ କୋଟ କିଣିଲି ୨୧.୦୦ ଟଙ୍କାରେ। ତାକୁ ପିନ୍ଧି ଗଲି ସାକ୍ଷାତକାର ଦେବାକୁ । ମନରେ ଭୟ। ଏକେ ତ ସବ୍‌ଇନସ୍ପେକ୍ଟର ଚାକିରିରେ ଅଛି। ମୋ ଅପେକ୍ଷା ବଡ ବଡ ଚାକିରିରେ ଥିବା ଲୋକ ଚକମକିଆ ପୋଷାକପତ୍ର ପିନ୍ଧି ଆସିଛନ୍ତି। ଅଧିକାଂଶ ଘରୋଇ କଲେଜରେ ଅଧ୍ୟାପକ ଚାକିରି କରୁଛନ୍ତି । ଦେଖିଲି, କାହାକୁ ୩ ମିନିଟରେ, କାହାକୁ ୨ ମିନିଟରେ ସାକ୍ଷାତକାର ସାରି ପଠାଇ ଦେଉଛନ୍ତି। ମୋ ପାଳି ପଡିଲା ପ୍ରାୟ ୧୨.୩୦ ମିନିଟ ସମୟରେ । କମିଶନର ୩ ଜଣ ସଦସ୍ୟ - ଚେୟାରମ୍ୟାନ ଗୋପବନ୍ଧୁ ମିଶ୍ର, ବଙ୍କିମ ପଟ୍ଟନାୟକ ଓ ମୋତି ପଣ୍ଡିତ। କୃଷି ବିଭାଗ ନିର୍ଦ୍ଦେଶକ ସୁଧାଂଶୁ ମୋହନ ପଟ୍ଟନାୟକ ( ଯେ ପରବର୍ତ୍ତୀ କାଳରେ ମୁଖ୍ୟ ସଚିବ ହେଲେ) ଓ ଓଡିଆ Expert କୁଞ୍ଜବିହାରୀ ତ୍ରିପାଠୀ। ପ୍ରଥମ ୧୫।୨୦ ମିନିଟ ବହୁତ ପ୍ରଶ୍ନ ପଚାରିଲେ। ସବୁ ପ୍ରଶ୍ନର ଠିକ୍ ଠିକ୍ ଉତ୍ତର ଦେଲି। ଶେଷରେ ଗୋଟାଏ ଜଟିଳ ସମସ୍ୟା କମିଶନର ସଦସ୍ୟମାନେ ଉଠାଇଲେ। ପ୍ରଶ୍ନ ହେଲା, ବୈଷ୍ଣବ କବିତାରେ ଅଶ୍ଳୀଳତା ଦେଖାଯାଏ କାହିଁକି ? ମୁଁ ସଂକ୍ଷେପରେ ଉତ୍ତର ଦେଲି, ଦୁଇଟି କାରଣ ଯୋଗୁଁ । ପ୍ରଥମ କାରଣ ହେଲା ଭକ୍ତ ଯେତେବେଳେ ଭଗବତ୍ ଚରଣାରବିନ୍ଦରେ ମନୋନିବେଶ କରି କବିତା ଲେଖେ ସେ ଶ୍ଳୀଳ ଲେଖୁଛି କି ଅଶ୍ଳୀଳ ଲେଖୁଛି ଜାଣି ପାରେ ନାହିଁ। ଦ୍ୱିତୀୟ କାରଣ ହେଲା କୌଣସି ଅଭକ୍ତ କବି ନିଜର ପୂର୍ବ ରାତିର ଅଶ୍ଳୀଳ ଅଭିଜ୍ଞତାକୁ କବିତାକାରରେ ପ୍ରକାଶ କରି ସେଥିରେ ରାଧାକୃଷ୍ଣଙ୍କ ନାମ ରୂପକ ତୁଳସୀପତ୍ରକୁ ଯୋଡି ଦିଏ। ସେମାନଙ୍କୁ ତୁଳସୀ ପତ୍ରିଆ ବୈଷ୍ଣବକବି ବୋଲି କୁହାଯାଏ। କମିଶନ ପଚାରିଲେ ତୁଳସୀ ପତ୍ରିଆ ବୈଷ୍ଣବ କବି କିଏ? ମୁଁ ଉତ୍ତର ଦେଲି, "କବିତାରୁ ତୁଳସୀ ପତ୍ରିଆ ବୈଷ୍ଣବ କବିଙ୍କୁ ଚିହ୍ନିବା କଷ୍ଟ। ତଥାପି କବିସୂର୍ଯ୍ୟଙ୍କର

ତୁଳସୀ ପତ୍ରିଆ ବୈଷ୍ଣବ କବି ଭାବରେ ଦୁର୍ନାମ ଅଛି।" କମିଶନ ପଚାରିଲେ, " କାହିଁକି ?" ମୁଁ କହିଲି "ସେ ଏକ ଲମ୍ବା କାହାଣୀ, କମିଶନଙ୍କର ଧୈର୍ଯ୍ୟ ନଥିବ ତାହା ଶୁଣିବାପାଇଁ" କମିଶନ୍ କହିଲେ "ନା ଆମର ଧୈର୍ଯ୍ୟ ଅଛି, କୁହନ୍ତୁ।" ତା ପରେ ମୁଁ କହିଲି,

"କବିସୂର୍ଯ୍ୟ ଗଞ୍ଜାମ, ଆଠଗଡରେ ଦେଓ୍ୱାନ ଥା'ନ୍ତି। ରାଜବାଟୀ ଭିତରକୁ ତାଙ୍କର ଅବାଧ ପ୍ରବେଶ ଥାଏ। ଦିନେ ସକାଳେ ସେ ରାଜବାଟୀ ଭିତରକୁ ପ୍ରବେଶ କଲାବେଳେ ରାଜ ଜେମା ଚନ୍ଦ୍ରକଳା ସ୍ନାନ କରି ଉଲଗ୍ନ ଅବସ୍ଥାରେ ଉଠି ଆସୁଥାନ୍ତି। କବିସୂର୍ଯ୍ୟଙ୍କ ଦୃଷ୍ଟି ତାଙ୍କ ଉପରେ ଓ ରାଜଜେମାଙ୍କ ଦୃଷ୍ଟି କବିସୂର୍ଯ୍ୟଙ୍କ ଉପରେ ପଡିଗଲା। ରାଜଜେମା କୂଳରେ ଥିବା ତାଙ୍କ ଶାଢୀକୁ ଅଣ୍ଟାରେ ଗୁଡାଇ ଦେଇ ସ୍ନାନ ମଣ୍ଡପକୁ ଦୌଡି ଚାଲି ଗଲେ। ପ୍ରେମିକ କବି ପରେ ସ୍ନାନ ମଣ୍ଡପ କାନ୍ଥରେ ଅଙ୍ଗାରରେ କବିତା ଲେଖିଲେ।

କର କ୍ଷମାରେ, ରତି ପ୍ରତିମା ତୁ କର କ୍ଷମାରେ !
କେଉଁ ପ୍ରତିହାରିଣୀ କି ଦାସୀ କହିଥାନ୍ତା, ଯେବେ ଧାଇଁ ଆସି
ତା ନ ମାନି ପଶିଥିଲେ ଝାସି, ମାନ ଉଚିତ ମୋଠରେ ତନୁ ମଧ୍ୟମାରେ,

ପୂରା କବିତାଟି ଆବୃତ୍ତି କରିଦେଲି। ତାପର ଘଟଣା ହେଲା ଦାସୀମାନେ ସ୍ନାନ ମଣ୍ଡପ କାନ୍ଥରେ ଅଙ୍ଗାରରେ ଲେଖାଥିବା କବିତା ପଢିଲେ, ରାଣୀଙ୍କୁ କହିଲେ , ରାଣୀ କବିତା ପଢି ରାଜାଙ୍କୁ କହିଲେ । ରାଜା ମଧ କବିତା ପଢିଲେ ଓ ୨୪ ଘଣ୍ଟା ମଧ୍ୟରେ ଆଠଗଡ ରାଜ୍ୟ ଛାଡି ଯିବା ପାଇଁ କବିସୂର୍ଯ୍ୟଙ୍କୁ ଆଦେଶ ଦେଲେ । ରାତିରେ ରାଜା ଶୋଇବାକୁ ଯିବା ସମୟରେ କବିସୂର୍ଯ୍ୟ ଆଠଗଡ ଛାଡି ଯାଉଥିବା ସମୟରେ ଏଇ କବିତାଟି ଗାଇ ଗାଇ ଯାଉଥିଲେ। ରାଜାଙ୍କ ଶୟନ କକ୍ଷର ଝରକା ପାଖରେ ସେ ଗାଇଲେ, " ଶୁଣି ଶ୍ରୀକୃଷ୍ଣ ବିନୟ ବାଣୀ, ହରଷରେ ସେ ରମଣୀ ମଣି, ନିଧୁବନ ରଚିଲେ ତତ୍କ୍ଷଣି, ଭଣେ ବସୁନ୍ଧରା ବସୁ ଦୁର୍ଗ ସୁତ୍ରାମାରେ।" ଏହା ଶୁଣି ରାଜା ରାଣୀଙ୍କୁ କହିଲେ, ଏ କବିତା ତ ରାଧାକୃଷ୍ଣ ପ୍ରେମ ଲୀଳାର କବିତା। ବୋଧହୁଏ କବିସୂର୍ଯ୍ୟଙ୍କୁ ବହିଷ୍କାର କରିବା ଭୁଲ୍ ହୋଇଗଲା। ରାଣୀ କହିଲେ ଦେଖ, ପୂର୍ବରୁ ଚନ୍ଦ୍ରକଳା ଓ କବିସୂର୍ଯ୍ୟଙ୍କ ପ୍ରେମ ନେଇ ଗୁଜବ ପ୍ରଚାରିତ ହୋଇଛି। ଏବେ କବିସୂର୍ଯଙ୍କ ବହିଷ୍କାର ଆଦେଶ ବି

ପ୍ରଚାରିତ ହୋଇଛି। ତାଙ୍କୁ ବହିଷ୍କାର ନକଲେ ଚନ୍ଦ୍ରକଳା ଆତ୍ମହତ୍ୟା କରିବ। ଏହା ପରେ କବିସୂର୍ଯ୍ୟ ଆଠଗଡ ତ୍ୟାଗ କରି ଚାଲିଗଲେ ଓ ତାଙ୍କ ଦ୍ୱାରା ରଚିତ 'ଚନ୍ଦ୍ରକଳା' କାବ୍ୟ ଅସଂପୂର୍ଣ୍ଣ ରହିଲା। ପ୍ରାମାଣିକ ତଥ୍ୟ ସହ ଏ ଗପ ଶୁଣ କମିଶନ୍ ଖୁସି ହୋଇଗଲେ। ମୋର କ୍ୟାରିୟର ଭଲ ଥିଲା। ସାକ୍ଷାତ୍‌କାର ବି ଭଲ ହେଲା। ୩୨ ମିନିଟ୍ କାଳ ସାକ୍ଷାତ୍‌କାର ଚାଲିଥିଲା। ସେଇ ଗୋଟିକ ପୋଷ୍ଟ ପାଇଁ ମୁଁ ମନୋନୀତ ହେଲି।

ମୁଁ ଭଦ୍ରକ ଫେରିଯାଇ ପୁଣି ମୋ ସବ୍‌ଇନ୍‌ସପେକ୍ଟର କାମରେ ଲାଗିଲି। ଦିନେ ଖବର କାଗଜରେ ଦେଖି ମୋ ସାଙ୍ଗମାନେ କହିଲେ , "ଖବର କାଗଜରେ ବାହାରିଛି ତୁ ଯାଇ ଉତ୍କଳ କୃଷି ମହାବିଦ୍ୟାଳୟରେ ଅଧ୍ୟାପକ ଭାବରେ ଯୋଗ ଦେଲୁଣି। ତୁ କ'ଣ ଏଠି ଅଛୁ ?" ମୁଁ ବି ଖବର କାଗଜ ଦେଖିଲି। ଜାଣିଲି ଯେ ଇତି ମଧ୍ୟରେ ମୋର ନିଯୁକ୍ତିପତ୍ର ଆସିଛି ଓ କେଉଁଠି ହଜି ଯାଇଛି। ତେଣୁ ମୁଁ ଭୁବନେଶ୍ୱର ଦୌଡିଲି ନିଯୁକ୍ତିପତ୍ରର Duplicate Copy ଆଣିବା ପାଇଁ । ଆଣି ଆସିଲା ପରେ ଡେପୁଟି ଇନିସ୍ପେକ୍ଟର ଈଶ୍ୱର ଚନ୍ଦ୍ର ପରିଡା କହିଲେ "ଶିକ୍ଷା ବିଭାଗ ତଥା ଇନିସ୍ପେକ୍ଟରଙ୍କ ଠାରୁ ଚିଠି ନ ଆସିବା ଯାଏ ଆପଣଙ୍କୁ ରିଲିଭ କରି ପାରିବି ନାହିଁ। ସେତେବେଳେ ବାଲେଶ୍ୱର ସର୍କଲ ଇନିସ୍ପେକ୍ଟର ଦୀନବନ୍ଧୁ ପ୍ରାଣିଗ୍ରାହୀ' ତାଙ୍କୁ ଟେଲିଫୋନ୍ କରି ସବୁ କଥା ଜଣାଇଲି। ସେ କହିଲେ, " ଡେପୁଟି ଇନିସ୍ପେକ୍ଟରଙ୍କୁ ପୋଷ୍ଟ ଅଫିସକୁ ଡାକ।" (ସେତେବେଳେ ଅଫିସରେ ଟେଲିଫୋନ ନଥିଲା। ପୋଷ୍ଟ ଅଫିସକୁ ଯାଇ ଟେଲିଫୋନ୍ କରିବାକୁ ପଡୁଥିଲା।) ମୁଁ ଡାକି ଦେଲି । ଇନିସ୍ପେକ୍ଟର ତାଙ୍କୁ କ'ଣ କହିଲେ କେ ଜାଣି, ସେ ମୁହଁକୁ ଆମ୍ବିଳା କରି ମୋତେ କହିଲେ, "ଚାଲନ୍ତୁ, ମୁଁ ଆପଣଙ୍କୁ ରିଲିଭ କରି ଦେଉଛି। ସେହିଦିନ ସେଠାରୁ ରିଲିଭ ହେଲି। ମୋ ସର୍କଲ ଶିକ୍ଷକମାନେ ମୋର ବିଦାୟକାଳୀନ ସଭା କଲେ ଓ ମୋତେ ବିଦାୟ ଦେଲେ"।

୨୪। ୭। ୧୯୬୨ ତାରିଖରେ ମୁଁ ଉତ୍କଳ କୃଷି ମହାବିଦ୍ୟାଳୟ ଅଧ୍ୟାପକ ଭାବରେ ଯୋଗ ଦେଲି। ମୁଁ ଯୋଗ ଦେବାର ଠିକ୍ ମାସକ ପରେ ୨୪। ୮। ୧୯୬୨ ତାରିଖରେ Orissa University of Agriculture & Technology ଉଦ୍‌ଘାଟିତ ହେଲା। ଓଡିଶାର ମୁଖ୍ୟମନ୍ତ୍ରୀ ବିଜୁପଟ୍ଟନାୟକଙ୍କ ସଭାପତିତ୍ୱରେ ଅନୁଷ୍ଠିତ ସଭାରେ United States of America ରାଷ୍ଟ୍ରଦୂତ ପ୍ରଫେସର ଗାଲ୍‌ବ୍ରେଥଙ୍କ ଦ୍ୱାରା ଉଦ୍‌ଘାଟିତ ହେଲା। ତାପରେ ଆମକୁ Options ମଗା

ହେଲା । ଆମେ ସରକାରୀ ଋକିରିକୁ ଫେରି ଯିବାକୁ ଋହୁଁ କି ବିଶ୍ୱ ବିଦ୍ୟାଳୟ ଋକିରିରେ ରହିବାକୁ ଋହୁଁ । ମୁଁ ସରକାରୀ ଋକିରିକୁ ଫେରି ଯିବାକୁ ଋହିଁଲି ।

## ୨.୧୮ - ଶିକ୍ଷା ବିଭାଗକୁ ପ୍ରତ୍ୟାବର୍ତ୍ତନ

ସରକାରୀ ଋକିରୀକୁ ଫେରି ଆସିବା ପାଇଁ ମତାମତ ଦେଇ ଅପେକ୍ଷା କରି ରହିଲି । କୌଣସି ଚିଠି ପତ୍ର ଆସିଲା ନାହିଁ । କାରଣ ସରକାରୀ ସଂସ୍ଥାରେ ମନକୁ ମନ କିଛି ଘଟେ ନାହିଁ । କାମ ପଛରେ ଗୋଡାଇବାକୁ ପଡେ । ମୁଁ ଯାଇ Development Secretary ଗୋପାଳ ବାବୁଙ୍କୁ ଦେଖାକଲି । ସେ କହିଲେ, " ତମ ଦରଖାସ୍ତ ଶିକ୍ଷା ବିଭାଗ ସେକ୍ରେଟେରୀଙ୍କ ପାଖକୁ ପଠାଇ ଦିଆଯାଇଛି । ଶିକ୍ଷା ବିଭାଗ ସେକ୍ରେଟେରୀଙ୍କୁ ଦେଖା କଲି । ସେ କହିଲେ," ତମ ଦରଖାସ୍ତ ଡି.ପି ଆଇଙ୍କ ପାଖକୁ ମତାମତ ପାଇଁ ପଠାଯାଇଛି । ସେତେବେଳେ ଡି.ପି.ଆଇ ଡକ୍ଟର ସଦାଶିବ ମିଶ୍ର । ମୋ ମନରେ ସନ୍ଦେହ ହେଲା, ଡକ୍ଟର ମିଶ୍ର କିଛି କେଁ ବାହର କରି ପାରନ୍ତି । ପ୍ରତି କଥାରେ କେଁ ବାହାର କରିବା ତାଙ୍କର ଅଭ୍ୟାସ ।

ସତକୁ ସତ ଡି.ପି.ଆଇ ସଦାଶିବବାବୁ କେଁ ବାହର କଲେ । ମୁଁ ତାଙ୍କୁ ଭେଟିବାକୁ ଯାଇଥିଲି । ସେ କହିଲେ, "ତମକୁ ଆମେ କାହିଁକି ନେବୁ ।" ମୁଁ କହିଲି "ମୁଁ ଶିକ୍ଷା ବିଭାଗ ଲୋକ । ଶିକ୍ଷା ବିଭାଗରୁ ଯାଇଛି । ନିଜ ବିଭାଗକୁ ଫେରିବାକୁ ଋହୁଁଛି ।" ତାପରେ ସେ କହିଲେ,"ଆମର Meritorious ଲୋକ ଦରକାର । ମୁଁ କହିଲି, ମୁଁ Meritorious ଦୁଇଥର ବିଶ୍ୱ ବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରିଛି । ଥରେ ଓଡିଆ ଅନର୍ସରେ, ଆଉ ଥରେ ଓଡିଆ ଏମ୍.ଏ ରେ । ସେ ପୁଣି କହିଲେ, "ଆମର ଅଭିଜ୍ଞ ଲୋକ ଦରକାର" । ମୁଁ କହିଲି, "ମୁଁ ଅଭିଜ୍ଞ । ବର୍ଷେ ହେଲା ଓଡିଆ ଅଧ୍ୟାପକ ଅଛି । ତା ପୂର୍ବରୁ ସାଢେ ଋରିବର୍ଷ ସ୍କୁଲ ସବ୍ ଇନ୍ସପେକ୍ଟର ଓ ସାଢେ ଋରିବର୍ଷ ହାଇସ୍କୁଲ ଶିକ୍ଷକ ଥିଲି । ମୁଁ ବି.ଏଡ୍ ଟ୍ରେନିଂ ପାଇଛି ଓ ଓଡିଶା ଲୋକସେବା ଆୟୋଗ ଦ୍ୱାରା ଅଧାପକ ଋକିରି ପାଇଁ ମନୋନୀତ ହୋଇଛି" । "ସବୁ ଶୁଣି ସେ କହିଲେ, ତମକୁ ନ ନେବା ପାଇଁ ମୁଁ ସରକାରଙ୍କୁ ଲେଖି ଦେଇଛି । ତମେ ଜଣେ ଭୀରୁ ଲୋକ । Public Service Commission ରେ ହେବାକୁ ଥିବା ପ୍ରତିଯୋଗିତାକୁ ଡରି ମୋ ପାଖକୁ କହିବା ପାଇଁ ଆସିଛ ।" ଏହା ଶୁଣି ମୁଁ କହିଲି, "ଗତ ବର୍ଷ ଓଡିଶା ଲୋକ ସେବା ଆୟୋଗ ସାକ୍ଷାତ୍କାରରେ ମୁଁ ପ୍ରଥମ ସ୍ଥାନ ଅଧିକାର କରି ଅଧାପକ

ଚାକିରି ପାଇଛି । ଆପଣଙ୍କର ଯେତେ candidate ଆସିବାର କଥା ସମସ୍ତେ ଗଲାବର୍ଷ ସାକ୍ଷାତ୍‌କାରକୁ ଆସିଥିଲେ। ସେ ଯାହାହେଉ, ମୁଁ ଏ ବର୍ଷ ମଧ୍ୟ ଦରଖାସ୍ତ କରିଛି। ଲୋକସେବା ଆୟୋଗରେ ଆପଣଙ୍କ ସହ ଦେଖା ହେବ।" ଏହା କହି ମୁଁ ଚାଲି ଆସିଲି।

୧୯୬୨ ମସିହା ଅପ୍ରେଲ ୨୨ ତାରିଖରେ ଓଡିଶା ଲୋକସେବା ଆୟୋଗ ଶିକ୍ଷା ବିଭାଗର ଓଡିଆ ଅଧ୍ୟାପକ ଚାକିରି ସାକ୍ଷାତ୍‌କାର ପାଇଁ ଧାର୍ଯ୍ୟ କରିଥିଲେ। ମୁଁ ଗଲି। ମୋତେ ପଚାରିଲେ, "ତମେ ତ ଓଡିଆ ଅଧ୍ୟାପକ ଅଛ। ତମେ କ'ଣ ଆମ ଆୟୋଗ ଦ୍ୱାରା ମନୋନୀତ ହୋଇଥିଲ ?" ମୁଁ କହିଲି, " ଗତ ବର୍ଷ ସାକ୍ଷାତ୍‌କାରରେ ମୁଁ ଏହି ଆୟୋଗ ଦ୍ୱାରା ମନୋନୀତ ହୋଇ ସରକାରୀ ଚାକିରିରେ ଯୋଗ ଦେଇଥିଲି।" ସେମାନେ ତାଙ୍କ ଭିତରେ କ'ଣ କଥାବାର୍ତ୍ତା ହେଲେ କେଜାଣି ମତେ କହିଲେ, ଠିକ୍ ଅଛି ତମେ ଯାଅ। ମୁଁ ମନୋନୀତ ହୋଇଗଲି। ପୋଷ୍ଟିଂ ପାଇଁ ଡି.ପି. ଆଇଙ୍କ ପାଖକୁ ଗଲି। ସେତେବେଳକୁ କଟକ ରେଭେନ୍ସା କଲେଜ, ଭୁବନେଶ୍ୱର ବି.ଜେ.ବି କଲେଜ, ପୁରୀ ଏସ୍.ସି.ଏସ୍ କଲେଜ ଓ ଅନୁଗୁଳ କଲେଜରେ Vacancy ଥାଏ। ମୁଁ ସାକ୍ଷାତ୍‌କାରରେ ଦ୍ୱିତୀୟ ସ୍ଥାନରେ ଥିବାରୁ ତାଙ୍କୁ ଅନୁରୋଧ କଲି ମୋତେ ଭୁବନେଶ୍ୱରରେ ପୋଷ୍ଟିଂ କରିବାକୁ। ତା ସହିତ କହିଲି, ' ମୋ ପୁଅ ଭୁବନେଶ୍ୱର Convent ସ୍କୁଲରେ ପଢୁଛି। ଭୁବନେଶ୍ୱରରେ ମୋତେ ପୋଷ୍ଟିଂ କଲେ ପୁଅର ଶିକ୍ଷା ଚାଲୁ ରହନ୍ତା। ତାଙ୍କର ପୂର୍ବ ରାଗ ଥିଲା। ସେ ଜିଦ୍ ଧରିଲେ ମୋତେ ଅନୁଗୁଳକୁ ପଠାଇବାକୁ। କ୍ଷମତାନ୍ଧ ଲୋକେ ଯୁକ୍ତି ଶୁଣନ୍ତି ନାହିଁ। ତାଙ୍କ କ୍ଷମତା ଜାହିର କରିବାକୁ ବେଶୀ ତତ୍ପର ହୁଅନ୍ତି। ମୁଁ ବାଧ୍ୟହୋଇ ୦୫.୦୯.୧୯୬୩ ତାରିଖରେ ଅନୁଗୁଳ ବିଜ୍ଞାନ କଲେଜରେ ଯୋଗ ଦେଲି। ପୁଅର Convent ଶିକ୍ଷା ବନ୍ଦ ହୋଇଗଲା।



## ତୃତୀୟ ଅଧ୍ୟାୟ

# କଲେଜ ଅଧ୍ୟାପକ ଜୀବନ ଓ ଦ୍ୱିତୀୟ ଶ୍ରେଣୀ ଚାକିରି

### ୩.୧ ଅନୁଗୁଳ କଲେଜ

୧୯୬୩ ମସିହା କଥା । ଅନୁଗୁଳ କଲେଜ ସେତେବେଳେ ଛୋଟ ଥାଏ। ତା'ର ନାଁ ଥିଲା I.Sc College, Angul । ପିଲାମାନେ ବେଶ୍ ଶୃଙ୍ଖଳିତ। ସେଠାରେ କାମ କରିବାକୁ ଭଲ ଲାଗିଲା। ପ୍ରଥମ ବର୍ଷ କଳା ଶ୍ରେଣୀରେ ରାଧାନାଥ ରାୟଙ୍କ 'ଚିଲିକା', ଦ୍ୱିତୀୟ ବର୍ଷ ବିଜ୍ଞାନ ଶ୍ରେଣୀରେ ମାତୃଭାଷା, ତୃତୀୟ ବର୍ଷ କଳା ଶ୍ରେଣୀରେ ଫକୀର ମୋହନଙ୍କ 'ଗଳ୍ପସ୍ୱଳ୍ପ' ଓ ଚତୁର୍ଥ ବର୍ଷ କଳା ଶ୍ରେଣୀରେ ଗଙ୍ଗାଧର ମେହେରଙ୍କ 'ତପସ୍ୱିନୀ' ପଢାଇବାକୁ ଦିଆଯାଇଥିଲା। ଧାରାବାହିକ ଭାବରେ ପାଠ ପଢା ଚାଲିଲା। ମୋର ପାଠ ପଢାଇବା ଶୈଳୀ ଅନ୍ୟାନ୍ୟ ଅଧ୍ୟାପକଙ୍କ ଭଳି ବକ୍ତୃତା ନୁହେଁ। ଏକ ତରଫା ପାଠ ପଢାରେ ମୁଁ ବିଶ୍ୱାସ କରେ ନାହିଁ। ତେଣୁ ମୁଁ ପ୍ରଥମ ବର୍ଷ କଳା ଶ୍ରେଣୀରେ 'ଚିଲିକା' କାବ୍ୟ ଉପରେ ଆଲୋଚନା, ଇଂରାଜି ଓ ସଂସ୍କୃତ ସାହିତ୍ୟର ପ୍ରଭାବ, ସମାନ୍ତରାଳ ପଂକ୍ତିର ଉଦାହରଣ ଦେଇ ଆଲୋଚନା ବେଳେ ପିଲାଙ୍କ ଅଂଶ ଗ୍ରହଣ ଉପରେ ଗୁରୁତ୍ୱ ଦିଏ। ତୃତୀୟ ବର୍ଷ କଳା ଶ୍ରେଣୀ ରେ ଫକୀର ମୋହନଙ୍କ 'ଗଳ୍ପସ୍ୱଳ୍ପ' ବହି ମୁଁ କ୍ଲାସରେ କେବେ ପଢାଇ ନାହିଁ। ପ୍ରଥମ ଦୁଇ ତିନୋଟି ପିରିଅଡରେ କ୍ଷୁଦ୍ରଗଳ୍ପର ସଂଜ୍ଞା, ଲକ୍ଷଣ ଓ ସାର୍ଥକ କ୍ଷୁଦ୍ରଗଳ୍ପର ସ୍ୱାତନ୍ତ୍ୟ ବିଷୟରେ ଆଲୋଚନା କରିଦିଏ। ତାପରେ ପ୍ରତି ଥର ଗୋଟିଏ ଗଳ୍ପ ପଢି ଆସିବା ପାଇଁ ପିଲାଙ୍କୁ କହେ ଓ ଶ୍ରେଣୀରେ କେବଳ ଗଳ୍ପର ସମାଲୋଚନା ପିଲାମାନେ କରନ୍ତି । ଯାହା ବାକି ରହିଯାଏ ମୁଁ ପୂରଣ କରେ । ଶ୍ରେଣୀରେ ବିଭିନ୍ନ ପିଲାଙ୍କ ଅଭିମତ ଆଲୋଚିତ ହୁଏ। ଚତୁର୍ଥ ବର୍ଷ କଳା ଶ୍ରେଣୀରେ ପିଲାମାନେ 'ତପସ୍ୱିନୀ' କାବ୍ୟ ଆଲୋଚନାରେ ଅତ୍ୟନ୍ତ

ଆଗ୍ରହ ଦେଖାଇବାରୁ ସେମାନଙ୍କୁ ଅଭିମତ ଦେବାକୁ ମୁଁ ଉତ୍ସାହିତ କରେ। ପାରସ୍ପରିକ ଆଲୋଚନା ଫଳରେ ଶ୍ରେଣୀ ବେଶ୍ ଚିତ୍ତାକର୍ଷକ ହୁଏ।

ଦ୍ୱିତୀୟ ବର୍ଷ ବିଜ୍ଞାନ ଶ୍ରେଣୀରେ M.I.L ପଢାଇବାକୁ ମୋତେ ସମସ୍ତେ ମନା କରୁଥିଲେ। ସେମାନେ କହିଲେ, "ସେ ପିଲାଗୁଡାକ ଗୋଳମାଳିଆ। ଆପଣ ନୂଆ ହୋଇ ଅଧ୍ୟାପକ ହୋଇ ଆସିଛନ୍ତି। ସେ ଶ୍ରେଣୀ ନିୟନ୍ତ୍ରଣ କରିବା କଷ୍ଟକର ହେବ।" ସେତେବେଳେ ମୋର ଜଣେ ସହପାଠୀ ଭାବଗ୍ରାହୀ ମିଶ୍ର ସେ କଲେଜରେ ଓଡିଆ ଅଧ୍ୟାପକ ଥାଆନ୍ତି। ଶରତ ଚନ୍ଦ୍ର ପ୍ରଧାନ ଓଡିଆ ବିଭାଗ ମୁଖ୍ୟ। ଏ ଦୁଇ ଜଣ କଥାବାର୍ତ୍ତା ହୋଇ ମତେ ଦ୍ୱିତୀୟ ବର୍ଷ ବିଜ୍ଞାନ ଶ୍ରେଣୀରେ M.I.L ପଢାଇବାକୁ କହିଲେ। ମୁଁ ମନା ନ କରି ସେ ଶ୍ରେଣୀ ନେଲି। ପ୍ରଥମ ଦୁଇଟି ପିରିଅଡ୍‌ରେ 'ଫରାସୀ ବିପ୍ଲବ' ବିଷୟ ପଢା ହେଲା। ମୁଁ ଶ୍ରେଣୀରେ ପାଠ୍ୟ ପୁସ୍ତକ ନ ପଢାଇ ଫରାସୀ ବିପ୍ଲବର ଲୋମ ହର୍ଷଣକାରୀ ଗଳ୍ପ ପିଲାମାନଙ୍କୁ କହିଲି। ଧୀରସ୍ଥିର ହୋଇ ବସି ସବୁ ପିଲା ମନଧ୍ୟାନ ଦେଇ ଗଳ୍ପ ଶୁଣିଲେ। ତୃତୀୟ କ୍ଲାସରେ ମୋର ପଢାଇବାର କଥା ରାଧାମୋହନ ଗଡନାୟକଙ୍କ 'ମାଟି' କବିତା। ମୁଁ କ୍ଲାସକୁ ପଶିଗଲା କ୍ଷଣି ସମସ୍ତେ ଉଠି ଠିଆ ହୋଇ ପଡିଲେ ଓ କହିଲେ, 'ଆମେ ଆଜି କିଛି ପଢିବୁ ନାହିଁ' ମୁଁ କାରଣ ପଚାରିବାରୁ ସେମାନେ କହିଲେ, 'ଷାଣ୍ମାସିକ ପରୀକ୍ଷା ନିକଟ ହୋଇଗଲାଣି। ଆଜି ପଢିବା ନାହିଁ।' ମୁଁ କହିଲି ଠିକ୍ ଅଛି। ଆଜି ପଢିବା ନାହିଁ। କିନ୍ତୁ ଏଇ କ୍ଲାସରେ ବସିବା। କିଛି ସମୟ ବସିବା ପରେ ସେମାନେ ଗୋଟେ ଗଳ୍ପ କହିବା ପାଇଁ ମୋତେ ଅନୁରୋଧ କଲେ। ମୁଁ ରାଧାମୋହନ ଗଡନାୟକଙ୍କ ରଚିତ 'ବିବି ଖାନୁନ୍ ଓ ଶିଳ୍ପୀ' କବିତାଟି ପଢି ଶୁଣାଇଲି। ସାପ ପଦ୍ମତୋଳା ଶୁଣିଲା ପରି ପିଲାମାନେ, ମନ ଧ୍ୟାନ ଦେଇ ଗପଟି ଶୁଣିଲେ । ପଚାରିଲି, 'କେମିତି ଲାଗିଲା?' ସମସ୍ତେ ଏକ ସ୍ୱରରେ କହିଲେ, 'ଭାରି ଭଲ ଲାଗିଲା' ମୋର ଦ୍ୱିତୀୟ ପ୍ରଶ୍ନ, ' କାହିଁକି ଭଲ ଲାଗିଲା?' ସେମାନେ କିଛି କହି ନ ପାରିବାରୁ ମୁଁ 'ମାତ୍ରାବୃତ୍ତ' ଓ ତା'ର ପ୍ରୟୋଗ ଓ ପ୍ରଭାବ ବିଷୟରେ ବୁଝାଇ ଦେଲି ଓ କହିଲି, ଆଜିର "ପାଠପଢା ଶେଷ ହୋଇଗଲା।" ସେ ଦିନ ମୁଁ ମାତ୍ରାବୃତ୍ତ ଓ ରାଧାମୋହନ ଗଡନାୟକଙ୍କ ପ୍ରୟୋଗ କୁଶଳତା ବିଷୟରେ କହିବାକୁ ସ୍ଥିର କରିଥିଲି। 'ମାଟି' କବିତା ପଢାଇବା ପୂର୍ବରୁ ଏହି ଅବତରଣିକା ଦରକାର ଥିଲା। ତା ପରେ ସେ ଶ୍ରେଣୀରେ ପିଲାମାନେ କେବେ କିଛି ଅସୁବିଧା କରି ନାହାଁନ୍ତି। ଯଦି ମୋର ସହପାଠୀ ଓ ବିଭାଗୀୟ

ମୁଖ୍ୟ ମୋତେ ଅସୁବିଧାରେ ପକାଇବାକୁ ଦ୍ୱିତୀୟ ବର୍ଷ ବିଜ୍ଞାନ ଶ୍ରେଣୀରେ ପଢାଇବାକୁ ମନସ୍ଥ କରିଥିଲେ ତାଙ୍କର ଯୋଜନା ବିଫଳ ହେଲା ।

ଅନୁଗୁଳ କଲେଜରେ ବହୁତଗୁଡିଏ ମେଳାପୀ ଓ ଭଲ ଅଧ୍ୟାପକ ଥିଲେ । ସାଙ୍ଗ ମେଳରେ ଦିନ କଟିଗଲା । ଘରଟିଏ ମିଳିନଥିବାରୁ ମୁଁ ପରିବାର ନେଇ ନ ଥାଏ । ପଦାର୍ଥବିଜ୍ଞାନ ଅଧ୍ୟାପକ ମଦନମୋହନ ମହାନ୍ତିଙ୍କ କ୍ୱାଟରରେ ଆମେ ସବୁ ପରିବାର ନେଇ ନଥିବା ଅଧ୍ୟାପକ ମାନେ ମେସ୍ କରି ଥାଉ । ସେଠାରେ ପ୍ରତିଦିନ ସଂଧ୍ୟାରେ ଅଧ୍ୟାପକମାନଙ୍କର ମେଳ ହୁଏ । ନାନା ବିଷୟରେ ଆଲୋଚନା ତଥା ଖୁସି ଗପରେ ସମୟ କଟିଯାଏ । ଇତିହାସ ବିଭାଗର ଗୋରାଚନ୍ଦ ପଟ୍ଟନାୟକ, ଶରତ ଚନ୍ଦ୍ର ପାତ୍ର, ଅର୍ଥନୀତି ବିଭାଗର ତ୍ରିଲୋଚନ ଶତପଥୀ, ବିଜୟ କିଶୋର ବଳ ଓ ଦୀପ୍ତି ସେନ୍‌ଗୁପ୍ତା, ଦର୍ଶନ ବିଭାଗର ଶିବନାଥ ଶତପଥୀ, ମେନକା ନନ୍ଦ, ବନ୍ଦନା ମହାନ୍ତି, ପଦାର୍ଥ ବିଜ୍ଞାନ ବିଭାଗର ଶ୍ରୀନିବାସ ପଣ୍ଡା, ମଦନମୋହନ ମହାନ୍ତି, ରସାୟନ ବିଭାଗର ଶରତ ଚନ୍ଦ୍ର ପାଢୀ, ବିବେକାନନ୍ଦ ତ୍ରିପାଠୀ, ପ୍ରାଣିବିଜ୍ଞାନ ବିଭାଗର ମହମ୍ମଦ ଜାଫ୍ରୁଲା ଶାହ, ଉଦ୍ଭିଦ ବିଜ୍ଞାନ ବିଭାଗର ମହେନ୍ଦ୍ର ନାୟକ, ଗଣିତ ବିଭାଗର କରାମତ୍ ଅଲ୍ଲୀ, ଇଂରାଜି ବିଭାଗର ଦିବାକର ସାହୁ, ରମେଶ ଚନ୍ଦ୍ର ମିଶ୍ର, ପରେଶ ରାଉତ୍ ଓ ଓଡିଆ ବିଭାଗର ଶରତ ଚନ୍ଦ୍ର ପ୍ରଧାନ, ଭାବଗ୍ରାହୀ ମିଶ୍ର ଓ ମୁଁ । ସମସ୍ତେ ଏକାଠି ହେଲେ, ଢିଙ୍କିଶାଳରୁ ଢେଙ୍କାନାଳ ପର୍ଯ୍ୟନ୍ତ ସବୁ କଥା ଆଲୋଚନା ହୁଏ । ଜାଫ୍ରୁଲାଙ୍କର ମଜାଳିଆ କଥା ସମସ୍ତଙ୍କୁ ମଜାଇ ରଖେ । କଲେଜରେ ପାଠପଢା ପରୀକ୍ଷା ପରିଚାଳନା ସହିତ ଟେବୁଲ ଟେନିସ୍ ଖେଳ, ମଝିରେ ମଝିରେ ଷ୍ଟାଫ୍ ଭୋଜି, କଲେଜରେ ସାମ୍ବତ୍ସରିକ ନାଟ୍ୟୋତ୍ସବ, ସ୍ପୋର୍ଟ୍ସ ଆଦିରେ ସମୟ ଅତିବାହିତ ହୋଇଯାଏ ।

କଲେଜ ପାଖରେ କଲୋନୀ । ଅଧ୍ୟାପକମାନଙ୍କର କ୍ୱାଟରସ ସାମନାରେ ଧାଡିଏ ପିଅନ କ୍ୱାଟରସ୍ । ମଝିରେ ବିରାଟ ପଡିଆ ଅରଣା ହୋଇ ପଡିଥାଏ । କଲେଜ କଲୋନୀର ଭୌଗୋଳିକ କେନ୍ଦ୍ର ନ ହେଲେ ମଧ୍ୟ ସାମାଜିକ କେନ୍ଦ୍ର ମଦନ ମହାନ୍ତିଙ୍କର କ୍ୱାଟର ଓ ସାମନାରେ ଥିବା ଖଣ୍ଡେ ସଫା ପଡିଆ । ପାଞ୍ଚଟା ବାଜିଲେ ଅଧ୍ୟାପକମାନେ ଗୋଟିଏ ଗୋଟିଏ ହୋଇ ଆସିବା ଆରମ୍ଭ କରି ଦିଅନ୍ତି । ସନ୍ଧ୍ୟା ବେଳକୁ ମିଟିଂ ବେଶ ଜମିଯାଏ । ମଦନ ବାବୁଙ୍କର କ୍ୱାଟରରେ ଆମ ମେସ୍ । ୫।୬ ଜଣ ଅଧ୍ୟାପକ ମେସ୍‌ର ସଦସ୍ୟ । ମଦନବାବୁଙ୍କ ଘରେ ଚେୟାର ଗୁଡିଏ ଥାଏ । ଅଭାବ ହେଲେ ପାଖ ଘରୁ ଅଣାଯାଏ । ଆନ୍ତର୍ଜାତୀୟ ରାଜନୀତିଠୁ

ଆରମ୍ଭ କରି ଜାତୀୟ ରାଜ୍ୟ ରାଜନୀତି ସହିତ ଅନୁଗୁଳ ହାଲଚାଲ୍ ଓ କଲେଜ ହାଲ୍‌ଚାଲ୍ ଆଲୋଚିତ ହୁଏ। ଯେଉଁଦିନ ଯାହା ବିଷୟବସ୍ତୁ ପଡ଼ିଲା ତା ଉପରେ ଆଲୋଚନା ହୁଏ। କ'ଣ ଆଲୋଚନା ହେବ ତାହା ପୂର୍ବ ନିର୍ଦ୍ଧାରିତ ହୋଇ ନଥାଏ।

କଲେଜ ପ୍ରିନ୍ସିପାଲ୍ ଶିବରାମ ଉପାଧ୍ୟାୟ ଏକ ଅଦ୍ଭୁତ ଚରିତ୍ରର ଲୋକ। ଭାରୀ ସନ୍ଦେହୀ। ତାଙ୍କର ଧାରଣା ମଦନ ବାବୁଙ୍କ ଘର ସାମ୍ନାରେ ସାନ୍ଧ୍ୟ ସଭାରେ ତାଙ୍କରି କାର୍ଯ୍ୟକଳାପ ବିଷୟରେ ଆଲୋଚନା ହୁଏ। ଅଧ୍ୟାପକମାନଙ୍କ ମଧ୍ୟରୁ କେହି କେହି ଖୋସାମତିଆ ତାଙ୍କ ପାଖରେ ଖଚ କହନ୍ତି ତାଙ୍କର ଅନୁଗ୍ରହ ପାଇବା ଉଦ୍ଦେଶ୍ୟରେ। ସେ କଲେଜରେ ମୋର ଦୁଇବର୍ଷ ରହଣି କାଳ ମଧ୍ୟରେ କେତେ ଥର ପ୍ରିନ୍ସିପାଲ୍ ମତେ ପଚାରିଛନ୍ତି. ତାଙ୍କ ବିଷୟରେ ଆଲୋଚନା ହୁଏ କି ? ମୁଁ ଉତ୍ତର ଦିଏ , 'ଆପଣଙ୍କ ଭଲ ଓ ମନ୍ଦ କାମ ଉଭୟ ବିଷୟରେ ଆଲୋଚନା ହୁଏ। କିନ୍ତୁ ସବୁ ଦିନ ନୁହେଁ। ଯେଉଁଦିନ ପ୍ରସଙ୍ଗ ଉତ୍‌ଥାପିତ ହୁଏ ସେଦିନ ଆଲୋଚନା ହୁଏ।'

ଅଧ୍ୟାପକମାନଙ୍କ ମଧ୍ୟରେ ଯେଉଁ ଆଲୋଚନା ହୁଏ ତାର ମୁଖ୍ୟ ବିଷୟବସ୍ତୁ କେଉଁ ବିଭାଗରେ କେତେ ଅଧ୍ୟାପକ, କେତେ ରିଡର ଓ କେତେ ପ୍ରଫେସର। ପ୍ରମୋଶନ ସୁଯୋଗ କେଉଁଠି କେତେ ଇତ୍ୟାଦି। ଏହି ଆଲୋଚନା ମଧ୍ୟରେ ମୁଁ ଆମ ଓଡ଼ିଆ ବିଭାଗ ସମ୍ବନ୍ଧରେ ଚିନ୍ତା କରେ। ସେତେବେଳେ ସରକାରୀ କଲେଜମାନଙ୍କରେ ଅଧ୍ୟାପକ ଥିଲେ ୧୫୦, ରିଡର ଜଣେ ଓ ପ୍ରଫେସର ଜଣେ। ଦୁଇଟି ପୋଷ୍ଟ ପାଇଁ ଆଶାୟୀ ଅଧ୍ୟାପକ ୧୫୦। ତୀବ୍ର ପ୍ରତିଯୋଗିତା। ଏ ସବୁ କଥା ଚିନ୍ତା କଲାବେଳେ ମୋତେ ହତାଶ ଲାଗେ। କାରଣ ବି.ଏ ପାଶ୍ କରିବାର ଆଠବର୍ଷ ପରେ ମୁଁ ଏମ୍. ଏ ପରୀକ୍ଷା ଦେଇଛି। ଏମ୍.ଏ କଲେଜରେ ପଢ଼ିଥିଲେ ଦୁଇବର୍ଷ ଯାଇଥାନ୍ତା। ମୋର ସହପାଠୀ ମାନଙ୍କଠାରୁ ମୁଁ ଛଅ ବର୍ଷ ଜୁନିୟର। ତେଣୁ ମୋର ପ୍ରମୋଶନ ହେବା ଏ ଜନ୍ମରେ ସମ୍ଭବ ନୁହେଁ।

## ଆଲୋକର ସନ୍ଧାନ

ହତାଶା ଓ ନିରାଶାର ଅନ୍ଧକାର ମଧ୍ୟରେ ଆଶାରକ୍ଷୀଣ ଆଲୋକ ରେଖାଟିଏ ଦେଖାଦେଲା। ୧୯୬୫ ଜାନୁୟାରୀ ବେଳକୁ କେତେଗୁଡ଼ିଏ ଶିକ୍ଷା ଅଧ୍ୟାପକ ଚାକିରି ପାଇଁ ଓଡ଼ିଶା ଲୋକସେବା ଆୟୋଗଙ୍କ ବିଜ୍ଞାପନ ବାହାରିଲା। ଯୋଗ୍ୟତା ରଖା ଯାଇଥାଏ B.A, M.Ed or MA. B.Ed. ମୋର MA. B.Ed.

ଯୋଗ୍ୟତା ଥିବାରୁ ଓ କ୍ୟାରିୟର ଭଲ ଥିବାରୁ ମୁଁ ଦରଖାସ୍ତ କଲି । ସାକ୍ଷାତ୍‌କାର ଦେଲି ଓ ଚାକିରି ପାଇଁ ମନୋନୀତ ହେଲି । ସେତେବେଳେ Class - I ସ୍କୁଲ୍ ଇନସ୍ପେକ୍ଟର ଭାବେ ଜିଲ୍ଲା ଶିକ୍ଷାଧିକାରୀ ଏବଂ ଶିକ୍ଷା ଅଧାପକମାନେ ପ୍ରମୋଶନ ପାଉଥିଲେ। ସେମାନଙ୍କ ମୋଟ ସଂଖ୍ୟା ଥିଲା ୫୫ । ସେମାନଙ୍କ ପ୍ରମୋଶନ ପାଇଁ ୧୧ ଟି ପ୍ରଥମ ଶ୍ରେଣୀ ଚାକିରି । ଶିକ୍ଷା ଅଧାପକ ଓ ଜିଲ୍ଲା ଶିକ୍ଷାଧିକାରୀଙ୍କ ଭିତରେ ମୋ ସ୍ଥାନ ବେଶ୍ ଉଚ୍ଚରେ ଥିଲା । କାରଣ ଶିକ୍ଷା ଅଧ୍ୟାପକମାନେ ଅଧିକ ବୟସରେ ବିଏଡ୍ ଓ ଏମ୍. ଏଡ୍ ପଢି ଚାକିରିରେ ଯୋଗ ଦେଉଥିଲେ। ଜିଲ୍ଲା ଶିକ୍ଷାଧିକାରୀମାନେ ସହଜେ Junior S.E.S (Class III) ଓ Senior S.E.S ଦୀର୍ଘ ସମୟ ଚାକିରି କଲାପରେ Class II କୁ ପ୍ରମୋଶନ ପାଉଥିଲେ। ଏମାନଙ୍କ ସହିତ ପ୍ରତିଯୋଗିତା କରିବା ମୋ ପାଇଁ ସହଜ ହୋଇ ଥିବାରୁ ମୁଁ ଶିକ୍ଷା ଅଧାପକ ଚାକିରି ପାଇଁ ସାକ୍ଷାତ୍‌କାର ଦେଲି ଓ ମନୋନୀତ ହେଲି ।

ଓଡିଶା ଲୋକସେବା ଆୟୋଗଙ୍କ ଦ୍ୱାରା ମନୋନୀତ ହେଲା ପରେ ମୁଁ ଡି.ପି. ଆଇ ଙ୍କୁ ଅନୁରୋଧ କଲି ମୋତେ ଅନୁଗଳ ବେସିକ୍ ଟ୍ରେନିଂ କଲେଜକୁ ବଦଳି କରିବା ପାଇଁ, କାରଣ ସେଠାରେ ଅଧାପକ ମାନଙ୍କ ପାଇଁ କ୍ୱାଟର ଅଛି । ମୋ ଅନୁରୋଧ ରକ୍ଷା କରି ଡି.ପି.ଆଇ ମୋତେ ବେସିକ୍ ଟ୍ରେନିଂ କଲେଜରେ ପୋଷ୍ଟିଂ କରିଦେଲେ। ଯେଉଁ ଆଦେଶ ନାମା ବାହାରିଲା ସେଥିରେ ମୋର 'Transferred and Posted' ଉଲ୍ଲେଖ ଥିବାରୁ ମୋର ସମସ୍ତ ଅଭିଜ୍ଞତା ଓ ବରିଷ୍ଠତା ବିଚାରକୁ ନିଆଯିବାର ବ୍ୟବସ୍ଥା ହୋଇଥିବାରୁ ମୁଁ ଅଧିକ ଆନନ୍ଦିତ ହେଲି । ଗୋଟିଏ Headquarter ରେ ହୋଇଥିବାରୁ ମୁଁ ୨୦।୯।୧୯୬୫ ତାରିଖରେ ଅନୁଗୁଳ ବିଜ୍ଞାନ କଲେଜରୁ ରିଲିଭ ହୋଇ ସେହିଦିନ ବେସିକ୍ ଟ୍ରେନିଂ କଲେଜରେ ଯୋଗ ଦେଲି ।

## ୩.୨ - ବେସିକ୍ ଟ୍ରେନିଂ କଲେଜ, ଅନୁଗୁଳ

ଦୂର ପର୍ବତ ସୁନ୍ଦର । ଅନୁଗୁଳ ବେସିକ୍ ଟ୍ରେନିଂ କଲେଜ ଦୂରରୁ ଯେତେ ସୁନ୍ଦର ଦେଖାଯାଉଥିଲା ସେଠାରେ ଯୋଗ ଦେବା ପରେ ସେ ସୌନ୍ଦର୍ଯ୍ୟ ଆସ୍ତେ ଆସ୍ତେ ଫିକା ପଡି ଆସିଲା । ସାଧାରଣ କଲେଜରେ ଅଧିକ ସଂଖ୍ୟକ ଅଧାପକ, ଛାତ୍ରଛାତ୍ରୀ ଓ ଅନ୍ୟାନ୍ୟ କର୍ମଚାରୀ। ସେଠାର ପରିବେଶ ବେଶ୍ ସୁସ୍ଥ, ପ୍ରଶସ୍ତ ଓ ଉଦାର-ବାହ୍ୟ ସ୍ତରରେ ତଥା ମାନସିକ ସ୍ତରରେ । ଟ୍ରେନିଂ କଲେଜରେ ପାଞ୍ଚ ଜଣ ଅଧାପକ, ଜଣେ ପ୍ରିନ୍ସିପାଲ, ୩ ଜଣ ଇନ୍‌ଷ୍ଟ୍ରକ୍ଟର କିଛି ଚତୁର୍ଥ ଶ୍ରେଣୀ

କର୍ମଚାରୀ ଓ ୬୪ ଟି ଛାତ୍ରଛାତ୍ରୀ ଥାଇ ପରିବେଶ ସଂକୀର୍ଣ୍ଣ । ପରସ୍ପର ମଧ୍ୟରେ ଅବିଶ୍ୱାସ, ଶତ୍ରୁତା, ଗୋଡ ଟଣାଟଣି, ୬ ଜଣ ଅଧ୍ୟାପକଙ୍କର ଆଠଟି ଦଳ। ପ୍ରତ୍ୟେକ ଅଧାପକ ନିଜ ନିଜର, ପ୍ରନ୍ସିପାଲଙ୍କର ଅନୁଗାମୀ ଦଳ, ପ୍ରତିପକ୍ଷଦଳ। ତା ବ୍ୟତୀତ ବିଭିନ୍ନ ସମସ୍ୟା ନେଇ ଦୁଇ ଜଣିଆ, ତିନି ଜଣିଆ ଦଳ । ଅଧାପକ ମାନଙ୍କୁ ବିଭିନ୍ନ ଦଳରେ ବିଭକ୍ତ କରିବା ପ୍ରିନ୍ସିପାଲଙ୍କର ମୁଖ୍ୟ କାମ। ମୁଁ ବେସିକ୍ ଟ୍ରେନିଂ କଲେଜରେ ଯୋଗ ଦେବା ବେଳକୁ ପ୍ରିନ୍ସିପାଲ ଥାଆନ୍ତି ସର୍ବେଶ୍ୱର ଦାଶ। ଅଧାପକମାନେ ହେଲେ କ୍ଷୀରୋଦ ବିହାରୀ ଅମାନ୍ତ, ବିଷ୍ଣୁଚରଣ ଜେନା, ଦେବେନ୍ଦ୍ର ନାଥ ରାଉତ, କେ.ଶିବରାମ ଶେଷେୟା ପଟ୍ଟନାୟକ ଓ ଷଷ୍ଠ ଅଧାପକ ଭାବରେ ମୁଁ ଯୋଗ ଦେଲି। ମୁଁ ସେଠାରେ ଯୋଗ ଦେବାର ଗୋଟିଏ ସପ୍ତାହ ମଧରେ ମୋ ବିରୁଦ୍ଧରେ ଗୋଟିଏ ଦରଖାସ୍ତ ଦିଆଗଲା। ପ୍ରନ୍ସିପାଲ ଶିବରାମ ପଟ୍ଟନାୟକଙ୍କୁ ଡାକି କହିଲେ, "ପୂର୍ଣ୍ଣବାବୁଙ୍କର ବଦଳି ଆଦେଶରେ Transferred and Posted ଉଲ୍ଲେଖ ଥିବାରୁ ସେ ଆପଣଙ୍କଠାରୁ ସିନିୟର ହୋଇଗଲେ। ତାଙ୍କର ଓଡିଆ ଅଧାପକ ଚାକିରି ଦୁଇବର୍ଷ ମିଶିଗଲା। ଆପଣ ତାଙ୍କ ବିରୁଦ୍ଧରେ ଦରଖାସ୍ତ କରନ୍ତୁ। ତାଙ୍କଠାରୁ ଆପଣଙ୍କୁ ଶିକ୍ଷା ଅଧାପକ ଭାବରେ ସିନିୟର ବୋଲି ସରକାର ଘୋଷଣା କରନ୍ତୁ। ଶିବରାମବାବୁ Representation ଦେଲେ ଓ ପ୍ରିନସିପାଲ ତାକୁ Forward କରିଦେଲେ । ତା'ର କିଛି ଦିନ ପରେ ପ୍ରିନସିପାଲ ମତେ ଡକାଇ କହିଲେ,"ଶିବରାମ ବାବୁ ଆପଣଙ୍କ ବିରୁଦ୍ଧରେ Represent କରିଛନ୍ତି। ଆପଣ ଗୋଟେ Counter Representation ଦେଉ ନାହାଁନ୍ତି ?" ମୁଁ କହିଲି, ସରକାର ଶିବରାମ ବାବୁଙ୍କୁ ସିନିୟର ବୋଲି କହିବା ପରେ ମୁଁ Represent କରିବା ଠିକ୍ ହେବ । ଆଗରୁ ମୁଁ କାହିଁକି Represent କରି ଆମ ଭିତରେ ଶତ୍ରୁତା ବଢାଇବି ?"

ବେସିକ୍ ଟ୍ରେନିଂ କଲେଜରେ ମୋର ବନ୍ଧୁ ତଥା ସହପାଠୀ ଦେବେନ୍ଦ୍ର ନାଥ ରାଉତ ଅଧାପକ ଥା'ନ୍ତି। ସେ ଗୋଟାଏ Family quarter ପାଇଥା'ନ୍ତି। କିନ୍ତୁ ଏକୁଟିଆ ରହୁଥାନ୍ତି। ତାଙ୍କ ସହ କଥାବାର୍ତ୍ତା କରି ମୁଁ ତାଙ୍କ କ୍ୱାଟରରେ ରହିଲି। ପ୍ରଥମେ ପ୍ରଥମେ ବି.ଏଡ୍ କ୍ଲାସ୍‌ରେ ପଢାଇବାକୁ ମତେ ଭାରି ଅସୁବିଧା ଲାଗିଲା। କାରଣ ୧୯୫୬-୧୯୫୭ ରେ ମୁଁ ବି.ଏଡ୍ ପଢିଲା ବେଳେ ଯାହା ଯାହା ପାଠପଢା ଯାଇଥିଲା ସେ ସବୁ ବଦଳି ଯାଇଥିଲା। ତା ଛଡା ଶିକ୍ଷା ପାଠ ସହିତ ସଂପର୍କ ରହିଲା ନାହିଁ। ପ୍ରଥମେ ପ୍ରଥମେ ମୁଁ ଦେବେନ୍ଦ୍ର ସହିତ ଆଲୋଚନା

କରି କ୍ଲାସରେ ପାଠ ପଢାଇଲି । ଯାହା ସବୁ ନୂଆ ବିଷୟ ବସ୍ତୁ ସିଲାବସ୍‌ରେ ଅନ୍ତର୍ଭୁକ୍ତ ହୋଇଥିଲା ସେ ସବୁ ବିଷୟରେ ନିୟମିତ ଅଧ୍ୟୟନ କଲି ।

ବେସିକ୍ ଟ୍ରେନିଂ କଲେଜ ଲାଇବ୍ରେରୀ ଖୁବ୍ ଉନ୍ନତ । ଅନେକ ପ୍ରକାର ନୂଆ ବହି ଲାଇବ୍ରେରୀକୁ ଅଣା ଯାଇଥାଏ । କଲେଜ ଆରମ୍ଭ ବେଳଠୁ ଶତ୍ରୁଘ୍ନ ନାଥ ବେଶ୍ ଋଦ୍ଧିମନ୍ତ କରି ଦେଇଥାନ୍ତି । ସେ ଲାଇବ୍ରେରୀରେ ପୂରା ଗୋଟିଏ ବର୍ଷ ମୁଁ ଗଭୀର ଅଧ୍ୟୟନରେ ବ୍ୟସ୍ତ ରହିଲି । କ୍ଲାସରେ ପାଠ ପଢାଇବା ସମୟ ବ୍ୟତୀତ ଅନ୍ୟ ସବୁ ସମୟ ମୁଁ ଲାଇବ୍ରେରୀରେ କଟାଏ ।

ବେସିକ୍ ଟ୍ରେନିଂ କଲେଜରେ ମୁଁ ଯୋଗ ଦେବା ବେଳକୁ ଅଧ୍ୟାପକ ବିବେକାନନ୍ଦ ପତିଙ୍କର ନୂଆ ହୋଇ ଖୋଲିଥିବା State Institute of Education, Bhubaneswar କୁ ବଦଳି ହୋଇଥାଏ । ସେ ସେଠାରେ ଯୋଗ ଦେଇଥାନ୍ତି । କିନ୍ତୁ ବେସିକ୍ ଟ୍ରେନିଂ କଲେଜ କ୍ୱାଟର ଛାଡି ନ ଥାନ୍ତି । ପ୍ରିନସ୍‌ପାଲ ଚାହୁଁଥିଲେ ସେ ଶୀଘ୍ର ଚାଲିଯାନ୍ତୁ । ମୁଁ ଯୋଗ ଦେବାକ୍ଷଣି ତାଙ୍କ କ୍ୱାଟରଟା ମୋ ନାଁରେ allot କରିଦେଲେ । ସେ ଛାଡିଲେ ମୁଁ ସେଠାରେ ରହିବି । ମୋ ନାଁରେ ତର ତର ହୋଇ କ୍ୱାଟର allot କରିଦେବାର କାରଣ ହେଲା ମୁଁ ବିବେକାନନ୍ଦ ପତିଙ୍କ ଉପରେ ଚାପ ପ୍ରୟୋଗ କରି ତାଙ୍କୁ ଶୀଘ୍ର ବିଦାୟ କରିଦେବା । ମୁଁ ତାଙ୍କୁ ଯାଇ କହିଲି ଘର ଛାଡିବାକୁ । ସେ କିନ୍ତୁ କଂସାରିଘର ପାରା । ଘର ଖାଲି କଲେ ପ୍ରାୟ ୬ ମାସ ପରେ। ମୁଁ ବାଧ ହୋଇ ଦେବେନ୍ଦ୍ର ବାବୁଙ୍କ ଘରେ ଆଶ୍ରୟ ନେଲି ।

ପ୍ରାୟ ୧୯୬୬ ମସିହା ଜୁନ୍ ମାସ ବେଳକୁ ସେ କ୍ୱାଟର ଖାଲି କଲେ । ମୁଁ ପରିବାର ନେଇ ସେଇ ଘରେ ରହିଲି । ତାଳଚେର କୋଠି କ୍ୱାଟର ବୋଲି ସେ କ୍ୱାଟରକୁ କୁହାଯାଏ । ବିରାଟ ହତାବାଡି । ବର୍ଷାଦିନ ଆରମ୍ଭରେ ଆମେ ସେଠାରେ ପରିବାପତ୍ର ଚାଷ କଲୁ । ଅନୁଗୁଳରେ ସେତେବେଳେ ପରିବାପତ୍ର ଅଭାବ ନ ଥାଏ । ଯେଉଁଦିନ ତାଳଚେର କୋଇଲାଖଣି ଲୋକ ଆସନ୍ତି ଗାଡିରେ ପରିବାପତ୍ର ଦେଇ ଚାଲିଯାନ୍ତି । ତଥାପି ଅନୁଗୁଳରେ ପରିବାପତ୍ର ଶସ୍ତା ଥାଏ । ଅଭାବ କେବଳ ମାଛ । ଆଜିକାଲି ଭଳି ଦେରଜାଙ୍ଗ ବନ୍ଧ ସେତେବେଳେ ହୋଇ ନ ଥାଏ । କି ମାଛଚାଷ ନ ଥାଏ । ତେଣୁ ଆମେ ରବିବାର ହାଟ ଦିନ ହାଟରୁ ଚୂନାମାଛ ଖେଳା କିଣି ଆଣୁ । ସପ୍ତାହରେ ସେଇ ଗୋଟିଏ ଦିନ ଚୂନା ମାଛ ଖାଇବାକୁ ମିଳେ । ସେତିକିରେ ମାଛ ଖାଇବାର ଓରମାନ ମେଣ୍ଟାଉ ।

ବେସିକ୍ ଟ୍ରେନିଂ କଲେଜରେ ମୁଁ ଯୋଗ ଦେବା ବେଳକୁ ୧୯୬୫-୬୬ ଶିକ୍ଷା ବର୍ଷର ଅଧା ପାଠପଢା ଶେଷ ହୋଇଥାଏ । ମଝିରେ ମୁଁ ଆସି ଯୋଗ ଦେବାରୁ ଧାରାବାହିକ ଭାବରେ କୌଣସି ବିଷୟ ପଢାଇବାର ସୁଯୋଗ ଜୁଟିଲା ନାହିଁ । ୧୯୬୬ ଫେବୃୟାରୀ ମାସରେ ଓଡିଶାର ତତ୍କାଳୀନ ଡି.ପି.ଆଇ ଡକ୍ଟର ବଂଶୀଧର ସାମନ୍ତରାୟ ଅନୁଗୁଳ ବିଜ୍ଞାନ କଲେଜ ପରିଦର୍ଶନରେ ଆସିଥିଲେ । ଆମ କଲେଜ ତରଫରୁ ତାଙ୍କୁ ଆମ ସାଂସ୍କୃତିକ କାର୍ଯ୍ୟକ୍ରମର ମୁଖ୍ୟ ଅତିଥି କରି ନିମନ୍ତ୍ରଣ କଲୁ । ବିଚିତ୍ରାନୁଷ୍ଠାନର ଅନ୍ୟାନ୍ୟ କାର୍ଯ୍ୟକ୍ରମ ସହିତ ବଂଶୀଧର ସାମନ୍ତରାୟଙ୍କ ଦ୍ୱାରା ରଚିତ "ଚିଲିକା ତୀରେ" ପଦ୍ୟର ଛାୟାଭିନୟ ଦେଖାଇଲୁ । ଭଲ ହୋଇଥିଲା । ଡି.ପି.ଆଇ ଖୁସି ହେଲେ । ଅନୁଗୁଳ କଲେଜରେ ମୋର ଅଧ୍ୟାପକ ବନ୍ଧୁମାନେ କହିଲେ, "ଡି.ପି.ଆଇଙ୍କୁ ତେଲ ଘଡାରେ ବୁଡାଇ ଦେଲ । ଖୋସାମତ୍ କରିବାକୁ ଅନ୍ୟବାଟ ପାଇଲ ନାହିଁ ? ମୁଁ କହିଲି, "ଆମ ପ୍ରିନ୍ସିପାଲଙ୍କ ନିର୍ଦ୍ଦେଶ । ଆମେ କ'ଣ କରିବୁ ?"

ଓଡିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଓ ତାଙ୍କ ସହଧର୍ମିଣୀ ସମାଜସେବିକା ମାଳତୀ ଚୌଧୁରୀ ଅନୁଗୁଳରେ ବାଜିରାଉତ୍ ଛାତ୍ରାବାସ ପରିଚାଳନା କରନ୍ତି ଓ ସେମାନେ ସେଇଠାରେ ହିଁ ରହନ୍ତି । ଜୀବନଧାରାରେ ଆଡମ୍ବର ନାହିଁ । ସାଧାସିଧା ଚଳଣି । ଆମ ପ୍ରିନସ୍‌ପାଲ ସର୍ବେଶ୍ୱର ଦାଶ ତାଙ୍କର ଅନୁରକ୍ତ । ସେ ମଝିରେ ମଝିରେ ବାଜିରାଉତ ଛାତ୍ରାବାସ ଯାଇ ନବବାବୁ ଓ ମାଳତୀ ଚୌଧୁରୀଙ୍କୁ ଭେଟନ୍ତି । ଅନ୍ୟମାନଙ୍କ ଭଳି ତାଙ୍କୁ ସେ "ବାପି" ଓ "ନୂମା" ବୋଲି ସମ୍ବୋଧନ କରନ୍ତି । ବାଜିରାଉତ ଛାତ୍ରାବାସର କାର୍ଯ୍ୟକ୍ରମରେ ଆମେ ଓ ଆମ କଲେଜର ଛାତ୍ରଛାତ୍ରୀ ମାନେ ଯୋଗ ଦିଅନ୍ତି । ଏଇ ସୁଯୋଗରେ ମୁଁ ନବବାବୁଙ୍କୁ ଆମ କଲେଜ ଆଲୋଚନା ଚକ୍ରକୁ ନିମନ୍ତ୍ରଣ କରେ । ନବବାବୁ ଅତି ବିଦ୍ୱାନ ଲୋକ । ମୁଖ୍ୟମନ୍ତ୍ରୀ ଭାବରେ ତାଙ୍କ ଅଭିଜ୍ଞତାକୁ ଛାଡି ତାଙ୍କର ପଠନାଭ୍ୟାସ ପ୍ରବଳ ଓ ବିଭିନ୍ନ ବିଷୟରେ ତାଙ୍କର ଅଗାଧ ଜ୍ଞାନ । ସେତେବେଳେ ନୂଆ ହୋଇ କୋଠାରୀ କମିଶନ ରିପୋର୍ଟ ବାହାରିଥାଏ । ଆମେ ମୂଳ ରିପୋର୍ଟ ନ ପାଇ ଛୋଟ ଛୋଟ ଆଲୋଚନା ପୁସ୍ତକ ଉପରେ ନିର୍ଭର କରି କ୍ଲାସରେ ପଢାଉ । ସେ କିନ୍ତୁ ମୂଳ ରିପୋର୍ଟକୁ ତନ୍ନ ତନ୍ନ କରି ପଢିଥା'ନ୍ତି । ଶିକ୍ଷକମାନଙ୍କ ସ୍ଥିତି ଓ ଶିକ୍ଷାର ଉନ୍ନତି ବିଷୟରେ ଆଲୋଚନା ଆୟୋଜିତ ହୋଇଥାଏ । ଆମ ଅଧ୍ୟାପକମାନେ କହିଲେ କୋଠାରୀ କମିଶନ ଶିକ୍ଷକମାନଙ୍କ ଦରମା ବଢାଇବା

ଓ ଚାକିରି ସର୍ତ୍ତରେ ଉନ୍ନତି ଆଣିବା ପାଇଁ ସୁପାରିଶ କରିଛନ୍ତି । ନବବାବୁ କହିଲେ,"ଆପଣମାନେ କେହି ମୂଳ ରିପୋର୍ଟ ପଢି ନାହାନ୍ତି । ମୂଳ ରିପୋର୍ଟରେ ଅଛି ଯେଉଁଦିନ ଶିକ୍ଷକ ମାନଙ୍କ ଦରମା ଅନ୍ୟାନ୍ୟ ତୁଳନୀୟ ଚାକିରି କରୁଥିବା ଲୋକଙ୍କ ଦରମା ସହିତ ସମାନ ହୋଇଯିବ ସେହିଦିନ ସେମାନେ ସନ୍ତୁଷ୍ଟ ହେବେ ।" ଉଦାହରଣ ଦେଇ ସେ କହିଲେ ପ୍ରଫେସରଙ୍କ ଦରମା ଆଇ.ଏ.ଏସ୍ ଅଫିସରଙ୍କ ଦରମା ସହିତ ସମାନ ନ ହେଲେ ସେମାନଙ୍କ ମନରେ ଅସନ୍ତୋଷ ଲାଗି ରହିବ । ଏହିପରି ବହୁ ଆଲୋଚନା ଚକ୍ରରେ ତାଙ୍କର ମୌଳିକ ଦିଗ୍‌ଦର୍ଶନ କଲେଜ ଅଧ୍ୟାପକ ତଥା ଛାତ୍ରଛାତ୍ରୀମାନଙ୍କର ପ୍ରଭୂତ ଉପକାର କରିଛି ।

## ଚୟନ ପ୍ରକ୍ରିୟାରେ ପରିବର୍ତ୍ତନ

ଓଡିଶାର ଦୁଇଟି ଟ୍ରେନିଂ କଲେଜ - ରାଧାନାଥ ଟ୍ରେନିଂ କଲେଜ ଓ ବେସିକ୍ ଟ୍ରେନିଂ କଲେଜ, ଅନୁଗୁଳ । ଦୁଇଟିଯାକ କଲେଜରେ ଗୁରୁଛାତ୍ର ଚୟନ କରାଯାଏ ଏକ ଲିଖିତ ପ୍ରବେଶିକା ପରୀକ୍ଷା ଆଧାରରେ । ଲିଖିତ ପ୍ରବେଶିକା ପରୀକ୍ଷାରେ ଶିକ୍ଷା, ଶିକ୍ଷାଦାନ, କିମ୍ବା ଶିକ୍ଷକ ହେବା aptitude ଇତ୍ୟାଦି ପରୀକ୍ଷା ପାଇଁ ପ୍ରଶ୍ନ ପଚରା ଯାଏନାହିଁ । ଏକ ସାଧାରଣ Objective type test କରାଯାଏ । ଏ ପରୀକ୍ଷା କାହିଁକି ଯେ କରାଯାଏ ତା'ର କାରଣ ଜଣାଯାଏ ନାହିଁ । ଶିକ୍ଷକତା ପାଇଁ ଆବଶ୍ୟକ ମନୋବୃତ୍ତି ବା ଶିକ୍ଷକ ସୁଲଭ ଗୁଣ ବା ଶିକ୍ଷକଙ୍କର ଆବଶ୍ୟକତା ଉପରେ କିଛି ପ୍ରଶ୍ନ ପଚରା ଯାଏ ନାହିଁ । ଯଦି Merit ଭିତ୍ତିରେ ଶିକ୍ଷକ ଚୟନ ଉଦ୍ଦେଶ୍ୟ ଥାଏ ତା ହେଲେ ବି.ଏ ପରୀକ୍ଷା ଫଳାଫଳକୁ ନେଇ ଗୁରୁଛାତ୍ର ଚୟନ କରାଯାଇପାରନ୍ତା । ଅନୁଷ୍ଠିତ ପ୍ରବେଶିକା ପରୀକ୍ଷା ଦ୍ୱାରା କିଛି ବିଶେଷ ଉଦ୍ଦେଶ୍ୟ ସାଧିତ ହେଲା ଭଳି ଜଣାଯାଉ ନଥିଲା । ପକ୍ଷାନ୍ତରେ ଏ ପ୍ରକାର ପରୀକ୍ଷା ଦ୍ୱାରା ଅସାଧୁତା, ପ୍ରିୟାପ୍ରୀତି ତୋଷଣ ଓ ଅଯୋଗ୍ୟ ବ୍ୟକ୍ତି ଚୟନ କରାଯିବାର ଦ୍ୱାର ଉନ୍ମୁକ୍ତ ରହିଥାଏ । ଯେହେତୁ ଏ ପ୍ରବେଶିକା ପରୀକ୍ଷାରେ ବିଶେଷ କିଛି ଲେଖିବାକୁ ପଡୁ ନଥିଲା କେବଳ (ଟିକ୍, କ୍ରସ) ଦ୍ୱାରା ଉତ୍ତର କରାଯାଉଥିଲା ପରୀକ୍ଷକ ଯେଉଁ ଲୋକଙ୍କୁ ବାଛିବାକୁ ଚାହୁଁଥିଲେ ତା କାଗଜରେ ଏହି ଭଳି ଚିହ୍ନ ଦେଇ ତାଙ୍କୁ ବାଛିବାର ସୁଯୋଗ ସୃଷ୍ଟି କରୁଥିଲେ । ଏ ଭଳି ବହୁ ଦୁର୍ନୀତି ହେବାର ନଜିର ବି ଥିଲା ।

ଅନୁଗୁଳ ବେସିକ୍ ଟ୍ରେନିଂ କଲେଜ ପାଇଁ ଯେତେବେଳେ ୧୯୬୬-୬୭ ବର୍ଷ ପାଇଁ ପ୍ରାର୍ଥୀ ଚୟନ ପ୍ରଶ୍ନ ଉଠିଲା ଓ ଲିଖିତ ପ୍ରବେଶିକା ବିଷୟରେ ଆଲୋଚନା ହେଲା ଆମେ ତିନି ଜଣ ଅଧ୍ୟାପକ, ମୁଁ, ଦେବେନ୍ଦ୍ର ଓ ଶିବରାମବାବୁ ବିରୋଧ କଲୁ। ଆମର ମତ ହେଲା ବି.ଏ/ବି.ଏସ୍.ସି/ ବି.କମ୍ ନମ୍ବର ଆଧାରରେ ପ୍ରାର୍ଥୀ ଚୟନ କରାଯାଉ। ଲିଖିତ ପରୀକ୍ଷା ଦ୍ୱାରା ଦୁର୍ନୀତି ହେବାର ସୁଯୋଗ ରହିଛି ଓ ଦୁର୍ନୀତି ହେଉଛି। ଆମମାନଙ୍କ ବିରୋଧ ଯୋଗୁଁ ସେ ବର୍ଷ ପ୍ରାର୍ଥୀ ଚୟନ ବି.ଏ/ବି.ଏସ୍.ସି/ ବି.କମ୍ ପରୀକ୍ଷାରେ ପ୍ରାର୍ଥୀ ରଖିଥିବା ନମ୍ବର ଆଧାରରେ କରାଗଲା। ଫଳରେ ପ୍ରକୃତ ଯୋଗ୍ୟ ପିଲା ବଛା ହେଲେ ଓ ପ୍ରାର୍ଥୀ ଚୟନ ପ୍ରକ୍ରିୟାରେ ଏକ ବିପ୍ଳବାତ୍ମକ ପରିବର୍ତ୍ତନ ହେଲା।

ସେ ବର୍ଷ ବି.ଏଡ୍ ପରୀକ୍ଷାରେ ଅନୁଗୁଳ ବେସିକ୍ ଟ୍ରେନିଂ କଲେଜରେ କୁମାରୀ ପ୍ରତିଭା ଦାସ (ବର୍ତ୍ତମାନର ପ୍ରତିଭା ରାୟ) ପ୍ରଥମ ସ୍ଥାନ ଅଧିକାର କଲେ ଓ ପ୍ରଥମ ୧୦ ଜଣଙ୍କ ମଧ୍ୟରେ ଜଣେ ହେଲେ ରାଧାନାଥ ଟ୍ରେନିଂ କଲେଜ ଛାତ୍ର ଛାତ୍ରୀ ନଥିଲେ। ଡିଷ୍ଟିଙ୍କସନ୍ ପାଇଥିବା ପିଲାଙ୍କ ମଧ୍ୟରେ ଅନୁଗୁଳ ବେସିକ୍ ଟ୍ରେନିଂ କଲେଜ ପିଲା ଅଧିକା। ସେ ବର୍ଷ ବି.ଏଡ୍ ପରୀକ୍ଷା ଫଳାଫଳ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଲା। ସେ ବର୍ଷ ରାଧାନାଥ ଟ୍ରେନିଂ କଲେଜ ପ୍ରିନ୍ସିପାଲ ଆମର ଗୁରୁ ବୈଦ୍ୟନାଥ ରଥ ଆମକୁ ବହୁତ ଗାଳି ଦେଲେ। କିନ୍ତୁ ପରୀକ୍ଷା ଫଳ ବାହାରିବା ପରେ ତା ପର ବର୍ଷ ରାଧାନାଥ ଟ୍ରନିଂ କଲେଜ ମଧ ବି.ଏ/ବି.ଏସ୍.ସି/ ବି.କମ୍ ପରୀକ୍ଷା ଫଳ ଆଧାରରେ ପ୍ରାର୍ଥୀ ଚୟନ ପ୍ରକ୍ରିୟା ଆରମ୍ଭ କଲେ।

## ସାଂସ୍କୃତିକ କାର୍ଯ୍ୟକ୍ରମ

ସାଧାରଣରେ ଟ୍ରେନିଂ ସ୍କୁଲ ଓ କଲେଜ ମାନଙ୍କ ବିଷୟରେ ଏକ ଦୁର୍ନାମ ଥାଏ ଯେ ସେଠାରେ ନାଚ ତାମସା ମୁଖ୍ୟ ଓ ପାଠଗୌଣ। ଏହା ଏକ ଅମୂଳକ ଦୁର୍ନାମ। ଶିକ୍ଷକ ପ୍ରଶିକ୍ଷଣ କେନ୍ଦ୍ରରେ ପାଠ (Theory) ଶିକ୍ଷାଦାନ (Practical) ଓ ସହ ପାଠ୍ୟକ୍ରମ ପ୍ରାୟ ସମାନ ଗୁରୁତ୍ୱ ପାଇଥାନ୍ତି। ବାସ୍ତବିକ ଏ ତିନୋଟି ଯାକ ପରସ୍ପର ପରିପୂରକ। ଆମର ଗୁରୁ ପ୍ରିନ୍ସିପାଲ୍ ବୈଦ୍ୟନାଥ ରଥ କହନ୍ତି ଯେଉଁ ପିଲା ରଙ୍ଗମଞ୍ଚରେ ଯେତେ Free ସେ ସେତେ ସଫଳ ଶିକ୍ଷକ।

୧୯୬୬-୬୭ ବର୍ଷର ଅନୁଗୁଳ ବେସିକ୍ ଟ୍ରେନିଂ କଲେଜରେ ବି.ଏଡ୍ ଛାତ୍ରଛାତ୍ରୀମାନେ ସଂଗୀତ, ନୃତ୍ୟ, ଅଭିନୟ ଓ ମଞ୍ଚକଳାରେ ପାରଦର୍ଶୀ ଥିଲେ। ୧୯୬୬ ମସିହା ଅଗଷ୍ଟ ମାସ ଗଙ୍ଗାଧର ମେହେର ଜୟନ୍ତୀ ସଂଧ୍ୟାରେ ଏକ

ଆଲୋଚନା ସଭାର ଆୟୋଜନ କରାଯାଇଥିଲା। ତିନି ଜଣ ବକ୍ତାଙ୍କୁ ଆଲୋଚନା ପାଇଁ ନିମନ୍ତ୍ରଣ କରାଯାଇଥିଲା। ଅନୁଗୁଳ କଲେଜର ଅଧ୍ୟାପକ ଦାଶରଥି ପ୍ରସାଦ ଦାଶ, ଅଧ୍ୟାପକ ବିଭୁଦତ୍ତ ମିଶ୍ର ଓ ଆମ କଲେଜ ପ୍ରିନ୍ସିପାଲ ସର୍ବେଶ୍ୱର ଦାଶ। ତିନିଜଣଯାକ ଚମତ୍କାର ଭାଷଣ ଦେଇ ଗଙ୍ଗାଧର ସାହିତ୍ୟର ବିଭିନ୍ନ ଦିଗ ଉପରେ ଆଲୋକପାତ କରିଥିଲେ। ସେମାନଙ୍କ ସହିତ ଟ୍ରେନିଂ କଲେଜ ଛାତ୍ରୀ ସାନ୍ତ୍ୱନା ଦାଶଙ୍କ ଭାଷଣ ଶୁଣିଲା ପରେ ଶ୍ରୋତାମାନେ ତାଙ୍କୁ ନିମନ୍ତ୍ରିତ ଅତିଥିମାନଙ୍କ ସହିତ ତୁଳନା କଲେ। ସେ ଅନୁଗୁଳ କଲେଜର ମୋର ଛାତ୍ରୀ ହୋଇଥିବାରୁ ମୁଁ ଗର୍ବ ଅନୁଭବ କଲି।

୧୯୬୭ ମସିହା ଫେବୃୟାରୀ ମାସରେ ଟ୍ରେନିଂ କଲେଜର ବାର୍ଷିକ ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା। ଅନ୍ୟାନ୍ୟ କାର୍ଯ୍ୟକ୍ରମ ସହିତ ବିଶେଷ କାର୍ଯ୍ୟକ୍ରମ ଥିଲା "ଦୁଷ୍ମନ୍ତ ଶକୁନ୍ତଳା" ଚରିତ। ଗଙ୍ଗଧର ମେହେରଙ୍କ "ପ୍ରଣୟ ବଲ୍ଲରୀ"କାବ୍ୟରୁ ନିର୍ବାଚିତ ଅଂଶକୁ ଗାନ କଲେ ତିନୋଟି ଝିଅ। ଅଭିନୟରେ ରଞ୍ଜିତା ଦୁଷ୍ମନ୍ତ ଭାବେ, ବାସନ୍ତୀ ଶକୁନ୍ତଳା ଭାବରେ ଅଭିନୟ, ଓ ନୃତ୍ୟ ଭଙ୍ଗୀରେ ଦର୍ଶକମାନଙ୍କୁ ଅଭିଭୂତ କରିଦେଲେ। ବେସିକ୍ ଟ୍ରେନିଂ ସ୍କୁଲର ଶିକ୍ଷକ ହରିହର ଦାଶ (ହରିଭାଇ) ନିର୍ଦ୍ଦେଶନା ଦେଇଥିଲେ। ସେ ବର୍ଷ ସାଂସ୍କୃତିକ କାର୍ଯ୍ୟକ୍ରମର ସବୁଗୁଡିକ ଖୁବ୍ ଭଲ ହୋଇଥିଲା। ଏକାଙ୍କିକା ଅଭିନୟରେ ଶାନ୍ତି, ପ୍ରତିଭା, ସାନ୍ତ୍ୱନା ଆଦିଙ୍କର  ନିଖୁଣ ଅଭିନୟ ଦର୍ଶକଙ୍କୁ ମୁଗ୍ଧ କରିଥିଲା।

୧୯୬୭-୬୮ ବର୍ଷରେ କଲେଜରେ ନାମଲେଖା ପରେ ଯଥା ସମୟରେ ପାଠପଢା ଆରମ୍ଭ ହେଲା। ଶିକ୍ଷାବର୍ଷ ଆରମ୍ଭର ପ୍ରାୟ ମାସକ ପରେ ରାଧାନାଥ ଟ୍ରେନିଂ କଲେଜର ବରିଷ୍ଠ ଅଧ୍ୟାପକ ରମଣୀ ରଞ୍ଜନ ଦାଶଙ୍କର ବଦଳି ହେଲା ଆମ କଲେଜକୁ। ତାଙ୍କ ବଦଳି ବିଶେଷ ଗୁରୁତ୍ୱପୂର୍ଣ୍ଣ ଘଟଣା ନୁହେଁ। କିନ୍ତୁ ଆମ ପ୍ରିନ୍ସିପାଲ ଓ ଅନ୍ୟ କେତେକ ଅଧ୍ୟାପକ ମିଶି ତାକୁ ଗୁରୁତ୍ୱପୂର୍ଣ୍ଣ କରିଦେଲେ। ପ୍ରିନ୍ସିପାଲ କହିଲେ ରମଣୀ ରଞ୍ଜନ ଦାଶ ବୈଦ୍ୟନାଥ ରଥଙ୍କର ଚଳନ୍ତି ପ୍ରତିମା। ସେହି ଅନୁସାରେ ସମସ୍ତେ ତାଙ୍କୁ ସମ୍ମାନ ଦେଖାଇବା ଉଚିତ୍। ଏ ଆବହାଓ୍ୱାର ସୁଯୋଗ ନେଇ ରମଣୀ ବାବୁ ପ୍ରତ୍ୟେକ କାର୍ଯ୍ୟକ୍ରମରେ ନିଜର କର୍ତ୍ତୃତ୍ୱ ଜାହିର କରିବାକୁ ଆରମ୍ଭ କଲେ। ପ୍ରତ୍ୟେକ କାର୍ଯ୍ୟକ୍ରମରରେ ହସ୍ତକ୍ଷେପ କଲେ।

ଅଭ୍ୟାସ ପାଠ ଦାନ ସମୟରେ ଗୋଟିଏ ଶନିବାରରେ ସେ ପିଲାମାନଙ୍କର ଗୋଟିଏ ସଭା ଡକାଇଲେ। ସବୁ ପିଲା, ଅଧ୍ୟାପକ ଓ ପ୍ରିନ୍ସିପାଲ ସେ ସଭାରେ ଉପସ୍ଥିତ ଥା'ନ୍ତି। ସେଠାରେ ସେ କହିଲେ ପିଲାଙ୍କ Lesson Note ରେ ଯେଉଁ ସ୍ତମ୍ଭ ସବୁ ରହିଛି ତାହା ଠିକ୍ ଭାବରେ ପୂରଣ ହେଉ ନାହିଁ। ସ୍ତମ୍ଭ ଗୁଡିକ ହେଲା।

| ସୋପାନ | ବିଷୟ | ପ୍ରଣାଳୀ | କଳାପଟା କାର୍ଯ୍ୟ |
|---|---|---|---|
| | | | |

ସୋପାନ ସାଧାରଣତଃ ତିନୋଟି (୧) ଉପକ୍ରମ (Introduction) (୨) ଉପସ୍ଥାପନ (Presentation) ଓ (୩) ପ୍ରୟୋଗ (Application )। ଉପକ୍ରମ ସୋପାନରେ ଗୋଟିଏ ଉପସୋପାନ (Sub- Step ) ହେଲା ଉଦ୍ଦେଶ୍ୟ ଜ୍ଞାପନ। ତେଣୁ ତାହା ସୋପାନ ସ୍ତମ୍ଭରେ ଲେଖା ଯିବା କଥା। ଆମ ପିଲାମାନେ ଠିକ୍ ଲେଖୁଥିଲେ। କିନ୍ତୁ ରମଣୀବାବୁଙ୍କ ମତ ହେଲା ଯେ "ଉଦ୍ଦେଶ୍ୟ ଜ୍ଞାପନ" ସୋପାନ ସ୍ତମ୍ଭରେ ନ ଲେଖି 'ବିଷୟ' ସ୍ତମ୍ଭରେ ଲେଖାଯିବ। ସେ କଳାପଟାରେ ସ୍ତମ୍ଭ କାଟି କିପରି "ବିଷୟ" ସ୍ତମ୍ଭରେ 'ଉଦ୍ଦେଶ୍ୟ ଜ୍ଞାପନ' ଲେଖାଯିବ ତାହା ଦେଖାଇ ଦେଲେ। ବୈଦ୍ୟନାଥ ବାବୁଙ୍କ ଚଳନ୍ତି ପ୍ରତିମା କହୁଛନ୍ତି ବୋଲି କେହି କିଛି ବିରୋଧ କଲେ ନାହିଁ। ମୁଁ ଉଠି କହିଲି ଯେପରି ଟଙ୍କା ପଇସା ଦୁଇଟି ସ୍ତମ୍ଭ କରି ଟଙ୍କା ସ୍ତମ୍ଭରେ ଟଙ୍କା ଓ ପଇସା ସ୍ତମ୍ଭରେ ପଇସା ଲେଖାଯାଏ ସେହିପରି ସ୍ତମ୍ଭର ଶିରୋନାମା ଅନୁସାରେ ଲେଖାଯିବାର କଥା। ଯଦି "ଉଦ୍ଦେଶ୍ୟ ଜ୍ଞାପନ" ନାମକ କୌଣସି ବିଷୟ ପଢାଇବାର ଥାଏ, ତା ହେଲେ ତାହା "ବିଷୟ" ସ୍ତମ୍ଭରେ ଲେଖାଯିବା କଥା। ଆମ ଓଡିଆ ପାଠରେ "ଉଦ୍ଦେଶ୍ୟ ଜ୍ଞାପନ" ନାମକ କୌଣସି ବିଷୟ ନ ଥିବାରୁ ଏହା "ବିଷୟ" ସ୍ତମ୍ଭରେ ଲେଖାଯାଇ ପାରିବ ନାହିଁ। ଗଣିତ କି ବିଜ୍ଞାନ, ଇତିହାସ ବା ଭୂଗୋଳରେ ଯଦି "ଉଦ୍ଦେଶ୍ୟ ଜ୍ଞାପନ" ବିଷୟ ପଢାଯାଉଥାଏ।, ତା ହେଲେ "ବିଷୟ" ସ୍ତମ୍ଭରେ ଲେଖାଯାଉ। ରମଣୀ ବାବୁ କହିଲେ ଆମ ଭିତରେ ମତ ପାର୍ଥକ୍ୟ ହେଉଛି। ପ୍ରିନ୍ସିପାଲ ତାଙ୍କର ମତାମତ ଦିଅନ୍ତୁ। ପ୍ରିନ୍‌ସିପାଲ୍ କହିଲେ କେବଳ "ଉଦ୍ଦେଶ୍ୟ" ଲେଖାଯିବ "ସୋପାନ ସ୍ତମ୍ଭରେ ଓ " ଜ୍ଞାପନ" ଲେଖାଯିବ "ବିଷୟ" ସ୍ତମ୍ଭରେ। ପ୍ରିନ୍ସିପାଲ୍ ଉଭୟ ମତର ସାଲିସ୍ କରିଦେଲେ। କି ଚମତ୍କାର ନ୍ୟାୟ। ଭୟରେ କେହି ଠିକ୍ କଥା କହିବାକୁ ନାରାଜ ।

ରମଣୀବାବୁଙ୍କ ପରାମର୍ଶରେ କଲେଜ ଶାସନ ଚାଲିଲା। ପ୍ରତ୍ୟେକ କଥାରେ ରମଣୀବାବୁଙ୍କ ମତାମତକୁ ଗୁରୁତ୍ୱ ଦିଆଗଲା। ରମଣୀବାବୁ ଏ ସବୁର ସୁଯୋଗ ନେଇ ନିଜର ଆଧିପତ୍ୟ ବିସ୍ତାର କରିବାକୁ ଲାଗିଲେ। ହଠାତ୍ କାହିଁକି ପ୍ରିନ୍ସିପାଲ୍ ଓ ରମଣୀବାବୁଙ୍କ ମଧ୍ୟରେ ଫାଟ ସୃଷ୍ଟି ହେଲା। ଦିନେ ଦେଖିଲା ବେଳକୁ ପ୍ରିନ୍ସିପାଲଙ୍କ ବିରୁଦ୍ଧରେ ଖବର କାଗଜରେ ବାହାରିଛି:- ପ୍ରିନ୍ସିପାଲଙ୍କ ଆଖିକୁ ଦେଖାଯାଏ ନାହିଁ। ସେ କୌଣସି ସମସ୍ୟା ବୁଝନ୍ତି ନାହିଁ। କଲେଜରେ କୁଶାସନ ଚାଲିଛି ଇତ୍ୟାଦି । ପ୍ରିନସ୍‌ପାଲ୍ ଅନୁସନ୍ଧାନ କରି ବୁଝିଲେ ଯେ ରମଣୀବାବୁଙ୍କ

ପ୍ରରୋଚନାରେ କିଛି ପିଲା ଏ ପ୍ରକାର ବିବରଣୀ ଲେଖି ଦେଇଛନ୍ତି ଓ ରମଣୀବାବୁ ନିଜେ ସେ ବିବରଣୀ ନେଇ ବିଭିନ୍ନ ଖବର କାଗଜରେ ବାହାର କରାଇଛନ୍ତି। ପ୍ରିନ୍ସିପାଲଙ୍କ ମୁଣ୍ଡରେ ଚେତା ପଶିଲା। ରମଣୀବାବୁଙ୍କୁ ଅତିଶୟ ଗୁରୁତ୍ୱ ଦେବାର ଫଳ ପାଇଗଲେ। ତାଙ୍କର ଭୟ ହେଲା ଏ ସବୁ ଡି.ପି. ଆଇ ଓ ସରକାରଙ୍କ କାନକୁ ଗଲେ ତାଙ୍କ ଋକିରି ଉପରେ ଆଞ୍ଚ ଆସିବ। ଏପରିକି ବଦଳି ହେଲେ ସେ ଅନ୍ୟ ଜାଗାରେ ଚଳି ପାରିବେ ନାହିଁ। ଅନୁଗୁଳର ପାଣି, ପବନ, ଲୋକ, କଲେଜର ଅଧ୍ୟାପକ ଓ ଅନ୍ୟ କର୍ମଋରୀଙ୍କ ସହିତ ସେ ନିଜର ଅକ୍ଷମତାର ଏକ ପ୍ରକାର ସମୀକରଣ କରି ନେଇଥିଲେ। ଅନ୍ୟ କେଉଁଠାକୁ ଗଲେ ଏ ସମୀକରଣ ସମ୍ଭବ ନୁହେଁ। ସେଥିପାଇଁ କିଛି ପ୍ରତିକାର ପାଇଁ ସେ ମୋତେ ଅନୁରୋଧ କଲେ।

ସେ ସମୟରେ ମୋର ସହପାଠୀ ଓ ବନ୍ଧୁ ନୃସିଂହ ଚରଣ ଦାଶ ଅନୁଗୁଳର Sub-Treasury Officer ଥାଆନ୍ତି। ତାଙ୍କ କ୍ୱାଟର ଆମ କଲେଜକୁ ଲାଗିଛି। ଆମେ ସବୁଦିନ ତାଙ୍କ ଘରେ ନ ହେଲେ ଆମ ଘରେ ଏକାଠି ହେଉ। ମୁଁ ତାଙ୍କ ସହିତ ପ୍ରିନ୍ସିପାଲଙ୍କ ବିପଦ ବିଷୟ ଆଲୋଚନା କଲି। ସେ କହିଲେ କଲେଜର ତିନିଗୋଟି ହଷ୍ଟେଲ ଅଛି, ମୁଖ୍ୟ ହଷ୍ଟେଲ ଜନତା ହଷ୍ଟେଲ ଓ ମହିଳା ହଷ୍ଟେଲ । ମୁଁ ସେତେବେଳେ ଜନତା ହଷ୍ଟେଲର ସୁପରିନ୍‌ଟେଣ୍ଡେଣ୍ଟ ଥାଏ। ସେ କହିଲେ ତିନି ହଷ୍ଟେଲର ପ୍ରିଫେକ୍ଟମାନଙ୍କ ପାଖରୁ ପ୍ରତିବାଦ ବିବରଣୀ ଆଣି ଖବର କାଗଜକୁ ପଠାଇ ଦିଅ। ପ୍ରିନ୍ସିପାଲଙ୍କ ଶଳା "ମାତୃଭୂମି"ଖବର କାଗଜରେ ବାହାର କରିଦେବେ। ତାହାହିଁ ହେଲା। ମୁଁ ସବୁ ହଷ୍ଟେଲ ପ୍ରିଫେକ୍ଟମାନଙ୍କ ଠାରୁ ପ୍ରତିବାଦ ବିବରଣୀ ଲେଖାଇ ଆଣିଲି। ପ୍ରିନ୍ସିପାଲଙ୍କ ବିପଦ ଟଳିଗଲା। ରମଣୀବାବୁ ନିଜର ଅସଲ ରୂପ ପ୍ରକାଶ ପାଇଥିବାରୁ ସଙ୍କୁଚିତ ହୋଇଗଲେ।

## ୩.୩ ଗ୍ରୀଷ୍ମକାଳୀନ ଶିବିର - ଶିକ୍ଷା ମୂଲ୍ୟାୟନ

## ଶୈଳନିବାସର ରାଣୀ ମସୁରୀ

ନାନା ଝଡଝଞ୍ଜା ମଧ୍ୟରେ ୧୯୬୭-୬୮ ଶିକ୍ଷାବର୍ଷ ଶେଷ ହେଲା। ୧୯୬୮ ଏପ୍ରିଲ୍ ମାସ ବେଳକୁ NCERT (National Council of Educational Research and Training) ର ଗ୍ରୀଷ୍ମକାଳୀନ ଶିକ୍ଷା କାର୍ଯ୍ୟକ୍ରମ ବିଷୟରେ ବିଜ୍ଞାପନ ବାହାରିଲା। ତା ଭିତରେ Fourth Training Course in Educational Evaluation at Musoorie ବାହାରିଥାଏ। ମସୁରୀ ଭଳି ଗ୍ରୀଷ୍ମ ନିବାସରେ ଦୁଇମାସ ରହିବାର ସୁଯୋଗକୁ ହାତ ଛଡା ନ କରି ମୁଁ ଦରଖାସ୍ତ କଲି ଓ ସେଥିପାଇଁମନୋନୀତ ହେଲି। ୧୯୬୮ ମଇ ମାସ ୧୪ ତାରିଖରେ

ମସୁରୀ ଯାତ୍ରା କଲି । ଗୋଟିଏ ଦିନ ବିଳମ୍ବରେ ପହଞ୍ଚି ଶିକ୍ଷା ମୂଲ୍ୟାୟନ କାର୍ଯ୍ୟକ୍ରମରେ ଯୋଗ ଦେଲି । ଭାରତର ବିଶିଷ୍ଟ ଶିକ୍ଷାବିତ୍‌ମାନେ ସେଠାରେ ଶିକ୍ଷା ଦାୟିତ୍ୱରେ ଥା'ନ୍ତି । Dr. R.G. Mishra ନିର୍ଦ୍ଦେଶକ, Dr. Pritam Singh, Mr. Pravakar Singh, Dr. H.S. Singha, Mrs S.P. Patel, Mr, S.H. Khan ଅଧ୍ୟାପନା ଦାୟିତ୍ୱରେ ଥିଲେ । ପ୍ରତ୍ୟେକ ଜଣେ ଜଣେ ପ୍ରବୀଣ ଓ ଅଭିଜ୍ଞ ଅଧାପକ । ସେଠାକାର ପାଠପଢା ମଧ ଭଲ । ସକାଳ ୯ ଟାରୁ ମଧାହ୍ନ ଭୋଜନ ପର୍ଯ୍ୟନ୍ତ Theory ଓ ମଧାହ୍ନଭୋଜନ ପରେ ତା'ର ପ୍ରୟୋଗ Practical । ଅଧ୍ୟାପକମାନଙ୍କ ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର ପାଠପଢାକୁ ଆହୁରି ଆକର୍ଷଣୀୟ କରିଥିଲା ।

ମସୁରୀ ଦୃଶ୍ୟ ଅତ୍ୟନ୍ତ ମନୋହର । ଗୋଟିଏ ପଟରେ ଅଳ୍ପ ଦୂରରେ ଡେରାଡୁନ ଓ ତା'ର ଲିଚୁ ବଣ । ଆଉ ତିନି ପାଖରେ ହିମାଳୟର ଚିର ହରିତ ବନାନୀ । ସୁଉଚ୍ଚ ବିରାଟ ଦେବଦାରୁ ଗଛ ସହିତ ଆହୁରି ଅନେକ ଛୋଟବଡ ଗଛ । ବିରାଟ ଓକ୍ ଗଛର ଆକାଶସ୍ପର୍ଶୀ ଡାଳ ଓ ପତ୍ର ବନ ଭାଗକୁ ଛାୟାଚ୍ଛାଦିତ କରି ରଖିଥାଏ । ଟିକିଏ ଦୂରରେ ହିମାଳୟର ବରଫାଚ୍ଛାଦିତ ପର୍ବତ ଶୃଙ୍ଗ । ଗ୍ରୀଷ୍ମ ଋତୁରେ ବି ଶୀତଳ ସ୍ପର୍ଶ । ଚମତ୍କାର ଦୃଶ୍ୟ । ଚମତ୍କାର ପାଗ ।

ମସୁରୀ ରାସ୍ତା ସମତଳ ନୁହେଁ । ଉଠାଣି ନ ହଲେ ଗଡାଣି । ମସୁରୀ ରାସ୍ତାରେ ଯାନବାହାନ ଚଳାଚଳ ନାହିଁ । କେବଳ ପାଦ ଚଲା ଲୋକ । ଭାରତର ବିଭିନ୍ନ ପ୍ରାନ୍ତରୁ Tourist ମାନେ ମସୁରୀ ରାସ୍ତାରେ ଦେଖାଯାନ୍ତି । ଧନାଢ୍ୟ ଲୋକମାନେ ହିଁ ଗ୍ରୀଷ୍ମ ଋତୁରେ ମସୁରୀ ଆସନ୍ତି । ହିମାଳୟର ପ୍ରାୟ ୬୦୦୦ ଫୁଟରୁ ଅଧିକ ଉଚ୍ଚତାରେ ଅବସ୍ଥିତ ଏହାର ଶୀତଳ ଜଳବାୟୁ ଲୋକଙ୍କୁ ଆକର୍ଷଣ କରେ । ମସୁରୀ "ଗ୍ରୀଷ୍ମ ନିବାସର ରାଣୀ" (Queen of Hill Stations) କୁହାଯାଏ । ଏଠାରେ ଅବସ୍ଥିତ IAS ଟ୍ରେନିଂ ସେଣ୍ଟର ଗ୍ରୀଷ୍ମଋତୁ ଶେଷଠାରୁ ବର୍ଷାଋତୁଯାକ ମେଘ ଭିତରେ ଲୁଚି ରହିଥାଏ ।

ଜୁନ୍‌ମାସ ମଧ ଭାଗରୁ ମସୁରୀର ମେଘାଡମ୍ବର ଉପଭୋଗ୍ୟ ହୁଏ । ପାର୍ବତ୍ୟ ଅଞ୍ଚଳରେ ମେଘମାଳାର ଗତି ଖୁବ୍ ରମଣୀୟ । ସାଥୀ ହୋଇ ବସିଥିବା ବେଳେ ମେଘ ଆସିଗଲେ କିଛି ସମୟ ପାଇଁ କେହି କାହାକୁ ଦେଖି ପାରନ୍ତି ନାହିଁ । ମେଘ ଚାଲିଗଲେ ପୁଣି ଦେଖାଦେଖି । ମେଘ ଭିତରେ କେହି କାହାକୁ ଦେଖି ନ ପାରିଲେ ବି କଥାବାର୍ତ୍ତା ଚାଲୁ ରହିଥାଏ । ମେଘବର୍ଷା ସେଠାର ବିଚିତ୍ର ଧରଣର । ମୁଷଳ ଧାରାରେ କିଛି ସମୟ ବର୍ଷା ପରେ ପାର୍ବତ୍ୟ ଝରଣା ଓ ନାଳ ସବୁ

ପ୍ରଖର ବେଗରେ ପ୍ରବାହିତ ହୁଅନ୍ତି। ପୋଲ ଉପରେ ଠିଆ ହୋଇ ଦେଖିଲେ ଜଣାଯାଏ ଯେପରି ପୋଲ ଭାଙ୍ଗି ପଡିବ ଓ ପାର୍ବତ୍ୟାଞ୍ଚଳରେ ପ୍ରଳୟ ସୃଷ୍ଟି ହେବ। କିନ୍ତୁ ଘଣ୍ଟାକ ଭିତରେ ସବୁ ସ୍ଥିର, ସୁନ୍ଦର ଓ ସାଧାରଣ ହୋଇଯାଏ ।

ମସୁରୀର କେମ୍ପଟି ଜଳ ପ୍ରପାତ। ବେଶୀ ଉଚ୍ଚରୁ ପାଣି ନ ପଡିଲେ ବି ବେଶ୍ ଉପଭୋଗ୍ୟ । ଅନେକ ଟୁରିଷ୍ଟ ସେଠାରେ ସ୍ନାନ କରନ୍ତି। ଗରି ପାଖରେ ସବୁବେଳେ ଲୋକ ସେ ଦୃଶ୍ୟ ଉପଭୋଗ କରନ୍ତି। ଲାଲ୍‌ଟିବା ଛୋଟ ପାହାଡ ଖଣ୍ଡେ। ହେଲେ ତା'ର ଆରଣ୍ୟ ପରିବେଶ ଭଲ ଲାଗେ। ସେଠାରେ ଗୋଟିଏ ଦୂରବୀକ୍ଷଣ ଯନ୍ତ୍ର ଖଞ୍ଜା ଯାଇଛି। ପୃଥିବୀର ଉଚ୍ଚତମ ଶୃଙ୍ଗ ଏଭରେଷ୍ଟ ଦେଖିବା ପାଇଁ। ଅନେକ ଲୋକ ସେଠାକୁ ଆସନ୍ତି ଏଭରେଷ୍ଟ ଶୃଙ୍ଗ ଦେଖିବା ମାନସରେ।

ଆମର Study Visit ପାଇଁ ଆମେ ତିବତୀୟ ସ୍କୁଲ, Oak Grove School and Railway Public School କୁ ଯାଇଥିଲୁ। ତିବତୀୟ ସ୍କୁଲ ଭାରତ ସରକାରଙ୍କ ଦ୍ୱାରା ପରିଚାଳିତ। ତିବତୀୟ ଶରଣାର୍ଥୀମାନଙ୍କର ପିଲାମାନେ ସେଠାରେ ପଢନ୍ତି। ସ୍କୁଲ ଶିକ୍ଷକମାନେ ତିବତୀୟ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ କରିଥିଲେ। ପିଲାମାନଙ୍କର ଗୀତ, ନାଚ ବେଶ୍ ଉପଭୋଗ୍ୟ ହେଲା। ତା' ଠାରୁ ଅଧିକ ଉପଭୋଗ୍ୟ ହେଲା ତିବତୀୟ ବାଦ୍ୟ ଯନ୍ତ୍ର। ସେ ଦିନ ସମସ୍ତେ ତୀବତୀୟ ସାଂସ୍କୃତିକ କାର୍ଯ୍ୟକ୍ରମରେ ମୁଗ୍ଧ ହୋଇ ଫେରିଲେ। ଓକ୍ ଗ୍ରୋଭ ସ୍କୁଲ ଓ ରେଲୱେ ପବ୍ଲିକ୍ ସ୍କୁଲର ମୂଲ୍ୟାଙ୍କନ ପଦ୍ଧତି ସମ୍ବନ୍ଧରେ ତାଙ୍କ ଶିକ୍ଷକମାନଙ୍କ ସହିତ ଆଲୋଚନା କଲୁ ଓ ମୂଲ୍ୟାୟନର Record ଦେଖି ଆମେମାନେ ଏକ ତୁଳନାତ୍ମକ ଚିତ୍ର ପ୍ରସ୍ତୁତ କରିଥିଲୁ। ମସୁରୀର ପ୍ରତିଟି ଅଭିଜ୍ଞତା ଓ ସ୍ମୃତି ଜୀବନରେ ଗଭୀର ରେଖାପାତ କରିଛି।

ଶିକ୍ଷା ମୂଲ୍ୟାୟନ ଟ୍ରେନିଂ ପରେ ମୁଁ ଫେରିଆସି ମୋର ପୂର୍ବ ସ୍ଥାନ ଅନୁଗୁଳ ଟ୍ରେନିଂ କଲେଜରେ ଯୋଗ ଦେଲି। ଉଚ୍ଚ ଶିକ୍ଷା ନିର୍ଦ୍ଦେଶକ ପ୍ରଫେସର ବିଧୁ ଭୂଷଣ ଦାସଙ୍କ ସହ ଆଲୋଚନା ବେଳେ ସେ କହିଲେ " ଟ୍ରେନିଂ କଲେଜର ପିଲାମାନେ ମାତୃଭାଷା ଶିକ୍ଷାଦାନ ପଦ୍ଧତି ଇଂରାଜି ବହିରୁ ପଢି ଜ୍ଞାନ ଲାଭ କରୁଛନ୍ତି। W.M. Ryburn କି ଅନ୍ୟ ବହିରୁ ସେମାନେ ପଢି ଓଡିଆ ଶିକ୍ଷାଦାନ ବିଷୟରେ ପରୀକ୍ଷା ଦେଉଛନ୍ତି। ଓଡିଆରେ ଖଣ୍ଡେ ଶିକ୍ଷାଦାନ ପଦ୍ଧତି ବହି ତୁ ଲେଖୁ ନାହୁଁ।" ତାଙ୍କ କଥା ଶୁଣି ମୁଁ "ମାତୃଭାଷା ଶିକ୍ଷା" ବହି ଲେଖିଲି।

ବିଧୁବାବୁ ତା'ର ସୁଦୀର୍ଘ ମୁଖବନ୍ଧ ଲେଖିଛନ୍ତି। ସେ ମୁଖବନ୍ଧରେ ଓଡିଆ ଭାଷା ଶିକ୍ଷାର ଦୁର୍ଗତି ବିଷୟରେ ଚମତ୍କାର ବିଶ୍ଳେଷଣ କରିଛନ୍ତି। ବିଶ୍ୱ ବିଦ୍ୟାଳୟ ସ୍ତରରେ ପିଲାମାନଙ୍କର ଓଡିଆ ଭାଷାଜ୍ଞାନ କେତେ ଦୁର୍ବଳ ସେ ବିଷୟରେ ସେ ତାଙ୍କର ଅଭିଜ୍ଞତା ବର୍ଣ୍ଣନା କରିଛନ୍ତି। ସେ ମୁଖବନ୍ଧଟି ମୋ ବହିର ମୂଲ୍ୟ ଯଥେଷ୍ଟ ବଢାଇ ଦେଇଛି।

## ୩.୪ ଗଙ୍ଗାଧର ମେହେର କଲେଜ, ସମ୍ବଲପୁର

ଅନୁଗୁଳ ବେସିକ୍ ଟ୍ରେନିଂ କଲେଜରେ ତିନିବର୍ଷ କାର୍ଯ୍ୟକାଳ ଶେଷରେ ୧୯୬୮ ମସିହା ସେପ୍ଟେମ୍ବର ମାସରେ ମୋର ଗଙ୍ଗାଧର ମେହେର କଲେଜ, ସମ୍ବଲପୁରକୁ ବଦଳି ହେଲା। ସେଠାରେ ଗୋଟିଏ ଉପଲବ୍ଧି ହେଲା ଯେ ଯେଉଁମାନେ ପ୍ରିନ୍ସିପାଲଙ୍କ ଗୋଡାଣିଆଁ ହେବେ ସେମାନେ ନିରାପଦ। ଯେଉଁମାନେ କଲେଜ କାର୍ଯ୍ୟକ୍ରମରେ ସକ୍ରିୟ ଅଂଶ ଗ୍ରହଣ ନ କରି ଚପି ରହିବେ ସୋମନେ ବି ନିରାପଦ। କିନ୍ତୁ ମୋ ଭଳି ଯେଉଁମାନେ ପ୍ରିନ୍ସିପାଲଙ୍କୁ ଖୋସାମତ କରିପାରିବେ ନାହିଁ ଓ ଆଗକୁ ବାହାରି କଲେଜ କାର୍ଯ୍ୟକ୍ରମରେ ସକ୍ରିୟ ହେବେ ସେମାନେ ବଦଳି ହୋଇଯିବେ। ବଦଳି ପାଇଁ ମୋର ଦୁଃଖ ନଥିଲା। କିନ୍ତୁ ମୋତେ ଛାଡି ଅନ୍ୟ ସବୁ ଅଧ୍ୟାପକ ମୋ ଠାରୁ ଅଧିକ ସମୟ ସେ କଲେଜରେ ରହିଥିଲେ। ଅଥଚ ମୋର ବଦଳି ହେଲା। ମୁଁ ଡି.ପି. ଆଇଙ୍କୁ ଦେଖାକଲି। ସେ କହିଲେ "ଗଙ୍ଗାଧର ମେହେର କଲେଜ ଶିକ୍ଷା ବିଭାଗ ଅବସ୍ଥା ଭଲ ନାହିଁ।"ମୁଁ ତୋତେ ସେଠାକୁ ପଠାଉଛି ଅବସ୍ଥା ସୁଧାରିବା ପାଇଁ । ତାଙ୍କ କଥା ମାନି ମୁଁ ୨୧।୯।୧୯୬୮ ତାରିଖରେ ଗଙ୍ଗାଧର ମେହେର କଲେଜ ଶିକ୍ଷା ବିଭାଗ ମୁଖ୍ୟ ଅଧ୍ୟାପକ ଭାବରେ ଯୋଗ ଦେଲି।

ଯୋଗ ଦେଲା ପରେ ଦେଖିଲି ଶିକ୍ଷା ବିଭାଗର ଅବସ୍ଥା ବହୁତ ଖରାପ। ପ୍ରାକ୍-ବିଶ୍ୱ ବିଦ୍ୟାଳୟ ଶ୍ରେଣୀ, ପ୍ରଥମ ବର୍ଷ ଡିଗ୍ରୀ ଶ୍ରେଣୀ, ବି.ଏ ପାଶ୍ ଓ ଅନର୍ସ ସମସ୍ତଙ୍କ ଅଭ୍ୟାସ ପାଠ ଦେବା ପାଇଁ ଗୋଟିଏ ସ୍କୁଲ (Practising School) ବୁଢାରାଜା ମି.ଇ ସ୍କୁଲ-ଶ୍ରେଣୀ ଦୁଇଟି ଷଷ୍ଠ ଓ ସପ୍ତମ । ମୁଁ ଆଶ୍ଚର୍ଯ୍ୟ ହେଲି ଏତେ ପିଲା ଏଠାରେ ଅଭ୍ୟାସ ପାଠ ଦାନ କରୁଛନ୍ତି କେମିତି ? ଅଧ୍ୟାପକମାନେ କହିଲେ, "ବାସ୍ତବିକ ପିଲାଙ୍କର ଅଭ୍ୟାସ ପାଠ ଦାନ ହୁଏ ନାହିଁ, Lesson deliver କରିଛନ୍ତି ବୋଲି ମିଛରେ ତାଙ୍କ ଖାତାରେ ଲେଖି ଦିଆହୁଏ।

ମୁଁ ଏ କଥା ପ୍ରିନ୍ସିପାଲ ଡକ୍ଟର ମହେନ୍ଦ୍ର କୁମାର ରାଉତଙ୍କୁ କହିଲି ଓ ପରାମର୍ଶ ଦେଲି, ଆଶାପାଲି ବାଳିକା ମି.ଇ ସ୍କୁଲ, ମୋଦିପଡା ମି.ଇ ସ୍କୁଲ ଓ ଚନ୍ଦ୍ରଶେଖର ଜିଲ୍ଲା ସ୍କୁଲରେ ଆମ ପିଲା ଅଭ୍ୟାସ ପାଠଦାନ କରିବା ପାଇଁ ସ୍କୁଲ ଇନ୍ସପେକ୍ଟରଙ୍କ ଠାରୁ ଅନୁମତି ଅଣାଯାଉ। ପ୍ରିନ୍ସିପାଲ କହିଲେ, "ମୁଁ ଚିଠି ଲେଖି ଦେଉଛି, ତମେ ସେ ସବୁ ବ୍ୟବସ୍ଥା କର"। ମୁଁ ଚିଠି ନେଇ ସମ୍ବଲପୁର ଇନ୍ସପେକ୍ଟର ମନମୋହନ ପଟ୍ଟନାୟକଙ୍କ ଠାରୁ ଅନୁମତି ନେଇ ଆସିଲି। ତା ପରେ ନିୟମିତ ଅଭ୍ୟାସ ପାଠ ଦିଆଗଲା ଓ ଅଧ୍ୟାପକମାନେ ବିଭିନ୍ନ ସ୍କୁଲକୁ Supervision ପାଇଁ ଗଲେ।

ମହାତ୍ମା ଗାନ୍ଧୀଙ୍କ ଜନ୍ମ ଶତବାର୍ଷିକୀ ୧୯୬୯ ମସିହା ଅକ୍ଟୋବର ମାସରେ ପାଳିତ ହେବା ପାଇଁ କଲେଜରେ ଆୟୋଜନ ହେଲା। ଗାନ୍ଧୀ ଦର୍ଶନ, ଅର୍ଥନୀତି, ଶିକ୍ଷା ଆଦି ବିଷୟରେ ଘଣ୍ଟାଏ ଲେଖାଏଁ ଭାଷଣ ଓ ତା' ପରେ ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମ। ଗାନ୍ଧୀୟ ଶିକ୍ଷା ନୀତି ବିଷୟରେ ଭାଷଣ ଦେବା ଦାୟିତ୍ୱ ମୋ ଉପରେ ପଡିଲା। ଭାଷଣ ପ୍ରସଙ୍ଗରେ ମୁଁ ଗାନ୍ଧୀଙ୍କ ମୌଳିକ ଶିକ୍ଷା ବନାମ ଇଂରେଜମାନଙ୍କ ପ୍ରବର୍ତ୍ତିତ ଶକ୍ଷା ପଦ୍ଧତି ସମ୍ବନ୍ଧରେ ଆଲୋଚନା କଲି। ଏ ଉଭୟ ଶିକ୍ଷା ନୀତିର ତୁଳନା କଲେ ଯେ କୌଣସି ଲୋକ ମୌଳିକ ଶିକ୍ଷାର ଉତ୍କର୍ଷ ପ୍ରତିପାଦିତ କରିବ। ମୁଁ ତାହା ହିଁ କଲି। ଇଂରାଜି ବିଭାଗର ଅଧ୍ୟାପକ ମଧୁସୂଦନ ପତି ହଠାତ୍ ଉଠି ପ୍ରଶ୍ନ କଲେ, "ଯଦି ଇଂରେଜମାନଙ୍କ ପ୍ରବର୍ତ୍ତିତ ଶିକ୍ଷାକୁ ଆପଣ ନିକୃଷ୍ଟ ଓ ଦାସତ୍ୱ ସହାୟକ ବୋଲି କହୁଛନ୍ତି ତା' ହେଲେ କିପରି ମହାତ୍ମା ଗାନ୍ଧୀ, ଜବାହରଲାଲ୍ ନେହେରୁ, ସୁଭାଷ ବୋଷ, ଅରବିନ୍ଦ ଆଦି ସେହି ଶିକ୍ଷାରୁ ସୃଷ୍ଟି ହେଲେ ? ମୁଁ ଉତ୍ତର ଦେଲି, "ଇଂରେଜମାନଙ୍କ ପ୍ରବର୍ତ୍ତିତ ଶିକ୍ଷା ଭାରତରେ ପ୍ରଚଳିତ ଥିବାରୁ ଆମେ ଜଣେ ଗାନ୍ଧୀ, ଜଣେ ନେହେରୁ, ଜଣେ ସୁବାଷ ଓ ଜଣେ ଅରବିନ୍ଦ ପାଇଲେ। ଯଦି ତା ସ୍ଥାନରେ ମୌଳିକ ଶିକ୍ଷା ପ୍ରଚଳିତ ଥାଆନ୍ତା ତା' ହେଲେ ବହୁ ସଂଖ୍ୟାରେ ଗାନ୍ଧୀ, ନେହେରୁ, ସୁବାଷ ଓ ଅରବିନ୍ଦ ପାଇଥାନ୍ତେ।

ତା ପରେ ଯେଉଁ ପ୍ରଶ୍ନ ଆସିଲା। ତାହା ସବୁ ମୌଳିକ ଶିକ୍ଷାର ମାଟ୍ରିକ ପରଠାରୁ ଉଚ୍ଚତର ଶିକ୍ଷାର ବ୍ୟବସ୍ଥା ନ ଥିବା କଥା ଓ ମୌଳିକ ଶିକ୍ଷା ସହିତ ସଂଯୁକ୍ତ ଅର୍ଥନୀତି ବ୍ୟବସ୍ଥା ଉପରେ ଆଧାରିତ ଥିଲା। ତାର ସରଳ ଉତ୍ତର ମୁଁ ଦେଇଥିଲି। ଏ ଦେଶ ମୌଳିକ ଶିକ୍ଷା ବ୍ୟବସ୍ଥାକୁ Sargent Committee ସୁପାରିଶ ସତ୍ତ୍ୱେ ଜାତୀୟ ଶିକ୍ଷା ନୀତି ଭାବରେ ଗ୍ରହଣ କରି ନାହିଁ। ଏକ ସଂପୂର୍ଣ୍ଣ ନୂତନ ଶିକ୍ଷା ବ୍ୟବସ୍ଥାକୁ ପରୀକ୍ଷାମୂଳକ ବାବରେ ଗ୍ରହଣ କରି ଦେଶର ଶିକ୍ଷା ଓ ଅର୍ଥନୀତିର ଆମୂଳଚୂଳ ପରିବର୍ତ୍ତନ କରିବାର Risk ନେବାକୁ ଶାସନ ସାହସ

କରି ପାରିଲା ନାହିଁ। ଆଉ ଉଚ୍ଚତର ମୌଳିକ ଶିକ୍ଷା ବିଷୟ ଚିନ୍ତା କରିବାର ସୁଯୋଗ ସୃଷ୍ଟି ହୋଇ ପାରିଲା କେଉଁଠି ?

ଶିକ୍ଷା ବିଭାଗ Laboratory ରେ ଶିକ୍ଷାଦାନ ଉପକରଣ ଓ Test materials ର ଅଭାବ ରହିଥିଲା। ଏ ଅଭାବ ଦୂର କରିବା ପାଇଁ କେହି କିଛି ଉଦ୍ୟମ କରିଥିବା ପରି ଜଣାଗଲା ନାହିଁ। ବୁଦ୍ଧି ପରୀକ୍ଷା ଓ Aptitude Test ଆଦି ପଢାଇବା ବେଳେ କେହି Test materials ଦେଖାଇବାର ଆବଶ୍ୟକତା ଉପଲବ୍ଧି କରି ନାହାନ୍ତି। ଦୈବାତ୍ ୧୯୬୮ ମସିହାରେ ବିଶ୍ୱ ବିଦ୍ୟାଳୟ ମଞ୍ଜୁରୀ କମିଶନ ଗଙ୍ଗାଧର ମେହେର କଲେଜ ପରିଦର୍ଶନରେ ଆସିଲେ। ତାଙ୍କ ନିଟକରେ ଏ ଅଭାବ ବିଷୟ ଉତ୍ଥାପନ କରିବାରୁ ସେମାନେ ଆବଶ୍ୟକୀୟ ଅର୍ଥ ଅନୁଦାନ ଆକାରରେ ଦେଲେ ଓ ସେଥିରେ ପାଠଦାନ ଉପକରଣ ଓ Test materials କିଣାଗଲା।

ଗଙ୍ଗାଧର ମେହେର କଲେଜରେ ଦୁଇ ତିନି ମାସ କାମ କଲା ପରେ ମୋ ଦେହ ଭୀଷଣ ଖରାପ ହେଲା। ଚାଲିବାରେ ମୁଁ କଷ୍ଟ ଅନୁଭବ କଲି। ସେତେବେଳେ ମୋର ପୁରୁଣା ବନ୍ଧୁ ଦୁର୍ଗାପ୍ରସନ୍ନ ପଣ୍ଡା ସମ୍ବଲପୁର ସାନ୍ଧ୍ୟ କଲେଜରେ ଅଧ୍ୟାପକ ଥିଲେ। ତାଙ୍କୁ ମୁଁ ମୋର ଅସୁସ୍ଥତା କଥା କହିବାରୁ ସେ ମୋତେ ତାଙ୍କ ବନ୍ଧୁ ଡାକ୍ତର ବାସାଙ୍କ ପାଖକୁ ନେଇଗଲେ। ସେ ମୋତେ Hip Joint X' ray କରିବା ପାଇଁ ପରାମର୍ଶ ଦେଲେ। ପରଦିନ ମୁଁ ମେଡିକାଲ ଯାଇ ବାମ ଗୋଡ Hip Joint X' ray କରାଇଲି। X' ray ରିପୋର୍ଟ ଦେଖି ଡାକ୍ତର ବାସା ବୁର୍ଲା ମେଡିକାଲ କଲେଜକୁ ଯାଇ ବିଶେଷଜ୍ଞଙ୍କ ପରାମର୍ଶ ନେବା ପାଇଁ କହିଲେ। ସେଠାରେ ଡାକ୍ତର ଅଗରୱାଲ୍ ମୋତେ ଅସ୍ତ୍ରୋପଚାର ପାଇଁ ପରାମର୍ଶ ଦେଲେ। ୧୯୬୮ ଡିସେମ୍ବର ମାସ ୧୦ ତାରିଖରୁ ମୁଁ ଛୁଟି ନେଇ ରହିଲି ଓ କଟକ ଚାଲି ଆସି ଡାକ୍ତର ତେଜେଶ୍ୱର ରାଓଙ୍କ ସହିତ ପରାମର୍ଶ କଲି। ସେ ୧୯।୧୨।୧୯୬୮ ତାରିଖରେ ତାଙ୍କ ମଙ୍ଗଳାବାଗ କ୍ଲିନିକ୍‌ରେ ମୋର ବାଁ ଗୋଡ Thigh Bone ରେ ହୋଇଥିବା Bone Cyst ବାହାର କରି ତା ସ୍ଥାନରେ କଟି ହାଡରୁ ଖଣ୍ଡେ କାଟି Grafting କରିଦେଲେ। ଦଶଦିନ ପରେ ଅଣ୍ଟା ପାଖରୁ ବାଁ ଗୋଡ ବୁଢାଆଙ୍ଗୁଳି ପର୍ଯ୍ୟନ୍ତ Plaster କରିଦେଲେ। ସେଇ ଅବସ୍ଥାରେ ମୋତେ ତିନିମାସ ରହିବା ପାଇଁ ପଡିଲା।

Plaster ଫିଟିବାର ଏକ ମାସ ପରେ Caliper ଲଗାଇ ଧୀରେ ଧୀରେ ଜଣେ ଲୋକର ସାହାଯ୍ୟ ନେଇ ଚାଲିଲି । ସେତେବେଳେ ଅର୍ଥାଭାବ ଯୋଗୁଁ ଅନୁଗୁଳ ଟ୍ରେନିଂ କଲେଜରେ ଓଡିଆ Method Practical ପରୀକ୍ଷାରେ External ପରୀକ୍ଷକ କାମ ଗ୍ରହଣ କରିବାକୁ ବାଧ୍ୟ ହେଲି । ଅନୁଗୁଳ ଟ୍ରେନିଂ କଲେଜ ମୋର ପୁରୁଣା ଅନୁଷ୍ଠାନ । ମାତ୍ର ଆଠ ମାସ ତଳେ ସେଠାରେ ମୁଁ ଅଧ୍ୟାପକ ଥିଲି । ମୋର ଧାରଣା ଥିଲା ମୋର ଶାରୀରିକ ଅକ୍ଷମତା ପ୍ରତି ସେମାନେ ସହାନୁଭୂତିଶୀଳ ହେବେ । ମୁଁ ପ୍ରିନ୍ସିପାଲଙ୍କୁ ଅନୁରୋଧ କଲି , ମୋର ଚଳପ୍ରଚଳ ହେବା ଅସୁବିଧା ଯୋଗୁ ପରୀକ୍ଷାକୁ ଦିନକ ପରିବର୍ତ୍ତେ ଦୁଇଦିନରେ କରିବାକୁ । ସେଥିରେ ପ୍ରିନ୍ସିପାଲ ରାଜି ନହୋଇ ଗୋଟିଏ ଦିନରେ ପରୀକ୍ଷା କରିବାକୁ ଜିଦ୍ ଧରିଲେ । ମୋତେ କଷ୍ଟ ହେଲା । ଦିନକ ଭିତରେ ପରୀକ୍ଷା ଶେଷ କଲି । ପ୍ରିନ୍ସିପାଲ କାହିଁକି ଜିଦ୍ ଧରିଲେ ଜାଣିବାକୁ ଚେଷ୍ଟା କଲି । ଜାଣିଲି ଡି.ପି.ଆଇ ପ୍ରଫେସର ବିଧୁଭୂଷଣ ଦାସ ଗୋଟିଏ ଦିନ ପରେ English Method External Examination କରିବାକୁ ଆସୁଛନ୍ତି । ମୋର ତାଙ୍କ ସହିତ ଦେଖା କରାଇ ନ ଦେବା ପାଇଁ ଦିନକ ଆଗରୁ ପରୀକ୍ଷା ସାରି ଦେଇ ମୋତେ ବିଦା କରିଦେବା ପାଇଁ ସେ ଚାହୁଁଥିଲେ । କାଳେ ମୁଁ ଡି.ପି.ଆଇଙ୍କୁ କହି ପୁଣି ଅନୁଗୁଳକୁ ବଦଳି ହୋଇ ଆସିବା ପାଇଁ କହିବି ଏଇ ଭୟ ତାଙ୍କ ମନରେ ଥିଲା । କିନ୍ତୁ ସେ ଏତିକି ବୁଝି ପାରିଲେ ନାହିଁ ଯେ ପରୀକ୍ଷା ପ୍ରୋଗ୍ରାମ ନିୟନ୍ତ୍ରଣ ସିନା ତାଙ୍କ ହାତରେ ଅଛି କିନ୍ତୁ ମୋର ଯିବା କଥା ସେମାନେ ସ୍ଥିର କରି ପାରିବେ ନାହିଁ । ତେଣୁ ପରୀକ୍ଷା ଶେଷ କରି ମୁଁ ଗୋଟିଏ ଦିନ ଅପେକ୍ଷା କଲି । ବିଧୁବାବୁ ଆସିଲେ । ତାଙ୍କ ସହିତ ଦେଖା କରି ମୋର କଟକକୁ ବଦଳି କରିବାକୁ କହିଲି । କିନ୍ତୁ ମୁଁ ତାଙ୍କୁ କିଛି କହିବା ପୂର୍ବରୁ ସେ କହିଲେ, "ପୂର୍ଣ୍ଣ, ମୁଁ ତୋ ଚିଠି ପାଇ ତୋତେ କଟକ ରାଧାନାଥ ଟ୍ରେନିଂ କଲେଜକୁ ବଦଳି କରିଦେଇଛି । ତୋତେ ଚିକିତ୍ସା କରୁଥିବା ଡାକ୍ତର ତେଜେଶ୍ୱର ରାଓ କଟକରେ ଥିବାରୁ ମୁଁ ତୋତେ କଟକ ବଦଳି କରି ଦେଇଛି ।" ମୁଁ ଖୁସି ହୋଇ ଫେରି ଆସିଲି ।

ବହୁ ଦିନରୁ ମୋର ଇଚ୍ଛା ଥିଲା ରେଭେନ୍ସା କଲେଜ ଓ ରାଧାନାଥ ଟ୍ରେନିଂ କଲେଜରେ ମୁଁ ଏକଦା ପଢିଥିବାରୁ ସେଠାରେ ଅଧ୍ୟାପକ ହେବି । ଆଜି ରାଧାନାଥ ଟ୍ରେନିଂ କଲେଜକୁ ଅଧ୍ୟାପକ ଭାବେ ବଦଳି ହୋଇ ମୋର ବହୁ ଦିନର ଦୁଇଟି ଆଶାରୁ ଗୋଟିଏ ପୂରଣ ହେଲା ।

## ୩.୫ ରାଧାନାଥ ଟ୍ରେନିଂ କଲେଜ

## ରାଧାନାଥ ପ୍ରତିମୂର୍ତ୍ତି ସ୍ଥାପନ

ଅନୁଗୁଳ ଟ୍ରେନିଂ କଲେଜ ଭଳି ରାଧାନାଥ ଟ୍ରେନିଂ କଲେଜ ପରିବେଶ ଏତେ ସଂକୀର୍ଣ୍ଣ ନୁହେଁ। ରାଧାନାଥ ଟ୍ରେନିଂ କଲେଜରେ ବି.ଏଡ୍ ଓ ଏମ୍.ଏଡ୍ ଉଭୟ ଅଛି। ସେ ବର୍ଷ ବି.ଏଡ୍ ସ୍ଥାନ ସଂଖ୍ୟା ବଢି ୧୨୦ ରୁ ୧୪୪ ହୋଇଥାଏ। ସେଠାରେ ପ୍ରିନ୍ସିପାଲ ଶତ୍ରୁଘ୍ନ ନାଥ ଥାନ୍ତି। ସରଳ, ଅମାୟିକ ଲୋକ, ଜ୍ଞାନୀ, ଅଭିଜ୍ଞ ଓ ଦୂରଦ୍ରଷ୍ଟା। ବ୍ୟବହାର କୋମଳ। ଗାନ୍ଧୀବାଦୀ ଲୋକ, ତାଙ୍କ ସହିତ କାମ କରିବାକୁ ଯେ କୌଣସି ବ୍ୟକ୍ତି ଖୁସି ହେବ। ମୁଁ ଗଙ୍ଗାଧର ମେହେର କଲେଜରୁ ୩।୫।୧୯୬୯ ରେ ଅବ୍ୟାହତି ନେଇ ରାଧାନାଥ ଟ୍ରେନିଂ କଲେଜରେ ୬।୫।୧୯୬୯ ତାରିଖରେ ଯୋଗ ଦେଲି। ନୂଆ ଶିକ୍ଷା ବର୍ଷ ଆରମ୍ଭ ହେଲା ଜୁନ୍ ମାସରୁ। ଗ୍ରୀଷ୍ମଛୁଟି ଭିତରେ କଟକର ଗଙ୍ଗାମନ୍ଦିରରେ ଭଡାଘର ଖଣ୍ଡିଏ ଯୋଗାଡ କରି ସେଠାରେ ରହିଲି। ଚଳପ୍ରଚଳ ପାଇଁ ଅସୁବିଧା ଥାଏ। ତଥାପି ପ୍ରଥମ ଦୁଇମାସ ରିକ୍ସାରେ ଯିବା ଆସିବା କରି କାମ ଚଳାଇ ନେଲି। ଗ୍ରୀଷ୍ମ ଛୁଟି ପଡିବାରୁ ଚିକିତ୍ସା ପାଇଁ ସୁବିଧା ହେଲା।

ଜୁଲାଇ ମାସ ଆରମ୍ଭରେ ପ୍ରିନ୍ସିପାଲ ଶତ୍ରୁଘ୍ନ ନାଥ ମୋତେ ଡାକି କହିଲେ, "ଉତ୍କଳ ବିଶ୍ୱ ବିଦ୍ୟାଳୟରେ ବି.ଏଡ କ୍ଲାସରେ ସଂସ୍କୃତ ଶିକ୍ଷାଦାନ ପ୍ରଣାଳୀ ପଢା ହେବାର ବ୍ୟବସ୍ଥା ନାହିଁ। ଆପଣ ଗୋଟିଏ ସଂସ୍କୃତ Method Syllabus ତିଆରି କରି ଦେଲେ ହୁଅନ୍ତା ନାହିଁ?" ମୁଁ କହିଲି ବିଭିନ୍ନ ବିଶ୍ୱ ବିଦ୍ୟାଳୟ ଓ ଅନୁଷ୍ଠାନ ଯେଉଁଠାରେ ସଂସ୍କୃତ Method ପ୍ରଚଳିତ ଅଛି ସେଠାରୁ ମୁଁ ପ୍ରଥମେ ତାଙ୍କ ସିଲାବସ୍ ମଗାଏ। "ସେ ସବୁର ଏକ ସମୀକରଣ କରି ସିଲାବସ୍ ତିଆରି କରିବାକୁ ହେବ। ସେଥିପାଇଁ ସମୟ ଲାଗିବ।" ସେ କହିଲେ ଦୁଇମାସ ଭିତରେ ତିଆରି କରିଦେଲେ ସିଲାବସ୍ କମିଟିରେ ପକାଇ ପାଶ୍ କରାଇବାକୁ ପଡିବ। ମୁଁ ଚେଷ୍ଟାକରି Reminder ଦେଇ ବିଭିନ୍ନ ବିଶ୍ୱ ବିଦ୍ୟାଳୟରୁ ସିଲାବସ୍ ମଗାଇ ଗୋଟିଏ ସିଲାବସ୍ ତିଆରି କରିଦେଲି। ତାହା ବିଶ୍ୱ ବିଦ୍ୟାଳୟ ବି.ଏଡ୍ ସିଲାବସ୍ କମିଟି,ଏକାଡେମିକ୍ କମିଟି ଓ ସିଣ୍ଡିକେଟରେ ପାଶ ହୋଇ ଗୃହୀତ ହୋଇଗଲା।

ତାପରେ ଶତ୍ରୁଘ୍ନ ବାବୁ ଅଧ୍ୟାପକମାନଙ୍କର ଏକ ମିଟିଂ ଡାକି କହିଲେ "ଏ କଲେଜର ନାମ ରାଧାନାଥ ରାୟଙ୍କ ନାମାନୁସାରେ ରାଧାନାଥ ଟ୍ରେନିଂ କଲେଜ ହୋଇଛି । ବହୁବର୍ଷ ଧରି କଲେଜ ଚାଲିଲାଣି, ଏ ପର୍ଯ୍ୟନ୍ତ ରାଧାନାଥଙ୍କର ପ୍ରତିମୂର୍ତ୍ତି ଏଠାରେ ସ୍ଥାପିତ ହୋଇପାରିଲା ନାହିଁ । ଏଥିପାଇଁ ଆମେମାନେ ଉଦ୍ୟମ କଲେ ହୁଅନ୍ତା ନାହିଁ ?" ସମସ୍ତେ ରାଜି ହୋଇଯିବାରୁ ସେ ଗୋଟିଏ କମିଟି ଗଠନ କରି ତାଙ୍କ ହାତରେ ଏ ଦାୟିତ୍ୱ ଦେଲେ । କମିଟିର ମୁଖ୍ୟ ହେଲେ କ୍ଷୀରୋଦ ବିହାରୀ ଅମାତ୍ୟ । ସଦସ୍ୟ ମୁଁ କ୍ଷେତ୍ରମୋହନ ଶତପଥୀ ଓ ଆଉ ଦୁଇଜଣ ଅଧ୍ୟାପକ । ପ୍ରସ୍ତାବ ଆରମ୍ଭ ହେଉ ହେଉ କ୍ଷେତ୍ରମୋହନ ଶତପଥୀ କାନ୍ଧରେ ଝୁଲାମଣି ପକାଇ ଚାନ୍ଦା ଆଦାୟ କରିବାକୁ ବାହାରି ପଡିଲେ । ଚାନ୍ଦା ଆଦାୟ ବଡ ମନ୍ଥର ଗତିରେ ଚାଲିଲା । ମୁଁ ଦେଖିଲି ଚାନ୍ଦା ଆଦାୟ କରି ରାଧାନାଥଙ୍କ ପ୍ରତିମୂର୍ତ୍ତି ନିର୍ମାଣ କରିବାକୁ ବହୁ ବର୍ଷ ଲାଗିଯିବ । ତେଣୁ ମୁଁ ଗୋଟେ ନୂଆ ପ୍ରସ୍ତାବ ଦେଲି । ୧୯୬୯ ମସିହାରେ ବି.ଏଡ୍ ପିଲାମାନେ ଟଙ୍କା ଦେଇ ରାଧାନାଥଙ୍କ ପ୍ରତିମୂର୍ତ୍ତି ସ୍ଥାପନ କରନ୍ତୁ । ପ୍ରତିମୂର୍ତ୍ତି ତଳେ ଲିପିବଦ୍ଧ ହେଉ, "୧୯୬୯ ମସିହା ଶିକ୍ଷାବର୍ଷ ଛାତ୍ରଛାତ୍ରୀଙ୍କ ଦ୍ୱାରା ସ୍ଥାପିତ" । ପିଲାମାନଙ୍କୁ ଏ ପ୍ରସ୍ତାବ ଦେବାରୁ ସେମାନେ ତତ୍‌କ୍ଷଣାତ୍ ରାଜି ହୋଇଗଲେ । ଚାନ୍ଦା ଆଦାୟ କରି କମିଟି ହାତରେ ଦେଇ ଦେଲେ । ମୂର୍ତ୍ତି ତିଆରି ହେଲା ଓ ହରେକୃଷ୍ଣ ମହତାବଙ୍କ ଦ୍ୱାରା ଉନ୍ମୋଚିତ ହେଲା । କିନ୍ତୁ ଯାହାଙ୍କ ଚିନ୍ତାଧାରାରୁ ମୂର୍ତ୍ତି ପ୍ରତିଷ୍ଠା ପ୍ରସ୍ତାବ ଆରମ୍ଭ ହୋଇଥିଲା ସେଇ ଶତ୍ରୁଘ୍ନ ନାଥ ସେତେବେଳେ ପ୍ରିନ୍ସିପାଲ ନ ଥିଲେ । ଭଦ୍ରକ କଲେଜରେ ବିଶୃଙ୍ଖଳା ହେବାରୁ ତା'ର ସମାଧାନ ପାଇଁ ଶତ୍ରୁଘ୍ନ ନାଥଙ୍କୁ ଭଦ୍ରକ କଲେଜର ପ୍ରିନ୍ସିପାଲ କରି ପଠାଇ ଦିଆଗଲା । ତାଙ୍କ ସ୍ଥାନରେ ଡକ୍ଟର ଗୌରୀଶ୍ୟାମ ମହାନ୍ତି ଯୋଗ ଦେଲେ । ମୂର୍ତ୍ତି ଉନ୍ମୋଚନ ଉତ୍ସବକୁ ଶତ୍ରୁଘ୍ନ ନାଥଙ୍କୁ ନିମନ୍ତ୍ରଣ କରିବାକୁ ମୁଁ ପ୍ରସ୍ତାବ ଦେଲି । କିନ୍ତୁ ତାଙ୍କୁ ଛାଡି କିଏ କେତେ ବାହାଦୁରୀ ନେବେ ସେଥିପାଇଁ ପ୍ରତିଯୋଗିତା ଚାଲିଲା । ତାଛଡା ଶତ୍ରୁଘ୍ନ ବାବୁଙ୍କୁ ନିମନ୍ତ୍ରଣ କରିବାରେ ଆଉ ଗୋଟିଏ ବିପଦ ଥିଲା । କାଳେ ଜଣାପଡିଯିବ ଯେ ରାଧାନାଥଙ୍କ ପ୍ରତିମୂର୍ତ୍ତି ପ୍ରତିଷ୍ଠା ମୂଳ ପ୍ରସ୍ତାବ ତାଙ୍କର । ଶିକ୍ଷା ବିଭାଗ ତ, ଏଠାରେ କୃତଜ୍ଞତା ନାହିଁ । ଉଦାରତା ଅପେକ୍ଷା ସଂକୀର୍ଣ୍ଣତା ଅଧିକ ।

# ସାଂସ୍କୃତିକ କାର୍ଯ୍ୟକ୍ରମ

୧୯୬୯-୭୦ ଶିକ୍ଷାବର୍ଷ ବି.ଏଡ୍ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଅନେକ ଅଭିନୟ ପ୍ରତିଭା ସଂପନ୍ନ ପିଲା ଥିଲେ। ସାଂସ୍କୃତିକ କାର୍ଯ୍ୟକ୍ରମ ପ୍ରତି ସେମାନଙ୍କର ପ୍ରବଳ ଆଗ୍ରହ ଥିଲା। କେବଳ ଝିଅମାନେ ଗଣକବି ବୈଷ୍ଣବ ପାଣିଙ୍କ ଗୀତିନାଟ୍ୟ "କାର୍ତ୍ତବୀର୍ଯ୍ୟ ସଂହାର" ଓ ପୁଅମାନେ କବିଚନ୍ଦ୍ର କାଳୀ ଚରଣ ପଟ୍ଟନାୟକଙ୍କ ଐତିହାସିକ ନାଟକ, "ରକ୍ତ ମନ୍ଦାର" ମଞ୍ଚସ୍ଥ କରିଥିଲେ। ଗୀତିନାଟ୍ୟରେ ସାରଦା ପ୍ରସନ୍ନ ନାୟକ ସଂଗୀତ ନିର୍ଦ୍ଦେଶନା ଦେଇଥିଲେ। "ରକ୍ତ ମନ୍ଦାର" ନାଟକର ନିର୍ଦ୍ଦେଶନା ମୁଁ ଦେଇଥିଲି। ପିଲାମାନଙ୍କର ଅଭିନୟ ଏତେ ଉଚ୍ଚକୋଟୀର ହୋଇଥିଲା ଯେ ଦର୍ଶକ ତଥା ନିମନ୍ତ୍ରିତ ଅତିଥିମାନେ ଭୂରି ଭୂରି ପ୍ରଶଂସା ସହିତ ନାଟକ ଶେଷରେ ଅନେକ ପୁରସ୍କାର ଦେଇଥିଲେ। ନାଟକ ଅଭିନୟ ବେଳେ ପୁରସ୍କାର ଘୋଷଣା କରିବାକୁ ବାରଣ କରାଯାଇଥିଲା।

ପ୍ରିନ୍ସିପାଲ ଗୌରୀଶ୍ୟାମ ମହାନ୍ତିଙ୍କ ସହିତ ମୋର ମନାନ୍ତର ସବ୍‌ଇନ୍ସପେକ୍ଟର ଚାକିରି ବେଳୁ ରହିଥିଲା। ସେ ମଝିରେ ବିଜୁପଟ୍ଟନାୟକଙ୍କ ଦ୍ୱାରା ଦଣ୍ଡିତ ହୋଇ ଏକ ପ୍ରକାର ଅପମାନିତ ଜୀବନଯାପନ କରିଥିବା କଥା ମୁଁ ଜାଣିଥିଲି। ରାଧାନାଥ ଟ୍ରେନିଂ କଲେଜରେ ତାଙ୍କର କିଛି ଖୋସାମତିଆ ବାହାରିଲେ। ସେମାନେ ପ୍ରିନ୍ସିପାଲଙ୍କ ମନ୍ଦ କାମକୁ ସମର୍ଥନ କଲେ। ମୋ ସହିତ ଛୋଟ ଛୋଟ କଥାରେ ମତ ପାର୍ଥକ୍ୟ ଦେଖାଗଲା। ବିଶେଷ କରି ପାଠପଢ଼ା କ୍ଷେତ୍ରରେ। ଏ ପ୍ରକାର ପରିସ୍ଥିତିରେ ମୁଁ ଏଠାରେ ରହିବା ପାଇଁ ଚାହିଁଲି ନାହିଁ। କଲେଜର ନାଟକୋତ୍ସବ ମୁଁ ପରିଚାଳନା କରୁଥିଲି। ନାଟକୋତ୍ସବ ପୂର୍ବରୁ ସେ ଡି.ପି.ଆଇ ଙ୍କୁ କହି ମୋର ରେଭେନ୍ସା କଲେଜକୁ ବଦଳି କରାଇଦେଲେ। ମୁଁ ଅବ୍ୟାହତି ନେଇ ପଳାଇଯିବାକୁ ବସିଲି। କିନ୍ତୁ ନାଟକ ମଞ୍ଚସ୍ଥ ହେବା ପରେ ମୋତେ ଅବ୍ୟାହତି ଦେବାକୁ ପ୍ରିନ୍ସିପାଲ କହିବାରୁ ମୁଁ ନାଟକ ପରିଚାଳନା କଲି। ନାଟକ ଦୁଇଟିର ସଫଳତାରେ ମୋତେ ବହୁତ ପ୍ରଶଂସା ମିଳିଲା। ନାଟକ ଶେଷରେ ୨୧।୧୨। ୧୯୭୦ ତାରିଖରେ ମୁଁ ରାଧାନାଥ ଟ୍ରେନିଂ କଲେଜରୁ ଅବ୍ୟାହତି ନେଇ ସେହିଦିନ ରେଭେନ୍ସା କଲେଜରେ ଯୋଗ ଦେଲି।

ରାଧାନାଥ ଟ୍ରେନିଂ କଲେଜର ଅଧ୍ୟାପକମାନଙ୍କ ମଧ୍ୟରେ ବ୍ୟକ୍ତିଗତ ବିରୋଧ ଥିଲା କିନ୍ତୁ ଅନୁଗୁଳ ବେସିକ୍ ଟ୍ରେନିଂ କଲେଜ ଅଧ୍ୟାପକମାନଙ୍କ ଭଳି ଏତେ ସଂକୀର୍ଣ୍ଣ ନୁହେଁ। ପାରସ୍ପରିକ ବିରୋଧ ଟ୍ରେନିଂ କଲେଜଗୁଡିକର ସାଧାରଣ ଲକ୍ଷଣ।

ପ୍ରିନ୍ସିପାଲ ଗୌରୀଶ୍ୟାମ ମହାନ୍ତି ରଜା ମିଜାଜ୍‌ର ଲୋକ। ତାଙ୍କର ଦଳେ ଖୋସାମତିଆ ଦରକାର। ସେ ଖୋସାମତିଆଙ୍କୁ ଭାରି ଭଲ ପାଆନ୍ତି। ମୋର ବିରୋଧ ପାଇଁ ମୁଁ ଦୁଃଖିତ ବା ଅନୁତପ୍ତ ନୁହେଁ। ବରଂ ରେଭେନ୍ସା କଲେଜକୁ ବଦଳି ହୋଇଥିବାରୁ ମୁଁ ଖୁସି ହେଲି।

## ୩.୬ ରେଭେନ୍ସା କଲେଜ

ରେଭେନ୍ସା କଲେଜ। ବିରାଟ ଶିକ୍ଷାନୁଷ୍ଠାନ। ପ୍ରତି ବିଭାଗ ସ୍ୱତନ୍ତ୍ର। ପ୍ରତ୍ୟେକ ବିଜ୍ଞାନ ବିଷୟ, କମର୍ସ, ଶିକ୍ଷା ଓ ଭୂଗୋଳ ବିଷୟ ନିଜ ନିଜର ବିଭାଗୀୟ ଘର ଅଛି। ମୁକ୍ତ ପରିବେଶ। ରାଧାନାଥ ଟ୍ରେନିଂ କଲେଜର ସଂକୀର୍ଣ୍ଣ ପରିବେଶରୁ ଯାଇ ରେଭେନ୍ସା  କଲେଜର ମୁକ୍ତ ପରିବେଶରେ ନିଶ୍ୱାସ ନେଲା ବେଳକୁ ବହୁତ ଉଶ୍ୱାସ ଲାଗିଲା। ଶିକ୍ଷା ବିଭାଗର ମୁଖ୍ୟ ନିରଞ୍ଜନ ମହାପାତ୍ର। ଅମାୟିକ ଲୋକ। ସାଧାସିଧା କର୍ତ୍ତବ୍ୟନିଷ୍ଠ ଓ ସରଳ। ଅନ୍ୟ ଅଧ୍ୟାପକ/ଅଧ୍ୟାପିକାମାନେ ହେଲେ ଭାଗୀରଥି ନାୟକ, ମୁରଲୀଧର ଦାଶ (ବଡ), ଇନ୍ଦିରା ନନ୍ଦ, ଶୋଭାରାଣୀ ଆଚାର୍ଯ୍ୟ। କେହି କାହା କଥାରେ ବା କାମରେ ମୁଣ୍ଡ ଗଳାନ୍ତି ନାହିଁ। ସେଥିପାଇଁ ସୁଯୋଗ ବି କମ୍। ଏକାଠି ହେଲେ ହସ, ଖୁସି, ଥଟ୍ଟା, ମଜା। ସମସ୍ତେ ନିଜ ନିଜ କାମରେ ବ୍ୟସ୍ତ। ପିଲାଙ୍କ ଅଭ୍ୟାସ ପାଠ ତଦାରଖ ପାଇଁ ବିଭିନ୍ନ ସ୍କୁଲକୁ ଯିବାରେ କିଛି ସମୟ କଟେ। ଟ୍ରେନିଂ କଲେଜ ଭଳି କେହି କାହା ବିରୁଦ୍ଧରେ କଥାବାର୍ତ୍ତା କରିବା  କି କାହା ବିରୁଦ୍ଧରେ ଷଡଯନ୍ତ୍ର କରିବା ଏଠାରେ ନାହିଁ। ପରିବେଶ ଶାନ୍ତ। ପ୍ରିନ୍ସିପାଲଙ୍କୁ ଭେଟିବା ସୁଯୋଗ ବହୁତ କମ୍ Staff meeting ହେଲେ ପ୍ରିନ୍ସିପାଲଙ୍କ ସହ ସାକ୍ଷାତ ।

ରେଭେନ୍ସା କଲେଜରେ ଅଧ୍ୟାପକମାନଙ୍କ ପାଇଁ କ୍ୱାଟର ସଂଖ୍ୟା ସୀମିତ। ଖୁବ୍ ବରିଷ୍ଠ ଅଧ୍ୟାପକ ବା ରିଡର ନ ହେଲେ କ୍ୱାଟର ମିଳେ ନାହିଁ। ଅଧିକାଂଶ ଅଧ୍ୟାପକ ଭଡା ଘରେ ରହନ୍ତି। ମୁଁ ଚୌଧୁରୀ ବଜାର ପଛ ପାଖ ଗଙ୍ଗା ମନ୍ଦିରରେ ରହୁଥାଏ।। କଲେଜକୁ ଦୂର। ଯିବା ଆସିବା କରିବାକୁ କଷ୍ଟ ଲାଗେ। ଯେଉଁ ଦିନ ଅଭ୍ୟାସ ପାଠ ଦେଖି ଯିବାକୁ ଥାଏ ସେ ଦିନ ଶୀଘ୍ର ଯିବାକୁ ହୁଏ। ରେଭେନ୍ସା କଲେଜ ପାଖରେ ଘର ଖୋଜିଲି ପାଇଲି ନାହିଁ। ପିଲାଙ୍କର ରେଭେନ୍ସା କଲିଜିଏଟ୍ ସ୍କୁଲ ଓ ଗଙ୍ଗାମନ୍ଦିର ପ୍ରାଇମେରୀ ସ୍କୁଲରେ ନାଁ ଲେଖା ହୋଇଥାଏ। ତେଣୁ ଘର ବଦଳାଇବା ସମ୍ଭବ ନୁହେଁ। ତେବେ କିଛିଦିନ ପରେ ବାଖରାବାଦରେ

ଗୋଟାଏ ଭଲ ଘର ମିଳିବାରୁ ସେଠାକୁ ଚାଲିଗଲି। ପିଲାଙ୍କ ପାଠପଢାରେ କ୍ଷତି ହେଲା ନାହିଁ

ମୋର ବାମ ଗୋଡରେ Bone cyst ଅପରେସନ୍ ହୋଇଥିବାରୁ ମୁଁ ୧୦।୧୨।୧୯୬୮ ଠାରୁ ୩୧।୩।୧୯୬୯ ପର୍ଯ୍ୟନ୍ତ ଛୁଟି ନେଇଥିଲି। ୧୯୭୨ ମସିହା ପର୍ଯ୍ୟନ୍ତ ଛୁଟି ମଞ୍ଜୁର ହେଲାନାହିଁ। ପ୍ରଥମେ ମୋତେ ମେଡିକାଲ ବୋର୍ଡକୁ ପରୀକ୍ଷା ପାଇଁ ପଠାଗଲା। ସେଠାରୁ ସାର୍ଟିଫିକେଟ୍ ନେଇ ଫେରିଲା ପରେ ବି ଛୁଟି ମଞ୍ଜୁର ହେଲା ନାହିଁ। ଡି.ପି.ଆଇ ଅଫିସରୁ ବୁଝିବାରୁ ଜଣାଗଲା ଯେ ମୋର Non-gazatted ଚାକିରିକାଳର ସେବା ପୁସ୍ତକ ହଜି ଯାଇଛି। ଡି.ପି.ଆଇ ଅଫିସରେ ମୋତେ ପରାମର୍ଶ ଦେଲେ ଯେ ମୋର Non-gazatted ଚାକିରି କେବଳ ଗୋଟିଏ ସ୍ଥାନ ଭଦ୍ରକରେ ସୀମିତ। ସେଠାକୁ ଯାଇ ସେବାପୁସ୍ତକ ତିଆରି କରି ନେଇ ଆସନ୍ତୁ। ତା ପରେ ଛୁଟି ମଞ୍ଜୁର ହେବ। ମୁଁ ଭଦ୍ରକ ଗଲି। ସେଠାରେ ମୋ ସ୍ଥାନରେ ଦୁର୍ଯ୍ୟୋଧନ ସାହୁ ସଦର ସବ୍‌ଇନସ୍ପେକ୍ଟର ଥାନ୍ତି। ତାଙ୍କୁ ଜିଲ୍ଲା ଶିକ୍ଷାଧିକାରୀ ଦାୟିତ୍ୱ ଦେଇଗଲେ Acquittance Roll ଦେଖି Service Book ତିଆରି କରି ଦେବା ପାଇଁ। ସେ କିନ୍ତୁ ଦିନଯାକ ଧରାଛୁଆଁ ଦେଲେ ନାହିଁ। କାମ ବାହାନା କରି ଚାଲିଗଲେ। ମୁଁ ତାଙ୍କ ପଛେ ପଛେ ଜଣେ ଶିକ୍ଷକଙ୍କୁ ଲଗାଇ ଦେଲି। ଦିନଯାକ ସେ କେଉଁଠି କ'ଣ କରୁଛନ୍ତି ଦେଖି ମୋତେ ସନ୍ଧ୍ୟାବେଳେ ରିପୋର୍ଟ ଦେବେ।

ସଂଧ୍ୟା ବେଳେ ମୁଁ ରିପୋର୍ଟ ପାଇଲି ଯେ ଦିନଯାକ ସେ ଘରେ ଥିଲେ ଅଥଚ Service Book ତିଆରି କରିବା ପାଇଁ ଆସିଲେ ନାହିଁ। ମୁଁ ରାତିରେ ଫେରି ଆସିବା ପାଇଁ ଭାବୁଥିଲି। କିନ୍ତୁ ବଙ୍କ ଉଚ୍ଚ ପ୍ରାଥମିକ ସ୍କୁଲ ପ୍ରଧାନଶିକ୍ଷକ ଗଦାଧର କହିଲା, " ସାର୍ ଶୀତ ରାତିରେ କାହିଁକି ହଇରାଣ ହୋଇଯିବେ? କାଲି ସକାଳେ ଆମ ସ୍କୁଲ ପିଲା ଗୋଟିଏ ବସ୍ ନେଇ ନନ୍ଦନକାନନ ବୁଲିବାକୁ ଯାଉଛନ୍ତି। ଆମେ ଆପଣଙ୍କୁ କଟକରେ ଛାଡି ଦେବୁ। ତେଣୁ ରାତିରେ ରହିଗଲି। ତା ପର ଦିନ ସକାଳେ ଗଦାଧର ଡାକିବାରୁ ବସ୍ ପାଖକୁ ଗଲି। ଦେଖିଲି ସେହି ସବ୍‌ଇନସ୍ପେକ୍ଟର ଦୁର୍ଯ୍ୟୋଧନ ବାବୁ ତାଙ୍କ ଛୁଆପିଲା ନେଇ ସ୍କୁଲ ପିଲାଙ୍କ ସାଙ୍ଗରେ ନନ୍ଦନକାନନ ଭ୍ରମଣରେ ବାହାରିଛନ୍ତି। ତାଙ୍କୁ ପଚାରିଲି, "ଆପଣ କାଲି ଦିନଯାକ ଘରେ ରହିଲେ ଅଥଚ ମୋର Service Book ପ୍ରସ୍ତୁତ କରିବାକୁ ଆସିଲେ ନାହିଁ କାହିଁକି? ଆପଣଙ୍କ ସହିତ ମୋର ଏହି ପ୍ରଥମ ଦେଖା। ଏହା

ପୂର୍ବରୁ ମୁଁ ଆପଣଙ୍କୁ ନା ଆପଣ ମୋତେ ଜାଣି ଥିଲେ ? ଆପଣଙ୍କ ସହିତ ମୋର ଶତ୍ରୁତା ବା ମିତ୍ରତା ନାହିଁ । ଅଥଚ ଆପଣ ଏପରି ଆଚରଣ ଦେଖାଇଲେ କାହିଁକି ? ସେ କହିଲେ " ଆପଣଙ୍କ ପ୍ରତି ମୋର ଧାରଣା ଭଲ ନୁହେଁ । କାରଣ ଆପଣ ମୋଟେ ତିନିବର୍ଷ ସଦର ସବ୍‌ଇନ୍‌ସ୍ପେକ୍ଟର ରହିଥିଲେ । ମୁଁ ପାଞ୍ଚବର୍ଷ ରହିଲିଣି । ଏବେ ଯେଉଁ ମାଷ୍ଟ୍ରଙ୍କୁ ଯାହା କହିବାକୁ କହିଲେ, ସେମାନେ କହୁଛନ୍ତି, "କାହିଁ ପୂର୍ଣ୍ଣବାବୁ ଏପରି କରିବାକୁ କହୁ ନଥିଲେ । ସେମାନେ ଆପଣଙ୍କୁ Authority ବୋଲି ଧରିନେଇଛନ୍ତି । ମୁଁ ବର୍ତ୍ତମାନ ଯେଉଁ କାମ କରୁଛି, ଆପଣ ତ ସେଇ କାମ କରୁଥିଲେ । ଶିକ୍ଷକମାନେ କାହିଁକି ଆପଣଙ୍କୁ ବଡ ବୋଲି ଭାବୁଛନ୍ତି ? ଏଇଥି ପାଇଁ ଆପଣଙ୍କ ପ୍ରତି ମୋର ଧାରଣା ଭଲ ନୁହେଁ ।" ମୁଁ ତାଙ୍କୁ କହିଲି,"ଆଜିକୁ ଆଠ ବର୍ଷ ତଳେ ମୁଁ ଏଠି ଚାକିରି କରୁଥିଲି । ମୁଁ ଚାଲି ଗଲିଣି । ତଥାପି ଶିକ୍ଷକମାନେ ମୋ ପ୍ରତି ଅନୁରକ୍ତ କାରଣ ସେମାନେ ମୋ ଠାରୁ ସ୍ନେହ,ଶ୍ରଦ୍ଧା ପୂର୍ଣ୍ଣ ବ୍ୟବହାର ପାଉଥିଲେ । ତା ବ୍ୟତୀତ ସେମାନେ ମୋର ଉପଦେଶରେ କିଛି ଭଲ ଥିବାର ଉପଲବ୍ଧି କରିଥିବେ । ଆପଣ ତାଙ୍କୁ ପଚାରୁନାହାନ୍ତି ସେମାନେ କାହିଁକି ମୋର ଆଠ ବର୍ଷ ତଳର ପରାମର୍ଶ ଉପରେ ଏତେ ଗୁରୁତ୍ୱ ଦେଉଛନ୍ତି ଓ ଆପଣଙ୍କର ସଦ୍ୟ ପରାମର୍ଶ ଗ୍ରହଣ କରୁନାହାନ୍ତି ?"

ଏହାପରେ ମୁଁ ଡି.ପି.ଆଇ ଅଫିସକୁ ଯାଇ ଖୋଜାଖୋଜି କରିବାରୁ ମୋର Service ବହି ମିଳିଗଲା । ଛୁଟି ବି ମଞ୍ଜୁର ହୋଇଗଲା । ଆଉ ଦୁର୍ଯ୍ୟୋଧନ ସାହୁଙ୍କର ସାହାଯ୍ୟ ଦରକାର ହେଲା ନାହିଁ । ରେଭେନ୍ସା କଲେଜରେ ଅଢେଇ ବର୍ଷ ଅଧ୍ୟାପକ ଭାବରେ କାମ କରିବା ପରେ ମୋର ଦୁଇଟି ପୁରାତନ ଶିକ୍ଷାନୁଷ୍ଠାନରେ କାମ କରିବାର ଆଶା ସଫଳ ହୋଇଗଲା । ସେଠାରୁ ପୁଣି ଥରେ ଅନୁଗୁଳ ବେସିକ୍ ଟ୍ରେନିଂ କଲେଜକୁ ବଦଳି ହେଲା । ପୁରୁଣା ଜାଗା । ଅନୁଗୁଳର ଗଳିକନ୍ଦି ସବୁ ଜଣାଥିଲା । ତାଛଡା ଅନୁଗୁଳ ସେତେବେଳେ ଏତେ ବଡ ହୋଇ ନଥିଲା । ତା'ର ମୁଖ୍ୟ ଆକର୍ଷଣ ଥିଲା କ୍ୱାଟର । କଟକରେ କଲେଜକୁ ଯିବା ଆସିବା କରି ନୟାନ୍ତ ହୋଇ ଯାଇଥିଲି । ତେଣୁ ଅନୁଗୁଳ ଟ୍ରେନିଂ କଲେଜ ବଦଳିକୁ ମୁଁ ସ୍ୱାଗତ କଲି । ପ୍ରଥମ ଥର ଅନିଚ୍ଛା ସତ୍ତ୍ୱେ ଡକ୍ଟର ସଦାଶିବ ମିଶ୍ରଙ୍କର ରୋଷର ଶିକାର ହୋଇ ଯାଇଥିଲି । ଏଥର କିନ୍ତୁ ଖୁସିରେ ଗଲି । ୪।୭।୧୯୭୩ ତାରିଖରେ ରେଭେନ୍ସା କଲେଜରୁ ଅବ୍ୟାହତି ନେଇ ୬।୭।୧୯୭୩ ତାରିଖରେ ଯୋଗ ଦେଲି ।

## ୩.୭ ପୁଣି ଅନୁଗୁଳ ଟ୍ରେନିଂ କଲେଜ

ଏଥର ଅନୁଗୁଳ ଟ୍ରେନିଂ କଲେଜ ନୂଆ ରୂପରେ ଦେଖାଗଲା। ପୁରୁଣା ଅଧ୍ୟାପକ କି ପ୍ରିନ୍ସିପାଲ କେହି ନାହାନ୍ତି। ସବୁ ନୂଆ। ପ୍ରିନ୍ସିପାଲ ବିବେକାନନ୍ଦ ପତି। ଅଧ୍ୟାପକ ଗଣ :- ମାଧବ ଚନ୍ଦ୍ର ଶତପଥୀ, ତ୍ରିଲୋଚନ ଷଡଙ୍ଗୀ, ଭିକାରୀ ଚରଣ ମିଶ୍ର, ଆଦିକନ୍ଦ ମହାପାତ୍ର ଓ ବିଷ୍ଣୁଚରଣ ଦାଶ। ଗତଥର ତାଳଚେର କୋଠିର ଆମ୍ବତୋଟା ଭିତରେ ଥିବା Twin quarters ପଶ୍ଚିମ ପାଖରେ ରହିଥିଲି। ଏଥର ପୂର୍ବ ପାଖରେ ରହିଲି। ପ୍ରଶସ୍ତ ହତା। ବଗିଚା କରିବା ପାଇଁ ଉପଯୁକ୍ତ। ପିଲାମାନେ ଅନୁଗୁଳ କଲେଜ, ଅନୁଗୁଳ ହାଇସ୍କୁଲ ଓ ବଜାରପଡା ଉଚ୍ଚ ପ୍ରାଥମିକ ସ୍କୁଲରେ ପାଠ ପଢିଲେ। ତ୍ରିଲୋଚନ ଷଡଙ୍ଗୀ ମୋର ସହପାଠୀ ବନ୍ଧୁଙ୍କୁ ଛାଡି ସମସ୍ତେ ମୋ ପାଇଁ ନୂଆ। ମୁଁ ଯୋଗ ଦେବା ପରେ କଲେଜର କାର୍ଯ୍ୟକ୍ରମ ଆରମ୍ଭ ହେଲା।

ପ୍ରଥମ ପ୍ରସଙ୍ଗ ହେଲା ବିଷୟ ବଣ୍ଟନ। ସାଧାରଣତଃ ଯାହାର ଯେଉଁ ବିଷୟରେ ଦକ୍ଷତା ଥାଏ ତାକୁ ସେଇ ବିଷୟ ପଢାଇବା ପାଇଁ ଦିଆଯାଇଥାଏ। ମୁଁ ରାଧାନାଥ ଟ୍ରେନିଂ କଲେଜ ତଥା ରେଭେନ୍ସା କଲେଜରେ Development Psychology, Learning, Intelligence, Individual difference ଇତ୍ୟାଦି ସହିତ ଓଡିଆ ଶିକ୍ଷାଦାନ ପଦ୍ଧତି ବି.ଏଡ୍ ଓ ଏମ୍.ଏଡ୍ ଶ୍ରେଣୀରେ ପଢାଉଥିଲି। ସେଇ ବିଷୟ ଭିତରୁ କିଛି ଦେବାର କଥା । ଏଠାରେ ପ୍ରିନ୍‌ସପାଲ୍‌ଙ୍କ ନୀତି ଅଲଗା। ତାଙ୍କ ନୀତି ଅନୁସାରେ ଯାହାର ଯେଉଁ ବିଷୟରେ ଦକ୍ଷତା ନାହିଁ ସେ ସେଇ ବିଷୟ ପଢାଇବ। ମୋର ଇତିହାସ ଭଲ ହୁଏ ନାହିଁ। ତେଣୁ ମୋତେ ଇତିହାସ ଶିକ୍ଷା ପଦ୍ଧତି ଦିଆଗଲା। ମାଧବଚନ୍ଦ୍ର ଶତପଥୀଙ୍କର ଗଣିତ ଶିକ୍ଷା ପଦ୍ଧତିରେ ଦକ୍ଷତା ଥିଲେ ବି ତାଙ୍କୁ ଓଡିଆ ଶିକ୍ଷା ପଦ୍ଧତି ପଢାଇବାକୁ ଦିଆଗଲା। ନିଜେ ପ୍ରିନ୍ସିପାଲ ଇତିହାସରେ ଏମ୍.ଏ। ତାଙ୍କର ଇତିହାସ ଶିକ୍ଷା ପଦ୍ଧତି ଦକ୍ଷତା ଥିଲେ ବି ସେ ଇଂରାଜି ଶିକ୍ଷା ପଦ୍ଧତି ପଢାଇଲେ। ଯିଏ ଯାହା କହିଲେ ବି ସେ କିଛି ଶୁଣିଲେ ନାହିଁ। ପ୍ରିନ୍ସିପାଲଙ୍କ ଏ ପ୍ରକାର ନୀତିର ସ୍ୱତନ୍ତ୍ର ଦର୍ଶନ ଅଛି। ଯାହାର ଯେଉଁ ବିଷୟରେ ଦକ୍ଷତା ନାହିଁ, ତାକୁ ତାହା ପଢାଇବାକୁ ଦେଲେ ସେ ଭଲ ପଢାଇ ପାରିବ ନାହିଁ। ତା'ର ଦୁର୍ବଳତା ରହିଲେ ତାକୁ ଶାସନ କରିବାକୁ ସୁବିଧା ହେବ। ସେ ନିଜେ ଇଂରାଜି Method ନେବାର କାରଣ ହେଲା ବହୁତ

ପଲା English Method ନିଅନ୍ତି । Practical ପରୀକ୍ଷା ତାଙ୍କ ହାତରେ । ତେଣୁ ତା ମଧ୍ୟ ଦେଇ ପିଲାଙ୍କୁ ଶାସନ କରିବା ସୁବିଧା ହେବ । ପିଲାଙ୍କର ଭଲ ପାଠପଢ଼ା ହେଉ, ଏ ନୀତି ଛାଡ଼ି ଅଧ୍ୟାପକମାନଙ୍କୁ କିପରି ନିୟନ୍ତ୍ରଣ କରିବାକୁ ହେବ ସେ ସେହି ନୀତି ଅନୁସରଣ କଲେ । ଦୁର୍ବଳ ପ୍ରଶାସକମାନେ ଏପରି କରିଥାନ୍ତି । ତେବେ ନୀତି ନିର୍ଦ୍ଧାରଣ ଏକ ବ୍ୟକ୍ତିଗତ କଥା । ଅଧ୍ୟାପକମାନେ ବାଧ୍ୟ ହୋଇ ନୂଆ ନୂଆ ବିଷୟ ଘରେ ପଢ଼ି ପଢ଼ାଇବାକୁ ଆସନ୍ତି ।

ମୋର ପ୍ରାୟ ସବୁଦିନ ଦ୍ୱିତୀୟ ପିରିଅଡ କ୍ଲାସ ଥାଏ ଓ ତୃତୀୟ ପିରିଅଡ ବିଶ୍ରାମ । ଠିକ୍ ୧୨ ଟା ବେଳେ ପ୍ରିନ୍ସିପାଲ ପ୍ରାୟ ସବୁଦିନ କହନ୍ତି ତାଙ୍କର ଇଂରାଜି Method Class ପଢ଼ାଇବା ପାଇଁ । ମୋର ବି.ଏଡ୍ ରେ ଇଂରାଜି ଶକ୍ଷା ପଦ୍ଧତି ଥିଲା । Educational Evaluation Course ରେ ମୁଁ ଇଂରାଜି Method ନେଇଥିଲି । ତେଣୁ ପଢ଼ାଇବାକୁ କିଛି ଅସୁବିଧା ହୁଏ ନାହିଁ । ମୁଁ ନଥିଲେ ଭିକାରିବାବୁ ପଢ଼ାନ୍ତି । ଇଂରାଜି Method ପଢ଼ାଉ ଆମେ । କିନ୍ତୁ ପରୀକ୍ଷକ ହୁଅନ୍ତି ପ୍ରିନ୍ସିପାଲ । ଟିକିଏ ଅଧିକ ପରିଶ୍ରମ ପଡ଼ିଲେ ବି ପାଠ ପଢ଼ାଇବା କାମରେ ବେଶ୍ ଖୁସି ଲାଗେ ।

NCERT ୧୯୭୩ ମସିହାରେ ଇତିହାସ ଉପରେ ଗୋଟିଏ Orientation Course ଆୟୋଜନ କଲେ କଲିକତାର ଖିଦିରପୁର ଅଞ୍ଚଳରେ ଅବସ୍ଥିତ St.Thomas ସ୍କୁଲରେ । ମୁଁ ଯେତେବେଳେ ଦେଖିଲି ମତେ ଇତିହାସ ପଦ୍ଧତି ପଢ଼ାଇବାକୁ ପଡ଼ିବ, ଇତିହାସ Orientation Course ରେ ଯୋଗ ଦେବା ପାଇଁ ଦରଖାସ୍ତ କଲି । ସେଠାରେ ୧୫।୧୬ ଦିନ ପାଠପଢ଼ି ଆସିଲି । ଅନେକ ନୂଆ ନୂଆ ପାଠ ଶିଖିଲି । ଇତିହାସ ଓ ଇତିହାସ ଶିକ୍ଷା ପଦ୍ଧତିରେ ସଦ୍ୟତମ ଗବେଷଣା ଲବ୍ଧଜ୍ଞାନ ବିଷୟରେ ବହୁ ଆଲୋଚନା ହେଲା । ନୂଆ ବୈଜ୍ଞାନିକ ପଦ୍ଧତି ଇତିହାସ ତଥା ଇତିହାସ ଶିକ୍ଷା ପଦ୍ଧତିକୁ କିପରି ପ୍ରଭାବିତ କରିଛି ସେ ବିଷୟରେ ବଡ ବଡ ବିଶେଷଜ୍ଞମାନେ ଆସି ଆଲୋଚନା କଲେ । ବ୍ୟକ୍ତିଗତ ଭାବରେ ମୋର ବହୁତ ଲାଭ ହେଲା । ଇତିହାସ ଶିକ୍ଷା ପଦ୍ଧତି ବିଷୟରେ ମୋର ଜ୍ଞାନ ପ୍ରସାରିତ ହେଲା । ପ୍ରିନ୍ସିପାଲ ବିବେକାନନ୍ଦ ପତି ଇତିହାସରେ ଏମ୍.ଏ ହୋଇଥିବାରୁ ବେଳେବେଳେ ଇତିହାସ ଶିକ୍ଷା ପଦ୍ଧତି ବିଷୟରେ କହନ୍ତି । ମୁଁ କଲିକତାରୁ ଫେରିଲା ପରେ ତାଙ୍କର ଅନେକ ଧାରଣା ପୁରୁଣା ଓ ଅଚଳ ବୋଲି କହିବାରୁ ସେ ବିରକ୍ତ ହୁଅନ୍ତି । ବିରକ୍ତ ହେଲେ ବି ସତ୍ୟ ପ୍ରକାଶ କରିବାରେ ମୁଁ କୁଣ୍ଠାବୋଧ କରେ ନାହିଁ

ଟ୍ରେନିଂ କଲେଜର ପିଲାମାନେ ମେଗାଜିନ୍ ପାଇଁ ଟଙ୍କା ଦିଅନ୍ତି । ପ୍ରବନ୍ଧ, କବିତା, ଗଳ୍ପ ଇତ୍ୟାଦି ଲେଖି ଦିଅନ୍ତି । କିନ୍ତୁ ସେ ଯିବା ପର୍ଯ୍ୟନ୍ତ ମେଗାଜିନ୍ ଛପା ହୁଏ ନାହିଁ । ପରେ ପୋଷ୍ଟରେ ପଠାଯାଏ । କିଏ ପାଏ କିଏ ପାଏନାହିଁ । ନ ପାଇବା ସଂଖ୍ୟା ବେଶୀ । ୧୯୭୩ ବର୍ଷରେ ମୋତେ ମେଗାଜିନ୍ ଦାୟିତ୍ୱ ଦିଆଗଲା । ମୁଁ ପିଲାଙ୍କଠାରୁ ସେମାନଙ୍କ ଲେଖା ସଂଗ୍ରହ କରି ଡିସେମ୍ବର ମାସରେ ଛପାଇବାକୁ ଦେଇଦେଲି । ୧୯୭୪ ଫେବୃୟାରୀ ମାସ ଶେଷ ଆଡକୁ ଛପା ଶେଷ ହୋଇଗଲା । ପ୍ରଥମ ପାଞ୍ଚଖଣ୍ଡ ମେଗାଜିନ୍ ଧରି ପ୍ରିନ୍ସିପାଲଙ୍କ ଘରକୁ ଗଲି ଓ କହିଲି ମେଗାଜିନ୍ ପିଲାଙ୍କୁ ବାଣ୍ଟି ଦେବା । ପିଲାମାନେ ମେଗାଜିନ୍ ପାଇ ଭାରି ଖୁସି ହେବେ ।

୧୯୭୪ ଫେବୃୟାରୀ ମାସ ୨୬ ତାରିଖରେ ମୁଁ ପ୍ରିନ୍ସିପାଲଙ୍କ ସହିତ ବସିଛି । ଏଇ ସମୟରେ ଗୋଟିଏ ଟେଲିଗ୍ରାମ ଆସିଲା । ପ୍ରିନ୍ସିପାଲ ଟେଲିଗ୍ରାମଟିକୁ ପଢି ମୋ ହାତକୁ ବଢାଇ ଦେଲେ । ମୁଁ ଦେଖିଲି, ସେଥିରେ ମୋର ବଦଳି ହୋଇଛି । ଢେଙ୍କାନାଳ ଜିଲ୍ଲା ଶିକ୍ଷା ସର୍ଭେ ଅଫିସର ଭାବରେ ଯୋଗ ଦେବାକୁ ପଡିବ ୨୮ ତାରିଖରେ । ତାକୁ ଦେଖି ମୋ ମନ ଖରାପ ହୋଇଗଲା । କାରଣ ସେତେବେଳକୁ ସେ କଲେଜରେ ମୋର କାର୍ଯ୍ୟକାଳ ମାତ୍ର ଆଠ ମାସ । ଦ୍ୱିତୀୟତଃ ସର୍ଭେ କାମ ବିଷୟରେ ମୋର ଧାରଣା ନଥିଲା । ତୃତୀୟତଃ ମୋର ଧାରଣା ଥିଲା ଯେ ସର୍ଭେ କାମ ଗଣିତ ଓ ପରିସଂଖ୍ୟାନ ଆଧାରିତ ହୋଇଥିବ । ଚତୁର୍ଥତଃ କାମ ମୋଟେ ୬ ମାସ ପାଇଁ ତା ପରେ କ'ଣ ହେବ କିଛି ସୂଚନା ନାହିଁ । ଅନିଶ୍ଚିତତାର ଏକ ଦୃଶ୍ୟ ଆଖି ଆଗରେ ନାଚିଗଲା । ମୁଁ ବଡ ବିଚଳିତ ହୋଇ ପଡିଲି । ପ୍ରିନ୍ସିପାଲଙ୍କୁ ଅନୁରୋଧ କଲି ମୋତେ ୨୭ ତାରିଖ ଦିନ ଛାଡି ଦିଅନ୍ତୁ ଡି.ପି. ଆଇଙ୍କୁ ଭେଟିବାକୁ । ୨୮ ତାରିଖ ଦିନ କଲେଜରୁ ଅବ୍ୟାହତି ନେଇ ଢେଙ୍କାନାଳ କାମରେ ଯୋଗ ଦେବି । ସେ ମନା କରି ଦେଲେ । କାରଣ ସେ ଚାହୁଁଥିଲେ କେମିତି କଲେଜରୁ ମୁଁ ଚାଲିଯାଏ । ଦୈବାତ୍ ଏ ସୁଯୋଗ ଜୁଟିଲା । ଏ ସୁଯୋଗ ସେ ହାତଛଡା କରିବାକୁ ଚାହିଁଲେ ନାହିଁ । ମୋତେ ୨୭ ତାରିଖ ଦିନ ରିଲିଭ କରିଦେଲେ । ମୁଁ ୨୮ ତାରିଖରେ ଢେଙ୍କାନାଳ ଇନ୍ସପେକ୍ଟରଙ୍କ ଅଫିସରେ ଜିଲ୍ଲା ଶିକ୍ଷା ସର୍ଭେ ଅଫିସର ଭାବରେ ଯୋଗଦେଲି ।

## ୩.୮ ଢେଙ୍କାନାଳ ଜିଲ୍ଲା ଶିକ୍ଷା ସର୍ଭେ ଅଫିସର

ଭୟ ଓ ଆଶଙ୍କା ଭିତରେ ୨୮।୨।୧୯୭୪ ତାରିଖରୁ ଢେଙ୍କାନାଳ ଜିଲ୍ଲା ଶିକ୍ଷା ସର୍ଭେ ଅଫିସର ଭାବରେ ସ୍କୁଲ ଇନ୍ସପେକ୍ଟର ଅଫିସରେ ଯୋଗ ଦେଲି। ଇନିସ୍ପେକ୍ଟର ଅଫିସର ନିଜର ଘର ନାହିଁ। ଡି.ଆଇ. ଅଫିସରୁ ଅଧା ମାଡି ବସି ତାଙ୍କ କାମ ଚଳାଉଛନ୍ତି। ମୁଁ ପହଞ୍ଚି ଯିବାରୁ ସୋମାନେ ଆହୁରି ହଇରାଣରେ ପଡିଗଲେ। ମୋତେ ବସେଇବେ କୋଉଁଠି ? ସେତେବେଳେ ଢେଙ୍କାନାଳର ସ୍କୁଲ ଇନ୍ସପେକ୍ଟର ରବୀନ୍ଦ୍ର କୁମାର ମହାନ୍ତି । ବୟସ୍କ ଲୋକ। କାର୍ଯ୍ୟ ଦକ୍ଷ। ମତେ ଦେଖି କହିଲେ "ଏଠି ଆପଣ କଣ କରିବେ? କାମ ତ କିଛି ନାହିଁ କାହିଁକି ଆପଣ ପ୍ରତିଦିନ ଆସୁଛନ୍ତି ? ଆମର ତ ଘର ନାହିଁ। ଆପଣଙ୍କୁ ବସେଇବି କେଉଁଠି? ମୁଁ କହିଲି ମୋ ଘରେ ମୁଁ କାମ କରିବି। ଏଠି ଯେତେବେଳେ ଋକିରି ପ୍ରତିଦିନ ତ ଆସିବାକୁ ପଡିବ। ମୁଁ ଆପଣଙ୍କ ଅଫିସ୍ ରୁମ୍‌ରେ କିଛି ସମୟ ବସି ଋଲି ଯାଉଥିବି। "ନୂଆ ପ୍ରକାର ଜୀବନ। କାମ ନାହିଁ। ବସି ବସି ସମୟ କଟାଇବା ଭାରି କଷ୍ଟ ଲାଗୁଥାଏ।

ଦିନେ ଡି.ପି.ଆଇଙ୍କ ପାଖକୁ ଗଲି। ମୋର ପୋଷ୍ଟିଂ ବିଷୟ ପଋରିବାରୁ ସେ କହିଲେ, "ତେର ଗୋଟି ଜିଲ୍ଲା ଶିକ୍ଷା ସର୍ଭେ ଅଫିସର ମଧ୍ୟରୁ ମୁଁ କଲେଜ Wing ରୁ ୪ ଜଣ ଓ ସ୍କୁଲ Wing ରୁ ୯ ଜଣ ଦେଇଛି। ମୋର ଆଶା କଲେଜ Wing ଅଫିସରମାନେ ଭଲ କାମ କରି ଦେଖାଇବେ । ତୋର କିଛି ଅସୁବିଧା ହେବ ନାହିଁ। ଯାହା ହେଲେ ମୁଁ ବୁଝିବି।

୧୯୭୪ ଅପ୍ରେଲ ମାସ ଆରମ୍ଭ ବେଳକୁ ପ୍ରିନ୍ସିପାଲ ନୋଟିସ୍ ଦେଲେ କ୍ୱାଟର ଛାଡିବାକୁ । ଏ ଋକିରି ତ ସ୍ୱଳ୍ପ ସମୟ ପାଇଁ । ଘର ଛାଡି ପିଲାମାନଙ୍କୁ ନେଇ ବର୍ଷ ମଝିରେ କୁଆଡେ ଯିବି ? ପିଲାଙ୍କ ବାର୍ଷିକ ପରୀକ୍ଷା ନିକଟ ହୋଇ ଆସିଲାଣି। ଏ ସବୁ ଅସୁବିଧା ବିଷୟରେ ଯାଇ ଡି.ପି. ଆଇଙ୍କୁ କହିଲି। ସେ ମୋର Head quaters ଅନୁଗୁଳକୁ ବଦଳାଇ ଦେଇ ମୋର ଅଫିସ ଅନୁଗୁଳ ଡି. ଆଇ ଅଫିସରେ ହେବାକୁ ଆଦେଶ କରିଦେଲେ। ତା ସହିତ ଏ ଋକିରି ନିର୍ଦ୍ଧାରିତ ସମୟ ପାଇଁ ହୋଇଥିବାରୁ ଅନ୍ୟାଦେଶ ପର୍ଯ୍ୟନ୍ତ ମୁଁ କଲେଜ କ୍ୱାଟରରେ ରହିବା ପାଇଁ ମଧ୍ୟ ଆଦେଶ ଦେଇଦେଲେ। ଏଥିରେ ପ୍ରିନ୍ସିପାଲ ବଡ ବିମର୍ଷ ହୋଇଗଲେ। ସେ ଭାବିଥିଲେ ଏଇ ମଉକାରେ ମତେ କଲେଜରୁ ସବୁଦିନ ପାଇଁ ବିଦା କରିଦେବେ। ତାହା ହେଲା ନାହିଁ।

୧୯୭୪ ଜୁନ୍ ମାସ ବେଳକୁ ସର୍ଭେ ଟ୍ରେନିଂ ଆରମ୍ଭ କରିବାକୁ NCERT ଦଳ ଆସି ଭୁବନେଶ୍ୱରରେ ପହଞ୍ଚିଲେ। ମୁଁ ଦେଖିଲି ସେ ଦଳର ମୁଖ୍ୟ ଭାବରେ ଡକ୍ଟର ଆର.କି.ମିଶ୍ର ଆସିଛନ୍ତି। ୧୯୬୮ ମସିହାରେ ମସୁରୀରେ ଯେଉଁ Educational Evaluation Course ହୋଇଥିଲା ସେଥିରେ ସେ ନିର୍ଦ୍ଦେଶକ ଥିଲେ। ବିଦ୍ୱାନ୍ ଲୋକ। ସେ ମତେ ଦେଖି ପଚାରିଲେ, "ତମେ କୁଆଡେ ?" ମୁଁ କହିଲି, ଜିଲ୍ଲା ଶିକ୍ଷା ସର୍ଭେ ଅଫିସର ଭାବରେ ମୋର ପୋଷ୍ଟିଂ ହୋଇଛି। "ତା ଶୁଣି ସେ କହିଲେ," ଏ ସବୁ କାମ ଛୋଟ କାଟିଆ ହାକିମଙ୍କ ପାଇଁ। ତମେ ଅଧ୍ୟାପକ ଲୋକ। ଏ କାମ କ'ଣ କରିବ ? ମୋର ଯେଉଁ ଆଶଙ୍କା ଥିଲା ସର୍ଭେ କାମ ମୁଁ କରି ପାରିବି କି ନାହିଁ, ସେ ଆଶଙ୍କା ଦୂର ହୋଇଗଲା। ମୁଁ ମନ ଦେଇ ଟ୍ରେନିଂ ଗ୍ରହଣ କଲି। ଟ୍ରେନିଂ ଶେଷରେ ଦେଖିଲି ଏ କାମ ଯେତେ କଷ୍ଟକର ବୋଲି ଭାବିଥିଲି ଏ ତାହା ନୁହେଁ। କାମ କରିବାରେ କିଛି ଅସୁବିଧା ହେବ ନାହିଁ।

ରାଜ୍ୟ ସ୍ତରୀୟ ଶିକ୍ଷା ସର୍ଭେ ଟ୍ରେନିଂ ସରିଲା। ଆମେମାନେ ଫେରିଯାଇ ଜିଲ୍ଲା ସ୍ତରୀୟ ଟ୍ରେନିଂ ଆରମ୍ଭ କଲୁ। ଢେଙ୍କାନାଳ ଜିଲ୍ଲା ସବ୍‌ଇନ୍ସପେକ୍ଟରମାନଙ୍କର ଟ୍ରେନିଂ ଢେଙ୍କାନାଳରେ ଆରମ୍ଭ ହେଲା। ଟ୍ରେନିଂ ସମୟରେ କିଛି ଅବୋଧ୍ୟ ହେଲେ ପ୍ରଶ୍ନ ପଚାରି ବୁଝିନେବା ପାଇଁ ମୁଁ ସେମାନଙ୍କୁ ଉତ୍ସାହିତ କରୁଥାଏ। ସେମାନଙ୍କର ପ୍ରଶ୍ନରୁ ଜଣା ପଡିଯିବ କିଏ କେତେ ଦକ୍ଷ ଓ ବୁଦ୍ଧିମାନ୍। ଏହି ପ୍ରକ୍ରିୟାରେ ମୁଁ ତିନିଜଣ ସବ୍‌ଇନ୍ସପେକ୍ଟରଙ୍କୁ ଚିହ୍ନଟ କଲି। ସେମାନେ ହେଲେ ବାଞ୍ଛାନିଧି ପତି, ରଘୁନାଥ ଦ୍ୱିବେଦୀ ଓ ସାରଙ୍ଗଧର ମିଶ୍ର। ସର୍ଭେ ପାଇଁ ତଥ୍ୟ ସଂଗ୍ରହ ଆରମ୍ଭ ହେଲା। ପ୍ରତି ଗାଁ ଓ ସ୍କୁଲମାନଙ୍କରୁ ତଥ୍ୟ ସଂଗ୍ରହ କରିବା କିଛି କଷ୍ଟକର କାମ ନୁହେଁ। ଛପା ଫର୍ମ ଯୋଗାଇ ଦିଆଯାଇଥାଏ। ତାକୁ ଠିକ୍ ଭାବରେ ପୂରଣ କରିଦେଲେ ହେଲା। ସବ୍‌ଇନ୍ସପେକ୍ଟର ମାନେ Verify କରିବେ। ସେଥିରେ କେବଳ ଗୋଟିଏ ଅସୁବିଧା ହେଲା। ସ୍କୁଲ ଫର୍ମ ଦୁଇଟି ଥିଲା। ଗୋଟିଏ Manual Processing ପାଇଁ ଓ ଆଉ ଗୋଟିଏ Computer Processing ପାଇଁ। ଯଦି ଦୁଇଟି ଭିତରେ କିଛି ତଫାତ୍ ରହିଗଲା ତା' ହେଲେ ଅସୁବିଧା। ତା ଛଡା ପ୍ରଧାନ ଶିକ୍ଷକଙ୍କ ପାଇଁ ଥିବା ଫର୍ମଟି ମଧ୍ୟ Computer Processing ପାଇଁ ଉଦ୍ଦିଷ୍ଟ। ସେତେବେଳେ ତ Computer କେହି ଦେଖିନଥିଲେ। Computer ରେ Feed କଲାଭଳି

accuracy ଆମ ଶିକ୍ଷକଙ୍କର ନଥିଲା । ତେଣୁ ସେମାନେ ଫର୍ମ ପୂରଣ କଲାପରେ ପୁଣି ସଂଶୋଧନ ଦରକାର ହେଲା ।

ତଥ୍ୟ ସଂଗ୍ରହ ପରେ ପୁଣି ବ୍ଲକ୍ ସ୍ତରୀୟ Tabulation ସବ୍‌ଇନ୍‌ସ୍ପେକ୍ଟରମାନେ କରିବାର କଥା । ଯେଉଁ ଫର୍ମଗୁଡ଼ିକ Manual Processing କରାଯିବାର କଥା ତା'ର ବ୍ଲକ୍ ସ୍ତରରେ Tabulation ଶେଷ ହେଲା । ମୁଁ ଓ ବଛାଯାଇଥିବା ତିନିଜଣ ସବ୍‌ଇନ୍‌ସ୍ପେକ୍ଟର Block Table Check କରିବାକୁ ବାହାରିଲୁ । ବ୍ଲକ୍ ଟେବୁଲ ଚେକ୍ କରି ଯାହା ଭୁଲଭଟକା ଥିଲା ତାକୁ ସଂଶୋଧନ କରି ଆଣିଲୁ । କିନ୍ତୁ ପର୍ଜଙ୍ଗ ସବ୍‌ଇନ୍‌ସ୍ପେକ୍ଟର ବିପିନ ବିହାରି ମିଶ୍ର କହିଲେ, " ମୁଁ କିଛି କରି ପାରିବି ନାହିଁ । ଜିଲ୍ଲା Unit ଆସି ଏଠି ବ୍ଲକ୍ ଟେବୁଲ ତିଆରି କରନ୍ତୁ । ତାଙ୍କର ଖାଇବା, ପିଇବା, ରହିବା ବ୍ୟବସ୍ଥା ମୁଁ କରିବି ।" ତାହାହିଁ ହେଲା । ବ୍ରାହ୍ମଣୀ ନଦୀ କୂଳରେ ଥିବା ଗୋଟିଏ ପ୍ରାଥମିକ ସ୍କୁଲରେ ରହି ଆମେ ବ୍ଲକ୍ ଟେବୁଲ୍ ତିଆରି କଲୁ । ବ୍ରାହ୍ମଣୀ ଗଣ୍ଡରେ ମାଛ ଧରୁ । ସେଥିରେ ବହୁତ ଆନନ୍ଦ ମିଳେ । ତା ସହିତ କାମ ବି ଚାଲେ ।

୧୯୭୪ ଡିସେମ୍ବର ମାସ ଆରମ୍ଭ ବେଳକୁ ମୁଁ ଜିଲ୍ଲା ସ୍ତରୀୟ Tabulation କାମ ଆରମ୍ଭ କରିଦେଲି । ୧୦।୧୨ ଦିନ କାମ କଲା ପରେ ଦେଖିଲି ଯେ ସନ୍ଧ୍ୟା ହେଲେ ସବ୍‌ଇନ୍‌ସ୍ପେକ୍ଟରମାନେ ସିନେମା ଦେଖି ବାହାରିଲେ ବା ଅନ୍ୟାନ୍ୟ କାମ ପାଇଁ ବାହାରକୁ ଚାଲିଗଲେ । ଏହା ଦେଖି ମୁଁ ଢେଙ୍କାନାଳ ଇନ୍‌ସ୍ପେକ୍ଟରଙ୍କଠାରୁ ଚିଠି କରାଇ ଆଣିଲି ଯେ ଜିଲ୍ଲା Tabulation କାମ ହଣ୍ଡପା ପ୍ରାଇମେରୀ ସ୍କୁଲରେ ହେବ । ହଣ୍ଡପା ଗଲେ ସେଠାରେ ବାହାରକୁ ଯିବାର ସୁଯୋଗ ନାହିଁ । ଚାରି ପାଖରେ ଶାଳବଣ । କେବଳ କାମ ବ୍ୟତୀତ ଅନ୍ୟ କୌଣସି ମନୋରଞ୍ଜନ ବ୍ୟବସ୍ଥା ନାହିଁ ।

ଇତି ମଧ୍ୟରେ ଶିକ୍ଷା ବିଭାଗ ସଚିବ ହେରମ୍ବ ନାରାୟଣ ଦାସ ମହାପାତ୍ରଙ୍କ ସଭାପତିତ୍ୱରେ ଜିଲ୍ଲା ଶିକ୍ଷା ସର୍ଭେ ଅଫିସରମାନଙ୍କର ଗୋଟିଏ ସଭା ଡକା ଯାଇଥିଲା । ମୁଁ ସେ ସଭାକୁ ଗଲି । ସଚିବ ପଚାରିଲେ,"ଆପଣମାନେ କେବେ District Table ଦେବେ ? ଅନ୍ୟ ଜିଲ୍ଲା ଶିକ୍ଷା ସର୍ଭେ ଅଫିସରମାନେ କିଏ କହିଲେ ଜାନୁୟାରୀ ୫, ଆଉ କିଏ ଜାନୁୟାରୀ ୮।୧୦।୧୨ ତାରିଖରେ ଦେବା ପାଇଁ କହିଲେ । ମୁଁ କହିଲି ଜାନୁୟାରୀ ୩୧ ତାରିଖରେ ଦେବି, ତାପୂର୍ବରୁ ଦେଇ ପାରିବି ନାହିଁ । ସଚିବ ବିରକ୍ତ ହୋଇ କହିଲେ, " କାହିଁକି ଆପଣ ଏତେ ବିଳମ୍ବରେ ଦେବେ ?" ମୁଁ କହିଲି, ଅନ୍ୟମାନେ କାମ ଆରମ୍ଭ କରି ନଥିବାରୁ

ଜାଣି ପାରୁନାହାନ୍ତି ଏ କାମ କେତେ ଦିନ ଲାଗିବ। ମୁଁ ଅଧା କାମ ସାରି ଦେଇଛି। ବାକି ଅଧା କାମ କେତେ ଦିନ ଲାଗିବ ମୁଁ ହିସାବ କରି କହୁଛି।" ଏହା ଶୁଣି ଶିକ୍ଷା ସଚିବ ଚୁପ ହୋଇଗଲେ। ଅନ୍ୟ ସର୍ଭେ ଅଫିସରମାନେ ଟିକିଏ ଅସନ୍ତୁଷ୍ଟ ହେଲେ। ଶେଷରେ ମୁଁ ହିଁ ଏକମାତ୍ର ଲୋକ ଯେ ଜାନୁୟାରୀ ୩୧ ତାରିଖ ପୂର୍ବରୁ District Tables ଦେଲି।

ସର୍ଭେ କାମ ପାଇଁ ପ୍ରଥମେ ୬ ମାସର ନିଯୁକ୍ତି ମିଳିଥିଲା। ତା ପରେ ୪ ମାସ ସଂପ୍ରସାରିତ ହେଲା। ଏହି ୧୦ ମାସ ଭିତରେ ସର୍ଭେ କାମ ୬୦ ପ୍ରତିଶତ ଶେଷ ହେଲା। ବାକି ୪୦ ପ୍ରତିଶତ କାମ ପାଇଁ ନିଷ୍ପତ୍ତି ହେଲା ଯେ ଯେଉଁଠି ଥିଲେ ସେଇ ଜାଗାକୁ ଚାଲି ଯାଆନ୍ତୁ। ସେଠାରେ ସର୍ଭେ କାମ କରିବେ। ସେ ନିଷ୍ପତ୍ତି ଅନୁଯାୟୀ ମୁଁ ଅନୁଗୁଳ ଟ୍ରେନିଂ କଲେଜକୁ ଫେରି ଯିବାର କଥା। କିନ୍ତୁ ମୁଁ ହଣ୍ଡପାରେ ଜିଲ୍ଲା ସ୍ତରୀୟ Tabulation କାମରେ ବ୍ୟସ୍ତ ଥିବାବେଳେ ପ୍ରିନ୍ସିପାଲ ଦୁଇଜଣ ଅଧ୍ୟାପକଙ୍କୁ ସାଙ୍ଗରେ ଧରି ଡି.ପି.ଆଇ ଅଫିସକୁ ଗଲେ ଓ ମୋର ସମ୍ବଲପୁର ଟ୍ରେନିଂ କଲେଜକୁ ବଦଳି କରାଇ ଆସିଲେ। ଅଧ୍ୟାପକମାନଙ୍କ ଭିତରୁ ଜଣଙ୍କର ସାନଭାଇର ଶଳା ଥିଲେ ଡି.ପି.ଆଇ ଅଫିସର Administrative Officer ଗୌରହରି ସାମନ୍ତରାୟ। ତାଙ୍କ ମାଧ୍ୟମରେ ମୋର ବଦଳି କରି ଦିଆଗଲା। ମୁଁ District Tables Submit କଲାବେଳେ ଜାଣିଲି ଯେ ମୋର ସମ୍ବଲପୁରକୁ ବଦଳି ହୋଇଛି। ସେତେବେଳେ ଡି.ପି.ଆଇ ଥିଲେ ଡକ୍ଟର ଦେବେନ୍ଦ୍ର ଚନ୍ଦ୍ର ମିଶ୍ର। ମୁଁ ତାଙ୍କୁ ଭେଟି କହିଲି, " ସାର୍ ମୋର ଆପଣ ସମ୍ବଲପୁରକୁ ବଦଳି କରି ଦେଇଛନ୍ତି।" ଢେଙ୍କାନାଳ ଜିଲ୍ଲା ଶିକ୍ଷା ସର୍ଭେ କାମ ଶେଷ ହୋଇନାହିଁ। କାହାକୁ ଚାର୍ଜ ଦେବି? ସେ କହିଲେ " ଆରେ ସତେ ତ! ସେ କଥା ମୋର ଖିଆଲ୍ ନାହିଁ। ଏହା କହି ସେ Administrative ଅଫିସରଙ୍କୁ ଡକାଇ ପଚାରିଲେ, "ପୂର୍ଣ୍ଣର ବଦଳି କେମିତି ହେଲା? ସର୍ଭେ କାମ କିଏ କରିବ?" ସେ କହିଲେ " ତାଙ୍କ ପ୍ରିନ୍ସିପାଲ ଆସି ଥିଲେ। ସେ ତାଙ୍କର ବଦଳି କରିବାକୁ କହିଲେ।" ଡି.ପି.ଆଇ କହିଲେ, " ବାକିଥିବା ସର୍ଭେ କାମ କିଏ କରିବ? ତତ୍କ୍ଷଣାତ୍ ତା'ର ବଦଳି ବାତିଲ କର ଓ ଟେଲିଗ୍ରାମ କରି ତାଙ୍କ ପ୍ରିନ୍ସିପାଲଙ୍କୁ ଜଣାଇ ଦିଅ।" ତାହା ହିଁ ହେଲା। ପ୍ରିନ୍ସିପାଲ ଓ ଦୁଇ ଜଣ ଅଧ୍ୟାପକଙ୍କର ମାସକର ପରିଶ୍ରମ ବୃଥା ହୋଇଗଲା। ମୁଁ ଯେତେବେଳେ ଜାଣିଲି ଯେ ପ୍ରିନ୍ସିପାଲ ଓ ଦୁଇଜଣ ଅଧ୍ୟାପକ ଆସି ମୋର ବଦଳି କରାଇ ଯାଇଛନ୍ତି, ମୋର ମନେ ହେଲା ପ୍ରିନ୍ସିପାଲଙ୍କ ଭଳି ପ୍ରଥମ ଶ୍ରେଣୀ ହାକିମ କେତେ ତଳକୁ ଖସି ଯାଇ ପାରନ୍ତି।

ଅଧ୍ୟାପକ ଦୁଇଜଣଙ୍କ ମଧ୍ୟରୁ ଜଣେ ଆସିଥିଲେ ତାଙ୍କ ଭାଇ ଶଳା ମାଧ୍ୟମରେ ପ୍ରିନ୍ସିପାଲଙ୍କୁ ସାହାଯ୍ୟ କରିବାକୁ ଓ ଆଉ ଜଣେ ଆତ୍ମରକ୍ଷା କରିବାକୁ - ଏଇମାନେ ହେଉଛନ୍ତି ଶିକ୍ଷକଙ୍କର ଶିକ୍ଷକ। ଉଦାରତାର ମହାନ ଉଦାହରଣ ପିଲାଙ୍କୁ ଦେଖାଇବାକୁ ଏ ଉଦ୍ୟମ କରୁଥିଲେ।

ମୋର ବଦଳି ଅର୍ଡର ଯେଉଁ ଟେଲିଗ୍ରାମରେ ବାତିଲ କରାଗଲା ତା'ର Confirmation Copy ନେଇ ମୁଁ ଯାଇ୧। ୧। ୧୯୭୫ ତାରିଖରେ ବେସିକ୍ ଟ୍ରେନିଂ କଲେଜରେ ଯୋଗ ଦେଲି। ମୁଁ ସେଠାରେ ଯୋଗ ଦେଲା ପରେ ଦୃଶ୍ୟପଟ ବଦଳିଗଲା। ପ୍ରିନ୍ସିପାଲଙ୍କ ବିରୋଧ ସତ୍ତ୍ୱେ ମୁଁ ସେଠାରେ ଯୋଗ ଦେଲି। ଦ୍ୱିତୀୟତଃ ବାକି ଥିବା ଅଧ୍ୟାପକମାନଙ୍କ ମଧ୍ୟରୁ କିଏ ବଦଳି ହେବେ ସେଥିପାଇଁ ତାଙ୍କ ଭିତରେ ଚର୍ଚ୍ଚା ଚାଲିଲା। ଶେଷରେ ବିଷ୍ଣୁମୋହନ ଦାଶଙ୍କର ବଦଳି ହେଲା।

ଟ୍ରେନିଂ କଲେଜରେ ଜାନୁୟାରୀ ମାସରେ ଅଭ୍ୟାସ ପାଠ ହୁଏ। ସେଇ ସମୟ ମଧ୍ୟରେ କଲେଜରେ ବାର୍ଷିକ ସାଂସ୍କୃତିକ କାର୍ଯ୍ୟକ୍ରମ ବି ହୁଏ। ଦିନେ ଗୋଟିଏ ନୋଟିସ୍ ପ୍ରିନ୍ସିପାଲ ଦେଲେ ଯେ ତା ପରଦିନ ଗୋଟିଏ Staff meeting ହେବ। ସେଥିରେ ସେ ବର୍ଷ କ'ଣ କ'ଣ ସାଂସ୍କୃତିକ କାର୍ଯ୍ୟକ୍ରମ ହେବ ସେ ବିଷୟରେ ଆଲୋଚନା ହେବ। କିନ୍ତୁ ଯେଉଁଦିନ ନୋଟିସ୍ ଦିଆଗଲା ସେ ଦିନ ସନ୍ଧ୍ୟାବେଳେ ଦେଖିଲି ଯେ "ଗୋଧନ ହରଣ" ଗୀତିନାଟ୍ୟର ପାର୍ଟ ବଣ୍ଟା ହୋଇ ରିହରସଲ ଆରମ୍ଭ ହେଉଛି। ତାକୁ କରାଉଛନ୍ତି ମାଧିଆନା ( ଅଧ୍ୟାପକ ମାଧବଚନ୍ଦ୍ର ଶତପଥୀ) ତାପରଦିନ ଯେତେବେଳେ ମିଟିଂ ଆରମ୍ଭ ହେଲା ମୁଁ ସେ କଥା କହିଲି। ମିଟିଂ ତ ଆଜି ହେଉଛି ସ୍ଥିର କରିବା ପାଇଁ କି କି ସାଂସ୍କୃତିକ କାର୍ଯ୍ୟକ୍ରମ ହେବ, କିନ୍ତୁ ମାଧିଆନା କାଲିଠୁ କ'ଣ "ଗୋଧନ ହରଣ" ଗୀତିନାଟ୍ୟ ରିହରସଲ ଆରମ୍ଭ କରି ଦେଲାଣି ? ମାଧିଆନା କହିଲା "ମୁଁ ପ୍ରିନ୍ସିପାଲଙ୍କ ହୁକୁମ ଅନୁସାରେ ସେ କାମ କରିଛି।" ମୁଁ କହିଲି " ଯଦି ପ୍ରିନ୍ସିପାଲଙ୍କ ହୁକୁମ ଅନୁସାରେ କାର୍ଯ୍ୟକ୍ରମ ହେବାର କଥା ତା ହେଲେ ମିଟିଂ ଡକାଯାଇଛି କାହିଁକି ?" ପ୍ରିନ୍ସିପାଲ ଟିକିଏ ଅପ୍ରସ୍ତୁତ ହୋଇ କହିଲେ, "ତମେ କ'ଣ କହିବାକୁ ଚାହୁଁଛ, କହୁନା।" ମୁଁ କହିଲି, ଆପଣତ ହୁକୁମ ଦେଇ ସାରିଲେଣି। ରିହରସଲ ଆରମ୍ଭ ହେଲାଣି। ତେବେ ମଞ୍ଚ ଦୃଷ୍ଟିରୁ ବୈଷ୍ଣବ ପାଣିଙ୍କର ଆହୁରି ଅନେକ ଭଲ ଗୀତିନାଟ୍ୟ ଅଛି। 'କର୍ଣ୍ଣବଧ', 'ଦ୍ରୋଣାଚାର୍ଯ୍ୟ ବଧ', 'କାର୍ତ୍ତବୀର୍ଯ୍ୟ ସଂହାର' ଏହା ମଧ୍ୟରୁ ଗୋଟାଏ କରାଯାଉ। ତା ପରେ ପ୍ରିନ୍ସିପାଲ ବୈଷ୍ଣବ ପାଣି ଗ୍ରନ୍ଥାବଳୀ ଲାଇବ୍ରେରୀରୁ ମଗାଇଲେ। ଏଠୁସେଠୁ ଦି ଚାରି ମିଟିଟ୍ ଆଖି ପକାଇଲେ ଓ କହିଲେ, "ନା

ସେଇ 'ଗୋଧନ ହରଣ' ଥାଉ।" ମୁଁ କହିଲି, " ଆପଣଙ୍କର ଏ ନିଷ୍ପତ୍ତି ଆଗରୁ ଜଣାଥିଲା। ମିଛଟାରେ ବୈଷ୍ଣବ ପାଣି ଗ୍ରନ୍ଥାବଳୀ ମଗାଇ ଦେଖିବାର ଅଭିନୟ କରୁଥିଲେ କାହିଁକି ?" ପ୍ରିନ୍ସିପାଲଙ୍କ ନିଷ୍ପତ୍ତି ଅନୁଯାୟୀ ଗୋଧନ ହରଣ' ଗୀତିନାଟ୍ୟ ହେଲା ଓ ବିଫଳ ହେଲା। ଅନୁଗୁଳର ଦେଖଣାହାରୀ ଭଲ, ଶୃଙ୍ଖଳିତ। ନ ହେଲେ ଅନ୍ୟ କେଉଁଠି ହୋଇଥିଲେ ଟେକା ପଥର ପଡିଥାନ୍ତା। କାର୍ଯ୍ୟକ୍ରମ ଶେଷରେ ଅଧ୍ୟାପକମାନଙ୍କ ମଧ୍ୟରେ ଆଲୋଚନା ହେଲା। ମୁଁ କିଛି ମନ୍ତବ୍ୟ ଦେଲି ନାହିଁ। ତା'ର କାରଣ ପଚାରିବାରୁ ମୁଁ କହିଲି 'ଗୋଧନ ହରଣ' ଆରମ୍ଭ ଦିନରୁ ମୋ ମନ୍ତବ୍ୟ ଦେଇସାରିଛି।

ଏମିତି ଛୋଟ ଛୋଟ କଥାରେ ପ୍ରିନ୍ସିପାଲଙ୍କ ସହିତ ମୋର ପାର୍ଥକ୍ୟ ବଢିବଢି ଚାଲିଲା। ସେ ପ୍ରତ୍ୟେକ କଥାରେ ମୋର ଦୋଷ ଦେଖାଇବାକୁ ଚାହିଁଲେ। କିନ୍ତୁ ସେ ସୁଯୋଗ ମୁଁ ତାଙ୍କୁ ଦେଲି ନାହିଁ। ପ୍ରିନ୍ସିପାଲ ଅନ୍ୟ ଅଧ୍ୟାପକମାନଙ୍କୁ ମୋ ବିରୁଦ୍ଧରେ ଲଗାଇବାକୁ ଚେଷ୍ଟା କଲେ। ଅଧ୍ୟାପକମାନଙ୍କ ମଧ୍ୟରେ ତ୍ରିଲୋଚନ ଷଡଙ୍ଗୀ ସ୍ୱାଧୀନଚେତା ଲୋକ। ସେ କୌଣସି କଥାରେ ପ୍ରିନ୍ସିପାଲଙ୍କୁ ସହଯୋଗ କଲେ ନାହିଁ। ଅନ୍ୟମାନେ ବିରୋଧ ଭାବ ରଖିଲେ ମଧ୍ୟ ବାସ୍ତବ କାମରେ କିଛି ବିରୋଧର ସୁଯୋଗ ପାଇଲେ ନାହିଁ। ତାଛଡା ସର୍ଭେ କାମରେ ମୁଁ ଅଧିକାଂଶ ସମୟ କଟକ ଭୁବନେଶ୍ୱରରେ ରହିଲି। ମୋ ବିରୁଦ୍ଧରେ କିଛି କରିବାର ସୁଯୋଗ ମିଳିବ କୁଆଡୁ? ଅନ୍ୟ ଅଧ୍ୟାପକମାନେ ଗ୍ରୀଷ୍ମ ଛୁଟି ଉପଭୋଗ କଲେ, କିଏ ନିଜ ଗାଁରେ, କିଏ ବା ଅନୁଗୁଳରେ। କିନ୍ତୁ ମୁଁ ଛୁଟିଯାକ ସର୍ଭେ କାମରେ ବ୍ୟସ୍ତ ରହିଲି। ଛୁଟି ନାହିଁ, ବିଶ୍ରାମ ନାହିଁ।

୧୯୭୫ ମସିହା ଅପ୍ରେଲ ମାସରେ ଶିକ୍ଷା ସଚିବଙ୍କ ସଭାପତିତ୍ୱରେ ଭୁବନେଶ୍ୱରରେ ଗୋଟିଏ ମିଟିଂ ଡକାଗଲା। ସେଥିରେ Computer ଦ୍ୱାରା Tabulation ହେବାକୁ ଥିବା ଫର୍ମ ସଂଶୋଧନ କାର୍ଯ୍ୟକ୍ରମ ବିଷୟରେ ଆଲୋଚନା ହେବାକୁ ରଖା ଯାଇଥିଲା। ସେତେବେଳେ ଓଡିଶାରେ କେଉଁଠି Computer ନଥିଲା। ଯେତେବେଳେ ଆଲୋଚନା ପାଇଁ ରଖାଯାଇଥିବା ବିଷୟ ବସ୍ତୁ ମୁଁ ଦେଖିଲି ଜନଗଣନା ଅଫିସକୁ ଦୌଡିଲି। କାରଣ ଓଡିଶା ଜନଗଣନା ଅଫିସ୍ କମ୍ପୁଟର ପାଇଁ ପୂରଣ ହୋଇଥିବା ଫର୍ମ ଆମଠୁ ନେଉଥିଲେ। ସେଠାରେ ସ୍ୱାଇଁବାବୁ ନାମରେ ଜଣେ ଡେପୁଟି ଡାଇରେକ୍ଟର ଥିଲେ। ତାଙ୍କ ପାଖକୁ ଯାଇ କହିଲି "କମ୍ପ୍ୟୁଟରଟା ଟିକିଏ ଦେଖିବା ଓ ସେଥିରେ କ'ଣ କେମିତି ହେଉଛି ବୁଝିବା।" ସେ କହିଲେ,କମ୍ପୁଟର ଦିଲ୍ଲୀରେ। ଏଠାରେ ଖାଲି କେତେକ Punching Machine ଅଛି Data entry ପାଇଁ। ଆପଣ ଆସନ୍ତୁ ଦେଖିବେ

କେବଳ Punching ମେସିନ୍ ଓ Data entry principles ବୁଝିବେ। ମୁଁ ଦେଖିଲି ଓ ୩ । ୪ଟା ଫର୍ମ କାର୍ଡରେ Punch କରି ନେଇଗଲି ।

ଭୁବନେଶ୍ୱରରେ ମିଟିଂ ହେଲା। କିନ୍ତୁ ଉପସ୍ଥିତ ଥିବା କେହି ଜଣେ କମ୍ପ୍ୟୁଟର କ'ଣ ଓ କ'ଣ କରିବାକୁ ହେବ କେହି କହି ପାରିଲେ ନାହିଁ। ଏହା ଦେଖି ଶିକ୍ଷା ସଚିବ ଭୀଷଣ ରାଗିଲେ ଓ କହିଲେ କେହିତ କିଛି ଜାଣି ନାହାନ୍ତି ମିଟିଂ ଡାକି ଦେଉଛନ୍ତି କାହିଁକି ? ଆଲୋଚନା କରିବେ କ'ଣ ? ଏହି ସମୟରେ ମୁଁ କହିଲି, "ମୁଁ ବିଶେଷ କିଛି ଜାଣେ ନାହିଁ, ତଥାପି ପ୍ରାରମ୍ଭିକ ଧାରଣା ଦେଇ ପାରିବି। ଏହା କହି ମୁଁ Punch କରି ଆଣିଥିବା କାର୍ଡ ଦେଖାଇଲି ଓ କହିଲି, "ଏ କାର୍ଡରେ ଯେଉଁକଣା ସବୁ ଦେଖା ଯାଉଛି ସେ ଗୁଡିକର ଅର୍ଥ ଅଛି। ଫର୍ମରେ ଯେଉଁ ତଥ୍ୟ ଅଛି ତାକୁ ଏଥିରେ ରଖାଯାଇଛି।" ଏହା କହି ମୁଁ ଗୋଟିଏ କାର୍ଡ ଧରି ପଢିଲି ଓ ସଚିବ ଫର୍ମଟି ଦେଖିଲେ। ମୁଁ କାର୍ଡରୁ ଯାହା ପଢିଲି, ଫର୍ମରେ ତାହା ଲେଖା ହୋଇଥିବାର ସେ ଦେଖିଲେ। ସେ ପୁଣି ସେ କାର୍ଡ ଦେଖି କହିଲେ,"ଏଥିରେ ତ କିଛି ନାହିଁ। ଖାଲି କଣା ଗୁଡାକ" ମୁଁ ତାଙ୍କୁ ବୁଝାଇ ଦେଲି ସେ କଣା ଗୁଡିକର ଅର୍ଥ କ'ଣ ? ତା'ର ଫର୍ମରେ ଥିବା ତଥ୍ୟ ସହିତ ସଂପର୍କ କ'ଣ। ଏହା ପରେ ସେ ଡି.ପି.ଆଇ ଙ୍କୁ କହିଲେ," ପୂର୍ଣ୍ଣବାବୁଙ୍କୁ ଏ କାମରେ ମୁଖ୍ୟ କରି ରଖ। ସେହି ଅନୁସାରେ ସେ ଅଫିସ୍ ଅର୍ଡର ପଠାଇ ଦେଲେ। ତା' ପରେ ମୋ ଦୁଃଖ ଆହୁରି ବଢି ଗଲା। କାରଣ ମଙ୍ଗଳ, ବୁଧ, ଗୁରୁ ଓ ଶୁକ୍ରବାର ଚାରିଦିନ ମୁଁ କଲେଜରେ ଅଧ୍ୟାପକ ଭାବରେ ପାଠ ପଢାଇବି, ଶନିବାର ସକାଳ ୫ ଟାରୁ ଉଠି ବସ୍‌ରେ କଟକ ଯିବି। ସେଠାରେ C.T ସ୍କୁଲ ହଷ୍ଟେଲରେ ଫର୍ମ ରଖା ଯାଇଛି। ସବ୍‌ଇନ୍ସପେକ୍ଟର ମାନେ ଫର୍ମ ସଂଶୋଧନ କରୁଥାନ୍ତି। ଶନିବାର ରବିବାର ଦୁଇଦିନ ମୁଁ କଟକରେ ରହିକାମ କରିବି। ସୋମବାର ଦିନ ଭୁବନେଶ୍ୱର ଯାଇ ରାଜ୍ୟ ଶିକ୍ଷା ସର୍ଭେ ଅଫିସର କାମ କରିବି। କାରଣ ଶିକ୍ଷା ସର୍ଭେ ଅଫିସର ଗଜେନ୍ଦ୍ରନାଥ ଦାସ ତାଙ୍କ ଇନ୍ସପେକ୍ଟର ଚାକିରୀକୁ ଫେରିଯିବା ପୂର୍ବରୁ ଛୁଟିରେ ଥାନ୍ତି। ସୋମବାର ଦିନ ରାଜ୍ୟ ଶିକ୍ଷା ସର୍ଭେ କାମ ସାରି ରାତିରେ ଯାଇ ଅନୁଗୁଳରେ ପହଞ୍ଚିବି। ପୁଣି ମଙ୍ଗଳବାର ସକାଳୁ ଅଧ୍ୟାପକ କାମ। ଗ୍ରୀଷ୍ମ ଛୁଟି ପରେ ମାସେ ଦେଢ ମାସ ଏ କାମ କରି ମୁଁ ବ୍ୟସ୍ତ ହୋଇ ପଡିଲି।

ପ୍ରିନ୍ସିପାଲ ମୋତେ କହିଲେ, " କଲେଜରେ ତମେ ମୋଟେ ଚାରିଦିନ କାମ କରୁଛ। ତମେ ଅନ୍ୟ ଯାହା ସରକାରୀ କାମ କଲେ କଲେଜର ଲାଭ କ'ଣ ? ତମକୁ ମୁଁ ବଦଳି କରିଦେବି।" ମୁଁ କହିଲି ଶୀଘ୍ର ବଦଳି କରି ଦିଅନ୍ତୁ। ଦେଲେ ମୁଁ ଖୁସି ହେବି। ମୋର କାମ ଲାଘବ ହୋଇଯିବ। ପ୍ରିନ୍ସିପାଲ ଚେଷ୍ଟା

କଲେ। ଚେଷ୍ଟା ଅର୍ଥ ଡେପୁଟି ଡି.ପି.ଆଇଙ୍କୁ କହିବା। ଡି.ପି.ଆଇଙ୍କୁ କହିବାର ସତ୍‌ସାହସ ତାଙ୍କର ନଥିଲା। ସେ ଡେପୁଟି ଡି.ପି.ଆଇଙ୍କୁ କହି କହି ଥକିଲେ। କିଛି ହୋଇ ପାରିଲା ନାହିଁ। ମୁଁ କହିଲି, "ଆପଣ ତ ମୋର ବଦଳି କରି ପାରିଲେ ନାହିଁ। ଏଣିକି ମୁଁ ନିଜେ ବଦଳି ହେବା ପାଇଁ ଚେଷ୍ଟା କରିବି।" ଡି.ପି.ଆଇଙ୍କୁ କହିଲି ମୋ ଦୁଃଖ କଥା। ସପ୍ତାହକ ଭିତରେ ତିନି ଜାଗାରେ ତିନି ପ୍ରକାର କାମ କରିବାକୁ ପଡୁଛି। ଡି.ପି.ଆଇ କହିଲେ, "କଟକ ଚାଲି ଆସିଲେ ବୋଧ ହୁଏ ସୁବିଧା ହେବ। " କେଉଁ କଲେଜକୁ ଯିବ ରାଧାନାଥ ଟ୍ରେନିଂ କଲେଜ ନା ରେଭେନ୍ସା କଲେଜ?" ଆଉ ଥରେ ରାଧାନାଥ ଟ୍ରେନିଂ କଲେଜର ସଂକୀର୍ଣ୍ଣତା ଭିତରେ ପଶିବାକୁ ମୋର ଇଚ୍ଛା ହେଲା ନାହିଁ। କହିଲି, ରେଭେନ୍ସା କଲେଜକୁ ଦିଅନ୍ତୁ। ସେ ଅକ୍ଟୋବର ମାସ ଆରମ୍ଭରେ ମୋର ବଦଳି ଆଦେଶ କରିଦେଲେ।

ମୋର ବଦଳି ଆଦେଶ ବାହାରି ପଡିଲା ପରେ ପ୍ରିନ୍ସିପାଲଙ୍କର ତେଜ ବାହାରିଲା। ସେ କହିଲେ ତମକୁ ସଙ୍ଗେ ସଙ୍ଗେ ରିଲିଭ କରିଦେବି। ସେତେବେଳେ ମୁଁ ଢେଙ୍କାନାଳ ଜିଲ୍ଲାର ଶିକ୍ଷା ଯୋଜନା ପ୍ରସ୍ତୁତ କରୁଥାଏ। ଅକ୍ଟୋବର ୧୫ ତାରିଖରେ ଯୋଜନା ଆଲୋଚନା ପାଇଁ ତାରିଖ ଧାର୍ଯ୍ୟ ହୋଇଥାଏ। ପ୍ରିନ୍ସିପାଲ ସଙ୍ଗେ ସଙ୍ଗେ ରିଲିଭ କରିବା କଥା କହିବାରୁ ମୁଁ ଡି.ପି.ଆଇଙ୍କୁ କହିଲି, ପ୍ରିନ୍ସିପାଲ ମତେ ସାଙ୍ଗେ ସାଙ୍ଗେ ରିଲିଭ କରିଦେବା କଥା କହୁଛନ୍ତି। ମୁଁ ଯୋଜନା ପ୍ରସ୍ତୁତ କରିବି କେମିତି ଓ ଆଲୋଚନା ହେବ କେମିତି? ଡି.ପି.ଆଇ ଆଦେଶ କରିଦେଲେ "ନଭେମ୍ବର ମାସ ଦୁଇ ତାରିଖରେ ମୋତେ ରିଲିଭ କରାଯାଇ ପାରେ।" ସେଥିରେ ପ୍ରିନ୍ସିପାଲ ପୁଣି ଥରେ ଅପଦସ୍ତ ହେଲେ।

ପ୍ରିନ୍ସିପାଲ ବିବେକାନନ୍ଦ ପତି ମୋ ଉପରେ ରାଗି ରକ୍ତ ଋଉଳ ଖେଳାଉ ଥାନ୍ତି। ଯେତେବେଳେ ମୋ ବିରୁଦ୍ଧରେ ଯାହା କରିବାକୁ ଚେଷ୍ଟା କଲେ ସବୁ ଅକାମୀ ହୋଇଗଲା। ନିଜେ ଡି.ପି.ଆଇ ପ୍ରକୃତ ଘଟନା ବୁଝି ତାଙ୍କ ମନ୍ଦ ଉଦ୍ଦେଶ୍ୟକୁ ପ୍ରତିହତ କଲେ। ମୁଁ ବଦଳି ହୋଇ ଚାଲିଗଲା ପରେ ବହୁତ ଦରାଣ୍ଡି ଦରାଣ୍ଡି ମୋର ଦୋଷ ପାଇଲେ। ତାହା ହେଲା ଗୋଟିଏ ବର୍ଷ ଭିତରେ ମୁ କୌଣସି Extra Curricular କାମ କରି ନାହିଁ ଏବଂ ତାକୁ ମୋର ଗୁପ୍ତ ଚରିତ୍ର ପଞ୍ଜିକାରେ ଲିପିବଦ୍ଧ କରି ଦେଲେ। ବର୍ଷ ଶେଷରେ ମୋ ପାଖକୁ ନାଲି କାଗଜରେ ଚିଠି ଆସିଲା। କୈଫିୟତ ଦେବାକୁ। ମୁଁ ପ୍ରତିବାଦ କଲି। ପ୍ରଥମତଃ ମୋ ଉପରେ

କୌଣସି Extra Curricular କାମର ଦାୟିତ୍ୱ ନ୍ୟସ୍ତ କରାଯାଇ ନଥିଲା। ତା ପୂର୍ବ ବର୍ଷ ମୋତେ Magazine ଦାୟିତ୍ୱ ଦିଆ ଯାଇଥିଲା। ତାହା ମୁଁ ସନ୍ତୋଷଜନକ ଭାବରେ ନିର୍ବାହ କରିଥିଲି। ଦ୍ୱିତୀୟତଃ ମୁଁ ସବୁବେଳେ ସର୍ଭେ କାର୍ଯ୍ୟରେ ବ୍ୟସ୍ତ ରହିବା ଫଳରେ ମୋତେ କୌଣସି ଦାୟିତ୍ୱ ଦିଆଯାଇ ନଥିଲା। ତୃତୀୟତଃ ଶିକ୍ଷା ସର୍ଭେ ଦାୟିତ୍ୱ କିଛି କମ୍ ଦାୟିତ୍ୱ ନୁହେଁ। ତାହା ମୁଁ ନିର୍ବାହ କରିଛି। ଏସବୁକୁ ମୁଁ ପ୍ରତିବାଦ ସ୍ୱରୂପ ଲେଖିବାରୁ ତାଙ୍କର ମନ୍ତବ୍ୟ Expunge ହୋଇଗଲା। ତାଙ୍କର ଶେଷ ଅସ୍ତ୍ର ମଧ୍ୟ ଅକାମୀ ହେଲା।

## ୩.୯ ପୁଣି ରେଭେନ୍ସା କଲେଜ

ଅନୁଗୁଳ ଟ୍ରେନିଂ କଲେଜରୁ ୧୭ । ୧୧ । ୧୯୭୫ ତାରିଖରେ ଅବ୍ୟାହତି ନେଇ ୨୪ । ୧୧ । ୧୯୭୫ ତାରିଖରେ ରେଭେନ୍ସା କଲେଜର ଶିକ୍ଷା ବିଭାଗରେ ଯୋଗ ଦେଲି। ଏଥର କିନ୍ତୁ ବିଭାଗୀୟ ମୁଖ୍ୟ ଭାବରେ। ଇତି ମଧ୍ୟରେ ଅଧ୍ୟାପକ ଓ ଅଧ୍ୟାପିକାମାନଙ୍କ ସଂଖ୍ୟା ବଢିଯାଇଛି। ଅଭ୍ୟାସ ପାଠ ସହିତ ଶ୍ରେଣୀରେ ପାଠପଢା। ଉଭୟର ପରିଚାଳନା ସହିତ ସର୍ଭେ ଦାୟିତ୍ୱ। ଏ ସବୁର ଏକତ୍ର ପରିଚାଳନା କଷ୍ଟକର। ପିଲାମାନଙ୍କର ସୁବିଧା ଅସୁବିଧା ବୁଝିବା ନିହାତି ଦରକାର।

ଅଭ୍ୟାସ ପାଠ ବେଳେ ପିଲାମାନେ ଆବଶ୍ୟକତା ମତେ ସ୍କୁଲରୁ ମାନଚିତ୍ର ନେଇ ବ୍ୟବହାର କରି ଫେରାଇ ଦେଇ ଆସନ୍ତି କିନ୍ତୁ ସ୍କୁଲରେ କବି, ଲେଖକ, ବୈଜ୍ଞାନିକ ମାନଙ୍କର ଚିତ୍ର ନଥାଏ। ଆମ ବିଭାଗରେ ମଧ୍ୟ ସେ ସବୁ କିଣା ହୋଇନଥାଏ। ପ୍ରିନ୍ସିପାଲଙ୍କ ସହିତ ଆଲୋଚନା କରି ବିଶ୍ୱ ବିଦ୍ୟାଳୟ ମଞ୍ଜୁରୀ କମିଶନ ଅନୁଦାନରୁ ଅନେକ କବି ଓ ଲେଖକଙ୍କର ମଡେଲ, ବୈଜ୍ଞାନିକ ମାନଙ୍କର ମଡେଲ ଓ ଚିତ୍ର ଅନ୍ୟାନ୍ୟ ଶିକ୍ଷାଦାନ ଉପକରଣ ଓ ମନୋବିଜ୍ଞାନର କେତେକ Test materilas କିଣା ହେଲା। ଯେତେଦୂର ସମ୍ଭବ ଅନେକ ଅଭାବ ପୂରଣ ହୋଇଗଲା ଓ ପିଲାମାନେ ନୂଆ ଉପକରଣ ସବୁ ବ୍ୟବହାର କରି ଖୁସି ହେଲେ।

୧୯୭୬ ମସିହା ପ୍ରାରମ୍ଭ ଭାଗରେ "ସୃଜନଶୀଳତା" ଉପରେ ଗୋଟିଏ ସେମିନାର ଆୟୋଜନ କରାଇଲି । ଭୁବନେଶ୍ୱର ଆଞ୍ଚଳିକ ଶିକ୍ଷା କଲେଜରେ ପ୍ରିନ୍ସିପାଲ ପ୍ରଫେସର କୈଳାସ ଚନ୍ଦ୍ର ପଣ୍ଡାଙ୍କୁ ମୁଖ୍ୟ ଆଲୋଚକ ଭାବରେ ନିମନ୍ତ୍ରଣ କରିଥିଲୁ। ଆମ ପ୍ରିନ୍ସିପାଲ ପ୍ରଫେସର ମହେନ୍ଦ୍ର କୁମାର ରାଉତ ସେମିନାରରେ

ଅଧ୍ୟକ୍ଷତା କରିଥିଲେ । ଆଲୋଚନା ଉଚ୍ଚକୋଟୀର ହୋଇଥିଲା । ପ୍ରିନ୍ସିପାଲ ମୂଳରୁ ଶେଷ ପର୍ଯ୍ୟନ୍ତ ଉପସ୍ଥିତ ରହି ତାଙ୍କର ସଭାପତି ଅଭିଭାଷଣରେ କହିଲେ," ଏ ଭଳି ଅନ୍ୟ ସେମିନାର କଲେ ମୋତେ ଜଣାଇବ ଓ ଏ ସେମିନାରର ବିବରଣୀ ତଥା କୈଳାସ ବାବୁଙ୍କ ଭାଷଣଟିକୁ ଛପାଇ ଦିଅ ।" ସେମିନାର ବିବରଣୀ ସହ ପ୍ରଫେସର ପଣ୍ଡାଙ୍କ ଭାଷଣ ଛପା ଯାଇ ସବୁ ଟ୍ରେନିଂ କଲେଜ ଓ ସାଧାରଣ କଲେଜକୁ ଯୋଗାଇ ଦିଆଗଲା ।

ରେଭେନ୍ସା କଲେଜର କାର୍ଯ୍ୟକାଳ ମଧ୍ୟରେ ମୋତେ "ଜାତୀୟ ସେବା ଯୋଜନା" (National Service Scheme) ଅଫିସର ଭାବରେ ନିଯୁକ୍ତି ମିଳିଥିଲା । NSS ରେ କାମ କରିବାକୁ ଭଲ ଲାଗିଲା । କଟକ ଜିଲ୍ଲାର ବୈରୀଠାରେ ଗୋଟିଏ ସାତ ଦିନିଆ ଶିବିର ଅନୁଷ୍ଠିତ ହୋଇଥିଲା । ବୈରୀ ହାଇସ୍କୁଲର ଖେଳ ପଡିଆ ନଥିବାରୁ ଗୋଟିଏ ପଡିଆ କରିବା ପାଇଁ ଯୋଜନା କଲୁ । ପ୍ରଥମ ଦୁଇ ତିନିଦିନ କାମ କଲାପରେ ବହୁତ ପିଲାଙ୍କର ହାତ ଫୋଟକା ହୋଇଗଲା । ଗାଁ ଲୋକଙ୍କର ସାହାଯ୍ୟ ନେଇ ମଧ କାମ ସଂପୂର୍ଣ୍ଣ ହୋଇପାରିଲା ନାହିଁ । କିନ୍ତୁ କଷ୍ଟ ସତ୍ତ୍ୱେ ଶିବିରରେ ଦିନ ଗୁଡିକ ଉପଭୋଗ୍ୟ ହୋଇଥିଲା । ପିଲାମାନେ ସମସ୍ତ କଷ୍ଟ ସତ୍ତ୍ୱେ ଖୁସି ହୋଇଥିଲେ ।

ସେତେବେଳେ ରେଭେନ୍ସା କଲେଜର ସବୁଠୁ ବଡ ସମସ୍ୟା ଥିଲା ପରୀକ୍ଷା ପରିଚାଳନା । ପରୀକ୍ଷାରେ କପି ରୋକିବା ବଡ ମୁଣ୍ଡବଥାର କାରଣ ଥିଲା । ବିଶେଷ କରି କମର୍ସ ବ୍ଲକରେ । କମର୍ସ ପିଲାଙ୍କର ପରୀକ୍ଷାର Invigilation କରିବାକୁ ଅଧ୍ୟାପକମାନେ ଡରନ୍ତି । ମୁଁ କିନ୍ତୁ କେବେହେଲେ ପରୀକ୍ଷା କାର୍ଯ୍ୟରେ ଅବହେଳା କରିନାହିଁ । ପିଲାମାନେ ଯେତେ ପାଟିତୁଣ୍ଡ କଲେ ମଧ କେବେ କିଛି କ୍ଷତି କରି ନାହାନ୍ତି । ଯେଉଁମାନେ ଡରନ୍ତି ତାଙ୍କୁ ପିଲାମାନେ ଡରାଇଥାନ୍ତି ।

ରେଭେନ୍ସା କଲେଜର ମୁକ୍ତ ବାତାବରଣ ଭିତରେ କାମ କରିବାକୁ ଖୁବ୍ ଭଲ ଲାଗିଲା । ସହଯୋଗୀ ଅଧ୍ୟାପକ ଅଧ୍ୟାପିକାମାନେ ଖୁବ୍ ଭଲ । ନିଜ ନିଜ କାମ ଠିକ୍ ଭାବରେ କରନ୍ତି । ସେତେବେଳେ ଅଧ୍ୟାପିକା ଥିବା ବାସନ୍ତୀ ଦେ ସବୁବେଳେ ସବୁ କାମ ପାଇଁ ତିଆର । ତାଙ୍କର କାମ ମଧ୍ୟ ପସନ୍ଦ ଯୋଗ୍ୟ । ଏବେ ସେ ଆମେରିକାରେ ଖୁବ୍ ନାଁ କରିଛନ୍ତି ।

ଏ ପ୍ରକାର ପରିବେଶରେ ଦୁଇଟି ବର୍ଷ ରହି ପାରିଲି ନାହିଁ । (Assistant Director Planning) ଓଡିଶାର ଯୋଜନା ସହକାରୀ ନିର୍ଦ୍ଦେଶକ ଭାବରେ ବଦଳି ହେଲା । ଡି.ପି.ଆଇ ଅଫିସରେ ଡକ୍ଟର ବଂଶୀଧର ତ୍ରିପାଠୀଙ୍କ ସ୍ଥାନରେ ଯାଇ ଯୋଗ ଦେଲି ।

## ୩.୧୦ ଓଡ଼ିଶାର ସହକାରୀ ଯୋଜନା ନିର୍ଦ୍ଦେଶକ

ଓଡ଼ିଶାର ସହକାରୀ ଯୋଜନା ନିର୍ଦ୍ଦେଶକ ଭାବରେ ଡି.ପି.ଆଇ ଅଫିସରେ ୧୯ । ୧୨ । ୧୯୭୭ ତାରିଖରେ କାର୍ଯ୍ୟଭାର ଗ୍ରହଣ କଲି । ସର୍ଭେ କାର୍ଯ୍ୟରେ ଯେଉଁ ଅଭିଜ୍ଞତା ଲାଭ ହୋଇଥିଲା ତାହା ଏଠାରେ ବହୁତ କାମରେ ଲାଗିଲା । ଏଠାରେ ଯୋଗ ଦେବାର ଋଗିଦିନ ପରେ ଡି.ପି.ଆଇ ପ୍ରଫେସର ବିଧୁଭୂଷଣ ଦାସ ମୋତେ ଡାକି କହିଲେ ଓଡ଼ିଶାର ସ୍କୁଲ ଓ ଶିକ୍ଷକମାନଙ୍କର Profile (ପ୍ରତିରୂପ) ପ୍ରସ୍ତୁତ କରିବାକୁ ପଡ଼ିବ । କେତେ ଶୀଘ୍ର ହୋଇ ପାରିବ ?" ମୁଁ କହିଲି, " ଗୋଟିଏ ସପ୍ତାହ ଭିତରେ ହୋଇଯିବ ।" ସେହି ସମୟ ମଧ୍ୟରେ Format ପ୍ରସ୍ତୁତ ହୋଇଗଲା ଓ ତାକୁ ଗୋଟାଏ Scheme କରି ସରକାରଙ୍କୁ ପ୍ରସ୍ତାବ ପଠାଗଲା ଅର୍ଥ ମଞ୍ଜୁର କରିବାକୁ, ପ୍ରଥମେ ଅତିରିକ୍ତ ମୁଖ୍ୟ ସଚିବ ତାକୁ ନାମଞ୍ଜୁର କରିଦେଇଥିଲେ । କିନ୍ତୁ ଡି.ପି.ଆଇ ତାଙ୍କ ସହିତ ଆଲୋଚନା କରିବା ପରେ ମଞ୍ଜୁର କରିଦେଲେ । କାମ ତ ଆରମ୍ଭ ହୋଇଗଲା । ତଥ୍ୟ ସଂଗ୍ରହ ପାଇଁ କ୍ଷେତ୍ରକୁ ଫର୍ମସବୁ ପଠାଗଲା । କିନ୍ତୁ ୧୯୭୮ ଅକ୍ଟୋବର ମାସ ମୋର ରାଜ୍ୟ ଶିକ୍ଷା ସର୍ଭେ ଅଫିସର ଭାବରେ ବଦଳି ହେବା ପରେ ଯୋଜନାଟି ପ୍ରାୟ ବନ୍ଦ ହୋଇଗଲା ।

ସହକାରୀ ଯୋଜନା ନିର୍ଦ୍ଦେଶକ ଭାବରେ କାମ କରିବାକୁ ହେଲେ ଯୋଜନା ପ୍ରସ୍ତୁତିରେ ତାଲିମ ନେବା ଦରକାର । ତେଣୁ ୧୪ । ୪। ୧୯୭୮ ତାରିଖରେ ମୋତେ National Staff College ଦିଲ୍ଲୀକୁ ଟ୍ରେନିଂ ପାଇଁ ପଠାଗଲା । ୧୫ ଦିନ ଟ୍ରେନିଂ ପରେ ମୁଁ ସାର୍ଟିଫିକେଟ୍ ନେଇ ଫେରିଲି ।



ଲେଖକ ହରିଆନାର ଶିକ୍ଷାମନ୍ତ୍ରୀ କର୍ଣ୍ଣେଲ୍ ରାମ ସିଂଙ୍କ ଠାରୁ ଶିକ୍ଷା ଯୋଜନା ତାଲିମ ସାର୍ଟିଫିକେଟ୍ ଗ୍ରହଣ କରୁଛନ୍ତି । ପାଖରେ ନିର୍ଦ୍ଦେଶକ ଏମ୍.ଭି.ମାଥୁର୍ (୧୯୭୮)

ଭାରତ ସରକାର ୧୯୭୮ ଅପ୍ରେଲ ମାସରେ ରାଞ୍ଚିଠାରେ ଅନୌପଚାରିକ ଶିକ୍ଷା ଓ ପ୍ରୌଢ ଶିକ୍ଷା ଉପରେ ଏକ ସେମିନାର ଆୟୋଜନ କରିଥିଲେ। ଓଡିଶାରୁ ଶିକ୍ଷା ସଚିବ ଜ୍ଞାନ ଚାନ୍ଦ ଓ ଡି.ପି.ଆଇ ପ୍ରଫେସର ବିଧୁଭୂଷଣଦାସ ସେଠାରେ ଯୋଗ ଦେବାର ଥିଲା। ହଠାତ୍ ଶିକ୍ଷାମନ୍ତ୍ରୀ ପ୍ରଦୀପ୍ତ କିଶୋର ଦାସ ବିଧୁବାବୁଙ୍କୁ ନ ଯିବାପାଇଁ କହିଲେ। କାରଣ ଉତ୍କଳ ବିଶ୍ୱ ବିଦ୍ୟାଳୟରେ ଛାତ୍ର ଅଶାନ୍ତି ଆରମ୍ଭ ହୋଇଗଲା। ତା ପରେ କଥା ହେଲା, ଜ୍ଞାନ ଚାନ୍ଦଙ୍କ ସହିତ କିଏ ଯିବ? କୌଣସି ବରିଷ୍ଠ ଅଫିସର ଯିବାକୁ ରାଜି ହେଲେ ନାହିଁ। ମୋତେ ପଚାରିବାରୁ ମୁଁ ରାଜି ହୋଇଗଲି। ମୋତେ କେତେକ ଅଫିସର ନ ଯିବା ପାଇଁ ପରାମର୍ଶ ଦେଲେ। ତାଙ୍କ ମତରେ ଶିକ୍ଷା ସଚିବ ଜ୍ଞାନ ଚାନ୍ଦଙ୍କ ସହିତ ଗଲେ ଗଲାବେଳେ ଚାକିରି ଥିବ, ଫେରିବା ବେଳକୁ ନଥିବ। ମୁଁ କହିଲି, ଜ୍ଞାନ ଚାନ୍ଦ କ'ଣ ଏମିତି ଶିକ୍ଷା ବିଷୟରେ ପଚାରିବେ, ଯାହାର ଉତ୍ତର ମୁଁ ଦେଇ ପାରିବି ନାହିଁ। ଯଦି ନ କହି ପାରିବି ତା ହେଲେ ଚାକିରି ଯାଉ। କିନ୍ତୁ ମୁଁ ଯିବି।" ପ୍ରୌଢ ଶିକ୍ଷା ଉପନିର୍ଦ୍ଦେଶକ ଡକ୍ଟର ପ୍ରାଣବନ୍ଧୁ ତ୍ରିପାଠୀ ରାଜି ହେଲେ ଯିବା ପାଇଁ । ଜ୍ଞାନ ଚାନ୍ଦ ସରକାରୀ ଗାଡିରେ ଗଲେ ଓ ପ୍ରାଣବନ୍ଧୁ ବାବୁ ଓ ମୁଁ ପ୍ରାଣବନ୍ଧୁବାବୁଙ୍କ ଗାଡିରେ ଗଲୁ। ରାଞ୍ଚିରେ CCL ଅତିଥି ଭବନରେ ରହିଲୁ। ରାଞ୍ଚିରେ ଅଡ୍ରେ ହାଉସ୍ ରେ ସେମିନାର ହେବା କଥା। ଅଡ୍ରେ ହାଉସ୍ କେଉଁଠାରେ ବୁଝିବାକୁ ମୁଁ ବାହାରକୁ ଯାଇ ଜଣକୁ ପଚାରିଲି। ସେ ଓଡିଶା ଅଫିସରଙ୍କ ଦାୟିତ୍ୱରେ ଥିଲେ। ପୂର୍ବଦିନ ବସ୍‌ଷ୍ଟାଣ୍ଡ, ରେଲୱେ ଷ୍ଟେସନ, ଉଡାଜାହାଜ ପଡିଆରେ ଆମକୁ ଖୋଜି ଖୋଜି ସେ ନୟାନ୍ତ ହୋଇଯାଇଥିଲେ। ମୋତେ ଭେଟିବାରୁ ଆଶ୍ୱସ୍ତ ହୋଇ ଦୁଇଟା ଗାଡି ଧରି ଆମ ପାଖକୁ ଆସିଲେ ଓ ଆମକୁ ତାଙ୍କ ଗାଡିରେ ଅଡ୍ରେ ହାଉସ୍‌କୁ ନେଇଗଲେ।

ସେମିନାରରେ ପ୍ରତି ଷ୍ଟେଟ୍ ତରଫରୁ ପ୍ରୌଢଶିକ୍ଷା ଓ ଅନୌପଚାରିକ ଶିକ୍ଷାର ସ୍ଥିତି ଓ ଭବିଷ୍ୟତ ଯୋଜନା ବିଷୟରେ ଆଲୋଚନା ହେଲା । ମୁଁ ଅନୌପଚାରିକ ଶିକ୍ଷା ବିଷୟରେ ୧୦ ମିନିଟ୍ କହିଲି ଓ ଶିକ୍ଷା ସଚିବ ତାଙ୍କ ଭାଷଣରେ ୧୦ ବର୍ଷିଆ, ପାଞ୍ଚ ବର୍ଷିଆ ଯୋଜନା ବିଷୟରେ କହିଲେ। ମଧ୍ୟାହ୍ନ ଭୋଜନ ବେଳକୁ ଜ୍ଞାନଚାନ୍ଦ ମତେ ପଚାରିଲେ, " ରାଉତ ତମର ର୍‍ୟାଙ୍କ କ'ଣ?" ମୁଁ କହିଲି Class - II । ତାପରେ ସେ ପୁଣି ପଚାରିଲେ "Class - II ରେ କେତେ ବର୍ଷ ରହିଲଣି?" ମୁଁ କହିଲି ୧୫ ବର୍ଷ। ଏହା ଶୁଣି ସେ

କହିଲେ , " ଓଡିଶାରେ କେହି କ'ଣ ବିଚାର ବୁଦ୍ଧି ସଂପନ୍ନ ଅଫିସର ଶିକ୍ଷା ବିଭାଗରେ କାମ କରି ନାହାନ୍ତି ? ଏବେ ତମେ Class - I ରେ ରହିବା କଥା । ଭୁବନେଶ୍ୱରକୁ ଫେରି ମତେ Representation ଦିଅ । ମୁଁ ତମକୁ ପ୍ରମୋଶନ ଦେବି । ମୁଁ ଦେଖିଲି ମତେ ଯାହା ସବୁ ଡରେଇ ଥିଲେ, ଠିକ୍ ତା'ର ଓଲଟା ହେଲା ।

ଭୁବନେଶ୍ୱର ଫେରିଲା ପରେ ମୁଁ ନେଇ Representation ଦେଲି । ମୋ ପ୍ରତି ଯେଉଁ ଅନ୍ୟାୟ ହୋଇଥିଲା ତାହା ଦର୍ଶାଇଲି । ମୋର ମୂଳ ନିଯୁକ୍ତି Field Wing ରେ । ଅଥଚ ମତେ Field Wingକୁ ନ ନେବା ପାଇଁ ସବୁ ବାଟ କରାଯାଇଛି । ମୋର ଦୁର୍ଭାଗ୍ୟ ମୁଁ Representation ଦେବାର ଚାରିଦିନ ପରେ ଜ୍ଞାନରଞ୍ଜନଙ୍କର ଭାରତ ସରକାରଙ୍କ ଅଧୀନକୁ Joint Secretary, Communications ଭାବରେ ବଦଳି ହେଲା । ପୂର୍ବରୁ ଥରେ ଏପରି ହୋଇଥିଲା । ଢେଙ୍କାନାଳ ଜିଲ୍ଲା ଶିକ୍ଷା ଯୋଜନା ପ୍ରସ୍ତୁତିରେ ଖୁସି ହୋଇ ତତ୍କାଳୀନ ଶିକ୍ଷା ସଚିବ ହେରମ୍ବ ନାରାୟଣ ଦାସ ମହାପାତ୍ର କହିଥିଲେ ମୋତେ ପ୍ରମୋଶନ ଦେବା ପାଇଁ । ମୋତେ କହିବାର ଆଠ ଦିନ ପରେ ସେ ବଦଳି ହୋଇଗଲେ ।

ଆମେ ରାଞ୍ଚିରୁ ଫେରିବାର ମାସକ ମଧ୍ୟରେ ଭାରତ ସରକାର ଚତୁର୍ଥ ଶିକ୍ଷା ସର୍ଭେ କରିବା ପାଇଁ ଯୋଜନା କଲେ । ବହୁ ଅର୍ଥ ବ୍ୟୟରେ ତୃତୀୟ ଶିକ୍ଷା ସର୍ଭେ କରାଯାଇଥିଲା । କିନ୍ତୁ ଭାରତର ଲୋକ ତଥା ଅଫିସରମାନଙ୍କର Computer ସହିତ ଅଭିଜ୍ଞତା ଅଭାବରୁ Manually Processed Table ଓ Computer Processed Table ମଧ୍ୟରେ ବହୁତ ବ୍ୟବଧାନ ରହିଗଲା । ଗୋଟିଏ ସର୍ଭେର ଆଠ ବର୍ଷ ପରେ ଆଉ ଗୋଟିଏ ସର୍ଭେ ହୁଏ । ଏଥର କିନ୍ତୁ ଛରିବର୍ଷ ପରେ ୧୯୭୮ ମସିହାରେ ସର୍ଭେ କରିବା ପାଇଁ ନିଷ୍ପତ୍ତି ନିଆଗଲା ।

ଚତୁର୍ଥ ଶିକ୍ଷା ସର୍ଭେର ରାଜ୍ୟ ଶିକ୍ଷା ସର୍ଭେ ଅଫିସରମାନଙ୍କ ପାଇଁ ବାଙ୍ଗାଲୋରରେ ୨୬ । ୬ । ୧୯୭୮ ତାରିଖଠାରୁ ଟ୍ରେନିଂ ବ୍ୟବସ୍ଥା କରାଯାଇଥିଲା । ଓଡିଶାରୁ ସେ ଟ୍ରେନିଂରେ ଯୋଗ ଦେବା ପାଇଁ ମୋତେ ମନୋନୀତ କରାଗଲା । ମୁଁ ଯୋଗ ଦେଲି । ଟ୍ରେନିଂ ତଥା ସର୍ଭେ ପରିଚାଳନା ପାଇଁ ଭାରତ ସରକାରଙ୍କ ତରଫରୁ NCERT କୁ ଦାୟିତ୍ୱ ଦିଆଯାଇଥିଲା । ଯେଉଁମାନେ ଟ୍ରେନିଂ ପରିଚାଳନା କରିବାକୁ

ଆସିଥିଲେ ସେମାନେ ସମସ୍ତେ ତୃତୀୟ ଶିକ୍ଷା ସର୍ଭେ ପରିଚାଳନା କରୁଥିଲେ। କେବଳ Director R.G. Mishra ଅବସର ଗ୍ରହଣ କରିଥିବାରୁ ତାଙ୍କ ସ୍ଥାନରେ ହିରିଆନିଆ ଯୋଗ ଦେଇଥାନ୍ତି ? ଟ୍ରେନିଂ ଆରମ୍ଭ କରିବା ପାଇଁ ଭାରତ ସରକାରଙ୍କ ଶିକ୍ଷା ବିଭାଗ ଯୁଗ୍ମ ସଚିବ Mrs. Anjani Dayanand ଆସିଥିଲେ। ପ୍ରାରମ୍ଭ ଦିନ ମୁଁ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟ ଉଠାଇଲି। ତାହା ହେଲା District Table ରୁ ଚାରିଗୋଟି ଟେବୁଲ ଓ ତତ୍ ସଂପୃକ୍ତ ଫର୍ମ ସବୁ ସର୍ଭେରୁ ହଟାଇ ଦେବା। ମୁଁ ପ୍ରସ୍ତାବ ଦେବାର କାରଣ ହେଉଛି ତୃତୀୟ ଶିକ୍ଷା ସର୍ଭେ ବେଳେ ବହୁତ ପରିଶ୍ରମ କରି ଫର୍ମ ପୂରଣଠାରୁ ଆରମ୍ଭ କରି Block Table ଓ District Table ତିଆରି କରାଗଲା। ଅଥଚ ସେ ଟେବୁଲ୍ ଗୁଡିକର କିଛି ପ୍ରୟୋଗାତ୍ମକ ମୂଲ୍ୟ ନାହିଁ। ସେ ଟେବୁଲ ସବୁ ସ୍କୁଲ ସ୍ଥାନାନ୍ତର ସମ୍ବନ୍ଧୀୟ ହୋଇଥିବାରୁ ପ୍ରତିଷ୍ଠିତ ସ୍କୁଲ ସର୍ଭେ ତଥ୍ୟ ଅନୁସାରେ ସ୍ଥାନାନ୍ତର କରିବାକୁ ପ୍ରସ୍ତାବ ଦେଲା କ୍ଷଣି ରାଜନୀତି ଲୋକ ସବୁ ମାଡିବସିବେ ଓ ପ୍ରବଳ ବିରୋଧ କରି ତାକୁ କାର୍ଯ୍ୟକାରୀ କରିବାକୁ ଦେବେ ନାହିଁ। ଏ ସମ୍ବନ୍ଧରେ ବାଦାନୁବାଦ ହେବାରୁ ମୋ ଆବାହକତ୍ୱରେ ଗୋଟିଏ Sub-Committee ଗଢାଗଲା। ଏ ପ୍ରଶ୍ନର ପୁଙ୍ଖାନୁପୁଙ୍ଖ ବିଚାର କରି ସେ ଚାରିଗୋଟି ଟେବୁଲ ହଟାଇ ଦେବା ପାଇଁ ରିପୋର୍ଟ ଦିଆଗଲା। NCERT ର ପ୍ରବଳ ବିରୋଧ ସତ୍ତ୍ୱେ ସେ ଟେବୁଲ ଓ ତତ୍ ସଂପୃକ୍ତ ଫର୍ମ ହଟାଇ ନିଆଗଲା।

ଟ୍ରେନିଂରୁ ଫେରିଲା ପରେ ଜିଲ୍ଲା ଶିକ୍ଷା ସର୍ଭେ ଅଫିସର ମନୋନୟନ ହେବା କଥା। ସରକାର ସ୍ଥିର କଲେ ଯେ ଜିଲ୍ଲାରେ କାର୍ଯ୍ୟରତ District Inspector of Schools ମାନଙ୍କ ମଧ୍ୟରୁ ଜଣଙ୍କୁ ବାଛି ଜିଲ୍ଲା ସର୍ଭେ ଅଫିସର କରାଯାଉ ଓ ତାଙ୍କୁ କିଛି ଅଧିକ Honorarium ଦିଆଯାଉ। ତାହା କାର୍ଯ୍ୟକାରୀ ହେଲା। ଜିଲ୍ଲା ଶିକ୍ଷା ସର୍ଭେ ଅଫିସରମାନଙ୍କର ଟ୍ରେନିଂ ବ୍ୟବସ୍ଥା ମୁଁ କରି ତାଙ୍କୁ ୫ ଦିନ ଟ୍ରେନିଂ ଦେଲି। ସେ ପର୍ଯ୍ୟନ୍ତ ମୁଁ ରାଜ୍ୟ ଶିକ୍ଷା ସର୍ଭେ ଅଫିସର ଭାବରେ ନିଯୁକ୍ତି ପାଇ ନଥାଏ।

ଯେତେବେଳେ ମୋର ରାଜ୍ୟ ଶିକ୍ଷା ସର୍ଭେ ଅଫିସର ଭାବରେ ନିଯୁକ୍ତି ପ୍ରଶ୍ନ ଉଠିଲା ସହକାରୀ ରାଜ୍ୟ ଶିକ୍ଷା ସର୍ଭେ ଅଫିସର ବ୍ରଜମୋହନ ଦାସ ମୋ ବିରୁଦ୍ଧରେ Represent କଲେ। ତାଙ୍କର ମୁଖ୍ୟ କଥା ହେଲା ୧୯୭୩ ରୁ ସେ ସେକ୍ରେଟେରୀଏଟ୍ ଋକିରିରୁ ସହକାରୀ ରାଜ୍ୟ ଶିକ୍ଷା ସର୍ଭେ ଅଫିସର ଭାବରେ

ନିରବିଚ୍ଛିନ୍ନ ଭାବେ କାମ କରି ଆସୁଛନ୍ତି। ମୁଁ ତୃତୀୟ ଶିକ୍ଷା ସର୍ଭେରେ ଜିଲ୍ଲା ଶିକ୍ଷା ସର୍ଭେ ଅଫିସର ଭାବରେ କାମ କରିଥିଲେ ମଧ୍ୟ ମୋର ମୂଳ ନିଯୁକ୍ତି ଅଧ୍ୟାପକ ଭାବରେ। ସର୍ଭେ କାର୍ଯ୍ୟରେ ସେ ମୋ ଠାରୁ ବରିଷ୍ଠ। ତେଣୁ ତାଙ୍କୁ ରାଜ୍ୟ ଶିକ୍ଷା ସର୍ଭେ ଅଫିସର ଭାବରେ ନିଯୁକ୍ତ କରାଯାଉ। ସେତେବେଳକୁ ମୁଁ ଓଡିଶା ଶିକ୍ଷା ସେବା (OES Class-II) ଦ୍ୱିତୀୟ ଶ୍ରେଣୀରେ ୧୫ ବର୍ଷ ସଂପୂର୍ଣ୍ଣ କରି ସାରିଥାଏ। ତାଛଡା ସର୍ଭେ କାର୍ଯ୍ୟରେ ଦକ୍ଷତା କଥା ବିଚାରକୁ ନେଲେ ବ୍ରଜ ମୋହନ ଦାସ ବିଚାର ପରିସରକୁ ଅସି ପାରିବା କଥା ନୁହେଁ। ତାଙ୍କୁ ସର୍ଭେ କାର୍ଯ୍ୟ ଆଦୌ ଜଣା ନଥାଏ। ସର୍ଭେ କାର୍ଯ୍ୟରେ ମୋର ଦକ୍ଷତା ତୃତୀୟ ଶିକ୍ଷା ସର୍ଭେରେ ପ୍ରମାଣିତ। ଡି.ପି.ଆଇ ପ୍ରଫେସର ବିଧୁଭୂଷଣ ଦାସ ସ୍ପଷ୍ଟ ଭାବରେ ମୋ ସପକ୍ଷରେ ମତ ଦେଲେ।

ସେତେବେଳେ ଶିକ୍ଷା ବିଭାଗରେ ଡେପୁଟି ସେକ୍ରେଟେରୀ କ୍ଷେତ୍ରମୋହନ ମଙ୍ଗରାଜ, ସେକ୍ରେଟେରୀ ଅବନୀକାନ୍ତ ରାୟ, ଶିକ୍ଷା ମନ୍ତ୍ରୀ ପ୍ରଦୀପ୍ତ କିଶୋର ଦାସ। ସମସ୍ତେ ଯୋଗ୍ୟ, ସଚ୍ଚୋଟ ଓ କାର୍ଯ୍ୟଦକ୍ଷ ଅଫିସର। ଖୁବ୍ ଶୀଘ୍ର ମୋର ରାଜ୍ୟ ଶିକ୍ଷା ସର୍ଭେ ଅଫିସର ନିଯୁକ୍ତି ପ୍ରସଙ୍ଗ ସମାଧାନ ହୋଇଗଲା। ମୋ ଭାଗ୍ୟ ଭଲ ବିଧୁବାବୁଙ୍କ ଭଳି ଜଣେ ଦୃଢମନା ବ୍ୟକ୍ତି ଶିକ୍ଷା ନିର୍ଦ୍ଦେଶକ ଥିଲେ । ନ ହେଲେ ଜାଲିଆତିରେ ଅତି ପ୍ରବୀଣ ବ୍ରଜ ମୋହନ ଦାସଙ୍କ ଜାଲ କାଟିବା ସହଜ ହୋଇ ନଥାନ୍ତା। ମୋର ନିଯୁକ୍ତି ଏତେ ଶୀଘ୍ର ହୋଇଗଲା ଯେ ସେ ଅନ୍ୟ କିଛି କରିବାକୁ ସୁଯୋଗ ପାଇଲେ ନାହିଁ।



## ଚତୁର୍ଥ ଅଧ୍ୟାୟ

# ପ୍ରଥମ ଶ୍ରେଣୀ ଚାକିରି

## ୪.୧ ରାଜ୍ୟ ଶିକ୍ଷା ସର୍ଭେ ଅଫିସର

ରାଜ୍ୟ ଶିକ୍ଷା ସର୍ଭେ ଅଫିସର ଭାବରେ ମୁଁ ୬।୧୦।୧୯୭୮ ତାରିଖରେ ଯୋଗ ଦେଲି। ସେତେବେଳକୁ ଜିଲ୍ଲା ଶିକ୍ଷା ସର୍ଭେ ଅଫିସରମାନଙ୍କର ଟ୍ରେନିଂ ଶେଷ ହୋଇଯାଇଥାଏ। ସେମାନେ ଜିଲ୍ଲାସ୍ତରରେ ସବ୍‌ଇନ୍‌ସପେକ୍ଟରମାନଙ୍କୁ ଟ୍ରେନିଂ ଦେବା କଥା। ସେମାନଙ୍କ ଟ୍ରେନିଂ କାର୍ଯ୍ୟକ୍ରମରେ ମୁଁ ଯୋଗ ଦେବା ଦରକାର ହୋଇଥିବାରୁ ମୋତେ ପଚାରି ଟ୍ରେନିଂ ତାରିଖ ଧାର୍ଯ୍ୟ କରୁଥିଲେ। ଇତି ମଧ୍ୟରେ ଦୁଇଜଣ Statistical Investigator ଜଣେ ଗଣେଶ ଚନ୍ଦ୍ର ନାୟକ ଓ ଆଉ ଜଣେ ହରେକୃଷ୍ଣ ନନ୍ଦ, ଷ୍ଟେନୋ ଅବ୍‌ଦୁଲ ୱହିଦ୍ ଓ ଜଣେ ପିଅନ ଧୀରେନ୍ଦ୍ର ଦଳାଇ ନିଯୁକ୍ତ ହୋଇ ସାରିଥିଲେ।

ପ୍ରଥମ ଜିଲ୍ଲାସ୍ତରୀୟ ସର୍ଭେ ଟ୍ରେନିଂ କଳାହାଣ୍ଡିରେ ଆୟୋଜନ କରାଯାଇଥିବାରୁ ସେଠାକୁ ମୁଁ State Tranport bus ରେ ଗଲି। ବାଟରେ Accident ହେଲା। ସେଥିରେ ମୋର ଗୋଟାଏ ଦାନ୍ତ ଭାଙ୍ଗିଗଲା ଓ ଦେହହାତ ଖଣ୍ଡିଆ ଖାବରା ହୋଇଗଲା। ତଥାପି ମୁଁ ଟ୍ରେନିଂରେ ଯୋଗ ଦେଲି। ସେହିଦିନଠାରୁ ବସ୍‌ରେ ଯିବା ଆସିବା ନକରି ଗାଡି ବ୍ୟବସ୍ଥା କରିବା ପାଇଁ ଡି.ପି.ଆଇଙ୍କୁ ଅନୁରୋଧ କଲି। ତେଲ ଖର୍ଚ୍ଚ ପାଇଁ ଅର୍ଥ ବ୍ୟବସ୍ଥା ସର୍ଭେ ତରଫରୁ କରାଯାଇଥିଲା। NCERT ଯେଉଁ ଅନୁଦାନ ଦେଇଥିଲା ତାକୁ ସରକାରୀ ତହବିଲ୍‌ରେ ଜମା ଦେଇ ଆମେ ସରକାରଙ୍କଠାରୁ ଅର୍ଥ ମଞ୍ଜୁର କରାଉଥିଲୁ। ଡି.ପି.ଆଇ ଅଫିସରେ ଗୋଟେ ନୂଆ ଟ୍ରେକର କିଣା ହୋଇଥିଲା। କଟକରୁ ସେ ଗାଡି ଆଣିଲା ବେଳେ ତେଲ ନ ପକାଇବାରୁ ପ୍ରଥମରୁ ହଇରାଣ କରିବା ଆରମ୍ଭ କରିଦେଲା। ତେଣୁ କେହି ସେ ଗାଡି ନେବା ପାଇଁ ରାଜି ହେଉ ନ

ଥିଲେ। ଡି.ପି.ଆଇ ଅଫିସର Administrative Officer ଆମ ଉପରେ ବିଗିଡି ଯାଇଥିଲେ। କାରଣ ଆମେ ଡି.ପି.ଆଇଙ୍କୁ କହି ଗାଡି ବ୍ୟବସ୍ଥା କରିବାକୁ ତାଙ୍କୁ ବାଧ କରିଥିଲୁ। ସେ ରାଗରେ ଆମକୁ ହଇରାଣ କରିବାକୁ ସେଇ Defective ଗାଡିଟା ଦେଲେ । ଆମ ଭାଗ୍ୟ ଭଲ। ପ୍ରଥମେ ଦୁଇ ତିନି ଲିଟର ତେଲ ନଷ୍ଟ ହେବା ପରେ ସେ ଗାଡି ଖୁବ୍ ଭଲ ଚାଲିଲା।

ପ୍ରାୟ ସବୁ ଜିଲ୍ଲାରେ ଆମର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସର୍ଭେ ଟ୍ରେନିଂ ଶେଷ ହେଲା। ତାପରେ ତଥ୍ୟ ସଂଗ୍ରହ ଚାଲିଲା। ତଥ୍ୟ ଦେବେ ପ୍ରାଥମିକ ସ୍କୁଲ ଶିକ୍ଷକ। ତାକୁ ଚେକ୍ କରିବା ଦାୟିତ୍ୱ ସବ୍‌ଇନ୍ସପେକ୍ଟରଙ୍କର। ଏ ଉଭୟ ସ୍ତରରେ ଭୁଲ ରହିବାର ସମ୍ଭାବନା ଥିବା  ହେତୁ ତଥ୍ୟ ସଂଗ୍ରହ ସମୟରେ ଆମେମାନେ ନିରବିଚ୍ଛିନ୍ନ ଭାବେ ଦୁଇ ମାସ ପ୍ରତି ଜିଲ୍ଲାରେ ସ୍କୁଲ ଦେଖି ଛାତ୍ରଛାତ୍ରୀ ସଂଖ୍ୟା ଯେପରି ଭୁଲ ନ ହୁଏ ସେଥିପ୍ରତି ଦୃଷ୍ଟି ଦେଲୁ। ତଥାପି କିଛି ଭୁଲ ରହି ନଥିବ ତାହା କହି ହେବ ନାହିଁ। ଛାତ୍ରଛାତ୍ରୀ ସଂଖ୍ୟା ବଢାଇ ରିପୋର୍ଟ କରିବା ଆମ ଶିକ୍ଷକଙ୍କର ପୁରୁଣା ରୋଗ। ସେଥିପ୍ରତି ଯେତେ କଡା ବ୍ୟବସ୍ଥା ହେଲ ମଧ କିଛି ଅଧିକ ରିପୋର୍ଟ ମିଳିଥାଏ।

ତଥ୍ୟ ସଂଗ୍ରହ ପରେ ବ୍ଲକ ସ୍ତରୀୟ Tabulation । ସବ୍‌ଇନ୍ସପେକ୍ଟର ମାନଙ୍କୁ ବ୍ଲକ ସ୍ତର Tabulation ପାଇଁ ଟ୍ରେନିଂ ଦିଆଗଲା । ମୟୁରଭଞ୍ଜ ଜିଲ୍ଲାକୁ ଛାଡ଼ି ଅନ୍ୟ ଜିଲ୍ଲା ମାନଙ୍କରେ ଟ୍ରେନିଂ ସରିଗଲା। ସେତେବେଳେ ମୟୁରଭଞ୍ଜ ଜିଲ୍ଲାରେ ଗଜେନ୍ଦ୍ରନାଥ ଦାଶ ଇନିସ୍ପେକ୍ଟର ଥାନ୍ତି। ସେ ତୃତୀୟ ଶିକ୍ଷା ସର୍ଭେରେ ରାଜ୍ୟ ସର୍ଭେ ଅଫିସର ଥିଲେ। ମୁଁ ତାଙ୍କଠୁ ସର୍ଭେ ଶିଖିଛି। NCERT ଅଫିସରମାନେ ଟ୍ରେନିଂ ଦେଇଗଲା ପରେ Practical ଟ୍ରେନିଂ ମୁଁ ପାଇଥିଲି ଗଜେନ୍ଦ୍ରବାବୁଙ୍କଠାରୁ। ସେ ଯେତେବେଳେ ମୟୁରଭଞ୍ଜର ଇନିସ୍ପେକ୍ଟର ସେଠାରେ ସେ ସବୁ ପ୍ରକାର ବ୍ୟବସ୍ଥା କରିବେ ବୋଲି ମୋର ବିଶ୍ୱାସ ଥିଲା। କିନ୍ତୁ ଅନ୍ୟ ଜିଲ୍ଲାରେ ଜିଲ୍ଲାସ୍ତରୀୟ Tabulation ଶେଷ ହେଲା ବେଳକୁ ମୟୁରଭଞ୍ଜରେ କେଉଁଠି ତଥ୍ୟ ସଂଗ୍ରହ ବାକି ଅଛି ତ କେଉଁଠି Form Checking ଆରମ୍ଭ ହୋଇନାହିଁ। ଶେଷରେ ବାଧ ହୋଇ ମୁଁ ଓ Statistical Investigator ମାନେ ସେଠାରେ ୮ ଦିନ ରହି ସବୁ କାମ କଲୁ। ତା ନ ହୋଇଥିଲେ ରାଜ୍ୟ ସ୍ତରୀୟ Tabulation ଆରମ୍ଭ ହୋଇ ପାରିନଥାନ୍ତା।

ଆଉ ଗୋଟିଏ ସମସ୍ୟା ବହୁଳ ଜିଲ୍ଲା ହେଲା କୋରାପୁଟ। ସେଠାରେ ଜିଲ୍ଲା ଶିକ୍ଷା ସର୍ଭେ ଅଫିସର ମଠୁଆ। ସବୁ କାମରେ ଅବହେଳା । ସେଠାରେ ସ୍ୱତନ୍ତ୍ର ଦୃଷ୍ଟି ଦେଇ ତଥ୍ୟ ସଂଗ୍ରହ ଓ ବ୍ଲକସ୍ତରୀୟ Tabulation ଶେଷ କରିଥିଲୁ। ଜିଲ୍ଲାସ୍ତର Tabulation ପାଇଁ ସୁନାବେଡ଼ା ପ୍ରାଇମେରୀ ସ୍କୁଲରେ ଆମକୁ ଚାରିଦିନ ରହିବାକୁ ପଡିଲା । ବହୁ ଅସୁବିଧା ଭିତରେ କୋରାପୁଟ ଜିଲ୍ଲା Tabulation ଶେଷ ହେଲା। ଜିଲ୍ଲାରୁ ଜିଲ୍ଲା-ଟେବୁଲସବୁ ଆଣିଲା ବେଳେ ଭଲଭାବେ Scrutinise କରି ଆଣିବାକୁ ପଡେ। ଯଦି କେଉଁଠି ଭୁଲ ରହିଗଲା ପରେ ସଂଶୋଧନ କରିବା କଷ୍ଟକର।

ରାଜ୍ୟସ୍ତର Tabulation ପାଇଁ ଆମେ କୋଣାର୍କ ହାଇସ୍କୁଲକୁ ଠିକ୍ କଲୁ। ୧୯୭୯ ମସିହା ମେ ମାସ। ଗ୍ରୀଷ୍ମ ଛୁଟି, ଖରା ଦିନରେ ସମୁଦ୍ର କୂଳ ଜାଗା ହେଲେ ଟିକିଏ ଥଣ୍ଡା ହେବ। ଗ୍ରୀଷ୍ମ ଛୁଟି ଯୋଗୁଁ ସ୍କୁଲ ବନ୍ଦ ଥିବାରୁ ସବ୍‌ଇନ୍‌ସ୍ପେକ୍ଟର ମାନେ ସ୍କୁଲରେ ରହି ପାରିବେ। ସେଇ ଅନୁସାରେ ସବୁ ବ୍ୟବସ୍ଥା କରି କୋଣାର୍କ ହାଇସ୍କୁଲରେ ଶିବିର ସ୍ଥାପନ କଲୁ। ଖାଇବା ଖର୍ଚ୍ଚ କମ୍ କରିବା ପାଇଁ ଗାଁ ମାନଙ୍କରୁ ଚାଉଳ କିଣି ଆଣୁ। କୋଣାର୍କରେ ଚାଆଁରା ନାମରେ ଗୋଟିଏ ମୁହାଣ ମାଛ ମିଳେ। ସେଥିରୁ ପ୍ରତିଦିନ ଦୁଇକିଲୋ କିଣିଦେଉ। ରେଞ୍ଜରଙ୍କୁ କହି ଝାଉଁ କାଠ ଶସ୍ତାରେ କିଣୁ। ପ୍ରତିଦିନ ଭାତ, ଡାଲି, ମାଛ। ମିଲ୍ ଗୋଟାକୁ ଟଙ୍କାଟିଏ। ଏତେ ଶସ୍ତାରେ ଖାଦ୍ୟ ପେୟ ହୋଇଯିବାରୁ ସବ୍‌ଇନ୍‌ସ୍ପେକ୍ଟରମାନେ ଖୁସି। ସନ୍ଧ୍ୟା ବେଳେ ଘଣ୍ଟାଏ ଦୁଇଘଣ୍ଟା ମନ୍ଦିର ଆଡେ ସମସ୍ତେ ବୁଲି ଯାଆନ୍ତି। କେହି କେହି ବୁଲିବାକୁ ଚନ୍ଦ୍ରଭାଗା ସମୁଦ୍ର କୂଳକୁ ଯା'ନ୍ତି। ସମସ୍ତେ ଆନନ୍ଦରେ ଥା'ନ୍ତି। ଗଞ୍ଜାମ ଜିଲ୍ଲାର ସବ୍‌ଇନ୍‌ସ୍ପେକ୍ଟର ବେବର୍ତ୍ତା ଭାରି ମଜାଳିଆ କଥା କହି ସମସ୍ତଙ୍କର ମନୋରଞ୍ଜନ କରନ୍ତି। ତାଙ୍କର ମଜାଳିଆ କଥା ମୁଖତଃ ଚକ୍ରଧର ମିଶ୍ର ନାମକ ଜଣେ ଡି.ଆଇଙ୍କର ଉପାଖ୍ୟାନ। ସମସ୍ତେ ସେଠାରେ ଆନନ୍ଦରେ ଥିବାରୁ ଆମର କାମ ସହଜରେ ହୋଇଗଲା।

NCERT ରୁ S.K Gupta ଓ S.M. Bhargaba StateTable Scrutinise କରିବାକୁ ଆସିଥିଲେ। ସେମାନେ ପରୀକ୍ଷା ନୀରିକ୍ଷା କରି ସବୁ ଠିକ୍ ଅଛି ବୋଲି କହି State Table ଗୋଟାଏ Copy ନେଇ ଚାଲିଗଲେ। ଆମେ କୋଣାର୍କ ଶିବିର ସମାପ୍ତ କରି ଚାଲି ଆସିଲୁ।

ଆମେ ଆସି ଭୁବନେଶ୍ୱର ପହଞ୍ଚିଲାପରେ ସମସ୍ୟା ସୃଷ୍ଟି ହେଲା ଛାତ୍ରଛାତ୍ରୀ ସଂଖ୍ୟାକୁ ନେଇ। ଚତୁର୍ଥ ଶିକ୍ଷା ସର୍ଭେ ଅନୁଯାୟୀ ରାଜ୍ୟରେ ଛାତ୍ରଛାତ୍ରୀ ସଂଖ୍ୟା ହେଲା ୨୬,୧୧,୯୯୮ ବା ୨୬.୧୨ ଲକ୍ଷ। ଡି.ପି.ଆଇ ଅଫିସର ପରିସଂଖାନ ବିଭାଗ ଅନୁସାରେ ୧୯୭୭ -୧୯୭୮ ବର୍ଷରେ ଛାତ୍ରଛାତ୍ରୀ ସଂଖ୍ୟା ୨୬.୮୮ ଲକ୍ଷ। ବର୍ଷକୁ ଛାତ୍ରଛାତ୍ରୀ ସଂଖ୍ୟା ପ୍ରାୟ ୫୦ ହଜାର ବଢେ। ସେହି ଅନୁସାରେ ହିସାବ କଲେ ୧୯୭୮-୭୯ ବର୍ଷରେ ଛାତ୍ରଛାତ୍ରୀ ସଂଖ୍ୟା ୨୭.୩୮ ଲକ୍ଷ ହେବାର କଥା। କିନ୍ତୁ ସର୍ଭେ ଅନୁଯାୟୀ ଛାତ୍ରଛାତ୍ରୀ ସଂଖ୍ୟା ୧୯୭୮-୭୯ ବର୍ଷରେ ୨୬.୧୨ ଲକ୍ଷ, ଅର୍ଥାତ୍ ପରିସଂଖ୍ୟାନ ବିଭାଗ ରିପୋର୍ଟରେ ୧ ଲକ୍ଷ ୨୬ ହଜାର ଅଧିକ ଦର୍ଶାଯାଇଛି।

ବର୍ତ୍ତମାନ ପ୍ରଶ୍ନ ହେଲା ଓଡିଶାର ଛାତ୍ରଛାତ୍ରୀ ସଂଖ୍ୟା କେତେ ବୋଲି ରିପୋର୍ଟ କରାଯିବ। ପରିସଂଖ୍ୟାନ ବିଭାଗ ଅନୁଯାୟୀ ୨୭.୩୮ ଲକ୍ଷ ନା ସର୍ଭେ ଅନୁଯାୟୀ ୨୬.୧୨ ଲକ୍ଷ। ଏହି ବିବାଦ ଖୁବ୍ ତୀବ୍ର ଆକାର ଧାରଣ କଲା। କାରଣ ଯୋଜନା ଉପନିର୍ଦ୍ଦେଶକ ଧରଣୀଧର ଜେନା ପରିସଂଖ୍ୟାନ ବିଭାଗର ଉପରିସ୍ଥ ହାକିମ। ସେ ତାଙ୍କ ସଂଖ୍ୟା ଉପରେ ଜୋର ଦେଲେ। ଏ ପଟେ ସର୍ଭେରେ ମୁଁ ବହୁତ ପରିଶ୍ରମ କରି ସତ୍ୟର ନିକଟତର ତଥ୍ୟ ପାଇଛି ବୋଲି ମୋର ଧାରଣା।

ଏହି ସମୟରେ ଭାରତ ସରକାରଙ୍କ ଶିକ୍ଷା ସଚିବ ସାବାନାୟଗମ ଗୋଟିଏ ମିଟିଂ ଡକାଇଲେ ଦିଲ୍ଲୀରେ। ସବୁ ରାଜ୍ୟର ଶିକ୍ଷା ବିଭାଗ ପ୍ରତିନିଧି ମାନେ ଯୋଗ ଦେଇଥା'ନ୍ତି। ସାବାନାୟଗମ ପଚାରିଲେ, " ଯେଉଁ ସବ୍‌ଇନ୍‌ସ୍ପେକ୍ଟରମାନେ ପରିସଂଖ୍ୟାନ ବିଭାଗକୁ ଛାତ୍ରଛାତ୍ରୀନାମାଙ୍କ ସଂଖ୍ୟା ଦେଉଛନ୍ତି, ସେଇ ମାନେ ତ ସର୍ଭେକୁ ଦେଉଛନ୍ତି ! ତା ଭିତରେ ପାର୍ଥକ୍ୟ ରହୁଛି କାହିଁକି ? କେହି ଏ ପ୍ରଶ୍ନର ଉତ୍ତର ଦେଲେ ନାହିଁ। ମୁଁ ଉତ୍ତର ଦେଲି। ମୁଁ କହିଲି, " ପରିସଂଖ୍ୟାନ ବିଭାଗର ଅତୀତ ଅଛି ଓ ଭବିଷ୍ୟତ ମଧ୍ୟ ଅଛି। ଯଦି ଅତୀତରେ ଭୁଲକ୍ରମେ କିଏ ୫୦ କି ୬୦ ହଜାର ଅଧିକ ନାମାଙ୍କନ ରିପୋର୍ଟ କରିଦେଇଛି ବର୍ତ୍ତମାନ ତାକୁ ମିଶାଇ ରିପୋର୍ଟ କରାଯିବ ଓ ଭବିଷ୍ୟତରେ ମଧ୍ୟ ତାହା ମିଶୁଥିବ। ତା' ନହେଲେ ସେମାନଙ୍କୁ କୈଫିୟତ୍ ଦେବାକୁ ପଡିବ। ସର୍ଭେର ଅତୀତ ନଥିଲା କି ଭବିଷ୍ୟତ ନାହିଁ। ଏକ ନିର୍ଦ୍ଦିଷ୍ଟ ତାରିଖରେ (Date of reference) ଯାହା ନାମାଙ୍କନ ଥିଲା ତାହା ହିଁ ହିସାବକୁ ନିଆଯାଏ। ତେଣୁ ପାର୍ଥକ୍ୟ ନିଶ୍ଚୟ ଆସିବ।

ଏ ଯୁକ୍ତି ଶିକ୍ଷା ସଚିବ ଗହଣ କରି ସବୁ ରାଜ୍ୟକୁ ସର୍କୁଲାର କରିଦେଲେ। ଯଦି ପରିସଂଖ୍ୟାନ ଓ ସର୍ଭେର ନାମାଙ୍କନ ସଂଖ୍ୟା ମଧ୍ୟରେ ପାର୍ଥକ୍ୟ ଆସେ, ତା' ହେଲେ ସର୍ଭେର ନାମାଙ୍କନ ସଂଖ୍ୟା ଗୃହୀତ ହେବ - ପରିସଂଖ୍ୟାନର ନୁହେଁ। ଏତିକିରେ ଆମର ବିବାଦ ସମାଧାନ ହୋଇଗଲା। ସର୍ଭେ ତଥ୍ୟ କାଏମ୍ ରହିଲା।

ସର୍ଭେ କାର୍ଯ୍ୟ ଶେଷ ହେଲା। ମୋତେ ସ୍କୁଲ ଇନ୍ସପେକ୍ଟର ଭାବେ ବଦଳି କରିବାକୁ ଡି.ପି.ଆଇ ପ୍ରଫେସର ବିଧୁଭୂଷଣ ଦାସ ସରକାରଙ୍କୁ ପ୍ରସ୍ତାବ ଦେଲେ।ଇତି ମଧ୍ୟରେ ସେ ମୋତେ ଶରତ ଚନ୍ଦ୍ର ଦାଶଙ୍କ ସହ ମିଶି କୋରାପୁଟ ଜିଲ୍ଲା Profile ପ୍ରସ୍ତୁତ କରିବାକୁ କହିଲେ। T & R.W ବିଭାଗ ଅନୁଦାନରେ କୋରାପୁଟ Profile ପାଇଁ ତଥ୍ୟ ସଂଗ୍ରହ ଓ tabulation ପରେ ବହି ଛପା ହେଲା। ଓଡିଶାର ପୂର୍ବତନ ମୁଖ୍ୟ ସଚିବ ଶିବରମଣଙ୍କ ନିକଟକୁ କୋରାପୁଟ Profile ବହିରୁ ୩ ଖଣ୍ଡ ପଠାଇଦେଲୁ ତାଙ୍କର ମତାମତ ପାଇଁ ଓ ୧୫ ଖଣ୍ଡ ପଠାଇଲୁ ଭୂପିନ୍ଦର ସିଂଙ୍କ ନିକଟକୁ। କୋରାପୁଟ Profile ପ୍ରସ୍ତୁତ କରିବାରେ ଭୂପିନ୍ଦର ସିଂଙ୍କ ଅବଦାନ ବହୁତ ବେଶୀ। ସେ ଯେତେବେଳେ ଓଡିଶାର T & R.W ସଚିବ ଥିଲେ, ସେତେବେଳେ ଏହି Project ପାଇଁ ଅନୁଦାନ ଦେଇଥିଲେ। ଇତି ମଧ୍ୟରେ ସେ ଭାରତ ସରକାରଙ୍କ ସ୍ୱରାଷ୍ଟ୍ର ବିଭାଗର ଯୁଗ୍ମ ସଚିବ ବାବେ ବଦଳି ହୋଇ ଯାଇଥିଲେ। ତାଙ୍କ ଅଧୀନରେ କେନ୍ଦ୍ର ସରକାରଙ୍କ SC/ST Department ରହିଥିଲା। ୧୫ ଖଣ୍ଡ ବହି ପାଇଲା ପରେ ସେ ଆଉ ୩୦ ଖଣ୍ଡ ମଗାଇ ବିଭିନ୍ନ ରାଜ୍ୟକୁ ପଠାଇଲେ। ସେଇ ଆଦର୍ଶରେ ଅନ୍ୟ ରାଜ୍ୟରେ ଜିଲ୍ଲା Profile ପ୍ରସ୍ତୁତ କରିବାକୁ ନିର୍ଦ୍ଦେଶ ଦେଲେ।

କୋରାପୁଟ ଜିଲ୍ଲା Profile ସଫଳତାରେ ଉତ୍ସାହିତ ହୋଇ କେଉଁଝର ଜିଲ୍ଲା Profile ପାଇଁ ଉଦ୍ୟମ କରାଗଲା। କୋରାପୁଟ ଜିଲ୍ଲା Profile ପ୍ରସ୍ତୁତି ଅଭିଜ୍ଞତା କେଉଁଝର ଜିଲ୍ଲା Profile ପ୍ରସ୍ତୁତି ପାଇଁ ସାହାଯ୍ୟ କଲା। କେଉଁଝର Profile ପ୍ରସ୍ତୁତି ଅପେକ୍ଷାକୃତ ସହଜ ହେଲା। କାରଣ କେଉଁଝର ଛୋଟ ଜିଲ୍ଲା, ମାତ୍ର ୧୩ ଟି ବ୍ଲକ। ରାସ୍ତାଘାଟ ସୁବିଧା। ପ୍ରଶାସନିକ ସୁବିଧା Profile ପାଇଁ ସର୍ଭେ କାର୍ଯ୍ୟ ପରିଚାଳନା କରିବା ସୁବିଧାଜନକ ହେଲା। Profile ପ୍ରସ୍ତୁତିରେ ଏହା ଦ୍ୱିତୀୟ ଉଦ୍ୟମ ହୋଇଥିବାରୁ ପ୍ରଥମ Profile ପ୍ରସ୍ତୁତିର ଅଭିଜ୍ଞତା ଯଥେଷ୍ଟ ସାହାଯ୍ୟ କଲା। ଫଳରେ କେଉଁଝର Profile ଅଧିକ ତଥ୍ୟପୂର୍ଣ୍ଣ ଓ ଉଚ୍ଚମାନର ହେଲା।

## ୪.୨ ଓଡିଶା ଶିକ୍ଷା ବିଭାଗର ଘଡିସନ୍ଧି ସମୟ ୧୯୭୯-୮୦

ଓଡ଼ିଶା ଶାସନ ତଥା ଓଡିଶାର ଶିକ୍ଷା ବିଭାଗ ପାଇଁ ୧୯୭୯ ପ୍ରାନ୍ତଭାଗ ଠାରୁ ୧୯୮୦ ପ୍ରାରମ୍ଭ ଭାଗ ପର୍ଯ୍ୟନ୍ତ ଏକ ଘଡି ସନ୍ଧି ସମୟ। ୧୯୭୭ ମସିହାରେ ପ୍ରଧାନ ମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ଜରୁରୀକାଳୀନ ଶାସନ ବିରୁଦ୍ଧରେ ଜୟପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ଜନତା ଦଳ ଗଠିତ ହୋଇ ଦେଶସାରା ଆନ୍ଦୋଳନ ହେଲା। ଫଳରେ ୧୯୭୭ ନିର୍ବାଚନରେ କଂଗ୍ରେସ ଦଳକୁ ପରାସ୍ତ କରି ଜାତୀୟ ସ୍ତରରେ ମୋରାର୍‌ଜୀ ଦେଶାଇଙ୍କ ପ୍ରଧାନମନ୍ତ୍ରୀତ୍ୱରେ ଜନତା ଦଳ ସରକାର ଗଠିତ ହେଲା। ଓଡିଶା ରାଜ୍ୟ ସ୍ତରରେ ନୀଳମଣି ରାଉତରାୟଙ୍କ ମୁଖ୍ୟ ମନ୍ତ୍ରୀତ୍ୱରେ ଜନତା ଦଳ ସରକାର ଚାଲିଲା। ୨୬।୦୬।୧୯୭୭ ତାରିଖଠାରୁ ଅକ୍ଟୋବର ୧୯୭୯ ପର୍ଯ୍ୟନ୍ତ ଶାସନ ଠିକ୍ ଚାଲିଥିଲା। ତା ପରେ ଶାସନ ପ୍ରଭାବଶାଳୀ ରହିଲା ନାହିଁ। ବିଶେଷତଃ ଶିକ୍ଷା ବିଭାଗ ବିପର୍ଯ୍ୟୟର ସମ୍ମୁଖୀନ ହେଲା। ଜନତା ସରକାରଙ୍କ ଶିକ୍ଷା ଓ ସ୍ୱାସ୍ଥ୍ୟମନ୍ତ୍ରୀ ଥିଲେ ପ୍ରଦୀପ୍ତ କିଶୋର ଦାସ। ସେ ଜଣେ ସୁଦକ୍ଷ, ସଚ୍ଚୋଟ, ନିରଳସ, ଧୈର୍ଯ୍ୟଶୀଳ ମନ୍ତ୍ରୀ ଥିଲେ। ତାଙ୍କର ଏକ ସ୍ୱତନ୍ତ୍ର ଉଚ୍ଚ ବ୍ୟକ୍ତିତ୍ୱ ଥିଲା। ୨୫ । ୧୦ । ୧୯୭୯ ତାରିଖରେ ସେ ଇସ୍ତଫା ଦେଇ ଚାଲିଗଲେ। ତାଙ୍କ ସ୍ଥାନରେ ସେତେବେଳେ ରାଜସ୍ୱ ମନ୍ତ୍ରୀ ଥିବା ପ୍ରତାପ ଚନ୍ଦ୍ର ମହାନ୍ତି ଶିକ୍ଷାମନ୍ତ୍ରୀ ଭାବେ ଅତିରିକ୍ତ ଦାୟିତ୍ୱ ଗ୍ରହଣ କଲେ। ୧୯୮୦ ମସିହା ପ୍ରାରମ୍ଭରେ ପ୍ରଫେସର ବିଧୁଭୂଷଣ ଦାସ ଡି.ପି.ଆଇ ଚାକିରିରୁ ଅବସର ନେଲେ। ତାଙ୍କ ସ୍ଥାନରେ ଡକ୍ଟର ମହେନ୍ଦ୍ର କୁମାର ରାଉତ ଓ ଡକ୍ଟର ଶ୍ରୀନିବାସ ସାହୁ ସ୍ୱଳ୍ପକାଳ ପାଇଁ ଡି.ପି.ଆଇ ରହିଲେ। ଫଳରେ ଶିକ୍ଷାନୀତିର ଧାରା ବ୍ୟାହତ ହେଲା।

ଏହିପରି ଏକ ସମୟରେ ମୋର ରାଜ୍ୟ ଶିକ୍ଷା ସର୍ଭେ ଅଫିସର ପଦରୁ ବାଲେଶ୍ୱର ସ୍କୁଲ ଇନ୍‌ସ୍ପେକ୍ଟର ଭାବରେ ବଦଳି ପାଇଁ ଡି.ପି.ଆଇ ପ୍ରଫେସର ବିଧୁଭୂଷଣ ଦାସ ପ୍ରସ୍ତାବ ଦେଲେ। ପ୍ରସ୍ତାବ ମୁଖ୍ୟମନ୍ତ୍ରୀଙ୍କର ଅନୁମୋଦନ ଲାଭ କଲା। ଶିକ୍ଷାମନ୍ତ୍ରୀ ପ୍ରତାପ ଚନ୍ଦ୍ର ମହାନ୍ତି ମୁଖ୍ୟମନ୍ତ୍ରୀଙ୍କର ଅନୁମୋଦନ ଲାଭ କରିଥିବା ଫାଇଲଟିକୁ ମଗାଇ ନେଇ ତାଙ୍କ ପାଖରେ ରଖିଲେ ଓ ମୋତେ ଖବର ଦେଲେ ତାଙ୍କୁ ଭେଟିବାକୁ। ଭେଟିଲି। ସେ କହିଲେ ତାଙ୍କ Private Secretary କୁ ଦେଖା କରିବାକୁ। ଦେଖା କଲି। Private Secretary କହିଲେ, "

ତମେ କଟକ ଯାଇ ପ୍ରତାପବାବୁଙ୍କ ସ୍ତ୍ରୀଙ୍କୁ ଦେଖା କର।" ମୁଁ କହିଲି, " ତାଙ୍କୁ କାହିଁକି ଦେଖା କରିବି ?" ସେ ଠାରରେ ଦେଖାଇ ଦେଲେ ଦୁଇଟି ହାତରେ ୧୦ଟି ଆଙ୍ଗୁଳି। କହିଲେ, " ବୁଝିଲ, ଯାଅ" ମୁଁ ତାଙ୍କ ପାଖରୁ ଚାଲି ଆସିଲି।

ବିଧୁବାବୁ କଳାହାଣ୍ଡି ଗସ୍ତରୁ ଫେରିଲେ। ତାଙ୍କୁ ଯାଇ ଭେଟିଲି। ସେ ପଚାରିଲେ, " ବାଲେଶ୍ୱର ଯାଇ ନାହୁଁ କାହିଁକି ?" ମୁଁ କହିଲି , "କେମିତି ଯିବି ?, ନିଯୁକ୍ତି ପତ୍ର କାହିଁ ? ଶିକ୍ଷାମନ୍ତ୍ରୀଙ୍କ Private Secrtetary କହିଲେ ଦଶ ହଜାର ଟଙ୍କା ନେଇ ପ୍ରତାପବାବୁଙ୍କ ସ୍ତ୍ରୀଙ୍କୁ ଦେଇଆସିବାକୁ। ମୁଁ ବରଂ ଇନ୍ସପେକ୍ଟର ନ ହେବି, ଲାଞ୍ଚ ଦେଇ ଇନ୍ସପେକ୍ଟର ହେବି ନାହିଁ।" ବିଧୁବାବୁ କହିଲେ, ତୁ ମୁଖ୍ୟମନ୍ତ୍ରୀଙ୍କୁ ଭେଟି ପାରିବୁ ?" ମୁଁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଗଲି। ତାଙ୍କୁ ଭେଟିଲି। ସେ ପଚାରିଲେ , " ତମେ କିଏ ?" ମୁଁ କହିଲି , ବାଲେଶ୍ୱରରେ ଇନ୍ସପେକ୍ଟର ଭାବେ ଯାହାକୁ ନିଯୁକ୍ତି ଦେବା ପାଇଁ ଆପଣ ଆଦେଶ ଦେଇଛନ୍ତି ମୁଁ ସେଇ ପୂର୍ଣ୍ଣଚନ୍ଦ୍ର ରାଉତ।" ସେ କହିଲେ, " ତମେ ଯାଇ ପ୍ରତାପବାବୁଙ୍କୁ ଭେଟ" । ମୁଁ କହିଲି, "ମୁଁ ତାଙ୍କୁ ଭେଟି ପାରିବି ନାହିଁ। ମୋର ଟଙ୍କା ନାହିଁ। " ସେ ବିରକ୍ତ ହୋଇ କହିଲେ, " ତମକୁ କଥା କହି ଆସୁ ନାହିଁ।" ତା ପରେ ମୁଁ ପ୍ରତାପବାବୁଙ୍କୁ ଭେଟିବା କଥା, ତାଙ୍କ Private Secretary ଙ୍କ କଥା, ଟଙ୍କା କଥା କହିଲି। ଏହା ଶୁଣି ସେ କହିଲେ, ତମେ ଯାଅ ସାତଦିନ ଭିତରେ ଚାକିରୀରେ ଯୋଗ ଦେବ।"ସେ ଫାଇଲ ମଗାଇ ଆଣି ଆଦେଶ ଦେଲେ ମୁଁ ସାତଦିନ ଭିତରେ ଯୋଗ ଦେବାକୁ।

କିନ୍ତୁ ପ୍ରତାପବାବୁ ବୁଦ୍ଧିଆ ଲୋକ। ସେ ଭବାନୀପାଟଣା ହାଇସ୍କୁଲର ପ୍ରଧାନ ଶିକ୍ଷକ ସତ୍ୟ ପ୍ରସାଦ ମୁଣ୍ଡକୁ ଡକାଇ ପଚାରିଲେ, " ତମକୁ ପ୍ରମୋଶନ ଦିଆ ନଯାଇ Supersede କରାଯାଇଛି ବୋଲି ତମେ ହାଇକୋର୍ଟରେ କେଶ୍ କରିଛ ? ଯାଅ, Private Secretary ଙ୍କୁ ଭେଟ ? ସତ୍ୟ ପ୍ରସାଦ ମୁଣ୍ଡ Private Secretary ଙ୍କୁ ଭେଟିଲେ। ସେ ତାଙ୍କୁ ଟଙ୍କା ଆଣିବାକୁ କହିଲେ। ମୁଣ୍ଡ ଟଙ୍କା ଦେବାର ଚାରିଦିନ ମଧ୍ୟରେ ହାଇକୋର୍ଟ ଜଜ୍‌ମେଣ୍ଟ ବାହାରିଲା ଯେ ସେ ସ୍କୁଲ ଇନ୍ସପେକ୍ଟର ଭାବରେ ତୁରନ୍ତ ଯୋଗ ଦେବେ। ସେ ବାଲେଶ୍ୱର ଇନ୍ସପେକ୍ଟର ଭାବରେ ଯୋଗ ଦେଲେ।

ଓଡିଶା ମନ୍ତ୍ରୀମଣ୍ଡଳ ୧୯୮୦ ଫେବୃୟାରୀ ୧୭ ତାରିଖ ଦିନ ଭାଙ୍ଗିଲା। ପ୍ରତାପ ମହାନ୍ତି ମନ୍ତ୍ରୀ ପଦରୁ ଗଲେ। ଡି.ପି.ଆଇ ପ୍ରଫେସର ବିଧୁଭୂଷଣ ଦାସ

୩୦ । ୪ । ୧୯୮୦ ରେ ଚାକିରିରୁ ଅବସର ନେଲେ । ଡକ୍ଟର ମହେନ୍ଦ୍ର କୁମାର ରାଉତ ନୂଆ ଡି.ପି.ଆଇ ହୋଇ ଆସିଲେ । ସେ ମାତ୍ର ୧୪ ଦିନ ପରେ ବିଦାୟ ନେଲେ । ତାଙ୍କ ସ୍ଥାନରେ ଆସିଲେ ଡକ୍ଟର ଶ୍ରୀନିବାସ ସାହୁ । ତା ଭିତରେ ଓଡିଶାର ସାଧାରଣ ନିର୍ବାଚନ ହେଲା । ନିର୍ବାଚନରେ ମୋ ପୁଅ ଶରତ ରାଉତ କଂଗ୍ରେସ ଦଳରୁ ସୁକିନ୍ଦା ନିର୍ବାଚନ ମଣ୍ଡଳିରୁ ଲଢୁଥିଲା । ତା'ର ପ୍ରତିଦ୍ୱନ୍ଦୀ ଥିଲେ ମାୟାଧର ନାୟକ। (SUCI) ପ୍ରଫୁଲ୍ଲ ଘଡେଇ (ସ୍ୱାଧୀନ) ନିର୍ବାଚନରେ ମୋ ପୁଅ ଜିତିଲା । ସେ ନିର୍ବାଚନରେ ପ୍ରତାପ ମହାନ୍ତି ଲଢୁଥିଲେ ଜନତା ଦଳ ତରଫରୁ ସେ ପରାଜିତ ହେଲେ । ଜୁନ ମାସ ପର୍ଯ୍ୟନ୍ତ ଓଡିଶାର ସ୍ଥିତି ଅସ୍ଥିର ରହିଲା । ଜୁନ୍ ମାସରେ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ମୁଖ୍ୟ ମନ୍ତ୍ରୀତ୍ୱରେ ଓଡିଶାର ମନ୍ତ୍ରୀମଣ୍ଡଳ ଗଢାଗଲା । ଗଙ୍ଗାଧର ମହାପାତ୍ର ଓଡିଶାର ଶିକ୍ଷାମନ୍ତ୍ରୀ ହେଲେ ।

ସେତବେଳକୁ ମଦନ ମୋହନ ମିଶ୍ର ପୁରୀ ଶିକ୍ଷାମଣ୍ଡଳର ଇନିସ୍ପେକ୍ଟର ଥାନ୍ତି । ତାଙ୍କ କାମରେ ପୁରୀର ସାଧାରଣ ଲୋକ ତଥା ମନ୍ତ୍ରୀ ଗଙ୍ଗାଧର ମହାପାତ୍ର ଭୀଷଣ ଅସନ୍ତୁଷ୍ଟ ଥିଲେ । ପୁରୀ ସର୍କଲରୁ ତାଙ୍କୁ ହଟାଇବା ପାଇଁ ମନ୍ତ୍ରୀ ଚାହୁଁଥିଲେ ।

ଏହି ସମୟରେ ମୋର ଇନିସ୍ପେକ୍ଟର ଭାବରେ ବଦଳି ପାଇଁ ପୁଣି ଥରେ ଫାଇଲ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାଗଲା । ମୁଖମନ୍ତ୍ରୀ ଜାନକୀବାବୁ କହିଲେ ତାଙ୍କୁ ପଚାର ସେ କଳାହାଣ୍ଡି ଯିବାକୁ ରାଜି ଅଛନ୍ତି କି ? ମୋତେ ପଚରା ଯିବାରୁ ମୁଁ ରାଜି ହୋଇଗଲି । କାରଣ ପୂର୍ବରୁ ମୋର ଇନ୍ସପେକ୍ଟର ହେବାର ଅଭିଜ୍ଞତା ନଥିଲା । ଗୋଟେ ଛୋଟ ସର୍କଲରେ ଅଭିଜ୍ଞତା ହାସଲ କଲାପରେ ବଡ଼ ସର୍କଲ ପରିଚାଳନା କରିବା କଷ୍ଟକର ହେବ ନାହିଁ । ଦ୍ୱିତୀୟତଃ ବାଲେଶ୍ୱର ସର୍କଲରେ ଇନ୍ସପେକ୍ଟର ହୋଇ ସତ୍ୟ ପ୍ରସାଦ ମୁଣ୍ଡ ବ୍ୟସ୍ତ ହୋଇ ପଡିଲେଣି । ତାଙ୍କ ଘର କଳାହାଣ୍ଡିରେ । ମୁଁ କଳାହାଣ୍ଡିରେ ଯୋଗ ଦେଇ ସତ୍ୟ ପ୍ରସାଦ ମୁଣ୍ଡଙ୍କ ସହିତ Mutual Transfer କରିବାକୁ ଚାହିଁଲେ ସେ ତତ୍କ୍ଷଣାତ୍ ରାଜି ହୋଇଯିବେ । ତେଣୁ ମୁଁ କଳାହାଣ୍ଡି ଯିବା ପାଇଁ ରାଜି ହୋଇଗଲି । କିନ୍ତୁ ଶିକ୍ଷାମନ୍ତ୍ରୀ ଗଙ୍ଗାଧର ମହାପାତ୍ର ଜିଦ୍ ଧରିଲେ ମଦନବାବୁ ଯିବେ କଳାହାଣ୍ଡି ଓ ମୁଁ ଯିବି ପୁରୀ । ଶେଷରେ ମନ୍ତ୍ରୀଙ୍କ କଥା କାଏମ୍ ରହିଲା ଓ ମୋତେ ପୁରୀ ଶିକ୍ଷାମଣ୍ଡଳରେ ଇନିସ୍ପେକ୍ଟର ଭାବରେ ନିଯୁକ୍ତି ମିଳିଲା ।

## ୪.୩ ପୁରୀ ଶିକ୍ଷାମଣ୍ଡଳ ଇନିସ୍ପେକ୍ଟର

ନିଯୁକ୍ତି ପତ୍ର ଧରି ମୁଁ ୧୭ । ୯ । ୧୯୮୦ ତାରିଖରେ ପୁରୀ ଗଲି । ତା ପୂର୍ବଦିନ ଲକ୍ଷ୍ମୀ ପ୍ରଭାବତୀ ପ୍ରଧାନ ମୋ ବିରୁଦ୍ଧରେ ଗୋଟିଏ Writ Petition ହାଇକୋର୍ଟରେ ଦାଏର୍ କରିଥାନ୍ତି । ତାଙ୍କର କହିବା କଥା ହେଲା ଆମେ ସବୁ କଲେଜ Wing ଲୋକ ଏପରି ଇନିସ୍ପେକ୍ଟର ନିଯୁକ୍ତି ନେଇ ଗଲେ ସେମାନଙ୍କର (ସ୍କୁଲ ଶାଖା ଲୋକଙ୍କର) ପଦୋନ୍ନତି ସମ୍ଭାବନା ସଙ୍କୁଚିତ ହୋଇଯିବ । ଏଣୁ ପୂର୍ଣ୍ଣଚନ୍ଦ୍ର ରାଉତଙ୍କ ନିଯୁକ୍ତି ପତ୍ର ବାତିଲ୍ କରାଯାଉ । ସେଥିରେ ସେ ରହିତାଦେଶ (Stay order) ପାଇଁ ମଧ୍ୟ ପ୍ରାର୍ଥନା କରିଥିଲେ । ମକଦ୍ଦମାଟି ବିଚାର ପାଇଁ ଗୃହୀତ ହେଲା କିନ୍ତୁ ରହିତାଦେଶ ହେଲା ନାହିଁ । ତା ପରଦିନ ଅର୍ଥାତ୍ ୧୮ । ୯ । ୧୯୮୦ ତାରିଖରେ ସ୍କୁଲ ଶିକ୍ଷକ ଓ ପରିଦର୍ଶକ ସଂଘର ସଂପାଦକ ରୁଦ୍ର ନାରାୟଣ ମହାନ୍ତି ପୂର୍ବ ଦିନର Petition ରେ କେବଳ ନାଁ ବଦଳାଇ ପୁଣି ହାଇକୋର୍ଟରେ ଦାଖଲ କରି ରହିତାଦେଶ (Stay) ପାଇଁ ପ୍ରାର୍ଥନା କଲେ । ସେଥିରେ ସରକାରୀ ଓକିଲ ଯୁକ୍ତି କଲେ ଯେ ଗତକାଲି ଯେଉଁ Petition ରେ ମାନ୍ୟବର ହାଇକୋର୍ଟରହିତାଦେଶ ମନା କରି ଦେଇଛନ୍ତି, ଏ ସେଇ Petition କେବଳ ଦରଖାସ୍ତକାରୀଙ୍କ ନାମ ବଦଳା ଯାଇଛି । ରହିତାଦେଶ ହେଲା ନାହିଁ । ଦୁଇଥର Writ Petition ଦାଖଲ କରିବା ଓ କେଶ ପରିଚାଳନା କାର୍ଯ୍ୟ ପୁରୀର ତତ୍କାଳୀନ ଇନିସ୍ପେକ୍ଟର ମଦନ ମୋହନ ମିଶ୍ରଙ୍କ ପ୍ରରୋଚନାରେ କରାଯାଇଥିଲା । ସେ ମୋତେ ୧୭ ତାରିଖରେ ଦାୟିତ୍ୱ ହସ୍ତାନ୍ତର କଲେ ନାହିଁ । କାରଣ ତାଙ୍କର ବିଶ୍ୱାସ ଥିଲା ଯେ ରହିତାଦେଶ ମିଳିଯିବ । ମୁଁ ଯୋଗ ନ ଦେଇ ଫେରିଯିବି ଓ ସେ ଇନ୍ସପେକ୍ଟର ଭାବେ ରହିଯିବେ । କିନ୍ତୁ ତାଙ୍କ ଦୁର୍ଭାଗ୍ୟକୁ ଦ୍ୱିତୀୟ ଦିନ ବି ରହିତାଦେଶ ମିଳିଲା ନାହିଁ । ମୁଁ ୧୮ । ୯ ।୧୯୮୦ ତାରିଖରେ ପୁରୀର ଇନିସ୍ପେକ୍ଟର ଭାବରେ ଦାୟିତ୍ୱ ଗ୍ରହଣ କଲି । ପୁରୀ ଇନିସ୍ପେକ୍ଟର ଅଫିସ୍ ଲୋକେ ମୋତେ ଋହୁଁ ନଥିଲେ । କାରଣ ମଦନବାବୁଙ୍କ କାର୍ଯ୍ୟକାଳରେ ତାଙ୍କର ଭଲ ରୋଜଗାର ହେଉଥିଲା । ସେମାନେ କେଉଁଠୁ ଖବର ପାଇଲେ ସେ ପ୍ରକାର ରୋଜଗାର ମୁଁ ସେଠାରେ ଯୋଗ ଦେଲେ ହୋଇପାରିବ ନାହିଁ । କେବଳ ପୁରୀ ଇନିସ୍ପେକ୍ଟର ଅଫିସର Administrative Officer ହରିହର ମିଶ୍ର ମୋତେ ସମର୍ଥନ ଓ ସାହାଯ୍ୟ କରୁଥିଲେ ।

ମୋତେ ଇନିସ୍ପେକ୍ଟର ହେବା ସୁଯୋଗରୁ ବଞ୍ଚିତ କରିବା ପାଇଁ ୧୯୬୮ ମସିହାରେ Rationalization of Field Wing ନାଁରେ ଯେଉଁ କାରସାଦି କରାଯାଇଥିଲା ତା ଦ୍ୱାରା ମୁଁ ସିଧା ରାସ୍ତାରେ ଇନ୍ସ୍ପେକ୍ଟର ହୋଇ ପାରିଲି ନାହିଁ। କିନ୍ତୁ ଶେଷରେ ଦୀର୍ଘ ପଥ ଅତିକ୍ରମ କରି ସେଇ ଲକ୍ଷ୍ୟରେ ଯାଇ ପହଞ୍ଚିଲି। ମୋତେ ସବୁଦିନ ପାଇଁ ବଞ୍ଚିତ କରାଯାଇ ପାରିଲା ନାହିଁ। ମହତ୍ ଲକ୍ଷ୍ୟ ନେଇ ମହତ କାର୍ଯ୍ୟ କରାଯାଏ। ଲକ୍ଷ୍ୟ ମହତ ନ ହେଲେ ତା'ର ପରିଣାମ ଏହିପରି ହୁଏ।

ଇନିସ୍ପେକ୍ଟର ଭାବରେ ମୁଁ ମାଧ୍ୟମିକ ଶିକ୍ଷା ବୋର୍ଡର ନିୟମିତ ସଦସ୍ୟ ହେଲି। ସେପ୍ଟେମ୍ବର ମାସରେ ମୁଁ ଇନିସ୍ପେକ୍ଟର ଭାବରେ ଯୋଗ ଦେଲି। ଅକ୍ଟୋବର ମାସରେ ବୋର୍ଡର ସାଧାରଣ ସଭା ଅନୁଷ୍ଠିତ ହେଲା। ଯେତେବେଳେ ବୋର୍ଡରExecutive Committee କୁ ଦୁଇଜଣ ଇନିସ୍ପେକ୍ଟର ବାଛିବା ପ୍ରଶ୍ନ ଉଠିଲା ମୋ ସାଥୀମାନେ ମୋତେ ଅନୁରୋଧ କଲେ ସଦସ୍ୟ ହେବା ପାଇଁ - ମୁଁ ମନା କଲି। କାରଣ ନୂଆ ହୋଇ ମୁଁ ଇନିସ୍ପେକ୍ଟର ହୋଇଛି। ମୂଳ କାମକୁ ଅବହେଳା କରି ବୋର୍ଡ କାମରେ ସମୟ ବ୍ୟୟ କରିବାକୁ ଉଚିତ୍ ମନେ କଲି ନାହିଁ। ମୁଁ ନିଜେ ବାଲେଶ୍ୱର ଇନିସ୍ପେକ୍ଟର ଜଗନ୍ନାଥ ପଟ୍ଟନାୟକ ଓ କଟକ ଇନିସ୍ପେକ୍ଟର ଗୌରଚନ୍ଦ୍ର ଦାସ ଙ୍କ ନାଁ ପ୍ରସ୍ତାବ ଦେଲି ଓ ସେମାନେ ନିର୍ବାଚିତ ହୋଇଗଲେ। ପରେ ବୋର୍ଡର ସାଧାରଣ ସଦସ୍ୟ ମଧ୍ୟରୁ ଜଣେ ନିର୍ବାଚିତ ହେବାର ପ୍ରଶ୍ନ ଉଠିଲା। ଭୁବନେଶ୍ୱର ଛଅ ନମ୍ବର ଇଉନିଟ୍ ବାଳିକା ହାଇସ୍କୁଲ ଶିକ୍ଷୟିତ୍ରୀ ସୁପ୍ରଭା ରାୟ ମୋ ନାଁ ପ୍ରସ୍ତାବ ଦେଲେ। ରାଧାନାଥ ଟ୍ରେନିଂ କଲେଜର ପ୍ରିନ୍ସିପାଲ ବିବେକାନନ୍ଦ ପତି ବୋର୍ଡର Ex-Officio ଉପସଭାପତି ଥିଲେ। ଆମ ଭିତରେ ତିକ୍ତ ସଂପର୍କ ଆଗରୁ ଥିବାରୁ ସେ ଏ ପ୍ରସ୍ତାବର ବିରୋଧ କଲେ ଓ କହିଲେ, ଇନିସ୍ପେକ୍ଟରଙ୍କ Category ଅଲଗା ଏଇଟା ସାଧାରଣ ସଦସ୍ୟଙ୍କ ପାଇଁ ଉଦ୍ଦିଷ୍ଟ । ଇନ୍ସ୍ପେକ୍ଟର ଜଣେ ଏଥିପାଇଁ ବିଷ୍ଠର ପରିସରକୁ ଆସିପାରିବେ ନାହି।

ମୁଁ ନିଜେ କିଛି ସମୟ ପୂର୍ବରୁ Executive Committee ମେମ୍ବର ହେବାକୁ ମନା କରିଥିଲି। ଯେତେବେଳେ ବିବେକାନନ୍ଦ ପତି ଆମର ପୂର୍ବ ଶତ୍ରୁତା ଯେଗୁଁ ବିରୋଧ କଲେ ମୁଁ ଯୁକ୍ତି କଲି ଇନିସ୍ପେକ୍ଟର ବି ଜଣେ ବୋର୍ଡ ସଦସ୍ୟ। ସେ ପ୍ରତିଯୋଗିତା କରିପାରିବେ ନାହିଁ କାହିଁକି ? ସଭାପତି Ruling ଦେବା ପର୍ଯ୍ୟନ୍ତ କଥା ଗଲା। ମୁଁ କହିଲି, ସଭାପତି କହି ଦିଅନ୍ତୁ ମୁଁ ବୋର୍ଡର ସଦସ୍ୟ କି ନୁହେଁ । ସଭାପତି Ruling ଦେଲେ ପୂର୍ଣ୍ଣବାବୁ ବୋର୍ଡର ସଦସ୍ୟ

ହୋଇଥିବାରୁ ପ୍ରତିଯୋଗିତା କରିପାରିବେ। ଏହି ନିଷତ୍ତିରେ ବିବେକାନନ୍ଦ ବାବୁ ରାଗି ଯାଇ କହିଲେ, ପୂର୍ଣ୍ଣ ସହିତ ପ୍ରତିଯୋଗିତା କରିବାକୁ ମୁଁ ପ୍ରଫେସର କାହ୍ନୁଚରଣ ମିଶ୍ରଙ୍କ ନାଁ ପ୍ରସ୍ତାବ ଦେଉଛି। ଗୁପ୍ତ ଭୋଟ ସଂଗ୍ରହ କରାଗଲା। ମୋର ୨୮ ଖଣ୍ଡ ଓ କାହ୍ନୁଚରଣ ମିଶ୍ରଙ୍କର ୯ ଖଣ୍ଡ। ଜଣେ ସଦସ୍ୟ କହିଲେ ୯x ୩ + ୧ = ୨୮। କାହ୍ନୁବାବୁ କଣ ପ୍ରତିଯୋଗିତା କରିବେ।

ସେକେଣ୍ଡାରୀ ବୋର୍ଡ ଉପସଭାପତି ବିବେକାନନ୍ଦ ପତି ବୋର୍ଡ Executive କମିଟି ସଦସ୍ୟ। ମୁଁ ସେଠାକୁ ନିର୍ବାଚିତ ହୋଇଗଲି। ସେଠାରେ ପୁଣି ଭେଟା ଭେଟି। ନିର୍ବାଚନରେ ତାଙ୍କ ପ୍ରସ୍ତାବିତ ପ୍ରାର୍ଥୀ ହାରି ଯିବାରୁ ସେ ଭୀଷଣ ରାଗିଥାନ୍ତି। ମୁଁ ପ୍ରଥମ Executive Committee Meeting ରେ ଯୋଗ ଦେଇଥାଏ। ବୋର୍ଡର ଲାଇବ୍ରେରୀଆନ୍ ଲାଇବ୍ରେରୀର ଉନ୍ନତି ପାଇଁ ଗୋଟିଏ ପ୍ରସ୍ତାବ ଦେଇଥାନ୍ତି। ସେ ପ୍ରସ୍ତାବଟିକୁ ବିବେକାନନ୍ଦବାବୁ ପଢି ତଳକୁ ଫିଙ୍ଗି ଦେଲେ। ମୁଁ ସଭାପତିଙ୍କୁ କହିଲି, "ଏ ପ୍ରସ୍ତାବ Executive Committee ର ବିଚାର ପାଇଁ ଦିଆଯାଇଥିଲା ନା" ବ୍ୟକ୍ତିଗତ ଭାବରେ ଉପସଭାପତିଙ୍କୁ ଦିଆଯାଇଥିଲା ? ଯଦି କମିଟିକୁ ପ୍ରସ୍ତାବ ଆସିଥିଲା, କମିଟିର ବିଚାର ଆଲୋଚନା ପୂର୍ବରୁ ଉପସଭାପତିଙ୍କୁ କିଏ କ୍ଷମତା ଦେଲା ତଳକୁ ଫିଙ୍ଗିବାକୁ ? ବର୍ତ୍ତମାନ ତାକୁ ତଳୁ ଉଠାଇବ କିଏ ? "ସେ ନିଜେ ଉଠାଇ ଟେବୁଲ ଉପରେ ରଖନ୍ତୁ। " କିଛି ସମୟ ଗଲା। ସେ ଉଠାଇଲେ ନାହିଁ। ମୁଁ କହିଲି, " ସେ ପ୍ରସ୍ତାବ ତଳୁ ଉଠାଇ ଟେବୁଲରେ ନରଖିବା ପର୍ଯ୍ୟନ୍ତ ଅନ୍ୟ କିଛି ଆଲୋଚନା ହୋଇପାରିବ ନାହିଁ।" ସେ ବାଧ ହୋଇ ରାଗ ତମ୍‌ତମ୍ ହୋଇ ପ୍ରସ୍ତାବଟିକୁ ତଳୁ ଉଠାଇ ଟେବୁଲ ଉପରେ ରଖିଲେ।

ଇନିସ୍ପେକ୍ଟରର ଅଫିସ୍ କାମ ଆରମ୍ଭ କଲା ବେଳକୁ ଦେଖିଲି ବହୁତ ସମସ୍ୟା ଅସମାହିତ ହୋଇ ପଡି ରହିଛି। ଅନେକ ଫାଇଲ ପଡି ରହିଛି। କିରାଣୀମାନଙ୍କର Noting process ଠିକ୍ ନୁହେଁ। ଘଟଣା ବା ସମସ୍ୟାର ସଂପୂର୍ଣ୍ଣ ଚିତ୍ର ନ ଦେଇ ଠିକେ ଠିକେ ତାଙ୍କର ମତାମତ ଦେଇ ଫାଇଲ ପଠାଇ ଦେଉଛନ୍ତି। ସେ ସବୁ ବାଗେଇବାକୁ ବହୁତ ସମୟ ଲାଗିଲା। ମଦନବାବୁ କ୍ୱାଟର ନ ଛାଡିବାରୁ ଭୁବନେଶ୍ୱର ଯିବା ଆସିବା କଲି ପ୍ରାୟ ଦୁଇ ମାସ। ଶେଷକୁ Adult Education ଅଫିସରେ ଗୋଟିଏ ରୁମ୍‌ରେ ରହି ରାତିରେ କାମ କରିବାକୁ ପଡିଲା। ସବୁ କାମ Systematic କରିବାକୁ ଚେଷ୍ଟା କଲି। କିଛି ହେଲା, କିଛି ହେଲା

ନାହିଁ। ଯାହା ହେଲା ନାହିଁ ତାହା ସଂପୃକ୍ତ କିରାଣୀଙ୍କ ଅପାରଗତା ଯୋଗୁଁ ହେଲା ନାହିଁ। ଅଫିସରେ ଗୋଟିଏ ପୁରୁଣା ଟାଇପ୍ ମେସିନ୍। ଚିଠି ଟାଇପ୍ ନ ହୋଇ ପଡି ରହୁଛି। ତେଣୁ ତିନିଗୋଟି ନୂଆ ଟାଇପ୍ ମେସିନ୍, ନୂଆ ସାଇକ୍ଲୋଷ୍ଟାଇଲ୍ ମେସିନ୍ କିଣା ହୋଇ ଆସିଲା। ପ୍ରଶାସନିକ ଅଫିସର ହରିହର ମିଶ୍ର ଅବସର ନେଲେ। ତାଙ୍କ ସ୍ଥାନରେ ଓଡିଶା ସେକ୍ରେଟେରୀଏଟ୍ ସେବାରୁ ଗୋବିନ୍ଦ ଚନ୍ଦ୍ର ମିଶ୍ର ଯୋଗ ଦେଲେ। ଅଫିସ୍ କାମରେ କିଛି ଉନ୍ନତି ହେଲା।

ମୁଖ୍ୟ କାମ ସ୍କୁଲ ପରିଦର୍ଶନ ଗାଡି ଅଭାବରୁ ଅବହେଳିତ ହେଲା। Adult Education ର ଗୋଟିଏ ନୂଆ ଜିପ୍ କିଣା ହେଲା । ଯେତେବେଳେ ତାଙ୍କର କାମ ନଥାଏ ସେଇ ଜିପ୍ ନେଇ ସ୍କୁଲ ପରିଦର୍ଶନ କଲି। ଦେଖିଲି ଯେ ଆମ ଅଫିସ୍ ପାଇଁ ନୂଆ ଜିପ୍ କିଣା ହେବା ପାଇଁ ଟଙ୍କା ମଞ୍ଜୁର ହୋଇ ପଡିରହିଛି। ସେ ଟଙ୍କା ଉଠାଇ ନୂଆ ଜିପ୍ କିଣିଲି। ତା ପରେ ପରିଦର୍ଶନ କାମ ନିୟମିତ ଚାଲିଲା। ପ୍ରତି ସପ୍ତାହରେ ୪ । ୫ ଦିନ ମୁଁ ସ୍କୁଲ ପରିଦର୍ଶନରେ ଯାଏ। ରାତିରେ ଫେରି ଅଫିସ୍ ଫାଇଲ କାମ କରେ।

ରାଜ୍ୟ ଶିକ୍ଷା ସର୍ଭେ ଅଫିସର ଥିବା ସମୟରେ ଗୋଟିଏ Car କିଣିବା ପାଇଁ ମୋତେ ସରକାର ଋଣ ମଞ୍ଜୁର କରିଥିଲେ। ଏଠାରେ ଗୋଟିଏ ପୁରୁଣା FIAT Car କିଣି ତାକୁ ମଧ୍ୟ ପରିଦର୍ଶନ କାମରେ ଲଗାଇଲି।

ଦେଖିଲି ତିନିଗୋଟି ହାଇସ୍କୁଲର ସମସ୍ୟା ଅତ୍ୟନ୍ତ ଜଟିଳ ଓ ସେ ଗୁଡିକ ହେଲା, କଣାସ ହାଇସ୍କୁଲ, ଗଡବାଣୀ କିଲୋ ହାଇସ୍କୁଲ ଓ ରାଇଚକ୍ରଧରପୁର ହାଇସ୍କୁଲ, ପ୍ରଥମେ ଏଇ ତିନିଗୋଟି ସ୍କୁଲ ପ୍ରତି ଦୃଷ୍ଟି ଦେଲି।

## କଣାସ ହାଇସ୍କୁଲ- ବିପଦର ଦାଢରେ

କଣାସ ପ୍ରସିଦ୍ଧ ଜାଗା। କଣାସ ମଠ ମହନ୍ତ ହତ୍ୟା ପରେ କଣାସ ପ୍ରସିଦ୍ଧ ହୋଇଗଲା। ଲୋକେ ରାଜନୀତି ସଚେତନ। ବିଭିନ୍ନ ଦଳର ଲୋକ ଅଛନ୍ତି। କଥା କଥାକେ ବିବାଦ। ହାଇସ୍କୁଲ ପିଲାମାନେ ଷ୍ଟ୍ରାଇକ୍ କଲେ। କାରଣ ରାଜନୀତି ନୁହେଁ। ସ୍କୁଲର ପ୍ରଧାନ ଶିକ୍ଷକ ଗୋଟିଏ ଏକାଦଶ ଶ୍ରେଣୀ (ସେତେବେଳେ ହାଇସ୍କୁଲରେ ଏକାଦଶ ଶ୍ରେଣୀ ଥିଲା) ଝିଅର ଛାତିରେ ହାତ ଦେଇ ପେଲି ଦେଲେ। ସେତିକିରେ ଷ୍ଟ୍ରାଇକ୍ । ଖବର ପାଇ ମୁଁ ବାହାରିଲି ଯିବାକୁ। ଅଫିସରେ ସମସ୍ତେ ମୋତେ ମନା କଲେ ସେଠିକି ଯିବାକୁ। କହିଲେ ଏଇଠି ଥାଇ ଯାହା କରନ୍ତୁ। କିନ୍ତୁ ମୁଁ ଦେଖିଲି ଯେ ସେଠାକୁ ନ ଯାଇ କିଛି

ସମାଧାନ କରିହେବ ନାହିଁ। ତେଣୁ ସେଠାକୁ ମୁଁ ଗଲି । ଯାଇ ଦେଖିଲି ପିଲାମାନେ Slogan ଦେଇ ଶୋଭାଯାତ୍ରା କରି ଫେରୁଛନ୍ତି। ସ୍କୁଲରେ ଗୋଟିଏ ଶ୍ରେଣୀରେ ଦରି ପକାଇ ଆଲୋଚନା ପାଇଁ ପିଲାଙ୍କୁ ଡାକିଲି। ସେମାନେ ମୋ ହାତକୁ ଦାବି ପତ୍ର ଖଣ୍ଡିଏ ବଢାଇ ଦେଲେ। ଦେଖିଲି ପ୍ରଥମ ଦାବି ହେଉଛି, ସ୍କୁଲକୁ ସରକାରୀ କରାଯାଉ, ତାପରେ ପ୍ରଧାନ ଶିକ୍ଷକଙ୍କର ବଦଳି ହେଉ ଓ ଅନ୍ୟାନ୍ୟ ଅଭାବ ଅସୁବିଧା ପୂରଣ ହେଉ।

ମୁଁ ପିଲାଙ୍କୁ କହିଲି, ପ୍ରଥମ ଦାବି ମୋ ହାତର କଥା ନୁହେଁ। ତେବେ ମୁଁ ସରକାରଙ୍କୁ ସୁପାରିଶ କରିବି ସ୍କୁଲକୁ ସରକାର ହାତକୁ ନେବାକୁ। ପ୍ରଧାନ ଶିକ୍ଷକଙ୍କୁ ବଦଳି କରିବାକୁ ନିୟମ ନାହିଁ। ତଥାପି ମୁଁ ଚେଷ୍ଟା କରିବି। ଆଉ ସବୁ ଅଭାବ ଅସୁବିଧା ଧୀରେ ଧୀରେ ପୂରଣ ହେବ। ତମେମାନେ ସ୍କୁଲକୁ ନ ଆସି କାହିଁକି ପଢାପଢି କ୍ଷତି କରୁଛ ? ସେମାନେ ସ୍କୁଲକୁ ଆସିବାକୁ ରାଜି ହୋଇଗଲେ ଓ ତା ପରଦିନ ସ୍କୁଲକୁ ଆସିଲେ ମଧ୍ୟ । ଦିନକ ପରେ ପୁଣି ଷ୍ଟ୍ରାଇକ୍ । ଏଥର ରାଜନୀତି କାମକଲା। ପୁଣି ଥରେ ଗଲି। ପିଲାଙ୍କୁ ବୁଝାବୁଝି କରିଦେଲି ଓ ପ୍ରଧାନ ଶିକ୍ଷକଙ୍କୁ ଛୁଟିରେ ଯିବା ପାଇଁ କହିଲି। ପରିସ୍ଥିତି ଥଣ୍ଡା ପଡିଲେ ଆସିବେ ବୋଲି ତାଙ୍କୁ ପରାମର୍ଶ ଦେଲି। ସବୁ ସମସ୍ୟା ସମାଧାନ ହୋଇ ପାରିଲା ନାହିଁ। ଶେଷରେ ସ୍କୁଲ ପରିଚାଳନା ଭାର ଇନିସ୍ପେକ୍ଟର ଗ୍ରହଣ କରିବାକୁ ନିଷ୍ପତ୍ତି ହେଲା। ସ୍କୁଲର ସାଧାରଣ ଅବସ୍ଥା ଫେରି ଆସିଲା। ସେତେବେଳେ ମୋତେ କେହି କେହି କହିଲେ ସ୍କୁଲ ମ୍ୟାନେଜିଂ କମିଟିର ସେକ୍ରେଟେରୀ ଫକୀର ମୋହନ ହରିଚନ୍ଦନ। ସେ ଅସୁବିଧା ସୃଷ୍ଟି କରିବେ। ଫକୀରବାବୁ ସଂସ୍କୃତି ସଂପନ୍ନ ଲୋକ। ମୁଁ ସ୍କୁଲ ପରିଚାଳନା ଭାର ନେବା ପୂର୍ବରୁ ସେ ଆମ ଅଫିସକୁ ଆସି କହିଲେ, " ଆପଣ ସ୍କୁଲ ପରିଚାଳନା ଭାର ନିଅନ୍ତୁ, କିନ୍ତୁ ମୋତେ ଡାକିବେ ନାହିଁ।" ପରିଚାଳନା ସମିତିର ଦୁଇଜଣ ସଦସ୍ୟଙ୍କୁ ଡାକି ଦାୟିତ୍ୱ ଗ୍ରହଣ କରିବେ। ଶେଷରେ ତାହା ହିଁ ହେଲା। ତା ପରେ ସ୍କୁଲ ସୁରୁଖୁରୁରେ ଚାଲିଲା।

## ଗଡବାଣୀକିଲୋ ହାଇସ୍କୁଲ - ଗ୍ରାମବାସୀଙ୍କ ମହାନତା

ଗଡବାଣୀକିଲୋ ହାଇସ୍କୁଲର ପ୍ରଧାନ ଶିକ୍ଷକ ସ୍କୁଲର ଜଣେ ଛାତ୍ରୀ ପ୍ରତି ଅସଦାଚରଣ କରିବାରୁ ଗାଁ ଲୋକେ ଉତ୍କ୍ଷିପ୍ତ ହୋଇ ତାଙ୍କୁ ମାରିବାକୁ ଉଠିବାରୁ ସେ ଛୁଟି ନେଇ ଚାଲି ଯାଇଥାନ୍ତି। ଦୀର୍ଘଦିନ ଛୁଟିରେ ରହିବାରୁ ସମସ୍ୟା ସୃଷ୍ଟି ହେଲା। ସେ ପ୍ରଧାନ ଶିକ୍ଷକ ଭାବରେ ସେଠାରେ ଯୋଗ ଦେବା ପାଇଁ ମଝିରେ

ମଝିରେ ଆଦେଶ ଦିଆଯାଇଥିବାରୁ ଲୋକେ ବିବ୍ରତ। ଲୋକମାନେ ପ୍ରଧାନ ଶିକ୍ଷକଙ୍କୁ ସେଠାରେ ଯୋଗ ଦେବାକୁ ଦେଉନଥିବାରୁ ସେ ସ୍କୁଲ ପରିଚାଳନା ଦାୟିତ୍ୱ ଇନିସ୍ପେକ୍ଟର ନେବା ପାଇଁ ସରକାର ହୁକୁମ କଲେ। ମୁଁ ଗଲି ଓ ଲୋକମାନଙ୍କ ସହିତ ଆଲୋଚନା କଲି। ବୁଝିଲି ଯେ ଲୋକମାନେ ପ୍ରଧାନ ଶିକ୍ଷକଙ୍କ ଅପକର୍ମ ବିଷୟ ବାହାରେ ପ୍ରକାଶ କରିବାକୁ ନାରାଜ। ସେମାନେ କହିଲେ, " ଗୋଟିଏ ଝିଅର ଭବିଷ୍ୟତ ଅନ୍ଧାର ହୋଇଯିବ ଏ କଥା ପ୍ରଘଟ ହେଲେ। ତେଣୁ ଆମେ କୌଣସି ମତେ ସେ କଥା ଖୋଲିବୁ ନାହିଁ।" ମୁଁ କହିଲି, "ସେ କଥା ନ ଖୋଲିଲେ ପ୍ରଧାନ ଶିକ୍ଷକଙ୍କ ଭୁଲ ପ୍ରମାଣିତ ହେବ ନାହିଁ। ବାରମ୍ବାର ସରକାର ତାଙ୍କୁ ଏଠାରେ ଯୋଗ ଦେବା ପାଇଁ ହୁକୁମ ଦେଉଥିବେ"। ଲୋକମାନେ କହିଲେ, "ସରକାର ହୁକୁମ ଦେଉଥାନ୍ତୁ। ଆପଣ ପରିଚାଳନା ଭାର ନିଅନ୍ତୁ। କିନ୍ତୁ ପ୍ରଧାନ ଶିକ୍ଷକ ଏ ଗାଁ ମାଟି ମାଡି ପାରିବେ ନାହିଁ। ସେ ଆସିଲେ ଆମେ ଜୀବନରେ ମାରି ଦେବୁ। "ମୁଁ"ଦେଖିଲି ଲୋକଙ୍କର ଆବେଗ ଭିତ୍ତିହୀନ ନୁହେଁ। ମୁଁ ସ୍କୁଲ ପରିଚାଳନା ଭାର ନେଲି। ପ୍ରଧାନ ଶିକ୍ଷକ ସେଠାରେ ଯୋଗ ଦେବାକୁ ଆଦେଶ ଦେଲି। କିନ୍ତୁ ସେ ସେଠାକୁ ଯିବାର ପ୍ରଶ୍ନ ଉଠିଲା ନାହିଁ। ଯେତେବେଳେ ପ୍ରଧାନ ଶିକ୍ଷକମାନଙ୍କର ବଦଳି ଆଇନ୍ ପ୍ରବର୍ତ୍ତିତ ହେଲା ସେ ସମସ୍ୟା ସମାଧାନ ହେଲା।

## ରାଇଚକ୍ରଧରପୁର ହାଇସ୍କୁଲ - ପାଠର ଅହଂକାର

ରାଇଚକ୍ରଧରପୁର ହାଇସ୍କୁଲର ସମସ୍ୟା କିଛି ନଥିଲା। ଏକମାତ୍ର ସମସ୍ୟା ତାଙ୍କ ପ୍ରଧାନ ଶିକ୍ଷକଙ୍କ ଜିଦଖୋର୍ ମନୋବୃତ୍ତି। ତାଙ୍କ ପରିଚାଳନା ସମିତି ସଦସ୍ୟମାନେ ଭଦ୍ର, ବିବେକୀ ଓ ଧୀରସ୍ଥିର। ପ୍ରଧାନ ଶିକ୍ଷକ ପରିଚାଳନା ସମିତି ନିଷ୍ପତ୍ତି ମାନନ୍ତି ନାହିଁ। ମନମୁଖୀ କାର୍ଯ୍ୟ କରନ୍ତି। ମୁଁ ସେଠାକୁ ଯାଇ ପ୍ରଧାନଶିକ୍ଷକ ଓ ପରିଚାଳନା ସମିତି ସଦସ୍ୟଙ୍କୁ ଡକାଇ ଏକାଠି ଆଲୋଚନା କଲି। ପରିଚାଳନା ସମିତି ସଦସ୍ୟମାନେ ଯୁକ୍ତିଯୁକ୍ତ କଥା କହିଲେ। ପ୍ରଧାନ ଶିକ୍ଷକ ତାହା ମାନିବାକୁ ନାରାଜ। ପ୍ରଧାନ ଶିକ୍ଷକ କାହିଁକି ଯୁକ୍ତିଯୁକ୍ତ କଥା ମଧ୍ୟ ଗ୍ରହଣ କରୁ ନାହାନ୍ତି ମୁଁ ବୁଝି ପାରିଲି ନାହିଁ। ତାଙ୍କର ନିଜର ପାଠ ପାଇଁ ଗର୍ବ ଓ ଦୁର୍ବିନୀତ ମନୋଭାବ। ଶେଷରେ ପ୍ରଧାନ ଶିକ୍ଷକ ଛୁଟିରେ ରହିଲେ ଓ ସ୍କୁଲ ଚାଲିଲା।

ମୁଁ ମାଧ୍ୟମିକ ଶିକ୍ଷା ନିର୍ଦ୍ଦେଶକ ଡକ୍ଟର ଘନଶ୍ୟାମ ସାମଲ ଓ ଶିକ୍ଷାମନ୍ତ୍ରୀଙ୍କୁ କହିଲି, " ମତେ ଅନୁମତି ଦିଅନ୍ତୁ, ରାଇଚକ୍ରଧରପୁର, ଗଡବାଣୀକିଲୋ ଓ କଣାସ ହାଇସ୍କୁଲ ପ୍ରଧାନ ଶିକ୍ଷକମାନଙ୍କୁ ବଦଳି କରିଦେବାକୁ। ତା ହେଲେ ସବୁ ସମସ୍ୟା ସମାଧାନ ହୋଇଯିବ।" ସେ, କହିଲେ, "ଆଇନ୍ ନାହିଁ।" ଆଇନ ନଥିବା ଯୋଗୁ ତ ମୁଁ ଅନୁମତି ମାଗୁଥିଲି। ଏ ତିନୋଟି ଯାକ ସ୍କୁଲର ସମସ୍ୟା ପ୍ରଧାନ ଶିକ୍ଷକଙ୍କ ବଦଳି ଆଇନ୍ ହେବା ପର୍ଯ୍ୟନ୍ତ ଅସମାହିତ ରହିଲା।

## ଗୋବିନ୍ଦପୁର ହାଇସ୍କୁଲ - ବ୍ୟୁହଭେଦ

ନୟାଗଡର ଉତ୍ତରକୁ ପାଞ୍ଚ କିଲୋମିଟର ଦୂରରେ ଗୋବିନ୍ଦପୁର ଅବସ୍ଥିତ। ଖବର ମିଳିଲା ଯେ ସେ ହାଇସ୍କୁଲରେ ଷ୍ଟ୍ରାଇକ୍ ହୋଇଛି। ଗୋବିନ୍ଦପୁର ଠାରୁ ଅଳ୍ପ ଦୂର ଖଳିସାହିକୁ ଶିକ୍ଷାମନ୍ତ୍ରୀ ଗଙ୍ଗାଧର ମହାପାତ୍ରଙ୍କର ଯିବାର କାର୍ଯ୍ୟକ୍ରମ ଥାଏ। ମୁଁ ପୁରୀରୁ ଗୋବିନ୍ଦପୁର ବାଟ ଦେଇ ଖଳିସାହିକୁ ଯିବାକୁ ବାହାରିଲି। ସେହି ଅନୁସାରେ ମୋର କାର୍ଯ୍ୟକ୍ରମ ସ୍ଥିର ହୋଇଥାଏ। ଗୋବିନ୍ଦପୁରରେ ପହଞ୍ଚି ହାଇସ୍କୁଲର ଶିକ୍ଷକ, ପରିଚାଳନା ସମିତି ସଦସ୍ୟ ଓ ଗ୍ରାମବାସୀଙ୍କୁ ଡକାଇ ଷ୍ଟ୍ରାଇକ୍ର କାରଣ ବିଷୟରେ ଅନୁସନ୍ଧାନ କଲି। ସମସ୍ତେ ପ୍ରଧାନ ଶିକ୍ଷକ ତ୍ରିନାଥ ରଥଙ୍କ ବିରୁଦ୍ଧରେ କହିଲେ। ସେ ଦିନ ସନ୍ଧ୍ୟାରେ ମନ୍ତ୍ରୀଙ୍କ ପ୍ରୋଗ୍ରାମ ଥାଏ। ଡେରି ହୋଇଯିବାରୁ ତଦନ୍ତକାମ ଅଧାରଖି ଯିବାକୁ ବାହାରିଲି ଓ କହିଲି, " ଆଉ ଦିନେ ଆସି ସବୁ କଥା ବୁଝିବା" ଗଲାବେଳେ ପ୍ରଧାନ ଶିକ୍ଷକଙ୍କୁ ଡାକି ଏକୁଟିଆ ପଚାରିଲି, " ତମ ବିରୁଦ୍ଧରେ ସମସ୍ତେ କାହିଁକି କହୁଛନ୍ତି। " ସେ, କହିଲେ, " ମୋ ବିରୁଦ୍ଧରେ ଯେଉଁ ଆପତ୍ତି କରୁଛନ୍ତି ସବୁ ସତ। ଆଜିକୁ ବାରବର୍ଷ ତଳେ ସ୍କୁଲର ଘର ନଥିଲା। ମୁଁ ଡି.ପି.ଆଇ ଅଫିସରେ ହଜାରେ ଟଙ୍କା ଲାଞ୍ଚ ଦେଇ ୧୨୦୦୦ ଟଙ୍କା ଘର ତିଆରି ଗ୍ରାଣ୍ଟ ଆଣିଲି। ଯେଉଁ ହଜାରେ ଟଙ୍କା ଲାଞ୍ଚ ଦେଲି, ସେଥିପାଇଁ ମିଥ୍ୟା ଭାଉଚର କରି ହିସାବ ଦେଲି। ବର୍ତ୍ତମାନ ସେଇ ଭାଉଚରକୁ ମୂଳ କରି ମୋ ବିରୁଦ୍ଧରେ ଅଭିଯାନ ଚାଲିଛି। ସ୍କୁଲର ବରିଷ୍ଠ ସହକାରୀ ଶିକ୍ଷକ ପିଲାଙ୍କୁ ମତାଇ ଷ୍ଟ୍ରାଇକ୍ କରାଇଛନ୍ତି ଓ ପରିଚାଳନା ସମିତି ସଦସ୍ୟଙ୍କୁ ମଧ୍ୟ ମୋ ବିରୁଦ୍ଧରେ ମତାଇ ଦେଇଛନ୍ତି। " ମୁଁ ପୁଣି ପଚାରିଲି, ଗାଁ ଲୋକେ କାହିଁକି ତମ ବିରୁଦ୍ଧରେ କହୁଛନ୍ତି ? ସେ କହିଲେ, ଗାଁ ଲୋକଙ୍କର କାହର ଜମିବାଡି ଗୋଳମାଳ ତ ଆଉ କାହାର ଘରୋଇ ବିରୋଧ ଏଥିପାଇଁ

କହୁଛନ୍ତି । ସାଧାରଣ ଗାଁ ଲୋକମାନେ ଏଥିରେ ସାମିଲ ନାହାନ୍ତି ।" ଏ ସବୁ ପଛରେ ସ୍ଥାନୀୟ ସରପଞ୍ଚ ରହିଛି ।" ସବୁ ଶୁଣି ଖଳିସାହି ଚାଲିଗଲି । ମନ୍ତ୍ରୀଙ୍କ ସଭାରେ ଯୋଗ ଦେଇ ପୁରୀ ଫେରିଲି ।

ସାତଦିନ ପରେ ଗୋବିନ୍ଦପୁର ହାଇସ୍କୁଲ ତଦନ୍ତ କାର୍ଯ୍ୟ ସଂପୂର୍ଣ୍ଣ କରିବାକୁ ଗଲି । ନୟାଗଡ ଡି.ଆଇ ଅଫିସରେ ତଦନ୍ତ କାର୍ଯ୍ୟ ହେବାକୁ ନୋଟିସ୍ ଦେଲି ଓ ସେଠାକୁ ସ୍କୁଲର ପରିଚାଳନା ସମିତି ସଦସ୍ୟ, ସ୍କୁଲର ଶିକ୍ଷକ ତଥା ପ୍ରଧାନ ଶିକ୍ଷକ ଓ ଅନ୍ୟାନ୍ୟ ଷ୍ଟାଫ୍ ମେମ୍ବରମାନେ ଆସିବାକୁ କୁହାଯାଇଥିଲା । ଦେଖିଲି ଗୋବିନ୍ଦପୁର ହାଇସ୍କୁଲର ପ୍ରାୟ ୫୦ ଜଣ ପିଲା ଆସି ଝରକା ପାଖରେ ଠିଆ ହୋଇଛନ୍ତି । ଡି.ଆଇଙ୍କୁ କହିଲି ଦୁଇଜଣ ପିଅନ ପଠାଇ ଦିଅନ୍ତୁ । ଏ ପିଲାଙ୍କ ଭିତରୁ ଚାରିଜଣଙ୍କୁ ମାଡି ବସିବେ । ଏ କଥା ଶୁଣି ପିଲାମାନେ ବିଲ ଭିତରେ ତାଙ୍କ ଗାଁକୁ ଦୌଡିଲେ । ଗୋବିନ୍ଦପୁର ସରପଞ୍ଚ ଯିଏ ଗଣ୍ଡଗୋଳର ସୂତ୍ରଧର ସେ ଆସି ବାହାରେ ବୁଲୁଛନ୍ତି । ପରିଚାଳନା ସମିତି ସଭ୍ୟମାନେ ତାଙ୍କୁ ତଦନ୍ତକୁ ଡାକିବାକୁ କହିଲେ । ମୁଁ ମନାକଲି, " କହିଲି ତାଙ୍କର ଏଠି କିଛି କାମ ନାହିଁ ।" ତା ପରେ ତଦନ୍ତ ଆରମ୍ଭ ହେଲା

ପ୍ରଥମ କଥା ହେଲା, Test ପରୀକ୍ଷା ପରିଚାଳନାରେ ପ୍ରଧାନ ଶିକ୍ଷକ ଏକୁଟିଆ ସବୁ କାମ କରିଥିଲେ । ସହକାରୀ ଶିକ୍ଷକମାନେ ସହଯୋଗ କରି ନଥିଲେ । ତାଙ୍କୁ ପଚାରିଲି, " କାହିଁକି ସହଯୋଗ କଲେ ନାହିଁ ।" ସେମାନେ କହିଲେ,"ଆମକୁ ନୋଟିସ୍ ଦିଆଯାଇ ନଥିଲା ।" ପ୍ରଧାନ ଶିକ୍ଷକ କହିଲେ, " ପିଅନ ହାତରେ ମୁଁ ନୋଟିସ୍ ପଠାଇଥିଲି ।" ପିଅନ କହିଲା, "ପ୍ରଧାନ ଶିକ୍ଷକ ନୋଟିସ୍ ଲେଖି ଟେବୁଲ୍ ଉପରେ ରଖିଦେଲେ । ମୋତେ ନେବାକୁ କହି ନାହାଁନ୍ତି ।" ମୁଁ କହିଲି, "ତୁ ଜାଣିଥିଲୁ ନା ନୋଟିସ୍ ଲେଖା ହୋଇଥିଲା ବୋଲି ?" "ସେ କହିଲା, ହଁ ଜାଣିଥିଲି" ।

ତାପରେ ମୁଁ କହିଲି, " ଏଥିରେ ପ୍ରଧାନ ଶିକ୍ଷକଙ୍କର ଭୁଲ । କାରଣ ଏଭଳି ପିଅନକୁ ସେ ଆଜି ପର୍ଯ୍ୟନ୍ତ ଚାକିରିରେ ରଖିଛନ୍ତି ।" ସେ ପିଅନକୁ କହିଲି, " ବର୍ତ୍ତମାନଠାରୁ ତୋ ଚାକିରି ଗଲା । ତୁ ଏଠାରୁ ବାହାରି ଯା । ସେ ନଯିବାରୁ ଡି.ଆଇ ଅଫିସ ପିଅନକୁ କହିଲି ତାକୁ ଘୋଷାରି ବାହାର କରି ଦେବାକୁ ।"

ତା ପରେ ପରିଚାଳନା ସମିତି ସଦସ୍ୟମାନଙ୍କୁ ପଚାରିଲି, " ସ୍କୁଲ ଘର ତିଆରି ପାଇଁ ଟଙ୍କା କେଉଁଠୁ ଆସିଲା ? "ସେମାନେ କହିଲେ, ଡି.ପି.ଆଇ ଅଫିସରୁ ଗ୍ରାଣ୍ଟ ମିଳିଲା।" ମୁଁ ପଚାରିଲି ଗ୍ରାଣ୍ଟ ମିଳିବା ପାଇଁ କେତେ ଖର୍ଚ୍ଚ ହେଲା ?" ସେମାନେ କହିଲେ, " ଆମେ କହି ପାରିବୁ ନାହିଁ , ହେଡମାଷ୍ଟ୍ରେ ଜାଣନ୍ତି। ପ୍ରଧାନ ଶିକ୍ଷକ କହିଲେ, "ହଜାରେ ଟଙ୍କା" ମୁଁ କହିଲି, ହଜାରେ ଟଙ୍କା କିଏ ଦେଲା ?" ଶେଷରେ ପ୍ରମାଣିତ ହେଲା ଟଙ୍କା କେହି ଦେଇ ନାହାନ୍ତି। ପ୍ରଧାନ ଶିକ୍ଷକ ମିଥ୍ୟା ଭାଉଚର ଦେଇ ଟଙ୍କା ଦେଇଛନ୍ତି। ମୁଁ କହିଲି, " ଆପଣମାନେ ପରିଚାଳନା ସମିତି ସଦସ୍ୟ। ଆପଣ ଜାଣନ୍ତି ନାହି ଡି.ପି.ଆଇ ଅଫିସରୁ ଟଙ୍କା କେମିତି ଆସିଲା।.ପ୍ରଧାନ ଶିକ୍ଷକ ନିଶ୍ଚୟ ଆପଣମାନଙ୍କୁ କହିଥିବେ। ଏବେ ଆପଣ କହୁଛନ୍ତି "ଜାଣନ୍ତି ନାହିଁ"।

ଶେଷରେ ମୁଁ କହିଲି, "ଆପଣଙ୍କ ସ୍କୁଲ ଉଠିଯିବ।" ସମିତି ସଦସ୍ୟମାନେ କହିଲେ କାହିଁକି ? ମୁଁ କହିଲି ଆପଣଙ୍କର ସ୍କୁଲ କାହିଁ। ପିଲାମାନେ ପାଠ ପଢିବାକୁ ଆସୁନାହାନ୍ତି ଆପଣମାନଙ୍କ ପ୍ରରୋଚନାରେ । ସେମାନଙ୍କର ଷ୍ଟ୍ରାଇକ୍ କରିବାର କାରଣ କ'ଣ ? ଶିକ୍ଷକମାନେ ପାଠ ପଢାଉ ନାହାନ୍ତି। ପ୍ରଧାନ ଶିକ୍ଷକ ତାଙ୍କ କର୍ତ୍ତବ୍ୟ କରିବାକୁ ଆପଣମାନେ ଦେଉ ନାହାନ୍ତି। ସର୍ବୋପରି ଆପଣମାନଙ୍କର କାମ ସ୍କୁଲ ପରିଚାଳନା କରିବା। ଆପଣମାନେ ସ୍କୁଲ ପରିଚାଳନା କରୁ ନାହାନ୍ତି। ସ୍କୁଲ ରହିଲା କେଉଁଠି ? ପାଖ ଗାଁ ଲୋକେ ମୋତେ କେତେଥର କହିଲେଣି, ଆପଣମାନଙ୍କର ସ୍କୁଲ ପରିଚାଳନା ଠିକ୍ ହେଉ ନାହିଁ। ସେମାନେ ଘର ଯୋଗାଇ ଦେବାକୁ ପ୍ରସ୍ତୁତ । ସେଇଠାକୁ ଏ ସ୍କୁଲକୁ ଉଠାଇ ଦେବା। ପାଖ ଗାଁ ତ । ଗୋବିନ୍ଦପୁର ପିଲାମାନେ ସେଠାରେ ପଢିବାରେ କିଛି ଅସୁବିଧା ହେବ ନାହିଁ।

ଏ କଥା ଶୁଣି ପରିଚାଳନା ସମିତି ସଦସ୍ୟମାନଙ୍କର ମୁଣ୍ଡଘୂରି ଗଲା। ସେମାନେ ମୋତେ କହିଲେ, ଆମକୁ ଅଧ ଘଣ୍ଟା ସମୟ ଦିଅନ୍ତୁ। ଆମେ ଟିକିଏ ବାହାରୁ ଆସୁ।" ମୁଁ କହିଲି, ହଉ ଯାଆନ୍ତୁ।" ବାହାରକୁ ଯାଇ ସରପଞ୍ଚ ଉପରେ ଗାଳି ବର୍ଷଣ କଲେ। କହିଲେ, " ତୁମ ବୁଦ୍ଧିରେ ଆମେ ବୁଡିଗଲୁ।" ଇନିସ୍ପେକ୍ଟର ସ୍କୁଲ ଉଠାଇ ଦେବା କଥା କହିଲେଣି। ତାପରେ ସମସ୍ତେ ଧରାଧରି ହୋଇ ପରସ୍ପରକୁ ଦୋଷ କ୍ଷମା ମାଗି ମିଳିଗଲେ। ମୋତେ ଆସି କହିଲେ, ଆଜ୍ଞା, ଆମର ଆଉ କିଛି ଗୋଳମାଳ ନାହିଁ। ଆମେ ମିଳିମିଶି ଗଲୁ। କାଲିଠାରୁ ସ୍କୁଲ

ଯଥାରୀତି ଚାଲିବ। ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ସେ ସ୍କୁଲରେ କେବେ ଗୋଳମାଳ ହୋଇ ନାହିଁ। ବରିଷ୍ଠ ସହକାରୀ ଶିକ୍ଷକଙ୍କ ହେଡମାଷ୍ଟର ହେବା ସ୍ୱପ୍ନ ଧୂଳିସାତ୍ ହୋଇଗଲା।

## ଦର୍ପନାରାୟଣପୁର ହାଇସ୍କୁଲ

ପରୀର ପୂର୍ବତନ ପାର୍ଲିଆମେଣ୍ଟ ସଦସ୍ୟ ପଦ୍ମନାଭ ସାମନ୍ତସିଂହାର ଦିନେ ଆମ ଅଫିସରେ ଆସି କହିଲେ, " ଦର୍ପନାରାୟଣପୁର ହାଇସ୍କୁଲ ପିଲାମାନେ ଷ୍ଟ୍ରାଇକ୍ କରିଛନ୍ତି। ତାଙ୍କ କଥା ବୁଝାବିଝି କରି ସେ ସ୍କୁଲ ଚାଲିବାର ବ୍ୟବସ୍ଥା କରନ୍ତୁ।"ମୁଁ କହିଲି, " କାହିଁକି ଷ୍ଟ୍ରାଇକ୍ କରିଛନ୍ତି ? ଆପଣ ଯାଇଥିଲେ ବୁଝାବୁଝି କରି ଦେଲେ ନାହିଁ ? ଠିକ୍ ଅଛି ମୁଁ ଯିବି।"

ମୁଁ ଦର୍ପନାରାୟଣପୁର ବାହାରିଲି। ଆମ ଅଫିସ୍ ଲୋକମାନେ କହିଲେ, ଦର୍ପନାରାୟଣପୁର କମ୍ୟୁନିଷ୍ଟ ଜାଗା।ଟିକିଏ ସାବଧାନରେ କାରବାର କରିବେ। ମୁଁ ଗଲି, ସେଠାରେ ପହଞ୍ଚିଲା ବେଳକୁ ଦୁଇଜଣ ଶିକ୍ଷକ ସ୍କୁଲରେ ଥିଲେ। ଜିପ୍ ଶବ୍ଦ ଶୁଣି ସାଇକେଲ୍ ଧରି ଚାଲିଗଲେ। ମୁଁ ଅସୁବିଧାରେ ପଡିଲି। ସ୍କୁଲ ସେକ୍ରେଟେରୀଙ୍କୁ ଡକାଇ ଦୁଇ ଚାରିଟା ବେଞ୍ଚ ଓ ଗୋଟିଏ ଚେୟାର ବାହାର କରାଇ ବାହାରେ ପକାଇଲି। ଲୋକମାନେ ରୁଣ୍ଡ ହୋଇଗଲେ। ମୁଁ ତାଙ୍କୁ କହିଲି, " କିଛି ପିଲାଙ୍କୁ ଡକାଇ ଦିଅନ୍ତୁ।" ପିଲା ଆଠ ଦଶଟି ଆସିଲେ। ମୁଁ ତାଙ୍କୁ ଷ୍ଟ୍ରାଇକ୍ର କାରଣ ପଚାରିଲି। ସେ କହିଲେ, " ହେଡମାଷ୍ଟର ଆମଠାରୁ ୨୫୯ ଟଙ୍କା ଅଧିକ ପରୀକ୍ଷା ଫିସ୍ ନେଇ ଯାଇଛନ୍ତି।" ମୁଁ ତାଙ୍କୁ କହିଲି "ଯଦି କାଲି ତମ ଟଙ୍କା ଫେରି ପାଇବ, ପହରଦିନଠାରୁ ସ୍କୁଲକୁ ଆସିବ ?" ସୋମନେ ହଁ କଲେ। ପିଲାମାନେ ଚାଲିଗଲେ।

ସାଧାରଣ ଲୋକେ କହିଲେ, "ହେଡମାଷ୍ଟର ଟଙ୍କା ପଇସା ଖାଇ ଯାଉଛି" ସ୍କୁଲ ଘର ମରାମତି ପାଇଁ ଯାହା ଟଙ୍କା ଆସିଲା ସବୁ ଖାଇଗଲା । ଘର ଅବସ୍ଥା ଦେଖନ୍ତୁ। ଛାତ କଣା ହୋଇଯାଇଛି କେତେ  ଜାଗାରେ। ଶିକ୍ଷକମାନେ ପାଠ ପଢାଉ ନାହାନ୍ତି। ସ୍କୁଲର ଉନ୍ନତି ମୂଳକ କାମ କିଛି ହେଉ ନାହିଁ ଇତ୍ୟାଦି। ମୁଁ କହିଲି, ଠିକ୍ ଅଛି। ମୁଁ ହେଉମାଷ୍ଟରଙ୍କ ସହିତ କଥାବାର୍ତ୍ତା କରେ। ଆଜି ତ ହେଡମାଷ୍ଟର କି ଶିକ୍ଷକ କେହି ନାହାନ୍ତି। ମୁଁ କ'ଣ କରିବି ?"

ଲୋକମାନେ କିଛି ବୁଝିବାକୁ ରାଜି ନୁହନ୍ତି, କହିଲେ, " ଆଜି ଜବାବ ନପାଇଲେ ଆପଣଙ୍କୁ ଛାଡିବୁ ନାହିଁ।" ମୁଁ କହିଲି, ଆପଣମାନେ କ'ଣ ଚାହୁଁଛନ୍ତି

ମୁଁ ବର୍ତ୍ତମାନ ଘର ଉପରେ ଚଢି ଘର ମରାମତି କରିବି ? ମତେ ଛାଡିବେ ନାହିଁ କଣ ? ଆପଣମାନେ ସାଧାରଣ ଶିଷ୍ଟାଚର ଭୁଲି ଯାଉଛନ୍ତି ?" ଏହା କହିବା ପରେ ଯେଉଁ ଲୋକ ମୋ ସହିତ ଯୁକ୍ତି କରୁଥିଲା ତାକୁ ସମସ୍ତେ ଗାଳି ଦେଲେ ଓ ମୋତେ ଯିବା ପାଇଁ ଅନୁରୋଧ କଲେ ।

ରାତିରେ ଯାଇ ମୁଁ ନୟାଗଡ ବଙ୍ଗଳାରେ ରହିଲି । ତା ପରଦିନ ସକାଳ ହେଲା ବେଳକୁ ଦର୍ପନାରାୟଣପୁର ହାଇସ୍କୁଲ ହେଡମାଷ୍ଟର ଓ ଶିକ୍ଷକମାନେ ଯାଇ ବଙ୍ଗଳାରେ ହାଜର । ମୁଁ ନିଦରୁ ଉଠି ସେମାନଙ୍କୁ ଖୁବ୍ ଗାଳି ଦେଲି । ପଚାରିଲି କେଉଁ ଦୁଇ ଜଣ ଶିକ୍ଷକ ସ୍କୁଲରେ ଥିଲେ, ଜିପ୍ ଶବ୍ଦ ଶୁଣି ପଳାଇଗଲେ ? କେହି ରାଜି ହେଲେ ନାହିଁ । କହିଲେ, " ଆମେ କେହି ନଥିଲୁ । ଅନ୍ୟ କିଏ ସାଧାରଣ ଲୋକ ହୋଇଥିବେ ।" ହେଡମାଷ୍ଟରଙ୍କୁ କହିଲି, " ତମେ ଏତେ କାଙ୍ଗାଳ ହୋଇ ଗଲଣି ଯେ ପିଲାଙ୍କର ମାତ୍ର ୨୫୯ ଟଙ୍କା ଖାଇ ଯାଇଛ । ସେତିକିରେ ତମ ପେଟ ପୂରିଗଲା ? ପିଲାମାନେ ସେଥିପାଇଁ ଆଠଦିନ ହେଲା ଷ୍ଟ୍ରାଇକ୍ କରିଛନ୍ତି । ଅତି ଶୀଘ୍ର ଯାଇ ପିଲାଙ୍କ ଘରେ ତାଙ୍କ ଟଙ୍କା ଫେରାଅ ଓ ତାଙ୍କୁ ସ୍କୁଲକୁ ଆଣ । ପହରଦିନଠାରୁ ଯଦି ନିୟମିତ ସ୍କୁଲ ନଚଲେ ତମର କାହାର ଚାକିରି ରହିବ ନାହିଁ । ତା ଛଡା ସ୍କୁଲ ଘର ଛାତ ଆଜ୍‌ବେଷ୍ଟସ୍ କଣା ହୋଇଯାଇଛି । କଣା ଆଜବେଷ୍ଟସ୍ ବଦଳାଇ ଭଲ ଆଜବେଷ୍ଟସ ପକାଅ । ସେମାନେ ଯାଇ ମୋ ପରାମର୍ଶ ଅନୁସାରେ ସବୁକାମ କରିଦେଲେ ଓ ସ୍କୁଲ ନିୟମିତ ଚାଲିଲା । ପଦ୍ମନାଭ ସାମନ୍ତସିଂହାର ୧୫ ଦିନ ପରେ ଆସି କହିଲେ, " କଣ କରିଦେଇ ଆସିଲ ସବୁ ଠିକ୍ ଠାକ୍ ଚାଲିଛି । ଷ୍ଟ୍ରାଇକ୍‌ର କୌଣସି ଲକ୍ଷଣ ଦେଖାଯାଉ ନାହିଁ । ଲୋକେ ତମକୁ ପ୍ରଶଂସା କରୁଛନ୍ତି ।

## ଭାପୁର ହାଇସ୍କୁଲ - ବିଘ୍ନର କିରାଣି

ଅବିଭକ୍ତ ପୁରୀ ଜିଲ୍ଲାର ଭାପୁର ଗୋଟିଏ ପ୍ରସିଦ୍ଧ ସ୍ଥାନ । ଭାପୁରର ପ୍ରସିଦ୍ଧି ପାଇଁ ଅନ୍ୟ ଯାହା କିଛି କାରଣ ଥାଉ ବା ନଥାଉ ତାର ହାଇସ୍କୁଲ ପାଇଁ ସେ ସ୍ଥାନ ଖୁବ୍ ପ୍ରସିଦ୍ଧ । ତା'ର ପରିଚାଳନା ସମିତି ଓ ହେଡମାଷ୍ଟରଙ୍କ ମଧ୍ୟରେ ମକଦ୍ଦମା ହୋଇ ଓଡିଶା ହାଇକୋଟ ପର୍ଯ୍ୟନ୍ତ ଯାଇଥିଲା । ସେଇ ଦୃଷ୍ଟିରୁ ସେ ଅଞ୍ଚଳରେ ସମସ୍ତେ ହାଇସ୍କୁଲଟିକୁ ଜାଣନ୍ତି । ତା ଛଡା ଭାପୁର ହେଉଛି ବ୍ଲକ ମୁଖ୍ୟ ଦପ୍ତର (Headquarters) ।

ଭାପୁର ହାଇସ୍କୁଲ ପ୍ରଧାନ ଶିକ୍ଷକ ତାଙ୍କ କିରାଣିକୁ ବାହାର କରି ତା ସ୍ଥାନରେ ଜଣେ ନୂଆ କିରାଣି ନିଯୁକ୍ତ କରିଥାନ୍ତି । ଏହି ଘଟଣାର ସପକ୍ଷ ଓ

ବିପକ୍ଷରେ ଗୁଡାଏ ଦରଖାସ୍ତ ଆସିଥାଏ। ଦିନେ ହଠାତ୍ ଦେଖିଲି ଆମ ଅଫିସର (Accounts -cum-Administrative Officer ) ଙ୍କର ଏକ ଲମ୍ବା ଟାଇପ୍ କରାନୋଟ୍। ସେ ନୋଟ୍ ଥିଲା ନୂଆ କିରାଣି ସପକ୍ଷରେ। ପ୍ରଧାନଶିକ୍ଷକଙ୍କ କାର୍ଯ୍ୟକୁ ସମର୍ଥନ କରି ନୋଟ୍ ଆସିଥାଏ। ସେତେବେଳକୁ ମୁଁ ଭାପୁର ହାଇସ୍କୁଲ, ତାର ପ୍ରଧାନ ଶିକ୍ଷକ ଓ ପୁରୁଣା ଓ ନୂଆ କିରାଣି ସମ୍ବନ୍ଧରେ ଅନେକ ତଥ୍ୟ ସଂଗ୍ରହ କରିସାରିଥାଏ। ମୁଁ ଯେଉଁ ତଥ୍ୟ ସଂଗ୍ରହ କରିଥିଲି ତା'ର ଓଲଟା ନୋଟ Administrative Officer ଦେଇଥାନ୍ତି। ତେଣୁ ମୁଁ Inquiry କରିବା ପାଇଁ ଗୋଟିଏ ତାରିଖ ଧାର୍ଯ୍ୟ କରି ସ୍କୁଲକୁ ଜଣାଇ ଦେବା ପାଇଁ ଆଦେଶ ଦେଲି ଓ ସେ Inquiry ସମୟରେ Administrative Officer ଉପସ୍ଥିତ ରହିବା ପାଇଁ ମଧ୍ୟ ଆଦେଶ ଦେଲି।

ନିର୍ଦ୍ଦିଷ୍ଟ ତାରିଖରେ ଭାପୁରରେ ପହଞ୍ଚିଲୁ। Administrative Officer ଓ ନୟାଗଡ ଡି.ଆଇ ଯାଇଥିଲେ। ଦେଖିଲୁ ଗୋଟିଏ ଘରେ ଦୁଇ ଦଳ ଲୋକ ବସିଛନ୍ତି। ବୁଝିଲୁ ଦଳେ ହେଉଛନ୍ତି ଭାପୁର ଲୋକ ଓ ଆଉ ଦଳେ ପରିଚ୍ଛଳନା ସମିତି ସଭ୍ୟ ଓ ଭାପୁର ବାହାର ଲୋକ। ଆମେ ବସିଲା ପରେ ସେ ଦୁଇ ଦଳ ଲୋକଙ୍କ ଭିତରେ ବଚସା ଆରମ୍ଭ ହେଲା। ଯେତେବେଳେ ହାତ ଉଠାଉଠି ପର୍ଯ୍ୟନ୍ତ ଗଲା ଆମେ ବନ୍ଦ କଲୁ। ତା ପରେ ମୁଁ କହିଲି, " ଆପଣଙ୍କ କଳିଗୋଳରୁ ମୁଁ ବୁଝିଲି ବାଁ ପାଖ ଲୋକମାନେ ଭାପୁର ଲୋକ। ଆପଣମାନେ ପରିଚ୍ଛଳନା ସମିତିରେ ଥିଲେ। ଏବେ ନାହାଁନ୍ତି କାହିଁକି ?" ସେମାନେ କହିଲେ ଆମେ ସବୁ ପରିଚ୍ଛଳନା ସମତି ସଭ୍ୟ ଥିଲୁ। ହେଡମାଷ୍ଟରଙ୍କ ସହିତ ଗୋଳମାଳ ହେଲା। କେଶ୍ ହେଲା ହାଇକୋର୍ଟ ପର୍ଯ୍ୟନ୍ତ ଲଢିଲୁ। କେଶରେ ହାରିଗଲୁ।" ମୁଁ ପଚାରିଲି ଯେଉଁ ହେଡମାଷ୍ଟର ଆପଣଙ୍କୁ ହାଇକୋର୍ଟ ପର୍ଯ୍ୟନ୍ତ ନେଇ କେଶ୍‌ରେ ହରାଇଥିଲେ ତାଙ୍କରି କଥାରେ ତାଙ୍କ ପାଇଁ ଲଢିବାକୁ ଆଜି ଆସିଛନ୍ତି ତ ?" ସେମାନେ ଚୁପ୍ ହୋଇଗଲେ। ତାପରେ ପ୍ରଧାନ ଶିକ୍ଷକଙ୍କୁ ପଚାରିଲି। ଯେଉଁମାନଙ୍କ ନାଁ Suggest କରି ଆପଣ ପରିଚ୍ଛଳନା ସମିତିକୁ ଆଣିଥିଲେ, ଆଜି ତାଙ୍କ ବିରୁଦ୍ଧରେ ଯାଇ ଭାପୁର ଲୋକଙ୍କୁ ଡାକି ଆଣିଛନ୍ତି ? ଏମାନଙ୍କ ସହିତ ମତାନ୍ତର ହେଲା କାହିଁକି ? ନୂଆ କିରାଣି ନିଯୁକ୍ତି ପାଇଁ ତ ?

ତାପରେ Administrative ଅଫିସରଙ୍କୁ କହିଲି, " ଆପଣ ଗାଡି ନେଇ ଫତେଗଡ ପୋଲିସ୍ ଷ୍ଟେସନ୍‌କୁ ଯାଆନ୍ତୁ। ଥାନା ସବ୍‌ଇନିସ୍ପେକ୍ଟରଙ୍କୁ କହିବେ

ଗୋଟେ ହାତକଡି ନେଇ ଆସିବେ। ସେ ପଚାରିଲେ, "କାହିଁକି" ମୁଁ କହିଲି, " ଆଜିଠୁ ଆଠମାସ ତଳେ ପ୍ରଧାନ ଶିକ୍ଷକ ଆମ ଅଫିସରୁ ୧୩୦୦୦ ଟଙ୍କା ଆଣିଥିଲେ। ତାଙ୍କ ସମର୍ଥକ ଶିକ୍ଷକମାନଙ୍କୁ ଟ.୫୦୦୦ Payment କରିଛନ୍ତି। ବାକି ୮୦୦୦ ଟଙ୍କା ତାଙ୍କ ପାଖରେ ଅଛି। ଏହା ସରକାରୀ ଅର୍ଥର ସାମୟିକ ତୋଷାରପାତ। ତେଣୁ ତାଙ୍କୁ Arrest କରି ନେଇଯିବେ।

ଏହା ଶୁଣି ପ୍ରଧାନ ଶିକ୍ଷକ ମୋ ଗୋଡ ତଳେ ପଡିଗଲେ। ମୁଁ କହିଲି, " ଯାହାଙ୍କ ଟଙ୍କା ନ ଦେଇ ଭୁଲ କରିଛନ୍ତି ତାଙ୍କ ହାତଗୋଡ ଧରି କହନ୍ତୁ, କାଲି ଜନ୍ମାଷ୍ଟମୀ ପାଇଁ ଅଫିସ୍, ବ୍ୟାଙ୍କ ବନ୍ଦ । ପହରିଦିନ ଟଙ୍କା ଉଠାଇ ଆପଣମାନଙ୍କ ଟଙ୍କା ଦେଇ ଦେବି। ମୋତେ କ୍ଷମା କରନ୍ତୁ। ପ୍ରଧାନ ଶିକ୍ଷକ ତାହା ହିଁ କଲେ। ତା ପରେ ଯେଉଁ ପରିଚ୍ଛଳନା ସମିତି ସଦସ୍ୟମାନଙ୍କୁ ମରାଇବା ପାଇଁ ଭାପୁର ଲୋକଙ୍କୁ ଡାକି ଆଣିଥିଲେ ତାଙ୍କୁ କ୍ଷମା ପ୍ରାର୍ଥନା କରନ୍ତୁ। ତାପରେ କହିଲି ଯେଉଁ ଭାପୁର ଲୋକଙ୍କୁ ଡାକି ଆଣିଥିଲେ, ତାଙ୍କୁ କୁହନ୍ତୁ ଯେତେବେଳେ ପରିଚ୍ଛଳନା ସମିତିର ସ୍ଥାନ ଖାଲି ହେବ ସେମାନଙ୍କ ଭିତରୁ ଜଣେ ଜଣେ ସଦସ୍ୟ କରିନେବେ। ପ୍ରଧାନ ଶିକ୍ଷକ ତାହା ବି କଲେ। ଭାପୁର ଲୋକଙ୍କୁ ମୁଁ ଅନୁରୋଧ କଲି। ଆପଣମାନେ ଏବେ ଯାଅନ୍ତୁ, ଯେତେବେଳେ ପରିଚ୍ଛଳନା ସମିତିରେ ସୁଯୋଗ ହେବ, ଆପଣମାନେ ଯୋଗ ଦେବେ।

ତାପରେ କିରାଣି ନିଯୁକ୍ତି କେଶ୍ ତଦନ୍ତ। ନୂଆ ପୁରୁଣା ଦୁଇଜଣ କିରାଣିଙ୍କୁ ଡକାଗଲା। ପ୍ରଥମେ ପୁରୁଣା କିରାଣିଙ୍କ ଦୋଷ ବିଷୟ ଆଲୋଚନା କରାଗଲା। ପ୍ରଧାନ ଶିକ୍ଷକ ପୁରୁଣା କିରାଣିଙ୍କ ବିରୁଦ୍ଧରେ କିଛି ନିର୍ଦ୍ଦିଷ୍ଟ ପ୍ରମାଣ ଦେଇ ପାରିଲେ ନାହିଁ। ତା ପର କଥା ହେଲା ଦକ୍ଷତା । ପୁରୁଣା କିରାଣି ସମୟରେ ରିପୋର୍ଟ ରିଟର୍ଣ୍ଣ ବିଲ୍ କେତେଥର ବିଳମ୍ବରେ ଯାଇଛି, ତାହା ଦେଖାଗଲା। ସେମିତି କିଛି ପ୍ରମାଣ ମିଳିଲା ନାହିଁ। Accounts କିଛି ତ୍ରୁଟି ଥିବା କଥା ମଧ୍ୟ ମିଳିଲା ନାହିଁ। ତା' ହେଲେ ନୂଆ କିରାଣି ରଖିବା ପ୍ରଶ୍ନ ଉଠିଲା କାହିଁକି ? ନୂଆ କିରାଣିଟି ଯେତେବେଳେ ଦେଖିଲା ତାର ରହିବା କଥା ହେଉ ନାହିଁ, ସେ କହିଲା, " ମୁଁ ଟଙ୍କା ଦେଇଛି" ମୁଁ ପଚାରିଲି କେତେ ଟଙ୍କା କାହାକୁ ଦେଇଛ ? ଟଙ୍କା ସେ ଦେଇଥିବ। କିନ୍ତୁ କିଛି ପ୍ରମାଣ ନାହିଁ। ନୂଆ କିରାଣିଟି କାନମୁଣ୍ଡା ଆଉଁସି ଘରକୁ ଗଲା। ପୁରୁଣା କିରାଣି ସ୍କୁଲରେ ରହିଲା। ନୂଆ କିରାଣିର ଟଙ୍କା ପଇସା କାରବାରର ବହୁ ଖବର ଗୁପ୍ତ ରହିଗଲା।

## ମାଷ୍ଟ୍ରଙ୍କୁ ମାଡ ମାରିବା ପାଇଁ ଅନୁମତି

ଦିନେ ମୁଁ ଅଫିସରେ ବସିଥିବା ସମୟରେ ଛ ସାତ ଜଣ ଯୁବକ ଆସି କହିଲେ, "ଆମେ ବନମାଳୀପୁରରୁ ଆସିଛୁ । ଆମ ହାଇସ୍କୁଲ ମାଷ୍ଟ୍ରଙ୍କୁ ମାଡ ଦେବା ପାଇଁ ଆମକୁ ଅନୁମତି ଦିଅନ୍ତୁ । ମୁଁ ପଚାରିଲି "କାହିଁକି ଏପରି ମହତ୍ କାର୍ଯ୍ୟ ପାଇଁ ଆପଣମାନେ ଇଚ୍ଛା କରିଛନ୍ତି ?" ସେମାନେ କହିଲେ, "ଆମ ସ୍କୁଲରୁ ୨୮ ଜଣ ପିଲା ପରୀକ୍ଷା ଦେଇଥିଲେ । ଦୁଇଜଣ ଥାର୍ଡ ଡିଭିଜନରେ ପାଶ୍ କରିଛନ୍ତି । ମାଷ୍ଟ୍ରଙ୍କୁ ମାଡ ହେବା ଉଚିତ୍ ନା ନାହିଁ ?" ମୁଁ ତାଙ୍କୁ କହିଲି, ତମେ ସବୁ ଯାଅ । ମୁଁ ୨୭ ତାରିଖରେ (ଅଗଷ୍ଟ ମାସ, ୧୯୮୧) ଯାଇ ବୁଝିବି କେଉଁ ପରିସ୍ଥିତିରେ ଏପରି ହେଲା ଓ ଏଥିପାଇଁ ଦାୟୀ କିଏ? ତାପରେ କ'ଣ କରାଯିବ ମୁଁ କହିବି ।"

ପ୍ରୋଗ୍ରାମ ଅନୁସାରେ ମୁଁ ଅଗଷ୍ଟ ୨୭ ତାରିଖ ଦିନ ସେଠାରେ ପହୁଞ୍ଚି ଦେଖିଲି ପ୍ରାୟ ଦେଢଶହ ଲୋକ ପଡିଆରେ ଭୂଇଁରେ ବସିଛନ୍ତି । ପ୍ରଧାନ ଶିକ୍ଷକଙ୍କୁ ମୁଁ ବିରକ୍ତ ହୋଇ କହିଲି, "ଲୋକଙ୍କୁ ଦରି କି ଟାର୍‌ପୋଲିନ୍ ଦିଖଣ୍ଡ ବସିବାକୁ ଦେଇ ପାରିଲେ ନାହିଁ ?' ପ୍ରଧାନ ଶିକ୍ଷକ କହିଲେ, "ଏତେ ଲୋକଙ୍କୁ ବସିବାକୁ ଦରି କି ଟାରପୋଲିନ୍ ସ୍କୁଲରେ ନାହିଁ ।" ମୁଁ କହିଲି, "ମାନ୍ୟ ସ୍ୱରୂପ ଖଣ୍ଡେ କି ଦିଖଣ୍ଡ ଦେଇ ପାରିଲେ ନାହିଁ ? ମୁଁ ଲୋକଙ୍କ ପାଖକୁ ଯାଇ କହିଲି, "ଆପଣ ମାନେ ବସିଥାନ୍ତୁ । ମୁଁ ଦଶମ ଏକାଦଶ ଶ୍ରେଣୀ ପରିଦର୍ଶନ କରି, ଶିକ୍ଷକମାନଙ୍କ ସହିତ ଆଲୋଚନା କରି ଆସିଲେ ଆପଣ ମାନଙ୍କ ସହ ଆଲୋଚନା କରିବି ।"

ଶ୍ରେଣୀ ପରିଦର୍ଶନ ସାରି ଗୋଟିଏ ରୁଦ୍ଧ କୋଠରୀରେ ଶିକ୍ଷକମାନଙ୍କ ସହିତ ଆଲୋଚନା କଲି । କହିଲି, "ଲୋକମାନେ ଆସିଛନ୍ତି ଶିକ୍ଷକମାନଙ୍କୁ ମାଡ ଦେବା ପାଇଁ । ସେମାନେ କହୁଛନ୍ତି, ଗତ ହାଇସ୍କୁଲ ସାର୍ଟିଫିକେଟ ପରୀକ୍ଷାରେ ୨୮ଜଣ ପିଲା ଏ ସ୍କୁଲରୁ ପରୀକ୍ଷା ଦେଇଥିଲେ । ଦୁଇ ଜଣ ଥାର୍ଡ ଡିଭିଜନ୍‌ରେ ପାଶ୍ କଲେ । ଏଥିପାଇଁ ସେମାନେ ଶିକ୍ଷକଙ୍କୁ ମାରିବାକୁ ଆସିଛନ୍ତି । ସେମାନେ ମାରିବା ଉଚିତ ନା ନୁହେଁ ?"

ମୋ ପ୍ରଶ୍ନ ଶୁଣି ସମସ୍ତେ ମୁଣ୍ଡ ପୋତି ବସିଲେ । କେହି କିଛି କହିଲେ ନାହିଁ । ଜଣେ ଶିକ୍ଷକ ଉଠି କହିଲେ, "ମୋତେ ଅଭୟ ଦେଲେ, ମୁଁ ସବୁ ସତକଥା କହିବି" ସେ କହିଲେ, "ଗତ ସାତ ବର୍ଷ ହେଲା ଯେଉଁ ପିଲାମାନେ ଏକାଦଶ ଶ୍ରେଣୀକୁ ପ୍ରମୋଶନ ପାଉଥିଲେ, ସେମାନେ ପ୍ରତ୍ୟେକ ପାଞ୍ଚ ଶହ

ଟଙ୍କା ଲେଖାଁଏ ଦେଉଥିଲେ । ପ୍ରତିବର୍ଷ ୨୧ / ୨୨ ହଜାର ଟଙ୍କା ଆଦାୟ ହୁଏ । ସେ ଟଙ୍କାରୁ ପରୀକ୍ଷା ସୁପରିନ୍‌ଟେଣ୍ଡେଣ୍ଟଙ୍କୁ କେତେ, Invigilator ମାନଙ୍କୁ କେତେ, ଯିଏ କପି ଲେଖିବ ତାକୁ କେତେ, ଯିଏ କପି ଯୋଗାଇ ଦେବ ତାକୁ କେତେ ଟଙ୍କା ଦିଆଯିବ ତାହା ସ୍ଥିର କରି ଦେଉ ଓ ସେହି ଅନୁସାରେ ସମସ୍ତଙ୍କୁ ଟଙ୍କା ଦିଆଯଏ ଓ ପିଲାମାନେ କପି କରି ପାଶ କରନ୍ତି । ଏଇ ବର୍ଷ ଜଣେ ଯୁବ ଅଧ୍ୟାପକ ପରୀକ୍ଷା ସୁପରିନ୍‌ଟେଣ୍ଡେଣ୍ଟ ହୋଇ ଆସିଲେ । ସେ ଆମ ପ୍ରସ୍ତାବରେ ରାଜି ହେଲେ ନାହିଁ । କହିଲେ, ଜୀବନ ଚାଲିଗଲେ ବି ମୁଁ ପିଲାଙ୍କୁ କପି କରାଇ ଦେବି ନାହିଁ । ତେଣୁ ଆମ ଦ୍ୱାରା ପ୍ରାୟୋଜିତ ପ୍ରକ୍ରିୟା ଯାହା ସାତ ବର୍ଷ ଧରି ଚାଲିଥିଲା, ତାହା ଅକାମୀ ହୋଇଗଲା । ଫଳରେ ଏ ଭଳି ଦୁର୍ଭାଗ୍ୟଜନକ ପରିସ୍ଥିତି ହେଲା ।"

ଏ ସବୁ ଶୁଣି ମୁଁ ସ୍ତବ୍ଧ ହୋଇଗଲି । ଦେଖିଲି ଏଠାରେ ଏକ ର୍ୟାକେଟ୍ ସାତ ବର୍ଷଧରି ଚାଲିଛି । କୌଣସି ଚୋରି ବା ଡକାୟତି ର୍ୟାକେଟ୍ ଠାରୁ କୌଣସି ଗୁଣରେ ନ୍ୟୁନ ନହେଁ । ବନମାଳିପୁର ଯୁବକମାନଙ୍କ ଦାବି ଅଯୌକ୍ତିକ ନୁହେଁ । ମୁଁ ଶିକ୍ଷକମାନଙ୍କୁ କହିଲି, "ଏତେ ଲୋକ ଆସିଛନ୍ତି । ସେମାନେ ଯଦି ତମକୁ ମାଡ ଦେବା ପାଇଁ ଉଠନ୍ତି ମୁଁ ଅଟକାଇ ପାରିବି ନାହିଁ । ପ୍ରଧାନ ଶିକ୍ଷକଙ୍କ ବ୍ୟତୀତ ଅନ୍ୟ ଶିକ୍ଷକମାନେ ଜଣେ ଜଣେ ହୋଇ ପଛ ବାଟେ ଚାଲିଯାଆନ୍ତୁ । ସେମାନେ ଚାଲିଗଲେ । ମୁଁ ଓ ପ୍ରଧାନ ଶିକ୍ଷକ ଲୋକଙ୍କ ପାଖକୁ ଗଲୁ ।

ମୁଁ ସେ ଲୋକମାନଙ୍କୁ କହିଲି, "ଆପଣମାନେ ଏତେ ଲୋକ । ସମସ୍ତେ ହାଉହାଉ ହେଲେ କିଛି ଆଲୋଚନା ହୋଇ ପାରିବ ନାହିଁ । ଆପଣମାନେ ଦୁଇ ତିନି ଜଣଙ୍କୁ ବାଛନ୍ତୁ ଯିଏ କଥାବାର୍ତ୍ତା କରିବେ । ମୁଁ ପ୍ରଥମେ ପାଞ୍ଚମିନିଟ୍ କହିବି ତା'ପରେ ଆପଣମାନେ କହିବେ ।" ମୁଁ କହିଲି, "ଗତ ସାତ ବର୍ଷ ହେଲା ଏକାଦଶ ଶ୍ରେଣୀ ପିଲାଙ୍କ ମୁରବିମାନେ ଟଙ୍କା୫୦୦ - ଲେଖାଁଏ ଦେଇ, କପି କରାଇ ପିଲାଙ୍କୁ ପାଶ୍ କରାଉଛନ୍ତି । ବନମାଳୀପୁର ହାଇସ୍କୁଲ ସରକାରୀ ସ୍କୁଲ । ଏଠାରେ ଏ ପ୍ରକାର ବ୍ୟବସ୍ଥା ଲଜ୍ଜାଜନକ । ଏ ଯେଉଁ ପ୍ରକ୍ରିୟା ଚାଲିଛି ଏଥିରେ ଶିକ୍ଷକମାନଙ୍କ ଅପେକ୍ଷା ପିଲାଙ୍କ ମୁରବିମାନେ ଅଧିକ ଦାୟୀ । ଯଦି ମୁରବିମାନଙ୍କଠାରୁ ଟଙ୍କା ନେଇ, କପି କରାଇ ପିଲାଙ୍କୁ ପାଶ୍ କରାଇ ହେବ, ଶିକ୍ଷକମାନେ ପାଠ ପଢାଇବେ କାହିଁକି ? ଲୋକମାନେ ସରକାରୀ ସ୍କୁଲଟିକୁ ଖରାପ କରି ସାରିଲେଣି । ଶିକ୍ଷକମାନଙ୍କୁ ଦୋଷ ଦେଇ ଲାଭ କ'ଣ ?

ମୋ କଥା ଶୁଣି ସାରିଲା ପରେ ଯୁବକମାନେ ତାଙ୍କ ମାଷ୍ଟ୍ରଙ୍କୁ ମାଡ ଦେବା ଦାବି ପ୍ରତ୍ୟାହାର କରିନେଲେ ଓ କହିଲେ, "ଏଠି ଚାରିଜଣ ସ୍ଥାନୀୟ ଶିକ୍ଷକ ଅଛନ୍ତି । ସେମାନେ ବହୁବର୍ଷ ହେଲା ଆଡ୍ଡା ଜମାଇ ରହିଛନ୍ତି । ତାଙ୍କର ଏଇ ବଜାରରେ ଦୋକାନ ଅଛି । ସ୍କୁଲ ଚାଲୁଥିବା ସମୟରେ ସେମାନେ ସ୍କୁଲରେ ନ ରହି ଦୋକାନରେ ବିକ୍ରି କରନ୍ତି । ସେମାନେ କ'ଣ ଏ ସ୍କୁଲଲେ ରହିବେ ? ମୁଁ କହିଲି, "ସରଜମିନ୍ ତଦନ୍ତ କରି ଦେଖିବା, ତାଙ୍କ ଦୋକାନକୁ ଚାଲ, ସ୍କୁଲଠାରୁ ଅଳ୍ପ ଦୂରରେ ଥିବା ବଜାରକୁ ଗଲୁ । ଯୁବକମାନେ ଚାରିଜଣ ଶିକ୍ଷକଙ୍କ ଦୋକାନ ଦେଖାଇଦେଲେ । ସେଠାରେ ଉପସ୍ଥିତ ଥିବା ସାଧାରଣ ଲୋକଙ୍କଠାରୁ ବୁଝିଲି ସେ ଦୋକାନ ଶିକ୍ଷକମାନଙ୍କର ଓ ସେମାନେ ସ୍କୁଲ ସମୟରେ ମଧ୍ୟ ଦୋକାନରେ ବିକ୍ରି କରନ୍ତି ।

ସେତେବେଳକୁ ଲୋକମାନେ ଚାଲି ଗଲେଣି, କାରଣ ମାଷ୍ଟ୍ରଙ୍କୁ କିପରି ମାଡ ହେଉଛି, ଦେଖିବାକୁ ସେମାନେ ଆସିଥିଲେ । ଯେତେବେଳେ ଦେଖିଲେ ଯେ ମାଡ ହେବ ନାହିଁ, ସେମାନେ ଚାଲିଗଲେ । କେବଳ ୨୦ / ୩୦ ଜଣ ଯୁବକ ରହିଥାନ୍ତି । ସେମାନଙ୍କୁ ମୁଁ କହିଲି, ଏ ଶିକ୍ଷକମାନେ ୭ ଦିନ ଭିତରେ ଅନ୍ୟତ୍ର ବଦଳି ହୋଇଯିବେ ଓ ତାଙ୍କ ସହିତ ପ୍ରଧାନ ଶିକ୍ଷକ ମଧ୍ୟ ଯିବେ ।

ସେଠାରୁ ଫେରିବା ପରଦିନ ସେ ଚାରିଜଣ ଶିକ୍ଷକଙ୍କ ବଦଳି ଆଦେଶ କରିଦେଇ ସ୍ୱତନ୍ତ୍ର ବାର୍ତ୍ତାବହ ହାତରେ ପଠାଇଦେଲି । ପ୍ରଧାନ ଶିକ୍ଷକଙ୍କୁ ବଦଳି କରିବାକୁ ଡି.ପି.ଆଇ. ଙ୍କୁ ପ୍ରସ୍ତାବ ଦେଲି ଓ ତାହା ୧୫ ଦିନ ମଧରେ କାର୍ଯ୍ୟକାରୀ ହୋଇଗଲା । ନୂଆ ଶିକ୍ଷକ ଓ ପ୍ରଧାନ ଶିକ୍ଷକଙ୍କୁ ନେଇ ସ୍କୁଲରେ ପାଠ ପଢା ଭଲ ଚାଲିଲା ।

ବିଗତ ସାତବର୍ଷ ହେଲା ସ୍କୁଲରେ ପୁରସ୍କାର ବିତରଣୀ ଉତ୍ସବ ହୋଇ ନ ଥିଲା । ସେ ବର୍ଷ ହେଲା । ପରବର୍ତ୍ତୀ ବର୍ଷମାନଙ୍କରେ ସ୍କୁଲର ହାଇସ୍କୁଲ ସାର୍ଟିଫିକେଟ୍ ପରୀକ୍ଷ ଫଳ ଭଲ ହେଲା ।

## କୁରାଳ ହାଇସ୍କୁଲ ପରୀକ୍ଷା ଫଳ

ଅବିଭକ୍ତ ପୁରୀ ଜିଲ୍ଲାର ସବୁ ଡି.ଆଇ ମାନଙ୍କର ନୟାଗଡରେ ଗୋଟିଏ ସଭା ହେବା ପାଇଁ କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ତା ପୂର୍ବରୁ ମୁଁ କୁରାଳ ହାଇସ୍କୁଲ ପରିଦର୍ଶନ କରିବା ପାଇଁ ପ୍ରୋଗ୍ରାମ କରି ସାରିଥିଲି । ତେଣୁ ଡି.ଆଇ ମାନଙ୍କୁ ମୁଁ ପ୍ରସ୍ତାବ ଦେଲି ସମସ୍ତେ କୁରାଳ ହାଇସ୍କୁଲକୁ ଯାଇ ଶୀଘ୍ର ପରିଦର୍ଶନ କାମ ଶେଷ କରିଦେବା । ତା ପରେ ଆମେ ଫେରି ଆସି ନୟାଗଡରେ ମିଟିଂ କରିବା । ଏ

ପ୍ରସ୍ତାବରେ ସମସ୍ତେ ରାଜି ହୋଇଗଲେ।

କୁରାଳ ଓଡଗାଁ ଠାରୁ ପାଞ୍ଚ କିଲୋମିଟର ବାଟ। ଆମେ ସମସ୍ତେ ଗୋଟିଏ ଗାଡିରେ ଚାଲିଗଲୁ। ସେଠାରେ ଡି.ଆଇମାନେ ଲିଖନ ଓ ସଂଶୋଧନ କାର୍ଯ୍ୟ, ସ୍କୁଲ ରେକର୍ଡ ପତ୍ର ଓ Accounts



ଭୁବନେଶ୍ୱର ୬ ନଂ ୟୁନିଟ ବାଳିକା ଉଚ୍ଚ ଇଂରେଜି ବିଦ୍ୟାଳୟ ପୁରସ୍କାର ବିତରଣୀ ଉତ୍ସବରେ ଲେଖକ ଭାଷଣ ଦେଉଛନ୍ତି (୧୯୮୧)

ଦେଖିଦେଲେ ଓ ମୁଁ ଶ୍ରେଣୀ ପରିଦର୍ଶନ କଲି। ଦୁଇଘଣ୍ଟା ଭିତରେ ସବୁ କାମ ସରିଗଲା। ଆମେ ନୟାଗଡ ଯିବାକୁ ବାହାରିବା ବେଳେ ପ୍ରଧାନ ଶିକ୍ଷକ କହିଲେ, ସାର୍ ଆମେ ଖାଇବା ବନ୍ଦୋବସ୍ତ କରିଛୁ। ରୋଷେଇ ସରିଗଲାଣି। ସବୁ ଡି.ଆଇ ମାନଙ୍କୁ ଓ ଆପଣମାନଙ୍କୁ ଅନୁରୋଧ କରୁଛୁ ଖାଇ ଦେଇ ଯାଆନ୍ତୁ। ମୁଁ କହିଲି, " ଖାଇବାରେ କିଛି ଆପତ୍ତି ନାହିଁ।" କିନ୍ତୁ ତମ ସ୍କୁଲରେ ଖାଇହେବ ନାହିଁ। କାରଣ ତମ ସ୍କୁଲର ଗତ ହାଇସ୍କୁଲ ସାର୍ଟିଫିକେଟ୍ ପରୀକ୍ଷାରେ ପାଶ୍ ହାର ଶତକଡା ୨୦। ଏ ଅବସ୍ଥାରେ ଖାଇଲେ ଲୋକେ କହିବେ, ସ୍କୁଲରେ ପାଠପଢା ହେଉ ନହେଉ ପରୀକ୍ଷାରେ ପିଲା ପାଶ୍ କରନ୍ତୁ କି ନ କରନ୍ତୁ, ଇନ୍ସପେକ୍ଟରଙ୍କୁ ଭଲ ଖାଇବାକୁ ଦେଲେ ସବୁ ଦୋଷ ମାଫ୍ ହୋଇଯିବ।

ଏହା ଶୁଣି ପ୍ରଧାନ ଶିକ୍ଷକ କହିଲେ, " ସାର, ୧୬ ବର୍ଷ ହେଲା ସ୍କୁଲ ଚାଲିଲାଣି। କେହି ଜଣେ ହେଲେ ଇନିସ୍ପେକ୍ଟର ଏ ପର୍ଯ୍ୟନ୍ତ ଆସି ନଥିଲେ। ଆଜି ଆପଣ ଆସି ଏଠାରୁ ନଖାଇ ଚାଲିଗଲେ ଲୋକମାନେ ଆମକୁ କ'ଣ କହିବେ ? ପରିଚାଳନା ସମିତି ସଦସ୍ୟମାନେ ଆସିଲେ। ସେମାନେ ବି ଅନୁରୋଧ କଲେ ଖାଇବାକୁ। ମୁଁ କହିଲି, " ଠିକ୍ ଅଛି" ଆମେମାନେ ଖାଇବୁ କିନ୍ତୁ ଗୋଟିଏ ସର୍ତ୍ତରେ, ସ୍କୁଲ ଶିକ୍ଷକମାନେ ଲେଖିଦେବେ ଏ ବର୍ଷ ଶତକଡା ୧୦୦ ପିଲା ପାଶ୍

କରିବେ। ଶିକ୍ଷକମାନେ ଆଲୋଚନା କଲେ ଓ ଲେଖିଦେବା ପାଇଁ ରାଜି ହେଲେ। ଆମେମାନେ ଖାଇଲୁ।

ଆମେ ଚାଲି ଆସିଲା ପରେ ପ୍ରଧାନ ଶିକ୍ଷକ ନୋଟିସ୍ ଦେଲେ ଯେ ପରଦିନ ସକାଳେ ୬ ଟା ବେଳଠାରୁ ଏକାଦଶ ଶ୍ରେଣୀ ପିଲାଙ୍କର କ୍ଲାସ୍ ଆରମ୍ଭ ହେବ ଓ ରାତି ୯ ଟାରେ ସରିବ। ଝିଅ ପିଲାଙ୍କର ବାପା ବା ମାଆ ରାତିରେ ଆସି ତାଙ୍କ ପିଲାଙ୍କୁ ନେଇଯିବେ। ସେ ବର୍ଷ ଶତକଡା ୧୦୦ ପିଲା ପାଶ୍ କଲେ। ପାଞ୍ଚ ବର୍ଷ ପରେ ମୁଁ ଯେତେବେଳେ ମାଧ୍ୟମିକ ଶିକ୍ଷା ଉପନିର୍ଦ୍ଦେଶକ ଥିଲି ସେତେବେଳେ କୁରାଳ ହାଇସ୍କୁଲ ପ୍ରଧାନ ଶିକ୍ଷକଙ୍କୁ ଡାକି ପଚାରିଲି, ସ୍କୁଲର ଅବସ୍ଥା ଓ H.S.C ପରୀକ୍ଷା ଫଳ କଥା। ସେ କହିଲେ, " ଆପଣ ପୁରୀ ସର୍କଲ ଛାଡିଗଲା ପରେ ଶିକ୍ଷକମାନେ ଟିକିଏ ଶିଥିଳ ହୋଇଗଲେ। ତଥାପି ବର୍ତ୍ତମାନ ଶତକଡା ୬୦ ପାଶ୍ କରୁଛନ୍ତି।

## ଚାନ୍ଦପୁର ବାଳିକା ହାଇସ୍କୁଲ ପ୍ରତିଷ୍ଠା

ମୁଁ ଟାଙ୍ଗି ବାଳକ ହାଇସ୍କୁଲ ଓ ବାଳିକା ହାଇସ୍କୁଲ ପରିଦର୍ଶନ କରିବାକୁ ଯାଇଥିଲି। ଦେଖିଲି ବାଳକ ହାଇସ୍କୁଲର ବିରାଟ ପଡିଆ ଭିତରକୁ ରାଜସ୍ୱ ବିଭାଗ କ୍ୱାଟର ତିଆରି ପାଇଁ ମାଡି ଆସୁଛନ୍ତି। ପ୍ରଧାନ ଶିକ୍ଷକ ବିନାୟକ ମହାପାତ୍ର ମୋର ଟ୍ରେନିଂ କଲେଜର ସହପାଠୀ। ତାଙ୍କୁ କହିଲି, "ପିଲାଙ୍କୁ ପଠାଇ ସେମାନେ ଯେଉଁ ନିଅଁ ଡାଡିଛନ୍ତି, ପୋତିଦିଅ"। ମୁଁ କଲେକ୍ଟରଙ୍କୁ କହିଲି, ରାଜସ୍ୱ ବିଭାଗକୁ ଜାଗା ମିଳିଲା ନାହିଁ ଯେ ସେମାନେ ସ୍କୁଲ ପଡିଆକୁ ମାଡି ଆସୁଛନ୍ତି। କଲେକ୍ଟର ତାଙ୍କୁ ସ୍କୁଲ ପଡିଆ ଭିତରୁ ବାହାରି ଯିବା ପାଇଁ ନିର୍ଦ୍ଦେଶ ଦେଲେ। ପରବର୍ତ୍ତୀ କାଳରେ ସେମାନେ ସ୍କୁଲ ପଡିଆ ଭିତରେ କ୍ୱାଟର ତିଆରି କଲେ ବୋଲି ଖବର ପାଇଲି।

ଟାଙ୍ଗି ବାଳିକା ହାଇସ୍କୁଲରେ ଦେଖିଲି Compound Wall ନାହିଁ। ପାଞ୍ଚ ନମ୍ବର ଜାତୀୟ ରାଜପଥକୁ ଲାଗି ସ୍କୁଲଟି ତିଆରି ହୋଇଛି। ଝିଅମାନଙ୍କ ପାଇଁ ଶୌଚାଗାର ନାହିଁ। ସ୍କୁଲର ଗୋଟିଏ ଘର କେତେ ବର୍ଷ ହେଲା ଅଧା ତିଆରି ହୋଇ ପଡି ରହିଛି। ଝିଅମାନଙ୍କର ବସିବାକୁ ସ୍ଥାନାଭାବ। ପ୍ରଧାନ ଶିକ୍ଷୟତ୍ରୀ ସୁଚରିତା ପଟ୍ଟନାୟକ ମୋ ଛାତ୍ରୀ। ତାଙ୍କୁ କହିଲି, ଝିଅମାନଙ୍କର Toilet ପାଇଁ

ବାଉଁଶ ରଞ୍ଜତାରେ ତିନିଚାରିଟା Urinal ତିଆରି କରିପାରୁ ନାହୁଁ ? ସେ କହିଲା , " ଲୋକଙ୍କର ଏ ସ୍କୁଲ ପ୍ରତି ଦୃଷ୍ଟି ନାହିଁ। ସ୍କୁଲର ଅନେକ ସମସ୍ୟା - କେହି କିଛି କରୁନାହାଁନ୍ତି। ମୁଁ କହିଲି, " ତା ହେଲେ ସ୍କୁଲ ବନ୍ଦ କରିଦିଅ। ଏମିତି ଭାବରେ ସ୍କୁଲ ଚଳାଇ ଲାଭ କିଛି ନାହିଁ।" ମୁଁ ଭୀଷଣ ଭାବରେ ବିରକ୍ତ ହୋଇ ଚାଲି ଆସିଲି। ଟାଙ୍ଗିରେ ରାଜନୀତି ବହୁତ। ନେତାଙ୍କର ଅଭାବ ନାହିଁ। କିନ୍ତୁ ବାଳିକା ହାଇସ୍କୁଲଟା ପ୍ରତି କେହି ଦୃଷ୍ଟି ଦେଉନାହାନ୍ତି।

ଚାନ୍ଦପୁରର ଲୋକମାନେ ମୋର ବିରକ୍ତି ଖବର ଶୁଣି ପାରିଲେ। ସେମାନେ ମୋତେ ଆସି କହିଲେ, " ଚାନ୍ଦପୁରରେ ଆମେ ଗୋଟେ ବାଳିକା ହାଇସ୍କୁଲ ପ୍ରତିଷ୍ଠା କରିବୁ।" ମୁଁ ମନା କଲି। କହିଲି, ଟାଙ୍ଗି ଏଠାରୁ ମାତ୍ର ଗୋଟିଏ କିଲୋମିଟର ଦୂର। ଏଠାରେ ମୋଟେ ବାଳିକା ହାଇସ୍କୁଲ ପ୍ରତିଷ୍ଠା ସମ୍ଭବ ନୁହେଁ।

ଚାନ୍ଦପୁର ଲୋକେ ମୋ କଥା ଶୁଣିବା ପାଇଁ ପ୍ରସ୍ତୁତ ନଥିଲେ। ସେମାନେ କହିଲେ, " ଆମ ଝିଅମାନେ ଟାଙ୍ଗି ବାଳିକା ହାଇସ୍କୁଲରେ ଯାଇ ଯେଉଁ ଅବସ୍ଥାର ସମ୍ମୁଖୀନ ହେଉଛନ୍ତି ତାହା ସହିବା ସମ୍ଭବ ନୁହେଁ। ଆମେ ଆଗ Compound Wall ତିଆରି କରିଦେବୁ। ଝିଅମାନଙ୍କ ପାଇଁ Toilet କରିଦେବୁ ଘର ତିଆରି କରିଦେବୁ । ଏହା କହି ସେମାନେ କାମ ଆରମ୍ଭ କରିଦେଲେ। ମୁଁ ବାଧ୍ୟ ହୋଇ ମଞ୍ଜୁରୀ ପାଇଁ ସୁପାରିଶ କଲି। ଡି.ପି.ଆଇ ଅଫିସରେ .Objection ହେଲା ।.କିନ୍ତୁ ମୁଁ ଯୁକ୍ତି କଲି ଯେ ଜାତୀୟ ରାଜପଥ ଗୋଟିଏ କୃତ୍ରିମ ପ୍ରତିବନ୍ଧକ। ଚାନ୍ଦପୁର ଓ ତାର ଆଖ ପାଖର ଝିଅମାନେ ପଢିବେ କେଉଁଠି। ସେ ସ୍କୁଲଟି ମଞ୍ଜୁରୀ ପାଇଲା।

ରଘୁନାଥ ହାଇସ୍କୁଲ ଟାଙ୍ଗିସାହି, ପଦ୍ମକୁମୁଦ ହାଇସ୍କୁଲ ଓ ପଦ୍ମାବତୀ ବାଳିକା ହାଇସ୍କୁଲ ଏଇ ତିନୋଟି ଯାକ ହାଇସ୍କୁଲ ସ୍ଥାନୀୟ ବଦାନ୍ୟ ବ୍ୟକ୍ତିଙ୍କ ଦାନରେ ତିଆରି ହୋଇଛି। ସେତେବେଳେ OSSTAର ସଭାପତି ଥିବା ରାଜକିଶୋର ପଟ୍ଟନାୟକ ଏସବୁ ହାଇସ୍କୁଲ ପ୍ରତିଷ୍ଠାର ନେତୃତ୍ୱ ନେଇ ମୋ ସହିତ ଆଲୋଚନା ପରେ ବଦାନ୍ୟ ବ୍ୟକ୍ତିମାନଙ୍କୁ ଅନୁରୋଧ କରୁଥିଲେ। ସ୍କୁଲ ପ୍ରତିଷ୍ଠା ପାଇଁ ମୋ ଅପେକ୍ଷା ତାଙ୍କର ଅବଦାନ ବେଶି ଥିଲା। ଶିକ୍ଷକମାନଙ୍କର ନେତୃତ୍ୱ ନେବା ଯୋଗ୍ୟତା ତାଙ୍କର ଥିଲା। ସେ ନିଜେ ଜଣେ ଭଲ ଭୂଗୋଳ ଶିକ୍ଷକ। ତାଙ୍କ ସ୍କୁଲ ମାଣିକାଗୋଡା ହାଇସ୍କୁଲ ଏକ ଆଦର୍ଶ ଅନୁଷ୍ଠାନ । ଆଖପାଖରେ ପ୍ରତିଷ୍ଠିତ ଅନୁଷ୍ଠାନ ଗୁଡିକୁ ଉନ୍ନତ ସ୍କୁଲରେ ପରିଣତ କରିବା ତାଙ୍କର

ଲକ୍ଷ୍ୟ ଥିଲା। ସେ ମହାନ୍ ଆତ୍ମାଙ୍କୁ ସେ ଅଞ୍ଚଳ ସମ୍ମାନ ଦିଏ କାରଣ ସମ୍ମାନ ଦେବା ଉଚିତ୍।

## କଳା ଶିକ୍ଷକ ନିଯୁକ୍ତି

ପୁରୀ ସର୍କଲରେ ଦୁଇଟି କଳା ଶିକ୍ଷକ ପୋଷ୍ଟ ଖାଲି ଥିଲା। ଶିକ୍ଷାମନ୍ତ୍ରୀ ଗଙ୍ଗାଧର ମହାପାତ୍ରଙ୍କ ସୁପାରିଶ କ୍ରମେ ତାଙ୍କ ଗାଁ ର ଗୋଟିଏ ପିଲା ରବିନାରାୟଣ ଷଡଙ୍ଗୀଙ୍କୁ ଅସ୍ଥାୟୀ ନିଯୁକ୍ତି ଦିଆଯାଇଥିଲା। ସେ ସାକ୍ଷୀଗୋପାଳ ବାଳିକା ହାଇସ୍କୁଲରେ କାମ କରୁଥିଲେ। ତା'ର ନିଯୁକ୍ତିକୁ ସ୍ଥାୟୀ କରିବା ପାଇଁ ମନ୍ତ୍ରୀ ଚାପ ପ୍ରୟୋଗ କଲେ। ନିୟମିତ ନିଯୁକ୍ତି ନିମିତ୍ତ ବିଜ୍ଞାପନ ଜରିଆରେ ଦରଖାସ୍ତ ଆହ୍ୱାନ କରି ସାକ୍ଷାତ୍କାର ଦ୍ୱାରା ଚୟନ କରାଯିବାର କଥା। ତେଣୁ ବିଜ୍ଞାପନ ଦିଆଗଲା। ୭। ୮ ଜଣ ପ୍ରାର୍ଥୀ ଦରଖାସ୍ତ କରିଥିଲେ। ସାକ୍ଷାତ୍କାର ପାଇଁ ଗୋଟିଏ କମିଟି ଗଢାହେଲା। କମିଟି ସଦସ୍ୟ ମାନଙ୍କ ମଧ୍ୟରୁ ଜଣେ ମୋ ଉପରେ ଅସନ୍ତୁଷ୍ଟ ଥିଲେ କାରଣ ପୂର୍ବରୁ ତାଙ୍କର କର୍ତ୍ତୃତ୍ୱ ଇନ୍ସପେକ୍ଟର ଅଫିସ୍ ଉପରେ ବଳବତ୍ତର ଥିଲା। ମୁଁ ଯୋଗ ଦେଲା ପରେ ସେ କର୍ତ୍ତୃତ୍ୱ ରହିଲା ନାହିଁ। ତାଙ୍କ କର୍ତ୍ତୃତ୍ୱ ଫେରି ପାଇବାକୁ ସେ ମୋତେ ପୁରୀ ଇନ୍ସପେକ୍ଟର ଚାକିରିରୁ ହଟାଇବା ପାଇଁ ଚାହୁଁଥିଲେ। ସୁଯୋଗ ଅପେକ୍ଷାରେ ସେ ଥିଲେ। ଏଇଠି ତାଙ୍କୁ ସୁଯୋଗ ମିଳିଗଲା। ସେ ଦେଖିଲେ ମନ୍ତ୍ରୀଙ୍କ ପ୍ରାର୍ଥୀ ରବି ଷଡଙ୍ଗୀଙ୍କୁ ମନୋନୀତ ନ କଲେ ମନ୍ତ୍ରୀ ଅସନ୍ତୁଷ୍ଟ ହୋଇ ମୋତେ ବଦଳି କରି ଦେବେ । ତେଣୁ ସେ ଜାଣିଶୁଣି ତାକୁ ତୃତୀୟ ସ୍ଥାନରେ ରଖିଲେ । ପୋଷ୍ଟ ଦୁଇଟି। ତେଣୁ ମନ୍ତ୍ରୀଙ୍କ ଲୋକ ପାଇପାରିବ ନାହିଁ। ଚୟନ କମିଟି ମୋତେ ଫଳାଫଳ ଜଣାଇ ଦେଲେ ୪ ଟା ବେଳକୁ । ଫଳାଫଳ ଦେଖି ମନ ଖରାପ ହୋଇଗଲା। ଅଫିସ୍ ଛାଡି ଜଗନ୍ନାଥଙ୍କ ମନ୍ଦିରକୁ ଚାଲିଗଲି। ଜଗମୋହନରେ କିଛି ସମୟ ବସିଲି। ତାପରେ ଘରକୁ ଫେରିଲି। ଏହି ସମୟରେ ଆମ Administrative ଅଫିସର ଆସି ଘରେ ପହଞ୍ଚି କହିଲେ, ଯେଉଁ ପ୍ରାର୍ଥୀ ପ୍ରଥମ ସ୍ଥାନ ଅଧିକାର କରିଛି ସେ Overaged । ତାର ବୟସ ୩୨ ବର୍ଷ ହେଲାଣି। ସେ ନିଯୁକ୍ତି ପାଇ ପାରିବ ନାହିଁ। ତେଣୁ ଦ୍ୱିତୀୟ ଓ ତୃତୀୟ ପ୍ରାର୍ଥୀ ନିଯୁକ୍ତି ପାଇବେ। ଏହା ଶୁଣି ମୁଁ ଆଶ୍ୱସ୍ତ ହେଲି। ଫାଇଲରେ ଦସ୍ତଖତ କରିଦେଇ ପୁଣି ଥରେ ଜଗନ୍ନାଥ ମନ୍ଦିରକୁ ଗଲି କୃତଜ୍ଞତା ଜଣାଇବା ପାଇଁ ଠାକୁରଙ୍କୁ। ଯେଉଁ ବ୍ୟକ୍ତି ମୋ ବିରୁଦ୍ଧରେ ଷଡଯନ୍ତ୍ର କରି ମନ୍ତ୍ରୀଙ୍କ ପ୍ରାର୍ଥୀଙ୍କୁ ତୃତୀୟ ସ୍ଥାନରେ ରଖିଥିଲା, ତା'ର ସମସ୍ତ ଷଡଯନ୍ତ୍ର ଅକାମୀ ହୋଇଗଲା।

# ସରକାରୀ ହାଇସ୍କୁଲ ଓ ଟ୍ରେନିଂସ୍କୁଲ ପ୍ରଧାନ ଶିକ୍ଷକ ସମ୍ମିଳନୀ

ଆଜିକାଲି ଭଳି ୧୯୮୦ ମସିହାରେ ପ୍ରଧାନ ଶିକ୍ଷକ ଶିକ୍ଷୟତ୍ରୀ ମାନଙ୍କର ସମ୍ମିଳନୀ କଥା ଚିନ୍ତା କରାଯାଉ ନଥିଲା। ମୁଁ ଚିନ୍ତା କଲି ପ୍ରଧାନ ଶିକ୍ଷକ ଓ ଶିକ୍ଷୟତ୍ରୀମାନଙ୍କ ସମ୍ମଳନୀ କରିବା ପାଇଁ। କାରଣ ମୁଁ ଦେଖିଲି ଗଡ୍ଡଳିକା ପ୍ରବାହରେ ପୁରୁଣା ନୀତିରେ ସ୍କୁଲ ସବୁ ଚାଲିଛି। ଯାହା ନୂଆ ନୂଆ ଗବେଷଣା ଲବ୍ଧଜ୍ଞାନ କି ପଦ୍ଧତି କୌଣସି ସ୍କୁଲରେ ଲକ୍ଷ୍ୟ କରି ପାରିଲି ନାହିଁ। ଦ୍ୱିତୀୟ କଥା ହେଲା ପ୍ରଧାନ ଶିକ୍ଷକ ଶିକ୍ଷୟତ୍ରୀମାନେ ୨୫ ବର୍ଷ କି ୩୦ ବର୍ଷ ତଳେ ତାଲିମ୍ ପାଇଥିଲେ। ସେତେବେଳେ ଜ୍ଞାନ ପରିସର ଯାହା ଥିଲା, ତା'ରି ଭିତରେ ସେମାନଙ୍କର କାରବାର। ତାଙ୍କର ଉନ୍ନତି ଦରକାର। ତୃତୀୟ କଥା ହେଲା ମୁଁ ଶିକ୍ଷକ ପ୍ରଶିକ୍ଷଣ କଲେଜରେ ବହୁ ବର୍ଷ ରହିବା ଫଳରେ ଓ ଶିକ୍ଷା ମୂଲ୍ୟାଙ୍କନ ଓ ଇତିହାସ ଶିକ୍ଷା ପଦ୍ଧତି ଓ ଶିକ୍ଷା ଯୋଜନା ବିଷୟରେ ସ୍ୱତନ୍ତ୍ର ତାଲିମ ପାଇଥିବାରୁ ନୂତନ ପଦ୍ଧତି ପ୍ରଚଳନ ବିଷୟରେ ମୋର ସ୍ପଷ୍ଟ ଧାରଣା ଥିଲା। ତେଣୁ କୋଣାର୍କ ହାଇସ୍କୁଲରେ ସରକାରୀ ହାଇସ୍କୁଲ ଓ ସି.ଟି ଟ୍ରେନିଂ ସ୍କୁଲ ପ୍ରଧାନ ଶିକ୍ଷକ ଶିକ୍ଷୟତ୍ରୀ ମାନଙ୍କର ଏକ ସମ୍ମିଳନୀ ଡକାଇଲି। ପ୍ରାୟ ୭୫ ଜଣ ପ୍ରଧାନ ଶିକ୍ଷକ ଶିକ୍ଷୟିତ୍ରୀ ଯୋଗ ଦେଇଥିଲେ। ସେଥିରେ ସ୍କୁଲ ପରିଚାଳନା, ଅଣୁ - ଯୋଜନା, ନିରନ୍ତର ଶିକ୍ଷା, ଶିକ୍ଷା ମୂଲ୍ୟାୟନ, ପାଠଦାନ କ୍ଷେତ୍ରରେ ନୂତନ ଆବିଷ୍କାର, ଅଣୁ ଶିକ୍ଷଣ ପଦ୍ଧତି (Micro Teaching) ଛାତ୍ରଛାତ୍ରୀ ମାନଙ୍କର ଶିକ୍ଷଣ ପ୍ରକ୍ରିୟାରେ ସକ୍ରିୟ ଅଂଶ ଗ୍ରହଣ, କର୍ମଭିତ୍ତିକ ଶିକ୍ଷା ଆଦି ବିଷୟରେ ଦୁଇ ଦିନ ଧରି ବିସ୍ତୃତ ଆଲୋଚନା ହେଲା। ବିଭିନ୍ନ ଶିକ୍ଷାନୁଷ୍ଠାନର ଅଭାବ ଅସୁବିଧା ଓ ସମସ୍ୟା ବିଷୟ ମଧ୍ୟ ଆଲୋଚିତ ହେଲା। ସେ ସମ୍ମିଳନୀକୁ ଶିକ୍ଷା ସଚିବ ଡକ୍ଟର ସୀତାକାନ୍ତ ମହାପାତ୍ର, ଡି.ପି.ଆଇ ପ୍ରଫେସର ବିଧୁଭୂଷଣ ଦାସ ଓ ସ୍କୁଲ ଶିକ୍ଷା ଡି.ପି.ଆଇ ପ୍ରଫେସର ହରେକୃଷ୍ଣ ମିଶ୍ର ଯୋଗ ଦେଇଥିଲେ। ଶିକ୍ଷାର ଗୁଣାତ୍ମକମାନ ସମ୍ବନ୍ଧରେ ପ୍ରଫେସର ବିଧୁଭୂଷଣ ଦାସ, ଶିକ୍ଷା ପ୍ରଶାସନ ବିଷୟରେ ପ୍ରଫେସର ହରେକୃଷ୍ଣ ମିଶ୍ର ଓ ଶିକ୍ଷାର ଭାବ ସଂପର୍କରେ ଶିକ୍ଷା ସଚିବ ଡକ୍ଟର ସୀତାକାନ୍ତ ମହାପାତ୍ର ସାରଗର୍ଭକ ଭାଷଣ ଦେଇଥିଲେ।

## ବେସରକାରୀ ହାଇସ୍କୁଲ ପ୍ରଧାନ ଶିକ୍ଷକ ସମ୍ମିଳନୀ

ସରକାରୀ ହାଇସ୍କୁଲ ପ୍ରଧାନ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର କୋଣାର୍କଠାରେ ସମ୍ମିଳନୀ ହୋଇଯିବା ପରେ ବେସରକାରୀ ହାଇସ୍କୁଲ ପ୍ରଧାନ ଶିକ୍ଷକ ଓ ଶିକ୍ଷୟିତ୍ରୀମାନଙ୍କର ସମ୍ମିଳନୀ ପାଇଁ ସେମାନେ ଅନୁରୋଧ କଲେ। ମୋତେ କେତେକ ପରାମର୍ଶ ଦେଲେ ଯେ ସରକାରୀ ପ୍ରଧାନ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ଉପରେ ସରକାରୀ ଅଙ୍କୁଶ ଥିବାରୁ ସହଜରେ ତାଙ୍କ ସମ୍ମିଳନୀ ହୋଇଗଲା। ବେସରକାରୀ ସ୍କୁଲ ପ୍ରଧାନ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କ ଉପରେ ଅଙ୍କୁଶ ନାହିଁ। ତେଣୁ ତାଙ୍କ



ଭୁବନେଶ୍ୱର ସୁଭଦ୍ରା ମହତାବ ବାଳିକା ଉଚ୍ଚବିଦ୍ୟାଳୟର ବିଜ୍ଞାନ ମେଳାରେ ଲେଖକ ଓ ତାଙ୍କ ଧର୍ମପତ୍ନୀ। ବାମରୁ ଦ୍ୱିତୀୟ ପ୍ରଧାନ ଶିକ୍ଷୟିତ୍ରୀ ସଂଯୁକ୍ତା ମଙ୍ଗରାଜ ଚତୁର୍ଥ ପଞ୍ଚମରେ ଲେଖକ ଓ ତାଙ୍କ ଧର୍ମପତ୍ନୀ।

ସମ୍ମିଳନୀ କରାଇବା ଉଚିତ୍ ନୁହେଁ। ପ୍ରଥମ ସମ୍ମିଳନୀରେ ମୋର ସଫଳତାରେ ମୁଁ ଉତ୍ସାହିତ ହୋଇ ଦ୍ୱିତୀୟ ସମ୍ମିଳନୀ ପାଇଁ ପ୍ରସ୍ତୁତ ହେଲି। ଇତିମଧ୍ୟରେ ଓଡିଶା ମାଧ୍ୟମିକ ସ୍କୁଲ ଶିକ୍ଷକ ସଂଘ (OSSTA) ଜିଲ୍ଲା ଶାଖା ତରଫରୁ ମୋତେ ଅନୁରୋଧ କରାଗଲା ସମ୍ମିଳନୀ ପାଇଁ।

ସେତେବେଳେ ରାଜକିଶୋର ପଟ୍ଟନାୟକ ଓଡିଶା ମାଧ୍ୟମିକ ଶିକ୍ଷକ ସଂଘ ତଥା ପୁରୀ ଜିଲ୍ଲା ଶାଖା ସଭାପତି ଥିଲେ। ପ୍ରଫୁଲ୍ଲ ସାମନ୍ତସିଂହାର ପୁରୀ ଜିଲ୍ଲା ଶାଖା ସଂପାଦକ ଥିଲେ। ତାଙ୍କୁ ଡାକି କହିଲି, ବେସରକାରୀ ହାଇସ୍କୁଲ

ପ୍ରଧାନ ଶିକ୍ଷକ ଶିକ୍ଷୟିତ୍ରୀ ସମ୍ମିଳନୀ କରାଇବି ଗୋଟିଏ ସର୍ତ୍ତରେ। ତାହା ହେଲା ସମ୍ମିଳନୀ ପାଇଁ ଟଙ୍କା ତୁମେ ଆଦାୟ କରିବ, ତୁମେ ଖର୍ଚ୍ଚ କରିବ। ତମେ ତମ ଜିଲ୍ଲା ଶାଖାକୁ ହିସାବ ଦେବ। ଶିକ୍ଷକମାନଙ୍କ ରହିବା, ଖାଇବା, ପିଇବା ଦାୟିତ୍ୱ ତମେ ନେବ। ସମ୍ମିଳନୀ ଆୟୋଜନ ତୁମେ କରିବ। କେବଳ ମୋତେ ଓ ଆମ ଅଫିସ୍ କର୍ମଚାରୀ ମାନଙ୍କୁ ଖାଇବାକୁ ଦେବ। Academic Management ମୋର। ଏ ସର୍ତ୍ତରେ ସେମାନେ ରାଜି ହୋଇଗଲେ। ପ୍ରଫୁଲ୍ଲ ସାମନ୍ତ ସିଂହାରଙ୍କ ହାଇସ୍କୁଲ ଗୋଦାବରୀଶ ହାଇସ୍କୁଲ ନାଚୁଣୀରେ ସମ୍ମିଳନୀ ହେବା ସ୍ଥିର ହେଲା।

ଆଲୋଚନାରେ ମୁଖ୍ୟତଃ ଶିକ୍ଷକମାନଙ୍କର ଦରମା ନିର୍ଦ୍ଧାରଣ, ଅଡିଟ୍ ଓ ଅନ୍ୟାନ୍ୟ ଆର୍ଥିକ ସମସ୍ୟା ସହିତ ପାଠ୍ୟପୁସ୍ତକ ଯୋଗାଣ, ପାଠପଢା, ପରୀକ୍ଷା ଓ ପରୀକ୍ଷା ଫଳ ଆଦି ବିଷୟରେ ଆଲୋଚନା ହେଲା। ପୁରୀ ଜିଲ୍ଲାରେ ପରୀକ୍ଷା ମୂଳକ ଭାବରେ ପ୍ରତ୍ୟକ୍ଷ ଦରମା ପ୍ରଦାନ କରାଯାଉଥିବାରୁ ତା'ର କାର୍ଯ୍ୟକାରିତା ବିଷୟରେ ଆଲୋଚନା ହେଲା। ଶିକ୍ଷକମାନଙ୍କର ବ୍ୟାଙ୍କ ଓ ପୋଷ୍ଟାଲ ଏକାଉଣ୍ଟରେ ଦରମା ଜମା କରାଯାଉଥିବାରୁ କେତେକ ଅସୁବିଧା ସେମାନେ ଦର୍ଶାଇଥିଲେ। ଭୁଲଭଟକା କେତେବେଳେ କେମିତି ହୁଏ। ନଚେତ୍ ଦରମା ପାଇବା ବିଷୟରେ କାହାରି କିଛି ଆପତ୍ତି ନଥିଲା। ସମ୍ମିଳନୀକୁ ଶିକ୍ଷାମନ୍ତ୍ରୀ ଗଙ୍ଗାଧର ମହାପାତ୍ର ଉଦ୍‌ଘାଟନ କରିଥିଲେ। ଶିକ୍ଷକମାନେ ଶିକ୍ଷାମନ୍ତ୍ରୀଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରିଥିଲେ।

ବେସରକାରୀ ସ୍କୁଲ ପ୍ରଧାନ ଶିକ୍ଷକ ଶିକ୍ଷୟିତ୍ରୀମାନେ ସ୍ଥାନୀୟ ମାଛ, କଙ୍କଡା ବ୍ୟବସାୟୀ ମାନଙ୍କୁ ଅନୁରୋଧ କରି ଏକ କୁଇଣ୍ଟାଲ ମାଛ, ଏକ କୁଇଣ୍ଟାଲ ଚିଙ୍ଗୁଡି ଓ ଏକ କୁଇଣ୍ଟାଲ କଙ୍କଡା ଆଣିଥିଲେ। ତିନି ଦିନଯାକ ମାଛ, କଙ୍କଡା ଓ ଚିଙ୍ଗୁଡିରେ କଟିଗଲା। ପ୍ରାୟ ୩୦୦ ପ୍ରଧାନ ଶିକ୍ଷକ ଶିକ୍ଷୟିତ୍ରୀ ଯୋଗ ଦେଇଥିଲେ।

## ଶିକ୍ଷାର ଗୁଣାତ୍ମକ ମାନବୃଦ୍ଧି

ଶିକ୍ଷାର ଗୁଣାତ୍ମକ ମାନବୃଦ୍ଧି ଦାୟିତ୍ୱ ଓଡିଶା ମାଧ୍ୟମିକ ଶିକ୍ଷା ପରିଷଦ ଉପରେ ନ୍ୟସ୍ତ। ପାଠ୍ୟ ପୁସ୍ତକ ପ୍ରସ୍ତୁତିଠାରୁ ଆରମ୍ଭ କରି ମୂଲ୍ୟାଙ୍କନ ପର୍ଯ୍ୟନ୍ତ ସେମାନେ ସବୁ କାର୍ଯ୍ୟ କରନ୍ତି। ମାଧ୍ୟମିକ ଶିକ୍ଷା ପରିଷଦରେ ୧୯୮୦ ମସିହା ବେଳକୁ ଜଣେ ଶିକ୍ଷା ମୂଲ୍ୟାୟନ ଅଧିକାରୀ ଓ ଛଅ ଜଣ ବିଷୟ-ତତ୍ତ୍ୱଜ୍ଞ (Subject

Experts) ରହିଥିଲେ । ସେମାନଙ୍କର କାମ ସେମାନେ Orientation Courses ପରିଚାଳନା କରିବେ ଓ ବିଭିନ୍ନ ବିଷୟରେ ନୂତନ ଗବେଷଣା ଲବ୍ଧଜ୍ଞାନ ବିଷୟରେ ଶିକ୍ଷକମାନଙ୍କୁ ଅବହିତ କରାଇବେ । Orientation Courses ଆୟୋଜନ କରିବା ଦାୟିତ୍ୱ ଇନିସ୍ପେକ୍ଟରମାନଙ୍କର । ମୁଁ ଦେଖିଲି ଅନ୍ୟ ଇନିସ୍ପେକ୍ଟରମାନେ Orientation Courses ଆୟୋଜନ କରିବାରେ ବିମୁଖ । ମାଧ୍ୟମିକ ଶିକ୍ଷା ପରିଷଦର ଯେଉଁ ଅର୍ଥ ବ୍ୟବସ୍ଥା କରାଯାଇଛି ତାହା ପ୍ରାୟ ଖର୍ଚ୍ଚ ନ ହୋଇ ପଡିରହୁଛି । ଏ ପରିସ୍ଥିତିର ସୁଯୋଗ ମୁଁ ନେଲି । ପ୍ରଥମେ ବାଲୁଗାଁ ହାଇସ୍କୁଲରେ ଇଂରାଜି Orientation Course, ନୟାଗଡ ହାଇସ୍କୁଲରେ ଗଣିତ ଶିକ୍ଷା, ଭୁବନେଶ୍ୱର ୟୁନିଟ୍ - ୯ ହାଇସ୍କୁଲରେ ସାଧାରଣ ବିଜ୍ଞାନ, ବିଶ୍ୱମ୍ଭର ବିଦ୍ୟାପୀଠରେ ଶିକ୍ଷା ମୂଲ୍ୟାୟନ, ଭୁବନେଶ୍ୱରରେ ଇତିହାସ ଓ ଓଡିଆ ଶିକ୍ଷା ଓ ନରଣଗଡରେ ଭୂଗୋଳ ଶିକ୍ଷା ଉପରେ Orientation Courses ଆୟୋଜିତ ହେଲା । ପ୍ରତ୍ୟେକ Orientation Courses ରେ ମୁଁ ଯୋଗ ଦିଏ। ତେଣୁ ଶିକ୍ଷକମାନେ ଅନୁପସ୍ଥିତ ରହନ୍ତି ନାହିଁ । Orientation Courses ରେ ଯେଉଁମାନେ ଯୋଗ ଦେଉଥିଲେ ତାଙ୍କର ଶିକ୍ଷାଦାନ ଅନ୍ୟମାନଙ୍କ ଅପେକ୍ଷା ଭଲ ହେଉଥିବାର ମୁଁ ଅନୁଭବ କଲି ତଥା ଶିକ୍ଷକମାନେ ମଧ୍ୟ କହିଲେ ।

ପୁରୀ ଶିକ୍ଷା ସର୍କଲରେ ଶିକ୍ଷକମାନଙ୍କର, ଶିକ୍ଷକ ସଂଘର ଓ ସ୍କୁଲ ପରିଚାଳନା ଦାୟିତ୍ୱରେ ଥିବା ଲୋକଙ୍କର ସଂପୂର୍ଣ୍ଣ ସହଯୋଗ ପାଇ ମୁଁ କାମ କରିଛି । ମୋ ଅଫିସର ସମସ୍ତ କର୍ମଚାରୀଙ୍କ କାର୍ଯ୍ୟରେ ପ୍ରଥମେ ଅସନ୍ତୁଷ୍ଟ ହୋଇଥିଲେ ମଧ୍ୟ ସେମାନଙ୍କର ଉନ୍ନତିରେ ମୁଁ ଆନନ୍ଦିତ । ପ୍ରଶାସନିକ ଦାୟିତ୍ୱରେ ରହିଲେ ଅନେକ ଲୋକଙ୍କର ଅପ୍ରିୟ ହେବାକୁ ପଡେ । ଦୁଷ୍ଟ ଲୋକମାନେ ଦଣ୍ଡ ନ ପାଇଲେ ଶାସନ ବିଫଳ ହୋଇଯିବ । ସେହିପରି ଶିଷ୍ଟ ଲୋକମାନେ ପ୍ରଶଂସିତ ନ ହେଲେ ତାଙ୍କ କର୍ମୋତ୍ସାହ କମିଯିବ । ଏ ଉଭୟକୁ ଦୃଷ୍ଟିରେ ରଖି ପ୍ରଶାସନ କରିବାକୁ ହୋଇଥାଏ । ମୁଁ ଯେତେ ଦୂର ପାରିଛି ଅନୁଷ୍ଠାନ ଗୁଡିକର ଉନ୍ନତି ପାଇଁ କାମ କରିଛି ।

୧୯୮୨ ମସିହା ଶେଷ ଆଡକୁ ଶିକ୍ଷାମନ୍ତ୍ରୀ ଗଙ୍ଗାଧର ମହାପାତ୍ର ପ୍ରଶାସନରେ ଅଧିକରୁ ଅଧିକ ହସ୍ତକ୍ଷେପ କରିବାକୁ ଲାଗିଲେ । ମୁଖ୍ୟ କାରଣ ହେଲା, ପୁରୀ ତାଙ୍କ ନିଜ ଘର, ବ୍ରହ୍ମଗିରି ତାଙ୍କ ନିର୍ବାଚନ ମଣ୍ଡଳୀ । ସାକ୍ଷୀଗୋପାଳ ଅଞ୍ଚଳରେ ତାଙ୍କର ଗାଁ, ବନ୍ଧୁବାନ୍ଧବ । ସମସ୍ତଙ୍କର ସ୍ୱାର୍ଥରକ୍ଷା ପାଇଁ ସେ ପ୍ରଶାସନକୁ ପ୍ରଭାବିତ କରିବାକୁ ଲାଗିଲେ । ଯେତେ ଦୂର ସମ୍ଭବ ଓ ଯେତିକି ଆଇନ୍ ସମ୍ମତ

ସେତିକି କଲି । ଆଉ ଅଧିକ କାମ କରିବାକୁ ବିବେକ ବାଧା ଦେଲା । ବଦଳି, ପୋଷ୍ଟିଂ, ଚାକିରି ଇତ୍ୟାଦି ନାନା କଥାରେ ସେ ଅନୁରୋଧ କରିବାକୁ ଲାଗିଲେ । ତାଙ୍କ ପାଖରେ ଯେଉଁ ବତୀପେଲା ସବୁ ରହିଥାନ୍ତି, କୌଣସି କାମ ନ ହୋଇ ପାରିଲେ ମନ୍ତ୍ରୀଙ୍କୁ ମୋ ବିରୁଦ୍ଧରେ ଉତ୍ତେଜିତ କରୁଥିଲେ । ଇତି ମଧ୍ୟରେ ଢେଙ୍କାନାଳ ଇନିସ୍ପେକ୍ଟର ସାନ୍ତ୍ୱନା ଦାସଙ୍କୁ ବାଧ୍ୟତାମୂଳକ ଅବସର ଦେବା ପାଇଁ ସରକାରରେ କାର୍ଯ୍ୟାନୁଷ୍ଠାନ ଆରମ୍ଭ ହୋଇଯାଇଥାଏ । ସେ ମନ୍ତ୍ରୀଙ୍କର ଶରଣ ପଶିଲେ । ମନ୍ତ୍ରୀ ଦେଖିଲେ ତାଙ୍କ ବାଧ୍ୟତାମୂଳକ ଅବସର ଗ୍ରହଣ ପ୍ରୋସିଡିଂ ବନ୍ଦ କରି ତାଙ୍କୁ ଆଣି ପୁରୀ ସର୍କଲରେ ରଖିଲେ ସେ ତାଙ୍କର ସବୁ ଅନୁରୋଧ ରକ୍ଷା କରିବାକୁ କୁଣ୍ଠାବୋଧ କରିବେ ନାହିଁ । ତାଙ୍କର ଦୁର୍ବଳତା ପାଇଁ ସେ ମନ୍ତ୍ରୀଙ୍କୁ ସବୁବେଳେ ଖୁସି ରଖିବାକୁ ଚେଷ୍ଟା କରିବେ । ମନ୍ତ୍ରୀଙ୍କର ଦୁଇ ପ୍ରକାର ଲାଭ ହେଲା । ସାନ୍ତ୍ୱନା ଦାସଙ୍କର ବାଧ୍ୟତାମୂଳକ ଅବସର ବନ୍ଦ କରି ଦେବା ଦ୍ୱାରା ଲାଭ ଓ ଭବିଷ୍ୟତରେ ତାଙ୍କର ସବୁ କାମ ହୋଇଯିବାର ସମ୍ଭାବନା ଦୃଷ୍ଟିରୁ ସେ ମୋତେ  ବଦଳି କରିବାକୁ  ଚେଷ୍ଟା କଲେ । ମୁଁ ମଧ୍ୟ ବଦଳିକୁ ସ୍ୱାଗତ କଲି । ଅନ୍ତତଃ ମନ୍ତ୍ରୀ ଗଙ୍ଗାଧର ମହାପାତ୍ରଙ୍କ ଘନ ଘନ ଚିଠି, ଟେଲିଫୋନ୍ ଓ ବିରକ୍ତିରୁ ରକ୍ଷା ମିଳିଯିବ । ଢେଙ୍କାନାଳ ସର୍କଲକୁ ମୋର ବଦଳି ହେଲା । କେବଳ ଦୁଃଖ ରହିଗଲା ଏତିକି ଯେ ଦୁଇବର୍ଷ ଭିତରେ ମୁଁ ଅଫିସ୍ ଲୋକଙ୍କୁ ଅଧିକ କାମରେ ଲଗାଇ ଯେତିକି ସଫଳତା ହାସଲ କରିଥିଲି, ତାକୁ ଓଲଟାଇବାକୁ ସାନ୍ତ୍ୱନା ଦାସଙ୍କୁ ଦୁଇଦିନ ଲାଗିଲା ନାହିଁ । ଅଫିସରେ ଲାଞ୍ଚ କାରବାର ଅନେକଟା କମି ଯାଇଥିଲା ତାହା ବଢି ଯିବାକୁ ଖୁବ୍ କମ୍ ସମୟ ଲାଗିଲା ।

ସାନ୍ତ୍ୱନା ଦାସ ଯାଜପୁର ରୋଡ ଡି.ଆଇ ଥିବା ବେଳେ ମୁଁ ତାଙ୍କୁ ଜାଣି ଥିଲି । କାରଣ ଆମ ଘର ଯାଜପୁର ରୋଡ ଡି.ଆଇଙ୍କ କାର୍ଯ୍ୟ ପରିସର ମଧ୍ୟରେ । ତା ଛଡା ତାଙ୍କ କାର୍ଯ୍ୟଧାରା ସମ୍ବନ୍ଧରେ ମୋର ଧାରଣା ଥିଲା । ପୁରୀରେ ତାଙ୍କୁ ଚାର୍ଜ ଦେବା ପରେ ଦେଖିଲି ମୋ ଧାରଣା ତାଙ୍କ ବିଷୟରେ ଯାହା ଥିଲା ତାହା ବହୁତ କମ୍ । ତା ଅପେକ୍ଷା ସେ କାହିଁ କେତେ ଗୁଣ ଅଧିକ ତତ୍ପରତା ସହିତ କାମ କଲେ । ଆଇନ୍ କାନୁନ୍  ସହିତ ତାଙ୍କର କାରବାର କମ୍ । ଶିକ୍ଷାର ଉନ୍ନତି ବା ଶିକ୍ଷକଙ୍କର ଉନ୍ନତି ବିଷୟରେ ସେ ବିଶେଷ ବିବ୍ରତ ନୁହନ୍ତି । ମୁଁ ଢେଙ୍କାନାଳ ଯାଇ ଫାଇଲରୁ ତାଙ୍କ କାର୍ଯ୍ୟକଳାପ ଯାହା ଦେଖିଲି, ମୋର ମନେ ହେଲା, ଶିକ୍ଷା ବିଭାଗ ଆଇନଗୁଡିକର କିଛି କାର୍ଯ୍ୟକାରିତା ନଥିଲା ।

ଢେଙ୍କାନାଳ ଯିବା ପାଇଁ ମୋର ଅସୁବିଧା ନଥିଲା । କାରଣ ଢେଙ୍କାନାଳ ଲୋକଙ୍କର ତଥା ଶିକ୍ଷକମାନଙ୍କର ସରଳତା, କାର୍ଯ୍ୟଦକ୍ଷତା ଓ ଆନ୍ତରିକତା ବିଷୟରେ ମୋର ପୂର୍ବ ଅଭିଜ୍ଞତା ଥିଲା ।

## ୪.୪ ଢେଙ୍କାନାଳ ଶିକ୍ଷାମଣ୍ଡଳ ଇନିସ୍ପେକ୍ଟର

କେଉଁଦିନ ଢେଙ୍କନାଳରେ ଯୋଗ ଦେବାକୁ ଯିବି ଚିନ୍ତା କରୁଥିଲି । ମୋ ହାତରେ ଆହୁରି ୬।୭ ଦିନ ଥିଲା । ଏହି ସମୟରେ ଢେଙ୍କାନାଳ ସର୍କଲର ୨ । ୩ ଜଣ ବିଜ୍ଞାନ ଶିକ୍ଷକ ଓ ବିଜ୍ଞାନ ପରିଦର୍ଶକ ଗୋଟେ ଗାଡି ନେଇ ପୁରୀରେ ପହଞ୍ଚିଲେ । ମୋତେ କହିଲେ, " କାଲି ଆମର ଜିଲ୍ଲା ବିଜ୍ଞାନ ପ୍ରଦର୍ଶନୀ ଓ ସମ୍ମଳନୀ ଅନୁଷ୍ଠିତ ହେଉଛି । ଆପଣଙ୍କୁ ନିଶ୍ଚୟ ଯିବାକୁ ହେବ । ତାଙ୍କ ସହିତ ଗଲି । ୧୮। ୧୧। ୮୨ ତାରିଖରେ ଢେଙ୍କାନାଳ ସ୍କୁଲ ଇନିସ୍ପେକ୍ଟର ଭାବରେ ଯୋଗ ଦେଲି ଓ ସେହିଦିନ ସନ୍ଧ୍ୟାରେ ବିଜ୍ଞାନ ସମ୍ମିଳନୀରେ ଯୋଗ ଦେଲି । ଢେଙ୍କାନାଳ ମୋ ପାଇଁ ପୁରୁଣା ଜାଗା । ମୁଁ ଢେଙ୍କାନାରେ ଜିଲ୍ଲା ଶିକ୍ଷା ସର୍ଭେ ଅଫିସର ଥିଲି । ଅବିଭକ୍ତ ଢେଙ୍କାନାଳ ଜିଲ୍ଲାର ଅନୁଗୁଳ ବିଜ୍ଞାନ କଲେଜ ତଥା ଟ୍ରେନିଂ କଲେଜରେ ସାତ ବର୍ଷ କାମ କରିଛି । ଶିକ୍ଷକମାନେ ଚିହ୍ନା । ତାଙ୍କ ଭିତରୁ ଅନେକ ମୋର ଛାତ୍ରଛାତ୍ରୀ । ସେ ଦିନ ସଭାରେ ମୋର ବିଜ୍ଞାନ ସମ୍ମିଳନୀ ବିଷୟରେ ବକ୍ତବ୍ୟ ପ୍ରଦାନ କଲି ଓ ତା ସହିତ ମୋର ଶିକ୍ଷାଶାସନ କିପରି ହେବ ସେ ବିଷୟରେ ସୂଚନା କଲି । ମୋର ବକ୍ତବ୍ୟ ଶୁଣି ଯେଉଁମାନଙ୍କର କିଛି କଳା କାରବାର ଥିଲା ସେମାନେ ଆଶଙ୍କିତ ହେଲେ । କେହି କେହି କହିଲେ, ଯାଙ୍କ ସହିତ କାମ କରିବା କଷ୍ଟକର ହେବ ।

ଢେଙ୍କାନାଳ ଇନିସ୍ପେକ୍ଟର ଅଫିସରେ Administrative-Cum -Accounts ଅଫିସର ଥିଲେ ଭ୍ରମରବର ହୋତା । ଅତ୍ୟନ୍ତ କାର୍ଯ୍ୟ ଦକ୍ଷ, ସାଧୁ, ସଚ୍ଚୋଟ ଅଫିସର । ସକାଳ ୯ ଟାରୁ ରାତି ୯ଟା ପର୍ଯ୍ୟନ୍ତ କାମ କରନ୍ତି । କାମ କିଛି ବାକି ରଖନ୍ତି ନାହିଁ । ଶିକ୍ଷକମାନଙ୍କର ପ୍ରତିମାସ ୧୧ ତାରିଖରେ ଦରମା ଦିଆଯାଏ । ତାଙ୍କୁ କିଛି ନିର୍ଦ୍ଦେଶ ଦେବା ଦରକାର ପଡିଲା ନାହିଁ । ସେ ଡି.ପି.ଆଇ ଅଫିସରେ କାମ କରୁଥିଲେ । ତାଙ୍କ ସହିତ ମୋର ଡି.ପି.ଆଇ ଅଫିସରୁ ପରିଚୟ ।

ମୁଁ ଇନିସ୍ପେକ୍ଟର ଅଫିସରେ ପହଞ୍ଚି ପ୍ରଥମେ ମାଗିଲି କେତେଟା ସମସ୍ୟା ସ୍କୁଲ ତା'ର ତାଲିକା ଦିଅ । ଭ୍ରମରବାବୁ ମୋତେ ୨୬ ଟା ସ୍କୁଲର ତାଲିକା

ଦେଲେ ଓ ପ୍ରତ୍ୟେକ ସ୍କୁଲର ସମସ୍ୟା ବିଷୟରେ ସୂଚନା ଦେଲେ। ମୁଁ ଦେଖିଲି ଗୋଟିଏ ମାସ ମଧ୍ୟରେ ସବୁ ସମସ୍ୟା ସମାଧାନ ହୋଇଯିବ ଯଦି ପ୍ରତିଦିନ ଗୋଟିଏ ସ୍କୁଲର ସମସ୍ୟା ସମାଧାନ ହୋଇଯାଏ। ପ୍ରଥମେ କମଗରା ସ୍କୁଲକୁ ଗଲି। ସେଠାରେ ପରିଚାଳନା ସମିତି ସଦସ୍ୟମାନଙ୍କୁ ଡକାଇ ପଠାଇ ମୁଁ ଫାଇଲ୍ ଦେଖିଲି। ଫାଇଲ୍‌ରୁ ମୁଣ୍ଡ ଉଠାଇ ଦେଖିଲି ସମିତି ସଦସ୍ୟମାନେ ଆସି ଗଲେଣି। ପଚାରିଲି, " କ'ଣ ହେଲା" ? ସେମାନେ କହିଲେ, ଆମର ଭୁଲ ହୋଇଛି। ଆପଣ ଯାହା କହିବେ କରିବୁ। ଆଉ ଆଲୋଚନା କ'ଣ ? ସମସ୍ୟା ତ ସମାଧାନ ହୋଇଗଲା। ତା ପରେ ପ୍ରତିଦିନ ଦୁଇଟା ସ୍କୁଲକୁ ପ୍ରୋଗ୍ରାମ କଲି। ୧୫ ।୨୦ ଦିନ ମଧ୍ୟରେ ସବୁ ସମସ୍ୟା ସମାଧାନ ହୋଇଗଲା।

ମୁଁ ଢେଙ୍କାନାଳ ସର୍କଲରେ ଯୋଗ ଦେବା ବେଳକୁ ମୋର ସ୍କୁଲ ଇନିସ୍‌ପେକ୍ଟର ଭାବରେ ଦୁଇ ବର୍ଷରୁ ଉର୍ଦ୍ଧ୍ୱ ଅଭିଜ୍ଞତା ହୋଇଯାଇଥିଲା। ପୁରୀ ସର୍କଲର ବହୁ ଜଟିଳ ସମସ୍ୟାର ସମାଧାନ କରି ମୋର ଆତ୍ମବିଶ୍ୱାସ ବଢ଼ି ଯାଇଥିଲା। ତେଣୁ ଢେଙ୍କାନାଳ ସର୍କଲର ସମସ୍ୟା ସମାଧାନ କରିବାକୁ କିଛି କଷ୍ଟ ହେଲା ନାହିଁ। ତା ଛଡା ଢେଙ୍କାନାଳରେ କୌଣସି ପ୍ରକାର ବାଧା ପ୍ରତିବନ୍ଧକ ଥିଲା। ରାଜନୈତିକ ହସ୍ତକ୍ଷେପ ଯାହା ପୁରୀରେ ଥିଲା ସେଠାରେ ନ ଥିଲା। କାମାକ୍ଷା ପ୍ରସାଦ ସିଂହ ଦେଓ ସେତେବେଳେ କେନ୍ଦ୍ର ସରକାରରେ ପ୍ରତିରକ୍ଷା ରାଷ୍ଟ୍ରମନ୍ତ୍ରୀ ଥିଲେ। ସେ ଛୋଟ ଛୋଟ କଥାରେ ମୁଣ୍ଡ ଖେଳାନ୍ତି ନାହିଁ। ସେଠାରେ କାମ କରିବା ସୁବିଧାଜନକ ହେଲା।

ପୁରୀ ସର୍କଲରେ ଅନେକଗୁଡାଏ ଶିକ୍ଷା କାର୍ଯ୍ୟକ୍ରମ ମୁଁ ଶିକ୍ଷକ ସଂଘ ମାଧ୍ୟମରେ କରାଇ ନେଉଥିଲି। ଏଠାରେ ଜିଲ୍ଲା ମାଧ୍ୟମିକ ଶିକ୍ଷକ ସଂଘକୁ ଖୋଜିଲି। ଗତିକୃଷ୍ଣ ଭଞ୍ଜ ଜିଲ୍ଲା ମାଧ୍ୟମିକ ଶିକ୍ଷକ ସଂଘର ସଭାପତି ଓ ଯଜ୍ଞେଶ୍ୱର ପୃଷ୍ଟି ରାଜ୍ୟ ମାଧ୍ୟମିକ ଶିକ୍ଷକ ସଂଘ କୋଷାଧ୍ୟକ୍ଷ। ଏ ଦୁଇ ଜଣ ସକ୍ରିୟ ଥା'ନ୍ତି। ମୁଁ ଯେତେବେଳେ ୧୯୪୬ ମସିହାରେ ଆନନ୍ଦପୁର ବି.ଏନ୍ ହାଇସ୍କୁଲରେ ପଢୁଥିଲି ସେତେବେଳେ କେଉଁଝର ଗଡ ଗିବ୍‌ସନ୍ ହାଇସ୍କୁଲରେ ଜଣେ ଗତିକୃଷ୍ଣ ଭଞ୍ଜ ପ୍ରଧାନ ଶିକ୍ଷକ ଥିଲେ। ତାଙ୍କୁ ସେତେବେଳେ ପିଲାମାନେ ଦେବୋପମ ପ୍ରଧାନ ଶିକ୍ଷକ ବୋଲି କହୁଥିଲେ। ତାଙ୍କ ସୁନାମ ଆନନ୍ଦପୁର ହାଇସ୍କୁଲରେ ପହଞ୍ଚି ସାରିଥିଲା। ଏ ସେଇ ଗତିକୃଷ୍ଣ ଭଞ୍ଜ କି ନୁହେଁ ଜାଣିବା ପାଇଁ ଆଗ୍ରହ ହେଲା। ତାଙ୍କୁ ଡକାଇ ଏ କଥା ପଚାରିଲି। ଜାଣିଲି ଏ ହେଉଛନ୍ତି ସେଇ

ଦେବୋପମ ବ୍ୟକ୍ତି। ତାଙ୍କ ବୟସ ପ୍ରାୟ ୮୪ ବର୍ଷ ଥିଲା । ଗୋଟିଏ ଅଣସାହାଯ୍ୟ ପ୍ରାପ୍ତ ହାଇସ୍କୁଲରେ ପ୍ରଧାନ ଶିକ୍ଷକ ଥିଲେ। ଶିକ୍ଷା କାର୍ଯ୍ୟକ୍ରମ ରୂପାୟନରେ ସହଯୋଗ କରିବାକୁ ସେ ପ୍ରତିଶ୍ରୁତି ଦେଲେ।

ଢେଙ୍କାନାଳ ଶିକ୍ଷା ସର୍କଲରେ ପ୍ରଶାସନିକ ଜଟିଳତା ପ୍ରାୟ ନଥିଲା। ଯାହା ସମସ୍ୟା ଥିଲା ମୁ ଯୋଗ ଦେବାର ପ୍ରଥମ ଦୁଇମାସ ମଧ୍ୟରେ ସମାଧାନ ହୋଇଗଲା। ତେଣୁ ମୁଁ ଶିକ୍ଷାର ଗୁଣାତ୍ମକ ମାନ ବୃଦ୍ଧି ପାଇଁ ମନ ଦେଲି। ଶିକ୍ଷକଙ୍କର ବିଷୟଜ୍ଞାନ ଓ ଶିକ୍ଷାଦାନ ଦକ୍ଷତା ବୃଦ୍ଧି ଉପରେ ଶିକ୍ଷାର ମାନ ନିର୍ଭର କରେ। ତେଣୁ ମାଧ୍ୟମିକ ଶିକ୍ଷା ପରିଷଦରେ ବିଭିନ୍ନ ବିଷୟରେ Orientation Course ପାଇଁ ପ୍ରସ୍ତାବ ଦେଲି। ସେତେବେଳେ ମୁଁ ମାଧ୍ୟମିକ ଶିକ୍ଷା ପରିଷଦ କାର୍ଯ୍ୟକାରୀ କମିଟିରେ ସଦସ୍ୟ ଥାଏ। ଦ୍ୱିତୀୟ କଥା ହେଲା ଅନ୍ୟ ଇନ୍ସପେକ୍ଟରମାନେ Orientation Course ପରିଚାଳନା କାରବାର ଦାୟିତ୍ୱ ନେବାକୁ ଆଗ୍ରହ ପ୍ରକାଶ କରୁନଥିଲେ। ତେଣୁ ଅଧିକ Orientation Course ସଂଗଠନ କରିବାର ସୁଯୋଗ ମୋତେ ମିଳିଲା । ଇଂରାଜି, ଓଡିଆ, ଇତିହାସ, ବିଜ୍ଞାନ, ଗଣିତ, ଆଦି ପ୍ରତ୍ୟେକ ବିଷୟରେ ଦୁଇଟା ଲେଖାଏଁ Orientation Course କରାଇଲି।

ମାଧ୍ୟମିକ ଶିକ୍ଷାର ଯେତେଗୁଡିଏ ବିଷୟ ପଢାଯାଏ, ତା ପାଇଁ ଶିକ୍ଷକ ମିଳନ୍ତି। କିନ୍ତୁ ଭୂଗୋଳ ବିଷୟରେ ସ୍ନାତକ ଉପାଧି ଥିବା ତାଲିମ ପ୍ରାପ୍ତ ଶିକ୍ଷକ ମିଳନ୍ତି ନାହିଁ। ତେଣୁ ମୁଁ ମାଧ୍ୟମିକ ଶିକ୍ଷା ପରିଷଦ ସଭାପତି ରାଇମୋହନ ଦାସଙ୍କୁ ଅନୁରୋଧ କଲି ଭୂଗୋଳ ପାଇଁ ଗୋଟିଏ Orientation Course କରିବାକୁ। ସେ ମୋତେ କହିଲେ, "ଭୂଗୋଳ ପାଇଁ ୮୦ ଜଣ ଶିକ୍ଷକ ଦରକାର । ଏତେ ଶିକ୍ଷକ କ'ଣ ଆପଣ ଯୋଗାଇ ପାରିବେ?" ମୁଁ କହିଲି, "୮୦ଜଣ କ'ଣ, ୧୬୦ ଜଣ ଶିକ୍ଷକ ଯୋଗାଇ ଦେବି ।" ଏହା କହି ଗୋଟିଏ ସର୍କୁଲାର ପ୍ରତି ସ୍କୁଲକୁ ପଠାଇ ଦେଲି। ସେଥିରେ ଆମର ଭୂଗୋଳ ଶିକ୍ଷକଙ୍କ ଅଭାବ, ଭୂଗୋଳ ପଢାଉଥିବା ଶିକ୍ଷକମାନଙ୍କର ଜ୍ଞାନର ସ୍ୱଳ୍ପତା ଓ ଭୂଗୋଳ ଶିକ୍ଷାଦାନ ସମ୍ବନ୍ଧରେ ସଦ୍ୟତମ ଗବେଷଣା ଲବ୍ଧଜ୍ଞାନର ଅଭାବ ଦର୍ଶାଇ ଅନ୍ତତଃ ପକ୍ଷେ ପ୍ରତ୍ୟେକ ସ୍କୁଲରୁ ଜଣେ ଜଣେ ଭୂଗୋଳ ଶିକ୍ଷକ Orientation Course ରେ ଯୋଗ ଦେବାକୁ ଅନୁରୋଧ କଲି। ବଡ ବଡ ସ୍କୁଲମାନେ ଏକାଧିକ ଶିକ୍ଷକ ପଠାଇବା ପାଇଁ ମୋର ଅନୁମତି ମାଗିବାରୁ ତାହା ଦେଇ ଦେଲି। ଫଳରେ ବ୍ରଜନାଥ ବଡ ଜେନା ହାଇସ୍କୁଲ, ଢେଙ୍କାନାଳରେ ଅନୁଷ୍ଠିତ Orientation Course ରେ ୧୭୬ ଜଣ

ଶିକ୍ଷକ ଯୋଗ ଦେଲେ। ଏ କଥା ସଭାପତିଙ୍କୁ ଜଣାଇ ଗସ୍ତଖର୍ଚ୍ଚ ପାଇଁ ଅଧିକ ଟଙ୍କା ପଠାଇବାକୁ ଅନୁରୋଧ କଲି। ସଭାପତି ମୋତେ ଅବିଶ୍ୱାସ କରି ନିଜେ ଆସିଲେ ଶିବିରରେ ଯୋଗ ଦେଇଥିବା ଶିକ୍ଷକମାନଙ୍କୁ ଗଣିବା ପାଇଁ, ଗଣିଲେ ୧୭୬। ସେ ଆଶ୍ଚର୍ଯ୍ୟ ହୋଇଗଲେ। ଆମେ ମାଇକ୍ ବ୍ୟବସ୍ଥା କରିଥାଉ ପାଠପଢା ପାଇଁ। ଏ ସବୁ ଦେଖିଯାଇ ସେ ଅଧିକ ଟଙ୍କା ପଠାଇ ଦେଲେ।

ସେତେବେଳେ SCERT (State Council for Educational Research and Training) ପ୍ରାଥମିକ ସ୍କୁଲ ଶିକ୍ଷକମାନଙ୍କର ଶିକ୍ଷାଦାନର ଉନ୍ନତି କଳ୍ପେ Orientation Course ବ୍ୟବସ୍ଥା କରୁଥିଲେ। ଗୋଟିଏ ଦଳର Orienation Course ରେ ମୋତେ ନିର୍ଦ୍ଦେଶକ ନିଯୁକ୍ତି କରାଗଲା। ଢେଙ୍କାନାଳ C.T ସ୍କୁଲ ତଥା ଜର୍ଜ ପ୍ରାଥମିକ ସ୍କୁଲ ପରିସରରେ ଏହି ଟ୍ରେନିଂ ବ୍ୟବସ୍ଥା କରାଯାଇଥିଲା। ମୁଁ ସେଠାରେ ପ୍ରଥମ ଦିନ ଆଠଟା ବେଳେ ପହଞ୍ଚି ଦେଖିଲି ଶତକଡା ୮୦ ଭାଗ ଶିକ୍ଷକ ଶିକ୍ଷୟିତ୍ରୀ ଆସି ଯାଇଥାନ୍ତି। ଆଉ ୨୦ ଭାଗ ଶିକ୍ଷକ ବାକି ଥାନ୍ତି। ସେମାନଙ୍କର ରୁଟିନ୍ ଦେଖିଲି। ପ୍ରଥମେ Mass Drill ହେବାର କଥା। ମୁଁ ପଚାରିଲି, " Mass Drill"କ'ଣ ସରିଗଲାଣି ? ଶିକ୍ଷକମାନେ କହିଲେ , " ସମୂହ ଡ୍ରିଲ୍ ରୁଟିନରେ ଥାଏ କିନ୍ତୁ ହୁଏ ନାହିଁ। ମୁଁ କହିଲି, "ସମୂହ ଡ୍ରିଲ୍ ହେବ। ଆମ ଅଫିସର Inspector Physical Education ପ୍ରେମାନନ୍ଦ ମାନସିଂଙ୍କୁ ଖବର ଦେଲି ସମୂହ ଡ୍ରିଲ ପରିଚାଳନା କରିବାକୁ। ସେ ଆସିଲେ। ତାଙ୍କ Command ରେ ସମୂହ ଡ୍ରିଲ ହେବା ବେଳେ ବହୁତ ଲୋକ ଦେଖିବା ପାଇଁ ଜମା ହୋଇଥିଲେ। ସୋମାନେ ଏ ଭଳି ଦୃଶ୍ୟ ଆଗରୁ ଦେଖି ନ ଥିଲେ। ଶିକ୍ଷକ ଓ ଶିକ୍ଷୟିତ୍ରୀମାନେ ଏକାଠି ସମୂହ ଡ୍ରିଲ କରିବା ଦୃଶ୍ୟ ଢେଙ୍କାନାଳରେ ନୂଆ। ସେ ଏହା ପୂର୍ବରୁ କେବଳ ଭାଷଣ ଶୁଣି ଶୁଣି ଯାଉଥିଲେ। ମୋ ଦ୍ୱାରା ପ୍ରବର୍ତ୍ତିତ ନୂଆ ପ୍ରଥା ଅନୁସାରେ ଶିକ୍ଷକ ଶିକ୍ଷୟିତ୍ରୀମାନେ ପୂର୍ବଦିନ ପଠିତ ନୀତି ଅନୁସାରେ Practical କରିବେ। ତା ପରେ ନୂଆ ପାଠ ଆରମ୍ଭ ହେବ। ଏପରି କଡାକଡି କରି ଧରିବାରୁ ପ୍ରଶିକ୍ଷକଙ୍କୁ ମଧ ଅଡୁଆ ଲାଗିଲା। ସେମାନେ ଚାରିଦିନ ଭାଷଣ ଦେଇ ଚାଲି ଯାଉଥିଲେ। Practical କଥା ଉଠିଲା ବେଳକୁ ତାଙ୍କର ବି ପ୍ରସ୍ତୁତି ଦରକାର। ସେମାନେ ଏ ପ୍ରକାର ପ୍ରଶିକ୍ଷଣରେ ଅଭ୍ୟସ୍ତ ନୁହନ୍ତି। ଶିକ୍ଷକ ଓ ପ୍ରଶିକ୍ଷକ ଉଭୟଙ୍କ ମିଳିତ ଚେଷ୍ଟାରେ ଶିକ୍ଷାର ଅଧୋଗତି ହୋଇ ଚାଲିଛି।

## ଇଂରାଜିରେ ଲେଖାଥିବା ସିଲାବସ୍‌ର ଭାଷାନ୍ତରଣ

SCERT ୧୯୮୩-୧୯୮୪ ମସିହା ପ୍ରାରମ୍ଭରେ ଗୋଟିଏ ନୂଆ ପାଠ୍ୟକ୍ରମ ପ୍ରସ୍ତୁତ କରି ସ୍କୁଲ ସବ୍‌ଇନ୍‌ସ୍ପେକ୍ଟରଙ୍କ ପାଖକୁ ପଠାଇଥାନ୍ତି । ମୋ ପାଖକୁ ଦୁଇଖଣ୍ଡ ବହି ଆସିଥିଲା । ଦେଖିଲି, ସିଲାବସ୍ ଇଂରାଜିରେ ଲେଖା ହୋଇଛି । ଶିକ୍ଷକ ନିହାତି ପକ୍ଷେ ତାଲିମପ୍ରାପ୍ତ ମାଟ୍ରିକୁଲେଟ୍ ନ ହେଲେ ତାକୁ ବୁଝି ପାରିବ ନାହିଁ । ଆମ ପ୍ରାଥମିକ ଶିକ୍ଷକମାନଙ୍କ ମଧ୍ୟରୁ ଅନେକ ଅଣମାଟ୍ରିକ ଅଛନ୍ତି । ସେମାନେ ସିଲାବସ୍ ବୁଝିବାରେ ଅସୁବିଧା ହେଉଥିବା ଆପତ୍ତି ମୋ ପାଖରେ ପହଞ୍ଚିବାରୁ ମୁଁ ଇଂରାଜିରେ ଲେଖା ଯାଇଥିବା ସିଲାବସ୍ କୁ ଓଡିଆରେ ଭାଷାନ୍ତର କରାଇ ପ୍ରଚଳନ କରାଇଲି । ଶିକ୍ଷାଦାନ ପାଇଁ ମୂଳ ଉପାଦାନ ହେଲା ପାଠ୍ୟକ୍ରମ । ତାକୁ ଠିକ ଭାବରେ ନ ବୁଝିଲେ ତାହା କାର୍ଯ୍ୟକାରୀ ହେବ କେମିତି ?

## ଶାରୀରିକ ଶିକ୍ଷା

ସ୍ୱାସ୍ଥ୍ୟ ଓ ଶାରୀରିକ ଶିକ୍ଷା ସାମଗ୍ରିକ ଶିକ୍ଷାର ଏକ ଅବିଚ୍ଛେଦ୍ୟ ଅଙ୍ଗ । ହାଇସ୍କୁଲମାନଙ୍କରେ ଶାରୀରିକ ଶିକ୍ଷକ (PET) ପୋଷ୍ଟ ଅଛି । ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ସ୍କୁଲରେ ଶାରୀରିକ ଶିକ୍ଷକ ନଥାନ୍ତି । ଯେଉଁ ଶିକ୍ଷକମାନେ C.T ତାଲିମ୍ ପାଆନ୍ତି, ତାଙ୍କୁ ଶାରୀରିକ ଶିକ୍ଷାର ବି ତାଲିମ୍ ଦିଆଯାଏ । କିନ୍ତୁ ସେ ତାଲିମ୍ ପିଲାମାନଙ୍କୁ ଶାରୀରିକ ଶିକ୍ଷା ଦେବା ପାଇଁ ଯଥେଷ୍ଟ ନୁହେଁ । ପ୍ରାଥମିକ ଓ ଉଚ୍ଚପ୍ରାଥମିକ ସ୍କୁଲରେ ଶାରୀରିକ ଶିକ୍ଷାର ଅଭାବ ସମସ୍ତେ ଉପଲବ୍ଧି କରନ୍ତି । କିନ୍ତୁ ସେ ଦିଗରେ କିଛି କାର୍ଯ୍ୟାନୁଷ୍ଠାନ ଏ ପର୍ଯ୍ୟନ୍ତ ହୋଇ ନାହିଁ ।

ମୁଁ କେତେକ ପ୍ରାଥମିକ ଶିକ୍ଷକ, ଉଚ୍ଚପ୍ରାଥମିକ ଶିକ୍ଷକ ଓ ଡି.ଆଇଙ୍କୁ ନେଇ ଗୋଟିଏ ଆଲୋଚନା ସଭା କଲି । ସେଠାରେ ସ୍ଥିର ହେଲା ଯେ ଯେତେବେଳେ ଜିଲ୍ଲା ସ୍ତରରେ ସବ୍‌ଇନ୍‌ସ୍ପେକ୍ଟର ସର୍କଲ, ବ୍ଲକ ବା ପଞ୍ଚାୟତ ସ୍ତରରେ ପ୍ରାଥମିକ ବା ଉଚ୍ଚପ୍ରାଥମିକ ସ୍କୁଲର Sports କାର୍ଯ୍ୟକ୍ରମ ସ୍ଥିର ହେବ, ତାହା ପରିଚାଳନା କରିବାପାଇଁ ନିକଟତମ ହାଇସ୍କୁଲର PET ଙ୍କୁ Requisition କରାଯିବ । ଏ Requisition ପାଇଲା ମାତ୍ରେ ହାଇସ୍କୁଲ ପ୍ରଧାନ ଶିକ୍ଷକ PET ଙ୍କୁ ପଠାଇବେ । ଏପରିକି ଯଦି କୌଣସି ଉଚ୍ଚ ପ୍ରାଥମିକ (ME) ସ୍କୁଲ Sports କରିବାକୁ ଚାହିଁବେ ନିକଟସ୍ଥ ହାଇସ୍କୁଲର PET ତାହା ପରିଚାଳନା କରିବେ । ଏହି ମର୍ମରେ ମୁଁ

ଗୋଟିଏ ସର୍କୁଲାର ଦେଲି । ଛଅ ମାସ ପରେ କେତେ ସ୍କୁଲର Sports ପରିଚାଳନା ପାଇଁ PET ଯାଇଛନ୍ତି ଜାଣିବା ପାଇଁ ମୁଁ ଡି.ଆଇ. ମାନଙ୍କ ସହିତ ଆଲୋଚନା କଲି । ଜାଣିଲି ଯେ ବିଗତ ଛଅ ମାସ ଭିତରେ କୌଣସି ଗୋଟିଏ ସ୍ଥାନରେ Sports ହୋଇ ନାହିଁ । ତାର ପରିଚାଳନା କରିବାକୁ PET ଯିବା ପ୍ରଶ୍ନ ଉଠିବ କିପରି ? ଡି.ଆଇ ମାନଙ୍କ କାର୍ଯ୍ୟଦକ୍ଷତା ଓ କର୍ମତତ୍ପରତାକୁ ପ୍ରଶଂସା ନ କରି ରହି ପାରିଲି ନାହିଁ । କାରଣ ଛଅ ମାସ ମଧ୍ୟରେ ଗୋଟିଏ ବି Sports ସେମାନେ ଆୟୋଜନ କରି ପାରିଲେ ନାହିଁ । ସାହାଯ୍ୟ ଦେବାକୁ ଲୋକ ରାଜି ଥିଲେ ବି ନେବାକୁ ସେମାନେ ତତ୍ପର ନୁହଁନ୍ତି । ପ୍ରାଥମିକ ବା ଉଚ୍ଚପ୍ରାଥମିକ ଶିକ୍ଷାର ଦୁର୍ଗତି ବିଷୟରେ ଅନ୍ୟଆଡେ ଖୋଜିବାକୁ ଯିବା କାହିଁକି ? ଡି.ଆଇ ମାନଙ୍କ ପାଖରେ ସବୁ ମିଳିବ ।

## ବଡ ଯୋରଡ଼ା ହାଇସ୍କୁଲ -ଶିକ୍ଷା ବିଭାଗର କଳଙ୍କ

ତାଳଚେରଠାରୁ ୩ । ୪ କିଲୋମିଟର ଦୂରରେ ବଡଯୋରଡା ଗ୍ରାମ ଅବସ୍ଥିତ । ସେଠାରେ ଗୋଟିଏ ହାଇସ୍କୁଲ ଚାଲୁଥିବା ଖବର ଇନିସ୍ପେକ୍ଟର ଅଫିସରେ ଥିଲା । ପ୍ରତିମାସ ଶିକମାନଙ୍କୁ ଦରମା ଦିଆଯାଏ । ଚେକ୍ ମାଧ୍ୟମରେ ଦରମା ଦିଆଯାଇଥିବାରୁ ଶିକ୍ଷକମାନଙ୍କୁ ଦେଖିବାର ସୁଯୋଗ ନଥିଲା । ଏଇ ସ୍କୁଲ ବିରୁଦ୍ଧରେ ଦରଖାସ୍ତମାନ ମିଳୁଥିଲା । ବହୁ ଦିନରୁ ଅଫିସ୍ ଫାଇଲରେ ଦରଖାସ୍ତ ଜମା ହୋଇଥିଲା । ଗୋଟିଏ ଦୁଇଟି ଦରଖାସ୍ତ ମୋ ଦୃଷ୍ଟିକୁ ଆସିବାରୁ ସେ ସ୍କୁଲ ପରିଦର୍ଶନ ପାଇଁ ମୁଁ କାର୍ଯ୍ୟକ୍ରମ ସ୍ଥିର କଲି ।

ଠିକ୍ ୧୦ ଟା ବେଳେ ସେ ସ୍କୁଲରେ ମୁଁ ଯାଇ ପହଞ୍ଚିଲି । ଦେଖିଲି ଲମ୍ବା ଡେସ୍କ ଓ ବେଞ୍ଚ ବୋଝେଇ ହୋଇ ଗୋଟିଏ ବଳଦଗାଡି ସ୍କୁଲ ଦୁଆରେ ଥୁଆ ହୋଇଛି ଓ ଜଣେ ଦୁଇ ଜଣ ଲୋକ ଡେସ୍କବେଞ୍ଚ ନେଇ ସ୍କୁଲ ଘରେ ପକାଉଛନ୍ତି । "ମୁଁ ପଚାରିଲି "କେଉଁ ସ୍କୁଲରୁ ଡେସ୍କବେଞ୍ଚ ସବୁ ଅଣା ଯାଇଛି ?" ତା'ର ଉତ୍ତର କେହି ଦେଲେ ନାହିଁ । ୧୦.୩୦ ମିନିଟ୍ ସମୟରେ ସ୍କୁଲ ଆରମ୍ଭ ହେବା କଥା । ମୁଁ ଅପେକ୍ଷା କଲି । ସ୍କୁଲରେ ମୋଟରେ ୧୪ ଜଣ ପିଲା ଥିଲେ । ଅଷ୍ଟମ ଶ୍ରେଣୀରେ ୭ ଜଣ , ନବମ ଶ୍ରେଣୀରେ ୫ ଜଣ ଓ ଦଶମ ଶ୍ରେଣୀରେ ୨ ଜଣ । ସେମାନଙ୍କର କାହାର ଘର ସେଇ ଗାଁରେ ନୁହେଁ । ସେ ଗାଁ ପିଲାମାନେ ସେଠାରେ ପଢନ୍ତି ନାହିଁ । ସେମାନେ ତାଳଚେର ସ୍କୁଲରେ ପଢନ୍ତି ବୋଲି ଗ୍ରାମବାସୀମାନେ

କହିଲେ। ସ୍କୁଲର ଛାତ୍ର ଉପସ୍ଥାନ ବହି ଦେଖିଲି ଓ ନାମ ଲେଖା ରେଜିଷ୍ଟର ମଧ୍ୟ ଦେଖିଲି। ସେଇ ୧୪ ଟି ପିଲା। ପିଲାମାନଙ୍କର ଖାତା ଦେଖିବାକୁ ମାଗିଲି। ରଚନା ଖାତା କାହାରି ନଥିଲା। ଅନ୍ୟ କୌଣସି ଖାତାପତ୍ର ମଧ୍ୟ ନଥିଲା। ପାଠ୍ୟ ବହି କେତେ ଖଣ୍ଡ ପିଲାମାନେ ଆଣିଥିଲେ। ପଢିବାକୁ କହିଲି। ବହୁ କଷ୍ଟରେ ୯ମ ଓ ୧୦ ମ ଶ୍ରେଣୀ ପିଲା ଅକ୍ଷର ଚିହ୍ନି ଚିହ୍ନି ପଢିଲେ।

ଅଷ୍ଟମ ଶ୍ରେଣୀ ପିଲାଙ୍କ ମାଇନର ପାଶ୍ ସାର୍ଟିଫିକେଟ୍ ମାଗିଲି, ମିଳିଲା ନାହିଁ। ୧୨ ଟା ବାଜିବା ଭିତରେ କେବଳ ପ୍ରଧାନ ଶିକ୍ଷୟିତ୍ରୀ ଓ ସଂସ୍କୃତ ଶିକ୍ଷକ ଆସିଲେ। ଅନ୍ୟ ଶିକ୍ଷକଙ୍କର ଦେଖା ନାହିଁ। ଦରମା ପ୍ରାପ୍ତି ସ୍ୱୀକାର ବହି (AcquittanceRoll) ମାଗିଲି। ଦେଖିଲି ୬ ଜଣ ଶିକ୍ଷକ ଦସ୍ତଖତ କରି ଦରମା ନେଇଛନ୍ତି। ସେମାନେ କାହାନ୍ତି ବୋଲି ପଚାରିଲି। ପ୍ରଧାନ ଶିକ୍ଷୟିତ୍ରୀ କିଛି ଉତ୍ତର ଦେଲେ ନାହିଁ। ସେକ୍ରେଟେରୀ କହିଲେ ସେମାନେ ଛୁଟି ନେଇଛନ୍ତି। ଏତେ ଶିକ୍ଷକଙ୍କୁ କାହିଁକି ଏକାଥରେ ଛୁଟି ଦେଲେ ବୋଲି ପଚାରିବାରୁ ତା'ର ଉତ୍ତର କିଛି ମିଳିଲା ନାହିଁ। ଶିକ୍ଷକମାନେ ପରେ ମୋତେ ଅଫିସରେ ଦେଖା କରିବାକୁ କହିଲି। ପରିଦର୍ଶନ ପୁସ୍ତକ ମାଗିଲି। ଦେଖିଲି ସେ ପର୍ଯ୍ୟନ୍ତ କୌଣସି ଇନ୍ସିପେକ୍ଟରଙ୍କର ପରିଦର୍ଶନ ମନ୍ତବ୍ୟ ନଥିଲା। ମାଧ୍ୟମିକ ଶିକ୍ଷା ପରିଷଦରୁ ମିଳିଥିବା ମଞ୍ଜୁରି ଚିଠି ମାଗିଲି। ଦେଖିଲି ଠିକ୍ ଅଛି। ସ୍କୁଲରେ ଖେଳ ପଡିଆ ନାହିଁ, ଖେଳ ଉପକରଣ ନାହିଁ, ଲାଇବ୍ରେରୀ ନାହିଁ, ବିଜ୍ଞାନ ଉପକରଣ ନାହିଁ, ଶିକ୍ଷାଦାନ ଉପକରଣ ନାହିଁ ମାନଚିତ୍ର, (ଭୌଗୋଳିକ କି ଐତିହାସିକ କିଛି ନାହିଁ)। ସେକ୍ରେଟେରୀଙ୍କୁ ପଚାରିଲି କିଛି ତ ନାହିଁ। ସ୍କୁଲ ମଞ୍ଜୁରି ପାଇଲା କେମିତି ? କ'ଣ ମିଥ୍ୟା ରିପୋର୍ଟ ଦେଇ ନା ଅନ୍ୟ କିଛି ଉପାୟରେ ? ସେକ୍ରେଟେରୀ ନୀରବ ।

ଗାଁ ଲୋକଙ୍କ ସାଙ୍ଗରେ କଥାବାର୍ତ୍ତା ହେଲି। ସେମାନେ କହିଲେ ଏ ହାଇସ୍କୁଲରେ ଆମ ପିଲା ପଢନ୍ତି ନାହିଁ। ଏହା ସ୍କୁଲ ନୁହେଁ, ଏକ ପାରିବାରିକ ସଂସ୍ଥା (ପିଲା ନାହାଁନ୍ତି, ଶିକ୍ଷକ ନାହାଁନ୍ତି, ଅନ୍ୟ କିଛି ନାହିଁ)। କିନ୍ତୁ ପ୍ରଧାନ ଶିକ୍ଷୟିତ୍ରୀ ପ୍ରତିମାସ ଇନ୍ସିପେକ୍ଟର ଅଫିସରୁ ଦରମା ଆଣନ୍ତି। ଆଉ ଯାହା ସବୁ ଗ୍ରାମବାସୀମାନେ କହିଲେ ତାହା ଏଠାରେ ଲେଖାଯାଇପାରିବ ନାହିଁ।

ମୋର ପରିଦର୍ଶନ ମନ୍ତବ୍ୟ ସହିତ ସ୍କୁଲର ମଞ୍ଜୁରୀ ପ୍ରତ୍ୟାହାର ପାଇଁ ରିପୋର୍ଟ ମୁଁ ଡି.ପି.ଆଇଙ୍କ ପାଖକୁ ପଠାଇଲି ଓ ତା'ର ନକଲ ମାଧ୍ୟମିକ ଶିକ୍ଷା ପରିଷଦକୁ ପଠାଇଲି। ମାଧ୍ୟମିକ ଶିକ୍ଷା ପରିଷଦର ମଞ୍ଜୁରୀ ପ୍ରତ୍ୟାହାର ପାଇଁ ପ୍ରସ୍ତାବ ହେଲା ଓ ତାହା ପରିଷଦର ସାଧାରଣ ଅଧିବେଶନରେ ପାଶ୍ ହେଲା।

ଇତି ମଧ୍ୟରେ ବଡଯୋରଡା ହଇସ୍କୁଲ ସେକ୍ରେଟେରୀ ତତ୍‌କାଳୀନ ମନ୍ତ୍ରୀ ଭଜମନ ବେହେରାଙ୍କ ପାଖରେ ଫେରାଦ ହେଲେ। ଭଜମନ ବେହେରା ଶିକ୍ଷାମନ୍ତ୍ରୀ ଗଙ୍ଗାଧର ମହାପାତ୍ରଙ୍କୁ ଚିଠି ଲେଖିଲେ ଯେ ଆମେ ସବୁ ମନ୍ତ୍ରୀ ହୋଇଥିବାରୁ ଆମ ପାଖରେ ଅଫିସରମାନଙ୍କର ମେରି ରାୟ ନୀତି ବିରୁଦ୍ଧରେ ଲୋକେ ଆପତ୍ତି କରୁଛନ୍ତି। ଆମେ ତାଙ୍କୁ ସୁରକ୍ଷା ନ ଦେଇ ପାରିଲେ ଆମକୁ ଲୋକେ କାହିଁକି ଭୋଟ୍ ଦେବେ ? ଇତ୍ୟାଦି। ତା ସହିତ ଅନୁରୋଧ କଲେ ଯେପରି ବଡଯୋରଡା ହାଇସ୍କୁଲ ମଞ୍ଜୁରୀ ପ୍ରତ୍ୟାହୃତ ନ ହୁଏ।

ଶିକ୍ଷାମନ୍ତ୍ରୀ ଗଙ୍ଗାଧର ମହାପାତ୍ର ତତ୍‌କ୍ଷଣାତ୍ ମାଧ୍ୟମିକ ଶିକ୍ଷା ପରିଷଦ ସଭାପତି ବଟକୃଷ୍ଣ ମହାନ୍ତିଙ୍କୁ ଚିଠି ଲେଖିଲେ, ବଡଯୋରଡା ହାଇସ୍କୁଲ ମଞ୍ଜୁରୀ ପ୍ରତ୍ୟାହାର ପାଇଁ ଯେଉଁ ପ୍ରସ୍ତାବ ପାଶ୍ ହୋଇଛି, ତାକୁ କାର୍ଯ୍ୟକାରୀ କର ନାହିଁ। ଏତେ କଥା ଜାଣିବା ପାଇଁ ମୋତେ ପରିଶ୍ରମ କରିବାକୁ ପଡିଲା ନାହିଁ। କାରଣ ଡି.ପି.ଆଇ ବଡଯୋରଡା ହାଇସ୍କୁଲ ସମ୍ବନ୍ଧରେ ମୋତେ ଗୋଟିଏ ଚିଠି ଲେଖିଥିଲେ। ଦୁଇମନ୍ତ୍ରୀ ଭଜମନ ବେହେରା ଓ ଗଙ୍ଗାଧର ମହାପାତ୍ରଙ୍କ ଚିଠି ଆଧାରରେ ସେ ଚିଠି ଲେଖିଥିଲେ। ତାଙ୍କ ଅଫିସ ଭୁଲକ୍ରମେ ଉଭୟ ମନ୍ତ୍ରୀଙ୍କର ମୂଳ ଚିଠି ସହିତ ଡି.ପି.ଆଇଙ୍କ ଚିଠି ପଠାଇ ଦେଇଥିଲା। ସେଇଥିରୁ କେଉଁମନ୍ତ୍ରୀ କ'ଣ ଲେଖିଥିଲେ ମୁଁ ଜାଣିବାକୁ ସୁଯୋଗ ପାଇଲି।

କିଛି ଦିନ ପରେ ଭଜମନ ବେହେରା ଢେଙ୍କାନାଳ ଆସି ସର୍କିଟ୍ ହାଉସ୍‌ରେ ବିଶ୍ରାମ ନେଉଥିଲେ। ଏ ଖବର ପାଇ ମୁଁ ତାଙ୍କ ପାଖକୁ ଗଲି। ତାଙ୍କୁ କହିଲି, "ବଡଯୋରଡା ହାଇସ୍କୁଲ ସମ୍ବନ୍ଧରେ ମୁଁ ଯେଉଁ ରିପୋର୍ଟ ଦେଇଛି ସେଥିରେ ପଦେ ହେଲେ ମିଛ ନାହିଁ। ବରଂ କେତେକ ଛୋଟ ଛୋଟ କଥା ଓ ଆଉ କେତେକ ଗୁପ୍ତ ତଥ୍ୟ ଲେଖାଯାଇ ନାହିଁ। ସେ ସେକ୍ରେଟେରୀଙ୍କ ସହିତ ଆପଣଙ୍କର କ'ଣ ସମ୍ବନ୍ଧ ମୁଁ ଜାଣି ନାହିଁ। କିନ୍ତୁ ଶିକ୍ଷା ବିଭାଗରେ ମିଥ୍ୟାଚାର, ଜାଲ, ଜୁଆଚୋରି ଚାଲୁ ରଖିବା ପାଇଁ ଆପଣ ଶିକ୍ଷାମନ୍ତ୍ରୀଙ୍କୁ ଚିଠି ଲେଖି ଯେଉଁ ବ୍ୟବସ୍ଥା କରିଦେଲେ ତାହା ଢେଙ୍କାନାଳର ଶିକ୍ଷା ଇତିହାସର ଏକ କଳଙ୍କିତ ଅଧ୍ୟାୟ ହୋଇ ରହିବ। ସେ ସେକ୍ରେଟେରୀଙ୍କର ଯେଉଁ ଅନୈତିକ କାର୍ଯ୍ୟ ତାହା ଆପଣଙ୍କୁ ବ୍ୟକ୍ତିଗତ ଭାବରେ କଳଙ୍କିତ କରିବ। ତାଙ୍କ ପାଖରେ ଯେଉଁମାନେ ବସିଥିଲେ ସେମାନେ ମୋତେ ସମର୍ଥନ କଲେ। ଭଜମନ ବାବୁ ତଳକୁ ମୁହଁ ପୋତି ବସି ରହିଲେ।

ଆମେ ସବୁ ଗଣତାନ୍ତ୍ରିକ ରାଷ୍ଟ୍ରର ନାଗରିକ। ଗଣତନ୍ତ୍ରକୁ ସମ୍ମାନ ଦେଇ ଶିଖିଛନ୍ତି। ଗଣତାନ୍ତ୍ରିକ ପଦ୍ଧତିରେ ବିଧାନ ସଭା ସଦସ୍ୟମାନେ ନିର୍ବାଚିତ ହୁଅନ୍ତି। ସେମାନଙ୍କ ମଧ୍ୟରେ ମୁଖ୍ୟ ହେଉଛନ୍ତି ମନ୍ତ୍ରୀମାନେ। ସେମାନେ ଗଣତନ୍ତ୍ରର ରକ୍ଷାକାରୀ। ମାଧ୍ୟମିକ ଶିକ୍ଷା ପରିଷଦରେ ଗଣତାନ୍ତ୍ରିକ ପଦ୍ଧତିରେ ଯେଉଁ ନିଷ୍ପତ୍ତି ନିଆ ଯାଇଥିଲା ତାକୁ ଦୁଇଜଣ ମନ୍ତ୍ରୀ ମିଶି ହତ୍ୟା କଲେ। ଗଣତନ୍ତ୍ର କିପରି ଜଣତନ୍ତ୍ରରେ ପରିଣତ ହୁଏ, ଏ ହେଉଛି ତାର ପ୍ରକୃଷ୍ଟ ଉଦାହରଣ। ଗଣତନ୍ତ୍ରର ଜୟଗାନ କଲାବେଳେ ଏ ଦୁଇଜଣ ମନ୍ତ୍ରୀଙ୍କର ନାମୋଲ୍ଲେଖ ନିତାନ୍ତ ଦରକାର। ନହେଲେ ଏମାନଙ୍କର ଏ ବିରଳ କୃତିର ପ୍ରସାର ହୋଇ ପାରିବ ନାହିଁ। ଜୟ ଗଣତନ୍ତ୍ର।

## ରାଜ୍ୟ ବିଜ୍ଞାନ ମେଳା

ଅନୁଗୁଳ ହାଇସ୍କୁଲରେ ୧୯୮୪ ମସିହା ରାଜ୍ୟସ୍ତରୀୟ ବିଜ୍ଞାନ ମେଳା କରିବାକୁ SCERT ର ବିଜ୍ଞାନ ଉପନିର୍ଦ୍ଦେଶକ ପ୍ରସ୍ତାବ ଦେଲେ। ମୁଁ କଲେକ୍ଟରଙ୍କୁ ପଚାରିଲି ଅନୁଗୁଳରେ ବିଜ୍ଞାନମେଳା କରିବା କି ନାହିଁ। ସେତେବେଳେ ଅନୁଗୁଳ ଢେଙ୍କାନାଳ ଜିଲ୍ଲାରେ ଥିଲା ଓ ଢେଙ୍କାନାଳର କଲେକ୍ଟର ପ୍ରିୟବ୍ରତ ପଟ୍ଟନାୟକ ଥିଲେ। ସେ ମୋତେ ପଚାରିଲେ କେତେ ଟଙ୍କା ଦରକାର। ମୁଁ କହିଲି, " ଆଠଶହ ପିଲାଙ୍କ ପାଇଁ ଚାରି ଦିନରେ ସାତ ଗୋଟି ମିଲ୍ ବ୍ୟବସ୍ଥା କରିଦେଲେ ହେବ ପ୍ରାୟ ଦେଢ଼ ଲକ୍ଷ ଟଙ୍କା ଦରକାର।" ସେ କହିଲେ, କରନ୍ତୁ ଖାଦ୍ୟ ବ୍ୟବସ୍ଥା ମୁଁ କରିଦେବି। ଯେଉଁମାନେ ଖାଦ୍ୟ ଯୋଗାଇଲେ ସେମାନେ ପରସ୍ପର ସହିତ ପ୍ରତିଯୋଗିତା କରି ଭଲ ଖାଦ୍ୟ ଯୋଗାଇଲେ, ପିଲାମାନେ ଭଲ ଖାଦ୍ୟ ଖାଇ ଆନନ୍ଦରେ ଚାରିଗୋଟି ଦିନ କଟାଇଲେ।

ସେତେବେଳେ ଅନୁଗୁଳ ହାଇସ୍କୁଲର ପ୍ରଧାନ ଶିକ୍ଷକ ବୃନ୍ଦାବନ ତ୍ରିପାଠୀ। ସେ ଢେଙ୍କାନାଳ ଜିଲ୍ଲା ଶିକ୍ଷାଧିକାରୀ ଥିଲେ। ତାଙ୍କ କାମ ସନ୍ତୋଷଜନକ ନ ହେବାରୁ ମୋ ସୁପାରିଶ କ୍ରମେ ତାଙ୍କୁ ଡି.ପି.ଆଇ ବଲାଙ୍ଗୀର ଜିଲ୍ଲା ପୃଥ୍ୱୀରାଜ ହାଇସ୍କୁଲ ପ୍ରଧାନ ଶିକ୍ଷକ ଭାବେ ବଦଳି କରିଥିଲେ। ସେ ମୋ ପାଖରେ ବ୍ୟସ୍ତ ହେବାରୁ ଓ ଏତେ ବାଟ ଯିବେ ନାହିଁ ବୋଲି କହିବାରୁ ମୁଁ ଡି.ପି.ଆଇଙ୍କୁ ଅନୁରୋଧ କରି ଅନୁଗୁଳ ହାଇସ୍କୁଲ ପ୍ରଧାନ ଶିକ୍ଷକ ଭାବେ ବଦଳି କରାଇଥିଲି। ତଥାପି ସେ ମୋ ଉପରେ ଅସନ୍ତୁଷ୍ଟ ଥିଲେ। ତାଙ୍କର ଇଚ୍ଛା ଥିଲା ସେ ଢେଙ୍କାନାଳ ଡି.ଆଇ ଭାବରେ ରହିଥାନ୍ତେ।

ସେତେବେଳେ ଅନୁଗୁଳ ଡି.ଆଇ କ୍ରିଷ୍ଣା ନାଗ। ତାଙ୍କର ବଦଳି ସମୟର ଗସ୍ତ ଖର୍ଚ୍ଚ ପାଇଁ ଓ ତାଙ୍କ ଜିନିଷପତ୍ର ନେବା ପାଇଁ ସେ ଯେଉଁ ବିଲ୍ ଦେଇଥିଲେ, ଆମ ଅଫିସ୍ ତାକୁ ଆଇନ୍‌ଗତ ପ୍ରଶ୍ନ ଉଠାଇ କମାଇ ଦେଇଥିଲେ। ସେଥିରେ ସେ ଅସନ୍ତୁଷ୍ଟ ଥିଲେ। ତା ଛଡା ଦୈନନ୍ଦିନ ପ୍ରଶାସନିକ କାର୍ଯ୍ୟରେ ସେ ମନମୁଖୀ କାର୍ଯ୍ୟ କରନ୍ତି। ଆଇନ୍ ତାଙ୍କୁ ଜଣା ନଥାଏ । କେହି ଆଇନ୍ କଥା କହିଲେ ସେ ମାନନ୍ତି ନାହିଁ। ସେ ବିଜ୍ଞାନମେଳା କାର୍ଯ୍ୟରେ ସହଯୋଗ କଲେନାହିଁ।

ଅନୁଗୁଳ ହାଇସ୍କୁଲ ପ୍ରଧାନ ଶିକ୍ଷକ ବୃନ୍ଦାବନ ତ୍ରିପାଠୀ ଓ ଅନୁଗୁଳ ଡି.ଆଇ କ୍ରିଷ୍ଣାନାଗ ଦୁହେଁଯାକ ବସି ବିଜ୍ଞାନ ମେଳାକୁ ବିଫଳ କରିବା ପାଇଁ ଷଡଯନ୍ତ୍ର କଲେ। ପ୍ରଧାନ ଶିକ୍ଷକ କହିଲେ, " ମୋ ସ୍କୁଲର କୌଣସି ଶିକ୍ଷକ ବିଜ୍ଞାନ ମେଳା କାର୍ଯ୍ୟରେ ସହଯୋଗ କରିବେ ନାହିଁ। ଅନ୍ୟ ସ୍କୁଲର ବିଜ୍ଞାନ ଶିକ୍ଷକଙ୍କୁ ସେଠାରେ ମୁଁ କାମ କରାଇ ଦେବି ନାହିଁ । ଡି.ଆଇ କହିଲେ, " ମୁଁ କୌଣସି ସ୍କୁଲକୁ ବିଜ୍ଞାନ ମେଳାକୁ ଆସିବାକୁ ସର୍କୁଲାର ପଠାଇବି ନାହିଁ। ବିଜ୍ଞାନମେଳା ଦେଖିବାକୁ ବା ସେଥିରେ ଭାଗ ନେବାକୁ ଆସିବ କିଏ ? ବିଜ୍ଞାନମେଳା ବିଫଳ ହୋଇଯିବ।"

ତାଙ୍କର ଏଇ ଷଡଯନ୍ତ୍ର ବିଷୟରେ ମୋ ପାଖକୁ ଖବର ଆସିଲା । ପୂର୍ବରୁ ଆମ ବିଜ୍ଞାନ ପରିଦର୍ଶକ ରାଜ୍ୟ ବିଜ୍ଞାନମେଳା ରେ କେଉଁ ସ୍କୁଲ ଓ କେଉଁ ପିଲା ଭାଗ ନେବେ, ଜିଲ୍ଲା ବିଜ୍ଞାନ ମେଳାରେ ମନୋନୀତ କରିସାରି ଥିଲେ। ବିଜ୍ଞାନ ମେଳାର ଚାରିଦିନ ପୂର୍ବରୁ ମୁଁ ଗୋଟିଏ ଟାଇପ୍ ମେସିନ୍, ଜଣେ ଷ୍ଟେନୋ ଓ ଦୁଇଜଣ ପିଅନ ନେଇ ଯାଇ ବେସିକ୍ ଟ୍ରେନିଂ କଲେଜର ଅତିଥି ଭବନରେ ରହିଲି। ନିକଟବର୍ତ୍ତୀ ହାଇସ୍କୁଲର ବିଜ୍ଞାନ ଶିକ୍ଷକମାନଙ୍କୁ ଡକାଇ ଆଣିଲି। ସେମାନଙ୍କ ମଧ୍ୟରୁ ଅଧିକାଂଶ ମୋର ଛାତ୍ର। ଆମ ବିଜ୍ଞାନ ପରିଦର୍ଶକଙ୍କ ନେତୃତ୍ୱରେ ତାଙ୍କୁ ଦାୟିତ୍ୱ ବାଣ୍ଟି ଦେଲି। ଅନୁଗୁଳ ହାଇସ୍କୁଲରେ ବିଜ୍ଞାନ ଶିକ୍ଷକମାନେ ମଧ୍ୟ କାମ କରିବାକୁ ଦାୟିତ୍ୱ ନେଲେ। ପ୍ରତିଦିନ ସନ୍ଧ୍ୟାରେ ମୁଁ ହାଇସ୍କୁଲକୁ ଯାଇ କାମର ଅଗ୍ରଗତି କେତେ ହୋଇଛି ଦେଖେ ଓ ବିଜ୍ଞାନ ପରିଦର୍ଶକ ମଧ୍ୟ କିଛି ଅସୁବିଧା ହେଲେ ଆସି ମତେ ରିପୋର୍ଟ କରନ୍ତି। ବିଜ୍ଞାନ Stall ତିଆରି କାମ ଠିକ୍ ସମୟରେ ଶେଷ ହେଲା।

ମୁଁ ଗୋଟିଏ ସର୍କୁଲାର ଲେଖି କେଉଁ ଦିନ କେଉଁ ସ୍କୁଲ କେତେବେଳେ ବିଜ୍ଞାନମେଳା ଦେଖିବାକୁ ଆସିବେ ସ୍ଥିର କରି ମୋ ଦସ୍ତଖତରେ ପଠାଇ ଦେଲି। ଆମ ପିଅନ ଓ ବିଜ୍ଞାନ ଶିକ୍ଷକମାନେ ସେ ~~ସର୍କୁଲାର ନେଇ~~ ସ୍କୁଲମାନଙ୍କରେ

ଦେଇଦେଲେ। କେନ୍ଦ୍ର ସ୍କୁଲ ଶିକ୍ଷକମାନଙ୍କୁ ଡକାଇ ତାଙ୍କ କେନ୍ଦ୍ରାଧୀନ ସ୍କୁଲ ପିଲାମାନଙ୍କୁ ଆଣିବା ଦାୟିତ୍ୱ ଦେଇ ଦେଲି। ବିଜ୍ଞାନମେଳା ଆରମ୍ଭ ବେଳକୁ ସବୁ କାମ ଠିକ୍ ଭାବରେ ଶେଷ ହୋଇଗଲା। ବହୁ ସଂଖ୍ୟାରେ ପ୍ରାଥମିକ, ଉଚ୍ଚପ୍ରାଥମିକ ଓ ହାଇସ୍କୁଲ ପିଲା ବିଜ୍ଞାନମେଳା ଦେଖିବାକୁ ଆସିଲେ। ସାଧାରଣ ଲୋକ ମଧ୍ୟ ବହୁ ସଂଖ୍ୟାରେ ଆସି ବିଜ୍ଞାନ ମେଳା ଦେଖିଲେ। ଯାହା ଆଶା କରାଯାଉଥିଲା ତା ଅପେକ୍ଷା ବହୁ ଅଧିକ ସଂଖ୍ୟାରେ ଛାତ୍ରଛାତ୍ରୀ ଓ ସାଧାରଣ ଲୋକ ମେଳା ଦେଖି ଆନନ୍ଦିତ ହେଲେ।

ରୋଷେଇ ବାସ ନଥିବାରୁ ଆୟୋଜକମାନେ ମେଳାରେ ଶାନ୍ତି ଶୃଙ୍ଖଳା ଉପରେ ଅଧିକ ଧ୍ୟାନ ଦେଲେ। ଉତ୍ତମ ଖାଦ୍ୟପେୟ ଯଥା ସମୟରେ ବିଜ୍ଞାନ ଶିବିରାର୍ଥୀମାନଙ୍କୁ ଦିଆଗଲା। କଲେକ୍ଟରଙ୍କ ଆଦେଶ ଅନୁସାରେ ପୋଲିସ୍ ଆଇନ୍ ଶୃଙ୍ଖଳା ପ୍ରତି ଦୃଷ୍ଟି ଦେଲେ। ସବୁକାମ ସୁରୁଖୁରୁରେ ସମାପ୍ତ ହୋଇଗଲା। ହାଇସ୍କୁଲର ପ୍ରଧାନ ଶିକ୍ଷକ ବୃନ୍ଦାବନ ତ୍ରିପାଠୀ ଓ ଅନୁଗୁଳ ଡି.ଆଇ. କ୍ରିଷ୍ଣା ନାଗଙ୍କ ଅସହଯୋଗ ଓ ଷଡଯନ୍ତ୍ର ପଣ୍ଡ ହୋଇଗଲା। ସବୁ ଅସାଧୁ ଓ ଦୁଷ୍ଟ କର୍ମର ପରିଣତି ଏହିପରି ହୁଏ।

ବିଜ୍ଞାନମେଳା ଶେଷ ଦିନ Valedictory ସଭାରେ ସମସ୍ତେ ସନ୍ତୋଷ ବ୍ୟକ୍ତ କଲେ। ମୁଁ ମୋର ଭାଷଣରେ କହିଲି, "ଆମେ ଯେଉଁ ସଫଳତା ପାଇଲୁ, ତାହା କେବଳ ଅନୁଗୁଳ ହାଇସ୍କୁଲ ପ୍ରଧାନ ଶିକ୍ଷକ ବୃନ୍ଦାବନ ତ୍ରିପାଠୀ ଓ ଅନୁଗୁଳ ଜିଲ୍ଲା ସ୍କୁଲ ସମୂହର ଅଧିକାରୀ କ୍ରିଷ୍ଣା ନାଗଙ୍କ ପାଇଁ ସମ୍ଭବ ହେଲା। କାମାକ୍ଷାନଗର ଡି.ଆଇ ମନମୋହନ ମହାପାତ୍ର, ତାଳଚେର ଡି.ଆଇ. ଅନ୍ତର୍ଯ୍ୟାମୀ ରଥ ଓ ଢେଙ୍କାନାଳ ଡି.ଆଇ. ହେମନ୍ତ ରଥ ବିଜ୍ଞାନ ମେଳାରେ ଅକୁଣ୍ଠ ସାହାଯ୍ୟ ଓ ସମର୍ଥନ କରିଥିଲେ। ସେମାନେ ଅନୁଗୁଳ ହାଇସ୍କୁଲ ପ୍ରଧାନ ଶିକ୍ଷକ ବୃନ୍ଦାବନ ତ୍ରିପାଠୀ ଓ ଅନୁଗୁଳ ଡି.ଆଇ. କ୍ରିଷ୍ଣା ନାଗଙ୍କ ବିରୋଧ ବିଷୟରେ ଅଚ୍ଛେ ବହୁତେ ଜାଣିଥିଲେ। ଚକ୍ରାନ୍ତକାରୀ ଦୁଇ ଅଫିସର ଲାଜରେ ମୁହଁ ତଳକୁ କଲେ। ଘରେ ଯାଇ କବାଟ କିଳି ଅନୁତାପ କରିଥିବେ।

ଅନୁଗୁଳର କେତେକ ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତି ଯଥା- ସାମ୍ବାଦିକ ଦୀନବନ୍ଧୁ ମିଶ୍ର, ସମାଜସେବୀ ବାଳକୃଷ୍ଣ ପଟ୍ଟନାୟକ, ଅନୁଗୁଳ ବିଜ୍ଞାନ କଲେଜ ଅଧ୍ୟାପକ ବୃନ୍ଦ, ଟ୍ରେନିଂ କଲେଜର ଅଧ୍ୟାପକ ବୃନ୍ଦ ଅନୁଗୁଳର ବିଜ୍ଞାନ ମେଳା ପାଇଁ ମୋତେ ଓ

ମୋର ସହକର୍ମୀମାନଙ୍କୁ ଯେପରି ଉତ୍ସାହିତ ଓ ସାହାଯ୍ୟ କରିଛନ୍ତି ସେଥିପାଇଁ ତାଙ୍କ ନିକଟରେ ଆମେ କୃତଜ୍ଞ। ଢେଙ୍କାନାଳ ଶିକ୍ଷା ସର୍କଲର ଶାରୀରିକ ଶିକ୍ଷା ପରିଦର୍ଶକ ପ୍ରେମାନନ୍ଦ ମାନସିଂ ସବୁ କାମର ସଂଯୋଜନା ଓ ପରିଚାଳନା କରି ସଫଳତା ପାଇଁ ସମସ୍ତ ପ୍ରକାର ପ୍ରଶଂସାର ହକ୍‌ଦାର। ଆମ ବିଜ୍ଞାନ ନୀରିକ୍ଷକ ଅରବିନ୍ଦ ମିଶ୍ର ମୂଳରୁ ଶେଷ ପର୍ଯ୍ୟନ୍ତ ଅକ୍ଳାନ୍ତ ପରିଶ୍ରମ କରି ସମସ୍ତଙ୍କର ପ୍ରଶଂସାର ପାତ୍ର ହୋଇଛନ୍ତି।

## ମାଧମିକ ଶିକ୍ଷକମାନଙ୍କ ଆନ୍ଦୋଳନ

୧୯୮୪ ମସିହା ଅକ୍ଟୋବର ମାସରେ ମୋର ବଦଳି ଆଦେଶ ଆସିଲା। ଏତେ ଶୀଘ୍ର କାହିଁକି ବଦଳି ହେଲା ବୋଲି ବୁଝିବାକୁ ଭୁବନେଶ୍ୱର ଗଲି। ସେଠାରେ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଡକ୍ଟର ତାପସ କବି ତାଙ୍କ ଉପନିର୍ଦ୍ଦେଶକ ଶ୍ରୀମତୀ ଦାସଙ୍କୁ ବଦଳି କରିବା ପାଇଁ ଶିକ୍ଷାମନ୍ତ୍ରୀଙ୍କୁ ବ୍ୟସ୍ତ କରି ପକାଇଲେଣି। ଶ୍ରୀମତୀ ଦାସ କାମ ଯାହା କରନ୍ତୁ ବା ନ କରନ୍ତୁ ମିଟିଂ ପାଇଁ ଯାହା ତଥ୍ୟ ନିର୍ଦ୍ଦେଶକ ଦରକାର କରନ୍ତି ତାଙ୍କର ଅଜ୍ଞତା ଯୋଗୁ ହେଉ ବା ଜାଣି ଜାଣି ଭୁଲ ତଥ୍ୟ ଦିଅନ୍ତି। ଫଳରେ ନିର୍ଦ୍ଦେଶକ ଅପଦସ୍ତ ହୁଅନ୍ତି। ନିର୍ଦ୍ଦେଶକଙ୍କ କହିବା କଥା ହେଲା ସେ ଜାଣିଶୁଣି ତାଙ୍କୁ ଅପଦସ୍ତ କରିବା ପାଇଁ ଭୁଲ ତଥ୍ୟ ଦିଅନ୍ତି। ମୁଁ ଢେଙ୍କାନାଳରୁ ଅବ୍ୟାହତି ନେବାକୁ ପ୍ରସ୍ତୁତ ହେଉଥିବା ସମୟରେ ମାଧମିକ ଶିକ୍ଷା ନିର୍ଦ୍ଦେଶକ ଟେଲିଫୋନ୍ କରି କହିଲେ ଯେ ବେସରକାରୀ ହାଇସ୍କୁଲ ଶିକ୍ଷକମାନେ ଯେଉଁ ଷ୍ଟ୍ରାଇକ୍ କରିଛନ୍ତି ତାକୁ ସାମନା କରିବାକୁ ମୋତେ କିଛି ଦିନ ରହିବାକୁ ପଡିବ।

OSSTA ଶିକ୍ଷକମାନେ ଷ୍ଟ୍ରାଇକ୍ କରିଥାନ୍ତି। ସେମାନେ ପାଠପଢାଇବା କାମ ବନ୍ଦ କରିଦେଲେ। OSSTA ଢେଙ୍କାନାଳ ଜିଲ୍ଲା ଶାଖା ସଭାପତି ଗତିକୃଷ୍ଣ ଭଞ୍ଜଙ୍କୁ ଡକାଇଲି ଓ କହିଲି, " ଆପଣ ବେସରକାରୀ ଶିକ୍ଷକ ସଂଗଠନ ସଭାପତି ଥାଇ ଯଦି ସ୍କୁଲରେ ପାଠପଢା ବନ୍ଦ ହୋଇଗଲା, ତାହାହେଲେ ଅତି ଦୁର୍ଭାଗ୍ୟର କଥା ହେବ।"ସେ ମୋ କଥା ଶୁଣି କହିଲେ, " ଆମେ ସକାଳ ୬ ଟାରୁ ୧୦.୩୦ ପର୍ଯ୍ୟନ୍ତ ସ୍କୁଲରେ ପାଠ ପଢାଇବୁ ଓ ୧୦.୩୦ ଠାରୁ ଷ୍ଟ୍ରାଇକ୍ କରିବୁ। ପିଲାଙ୍କ ପାଠପଢା ଠିକ୍ ଚାଲିବ ଓ ଆମ ଷ୍ଟ୍ରାଇକ୍ ବି ଚାଲିବ। ତାହା ହିଁ ହେଲା । ଢେଙ୍କାନାଳ ଜିଲ୍ଲାରେ ଷ୍ଟ୍ରାଇକ୍‌ର କିଛି କୁପ୍ରଭାବ ପଡିଲୀ ନାହିଁ। ଶେଷରେ

୨୬ । ୧୨ । ୧୯୮୪ ତାରିଖରେ ରାଜଲକ୍ଷ୍ମୀ ମିତ୍ରଙ୍କୁ ଦାୟିତ୍ୱ ହସ୍ତାନ୍ତର କରି ୨୭। ୧୨ । ୧୯୮୪ ତାରିଖରେ ପ୍ରାଥମିକ ଶିକ୍ଷା ଉପନିର୍ଦ୍ଦେଶକ ଭାବରେ ଯୋଗ ଦେଲି ।

## ମାଧମିକ ଶିକ୍ଷାର ଦୁର୍ଦ୍ଦଶା କାହିଁକି ?

ଇନିସ୍ପେକ୍ଟର ଚାକିରି ଅଧ୍ୟାୟ ଶେଷ କରିବା ପୂର୍ବରୁ ମାଧମିକ ଶିକ୍ଷାର ଢାଞ୍ଚା, ଗୁଣାତ୍ମକ ସ୍ଥିତି ଓ ପାଠ୍ୟକ୍ରମ ବିଷୟରେ ଆଲୋଚନା ନ କଲେ ତାହା ଅପୂର୍ଣ୍ଣ ରହିଯିବ। ଓଡିଶାରେ ମାଧମିକ ଶିକ୍ଷା ଯେପରି ହେବାର କଥା ତାହା ହୋଇ ନାହିଁ. ମୁଦାଲିୟର କମିଶନଙ୍କ ସୁପାରିଶ କ୍ରମେ ଓଡିଶାରେ ମାଧମିକ ଶିକ୍ଷା ବୋର୍ଡ ଗଠିତ ହୋଇଥିଲେ ମଧ କମିଶନଙ୍କ ମୁଖ୍ୟ ଉଦ୍ଦେଶ୍ୟ ଓ ମାଧମିକ ଶିକ୍ଷା ସଂସ୍କାର ପ୍ରୟାସ ବିଫଳ ହୋଇଛି । ସେ ବିଷୟରେ ବିଶଦ ଆଲୋଚନା ଆବଶ୍ୟକ ।

ପୂର୍ବେ ମାଧମିକ ଶିକ୍ଷା ପାଠ୍ୟକ୍ରମ ପ୍ରସ୍ତୁତି ଦାୟିତ୍ୱ ବିଶ୍ୱ ବିଦ୍ୟାଳୟମାନଙ୍କ ଉପରେ ନ୍ୟସ୍ତ ଥିଲା । ସେତେବେଳେ ଧାରଣା ଥିଲା ଯେ ମାଧମିକ ଶିକ୍ଷା ବିଶ୍ୱ ବିଦ୍ୟାଳୟ ଶିକ୍ଷା ପାଇଁ ଅଭିପ୍ରେତ। ବିଶ୍ୱ ବିଦ୍ୟାଳୟ ଶିକ୍ଷା ପାଇଁ ଯେଉଁ ପ୍ରକାର ଓ ଯେଉଁ ସ୍ତରର ପାଠ୍ୟକ୍ରମ ଆବଶ୍ୟକ ତାହା ବିଶ୍ୱ ବିଦ୍ୟାଳୟ ଶିକ୍ଷକମାନେ ପ୍ରସ୍ତୁତ କରିପାରିବେ। ମାଧମିକ ଶିକ୍ଷା ଶେଷରେ ପରୀକ୍ଷା ଓ ସାର୍ଟିଫିକେଟ୍ ପ୍ରଦାନ କାର୍ଯ୍ୟ ମଧ ବିଶ୍ୱ ବିଦ୍ୟାଳୟମାନେ କରୁଥିଲେ। ମୋଟାମୋଟି ଭାବରେ ମାଧମିକ ଶିକ୍ଷାକୁ ବିଶ୍ୱ ବିଦ୍ୟାଳୟମାନେ ନିୟନ୍ତ୍ରଣ କରୁଥିଲେ। ବିଶ୍ୱ ବିଦ୍ୟାଳୟ ଶିକ୍ଷା ବ୍ୟତୀତ ମାଧମିକ ଶିକ୍ଷାର ଅନ୍ୟ ଉଦ୍ଦେଶ୍ୟ ନାହିଁ ବୋଲି ସମସ୍ତେ ଧରି ନେଇଥିଲେ ।

ଭାରତ ସରକାର ୧୯୫୨ ମସିହାରେ ଏ.ଲକ୍ଷ୍ମଣସ୍ୱାମୀ ମୁଦାଲିୟରଙ୍କ ଅଧ୍ୟକ୍ଷତାରେ ମାଧ୍ୟମିକ ଶିକ୍ଷା କମିଶନ ବସାଇଲେ। ୧୯୫୩ ମସିହାରେ ଏହି କମିଶନ ତାଙ୍କର ରିପୋର୍ଟ ଦେଲେ। ସେଥିରେ ସେ କହିଲେ ଯେ ବିଶ୍ୱ ବିଦ୍ୟାଳୟ ଶିକ୍ଷା ପାଇଁ ମାଧମିକ ଶିକ୍ଷା ଏକ ପାବଛ (Stepping Stone) ନୁହେଁ। ଏହାର ଅନ୍ୟ ଗୁରୁତ୍ୱପୂର୍ଣ୍ଣ ଲକ୍ଷ୍ୟ ଅଛି। ମାଧମିକ ଶିକ୍ଷା ଶେଷ କରି ଶତକଡା ୫୦ ରୁ ଅଧିକ ଯୁବକଯୁବତୀ ଜୀବନ କ୍ଷେତ୍ରରେ ପ୍ରବେଶ କରନ୍ତି। ସେମାନଙ୍କ ଜୀବନଯାତ୍ରା ପାଇଁ ତାଙ୍କୁ କି ପ୍ରକାର ପାଥେୟ ଆମ ଶିକ୍ଷା ବ୍ୟବସ୍ଥା ଦେଉଛି ? ଯେଉଁମାନେ ଉଚ୍ଚତର ଶିକ୍ଷା ପାଇଁ ବିଶ୍ୱ ବିଦ୍ୟାଳୟକୁ ଯିବେ ଯାଆନ୍ତୁ। କିନ୍ତୁ ଯେଉଁମାନେ ଜୀବନ କ୍ଷେତ୍ରରେ ପ୍ରବେଶ କରିବେ ସେମାନଙ୍କ ଜୀବନଯାତ୍ରା

ପାଇଁ ଧନ୍ଦାମୂଳକ ଶିକ୍ଷା ପ୍ରବର୍ତ୍ତିତ ହେବା ଉଚିତ୍। ମୁଦାଲିୟର କମିଶନ ତେଣୁ ମାଧ୍ୟମିକ ଶିକ୍ଷାର ଦୁଇଟି ସ୍ରୋତ ପାଇଁ ସୁପାରିଶ କରିଛନ୍ତି: ଗୋଟିଏ ହେଲା ବହୁମୁଖୀ (Multi- Purpose School) ବିଦ୍ୟାଳୟ ଯେଉଁମାନେ ଜୀବନ କ୍ଷେତ୍ରରେ ପ୍ରବେଶ କରିବେ ବଞ୍ଚିବା ପାଇଁ, ଜୀବିକାର୍ଜନ ପାଇଁ କିଛି ଧନ୍ଦା ଶିକ୍ଷା କରିବାର ଆବଶ୍ୟକତା ରହିଛି ଓ ଦ୍ୱିତୀୟଟି ହେଉଛି ଉଚ୍ଚ ଶିକ୍ଷା ପାଇଁ।

ଓଡିଶାରେ ମାଧ୍ୟମିକ ଶିକ୍ଷାର ଅବସ୍ଥା ଅତ୍ୟନ୍ତ ଦୟନୀୟ। ୧୯୫୩ ମସିହାରେ ମାଧ୍ୟମିକଶିକ୍ଷା କମିଶନ ତାଙ୍କ ରିପୋର୍ଟ ଦେଲା ପରେ ଭାରତ ସରକାର ତାହା ଗ୍ରହଣ କରି ରାଜ୍ୟମାନଙ୍କୁ ମାଧ୍ୟମିକ ଶିକ୍ଷା ବୋର୍ଡ ଗଠନ କରିବାକୁ ପ୍ରସ୍ତାବ ଦେଲେ। ତଦନୁସାରେ ୧୯୫୩ ମଇ ୨୩ ତାରିଖରେ ଓଡିଶା ମାଧ୍ୟମିକ ଶିକ୍ଷା ଆଇନ୍ ରାଜ୍ୟପାଳଙ୍କ ସ୍ୱୀକୃତି ଲାଭ କଲା। ଏହି ଆଇନ୍ ଅନୁସରଣରେ ମାଧ୍ୟମିକ ଶିକ୍ଷା Regulation ପ୍ରସ୍ତୁତ ହେଲା। ୧୯୫୬ ମସିହା ସପ୍ଲିମେଣ୍ଟାରୀ ପରୀକ୍ଷାଠାରୁ ମାଧ୍ୟମିକ ଶିକ୍ଷା ବୋର୍ଡ ପରୀକ୍ଷା ପରିଚାଳନା ଦାୟିତ୍ୱ ଗ୍ରହଣ କଲେ। ତା ପୂର୍ବରୁ ସିଲାବସ୍ କମିଟି, ଶିକ୍ଷା କମିଟି ଗଠନ ଆଦି କାର୍ଯ୍ୟ ଶେଷ ହୋଇଥିଲା।

ମାଧ୍ୟମିକ ଶିକ୍ଷା କମିଶନଙ୍କ ସୁପାରିଶର ଆଙ୍ଗିକ ଭାଗଟି କାର୍ଯ୍ୟକାରୀ ହୋଇଗଲା। କିନ୍ତୁ ଆତ୍ମିକ ଭାଗଟି କାର୍ଯ୍ୟକାରୀ ହେଲା ନାହିଁ। ମାଧ୍ୟମିକ ଶିକ୍ଷାର ଢାଞ୍ଚାଗତ ପରିବର୍ତ୍ତନ ହେଲା ନାହିଁ। ଅଷ୍ଟମ, ନବମ, ଦଶମ ଓ ଏକାଦଶ ଚାରିଗୋଟି ଶ୍ରେଣୀ ପୂର୍ବପରି ରହିଲା। ସେମାନଙ୍କର ପାଠ୍ୟକ୍ରମରେ ପରିବର୍ତ୍ତନ ଆଣିବା କମିଶନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲେ ମଧ୍ୟ ସେଥିରେ ପ୍ରାୟ କୌଣସି ପରିବର୍ତ୍ତନ ହେଲା ନାହିଁ। କାରଣ ଉତ୍କଳ ବିଶ୍ୱ ବିଦ୍ୟାଳୟରେ ଯେଉଁମାନେ ମାଧ୍ୟମିକ ଶିକ୍ଷା ପାଇଁ ପାଠ୍ୟକ୍ରମ ପ୍ରସ୍ତୁତ କରୁଥିଲେ ପ୍ରାୟ ସେଇମାନଙ୍କୁ ମାଧ୍ୟମିକ ଶିକ୍ଷା ବୋର୍ଡ ସିଲାବସ୍ ପ୍ରସ୍ତୁତ ପାଇଁ ନିଯୁକ୍ତ କଲେ। ଫଳରେ ପାଠ୍ୟକ୍ରମ ଯାହା ଥିଲା ତାହା ରହିଲା। ମାଧ୍ୟମିକ ଶିକ୍ଷାର ନୂତନ ଆଭିମୁଖ୍ୟ ରୂପାୟିତ ହେଲା ନାହିଁ । ବିଶ୍ୱ ବିଦ୍ୟାଳୟରେ ଯେଉଁ ସିଲାବସ୍ ଥିଲା ତା'ର ଖୋଳପା ପରିବର୍ତ୍ତନ କରି ନୂଆ ପାଠ୍ୟକ୍ରମ ପ୍ରସ୍ତୁତ ହେଲା।

ମାଧ୍ୟମିକ ଶିକ୍ଷା ବୋର୍ଡରେ କେହି ସ୍ଥାୟୀ ସଭାପତି ନ ରହିବାରୁ ମାଧ୍ୟମିକ ଶିକ୍ଷାର ନୂତନ ରୂପରେଖ କ'ଣ ହେବ କେହି ଚିନ୍ତା କଲେ ନାହିଁ। ମାଧ୍ୟମିକ ଶିକ୍ଷାକୁ ନୂତନ ଦିଗ୍‌ଦର୍ଶନ ଦେବା ପାଇଁ ମୁଦାଲିୟର କମିଶନ ରିପୋର୍ଟରେ ଯଥେଷ୍ଟ ସୂଚନା ଥିଲେ ମଧ୍ୟ ତାକୁ କିପରି କାର୍ଯ୍ୟକାରୀ କରାଯିବ ସେ ବିଷୟରେ କାହାରି ଧାରଣା ନଥିଲା।

ମାଧ୍ୟମିକ ଶିକ୍ଷା ବୋର୍ଡ ଗଠନ ବେଳେ ଶିକ୍ଷାମନ୍ତ୍ରୀ ଥିଲେ ରାଧାନାଥ ରଥ ଓ ଡି.ପି.ଆଇ ଥିଲେ ବଳଭଦ୍ର ପ୍ରସାଦ। ଉଭୟ କଳ୍ପନା ବିଳାସୀ ଓ ଉଚ୍ଚାକାଂକ୍ଷୀ। ସେମାନେ ମୁଦାଲିୟର କମିଶନ ରିପୋର୍ଟ ଦେଖି ଧନ୍ଦାମୂଳକ ଶିକ୍ଷା ପ୍ରବର୍ତ୍ତନ ପାଇଁ କିଛି ଯନ୍ତ୍ରପାତି କିଣିବାକୁ ଟଙ୍କା ବ୍ୟବସ୍ଥା କରିଦେଲେ ଓ ଯନ୍ତ୍ରପାତି କିଣି ଯୋଗାଇ ଦେଲେ। ସେ ଯନ୍ତ୍ର ଚଳାଇବା ପାଇଁ କୌଣସି ଶିକ୍ଷକ ତାଲିମ୍ ପାଇ ନଥିଲେ। ଧନ୍ଦାମୂଳକ ଶିକ୍ଷା ପ୍ରବର୍ତ୍ତନ ପାଇଁ ଯୋଜନା ପ୍ରସ୍ତୁତ ହୋଇନଥିଲା। ଯୋଜନା ଅଭାବରେ ଏଠି ସେଠି ସ୍କୁଲମାନଙ୍କୁ ଯନ୍ତ୍ର ଯୋଗାଇ ଦିଆଗଲା ଓ ଯନ୍ତ୍ରଗୁଡ଼ିକ ଜଙ୍କ ଖାଇ ନଷ୍ଟ ହେଲା । ମୁଁ ସେତେବେଳକୁ କୁଶଳେଶ୍ବର ହାଇସ୍କୁଲରେ ଶିକ୍ଷକ ଥିଲି। ସେଠାକୁ ଗୋଟାଏ Welding Machine ପଠାଇ ଦିଆଗଲା। ପ୍ରଥମେ ଆମେ ଜାଣି ପାରିଲୁ ନାହିଁ ଏ କି ଯନ୍ତ୍ର, କାହିଁକି ପଠାଯାଇଛି। ତା ପରେ ଜାଣିଲୁ ଏ ମେସିନ୍‌ରେ Welding ହୁଏ। କିନ୍ତୁ କିପରି ହୁଏ କେହି ଜାଣି ପାରିଲେ ନାହିଁ। ଅନେକ ଦିନ ପଡି ପଡି ମେସିନ୍‌ଟି ନଷ୍ଟ ହୋଇଗଲା। ଯୋଜନା ନ ଥାଇ ଅବିଚାରିତ ଭାବରେ ଜିନିଷ କିଣି ବହୁତ ଟଙ୍କା ବରବାଦ ହୋଇଗଲା। ମାଧ୍ୟମିକ ଶିକ୍ଷାର କୌଣସି ପରିବର୍ତ୍ତନ ହେଲା ନାହିଁ। କେବଳ ବିଶ୍ୱ ବିଦ୍ୟାଳୟ ପରିବର୍ତ୍ତେ ମାଧ୍ୟମିକ ଶିକ୍ଷା ବୋର୍ଡ ପରୀକ୍ଷା ପରିଚାଳନା କଲେ ଏତିକି ପରିବର୍ତ୍ତନ ହେଲା ।

ମୁଦାଲିୟର କମିଶନ ତାଙ୍କ ରିପୋର୍ଟରେ ଉଲ୍ଲେଖ କରିଛନ୍ତି ଯେ ଭାରତରେ ଯେତେ ପିଲା ମାଧ୍ୟମିକ ଶିକ୍ଷା ପାଆନ୍ତି ତା'ର ଶତକଡା ୫୦ ଭାଗ କଲେଜକୁ ପଢିବାକୁ ଯାଆନ୍ତି, ବାକି ଶତକଡା ୫୦ ଭାଗ ଜୀବନ କ୍ଷେତ୍ରରେ ପ୍ରବେଶ କରନ୍ତି। ସେମାନଙ୍କ ପାଇଁ କମିଶନ ଧନ୍ଦାମୂଳକ ଶିକ୍ଷା ପ୍ରବର୍ତ୍ତନ ପାଇଁ ସୁପାରିଶ କରିଥିଲେ। ଧନ୍ଦାମୂଳକ ଶିକ୍ଷା ପ୍ରବର୍ତ୍ତନ ପାଇଁ ଧାରାବାହିକ ଉଦ୍ୟମ ଦରକାର। ମାଇନର ସ୍କୁଲରେ ପ୍ରାକ୍ ଧନ୍ଦାମୂଳକ ଶିକ୍ଷାର ପ୍ରବର୍ତ୍ତନ ଓ ମାଧ୍ୟମିକ ଶିକ୍ଷାରେ ଧନ୍ଦାମୂଳକ ଶିକ୍ଷା ପ୍ରବର୍ତ୍ତନ ପାଇଁ କମିଶନ ବ୍ୟବସ୍ଥା କରିଥିଲେ। ସେଥିପାଇଁ ସେ ଦୁଇପ୍ରକାର ମାଧ୍ୟମିକ ସ୍କୁଲ କଥା କହିଥିଲେ (୧) ଉଚ୍ଚତର ମାଧ୍ୟମିକ ଶିକ୍ଷା ଓ (୨) ବହୁମୁଖୀ ମାଧ୍ୟମିକ ଶିକ୍ଷା। ବହୁମୁଖୀ ମାଧ୍ୟମିକ ଶିକ୍ଷାରେ ପାଞ୍ଚଗୋଟି Core subject ଓ ତିନିଗୋଟି ଧନ୍ଦାମୂଳକ ବିଷୟ -Core subject : ମାତୃଭାଷା, ଇଂରାଜି, ଗଣିତ, ସାଧାରଣ ବିଜ୍ଞାନ ଓ ସାମାଜିକ ଶିକ୍ଷା । ଅନେକଗୁଡିଏ ଧନ୍ଦାମୂଳକ ବିଷୟରୁ ତିନୋଟି ବାଛିବା କଥା। ବ୍ୟକ୍ତିର ଜୀବନଯାପନ ଦୃଷ୍ଟିରୁ ମାଧ୍ୟମିକ ଶିକ୍ଷା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ହୋଇଥିଲେ ମଧ୍ୟ ଓଡିଶାରେ ତା ଉପରେ ଆଦୌ ଗୁରୁତ୍ୱ ଦିଆଗଲା ନାହିଁ।

ମାଧ୍ୟମିକ ଶିକ୍ଷା ଉପରେ ଗୁରୁତ୍ୱ ଦେଇଥାନ୍ତା କିଏ? ୧୯୫୫ ମସିହା ଠାରୁ ୧୯୭୫ ମସିହା ପର୍ଯ୍ୟନ୍ତ ମାଧ୍ୟମିକ ଶିକ୍ଷା ବୋର୍ଡର ପୂର୍ଣ୍ଣକାଳୀନ ସ୍ଥାୟୀ ସଭାପତି ନଥିଲେ। ଓଡିଶାର ଏକମାତ୍ର ଡି.ପି.ଆଇ ଯାହାଙ୍କ ମୁଣ୍ଡରେ ଅଜସ୍ର କାମର ବୋଝ ତାଙ୍କୁ ମାଧ୍ୟମିକ ଶିକ୍ଷା ବୋର୍ଡର ସଭାପତି କାର୍ଯ୍ୟ ଅତିରିକ୍ତ ଦାୟିତ୍ୱ ଭାବରେ ଦିଆଗଲା। ସେ ଯଦି କେବେ କେଉଁମାସ ଥରେ ସୁବିଧା କରି କଟକସ୍ଥ ମାଧ୍ୟମିକ ଶିକ୍ଷା ବୋର୍ଡ ଅଫିସକୁ ଯାଇ ପାରିଲେ ତ ଭଲ, ନହେଲେ ନାହିଁ। ସଂପାଦକ ଯାହା କରିବେ ତା'ର ଔପଚାରିକ ଅନୁମୋଦନ କେବେ କେମିତି କରାଯାଏ। ମାଧ୍ୟମିକ ଶିକ୍ଷା ବୋର୍ଡର ଯେଉଁ Regulations ପ୍ରସ୍ତୁତ ହୋଇଛି ସେଥିରେ ସଂପାଦକଙ୍କୁ ପ୍ରାଧାନ୍ୟ ଦିଆଯାଇଛି। ମାଧ୍ୟମିକ ଶିକ୍ଷା ଭଳି ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଭାଗକୁ ବହୁଦିନ ଅବହେଳିତ ଅବସ୍ଥାରେ ଛାଡି ଦିଆଗଲା।

**ମାଧ୍ୟମିକ ଶିକ୍ଷା ବୋର୍ଡ ଆରମ୍ଭରୁ ଏ ପର୍ଯ୍ୟନ୍ତ ସଭାପତି ମାନଙ୍କର ଏକ କାର୍ଯ୍ୟକାଳ ହିସାବ ନିମ୍ନରେ ଦିଆଗଲା।**

| | |
|---|---|
| ୧। ୯। ୧୯୫୫ -୧।୫।୧୯୭୫ | - ଶିକ୍ଷା ବିଭାଗ ଡି.ପି.ଆଇଙ୍କ ଅତିରକ୍ତ ଦାୟିତ୍ୱ - କେହି ପୂର୍ଣ୍ଣକାଳୀନ ସଭାପତି ନ ଥିଲେ। |
| ୨ । ୫ । ୧୯୭୫- ୩ । ୩।୧୯୭୮ | - ଗଣିତ ପ୍ରଫେସର ବ୍ରଜବନ୍ଧୁ ମିଶ୍ର - ପୂର୍ଣ୍ଣକାଳୀନ ସଭାପତି । |
| ୪ । ୩ ।୧୯୭୮- ୩୧ । ୧ ।୧୯୭୯ | - ଅବସରପ୍ରାପ୍ତ ବାଣିଜ୍ୟ, ପ୍ରଫେସର ବଟକୃଷ୍ଣ ମହାନ୍ତି। |
| ୧।୨।୧୯୭୯ - ୩ । ୩ । ୧୯୭୯ | - ବିବେକାନନ୍ଦ ପତି (ଭାରପ୍ରାପ୍ତ) |
| ୨ । ୪ । ୧୯୭୯ - ୨୨। ୯। ୧୯୮୦ | - ପ୍ରଫେସର ହରେକୃଷ୍ଣ ମିଶ୍ର । |
| ୨୯।୦୯।୧୯୮୦ -୨୦।୦୮।୧୯୮୧ | - ପ୍ରଫେସର ବଟକୃଷ୍ଣ ମହାନ୍ତି । |

୨୧। ୧। ୧୯୮୧- ୦୮ । ୦୪। ୧୯୮୨ - ଗୋପାଳଚନ୍ଦ୍ର ପଟ୍ଟନାୟକ (ଭାରପ୍ରାପ୍ତ)

୯। ୪ । ୧୯୮୨- ୪ । ୮ । ୧୯୮୨ - ଡ. ଶରତ ଚନ୍ଦ୍ର ଦାସ (ଭାରପ୍ରାପ୍ତ)

୫ । ୮ । ୧୯୮୨ - ୨୧ । ୮ । ୧୯୮୩ - ଅବସର ପ୍ରାପ୍ତ ପ୍ରଫେସର ବଟକୃଷ୍ଣ ମହାନ୍ତି

୨୬ । ୮ । ୧୯୮୩ - ୧ ।୨ । ୧୯୮୫ - ରାଇମୋହନ ଦାସ (ଆଇ.ଏ.ଏସ୍)

୨ । ୨ । ୧୯୮୫ - ୧୨ । ୭ । ୧୯୮୭ - ଶକ୍ତି ପ୍ରସାଦ ମିଶ୍ର (ଆଇ.ଏ.ଏସ୍)

୨୯ । ୭ । ୧୯୮୭ - ୨୬ । ୨ । ୧୯୯୦- ଅର୍ଦ୍ଧେନ୍ଦୁ ଶେଖର ଷଡଙ୍ଗୀ (ଆଇ.ଏ.ଏସ୍)

୨୭ । ୨ । ୧୯୯୦ - ୩୦ । ୯ । ୧୯୯୦- ପ୍ରଫେସର ଚିତ୍ରାନନ୍ଦ ନନ୍ଦ

୧ । ୧୦। ୧୯୯୦ - ୭ । ୭ । ୧୯୯୨ - ଡ. ଜେ.ଏନ୍. ପଟ୍ଟନାୟକ

୭ । ୮ । ୧୯୯୨ - ୩୧ । ୧୨ । ୧୯୯୩- ଡ. ଫଣୀ ଭୂଷଣ ଦାସ

୧ । ୨ । ୧୯୯୪ - ୬ । ୬ । ୧୯୯୫ - ଡ. ପ୍ରଭାତ କୁମାର ମିଶ୍ର

୭ । ୬ । ୧୯୯୫ - ୧ । ୧୧ । ୧୯୯୬ - ଡ. ଦେବକାନ୍ତ ମିଶ୍ର

ଯେତେ ଜଣ ମାଧ୍ୟମିକ ଶିକ୍ଷା ବୋର୍ଡ ସଭାପତି ଥିଲେ କେବଳ ଶରତ ଚନ୍ଦ୍ର ଦାସ ଙ୍କୁ ଛାଡି ଦେଲେ ଅନ୍ୟ କାହାରି ଶିକ୍ଷା ଶାସ୍ତ୍ରରେ ଡିଗ୍ରୀ ବା ଶିକ୍ଷା ପରିଚାଳନାରେ ଅଭିଜ୍ଞତା ବା ମାଧ୍ୟମିକ ଶିକ୍ଷା ବୋର୍ଡ ଭଳି ଅନୁଷ୍ଠାନକୁ ଚଳାଇବାର ବହୁଦର୍ଶିତା ନ ଥିଲା। ସେ ମାତ୍ର ଚାରିମାସ ସଭାପତି ଦାୟିତ୍ୱରେ ଥିଲେ। ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ରଙ୍କ ଶିକ୍ଷାଶାସ୍ତ୍ରରେ ଡିଗ୍ରୀ ଥିଲେ ମଧ୍ୟ ତାଙ୍କର ଶିକ୍ଷା ପରିଚଳନାରେ ଅଭିଜ୍ଞତା ବା ମାଧ୍ୟମିକ ଶିକ୍ଷା ବୋର୍ଡକୁ ଚଳାଇବାର ଦକ୍ଷତା ନଥିଲା। ପରେ ଡକ୍ଟର ନରେନ୍ଦ୍ର ପ୍ରସାଦ ଦାସ ମାଧ୍ୟମିକ ଶିକ୍ଷା ବୋର୍ଡ ସଭାପତି ଥାଇ ବହୁ ଦିନର ଅବହେଳା, ଅପଶାସନ ଓ ଅନିୟମିତତା ସୁଧାରିବାକୁ ଚେଷ୍ଟା କରିଥିଲେ। ତାଙ୍କର ଶିକ୍ଷାଶାସ୍ତ୍ରରେ ଡିଗ୍ରୀ ନଥିଲା କିନ୍ତୁ ଶିକ୍ଷାରେ ନବ ପ୍ରବର୍ତ୍ତନର ଧାରା ସହିତ ସେ ପରିଚିତ ଥିଲେ। ଆଇ.ଏ.ଏସ୍ ଅଫିସରମାନେ କ୍ରମାଗତ

ଭାବରେ ସଭାପତି ରହି ଶିକ୍ଷା ପ୍ରଶାସନ ପ୍ରତି ଦୃଷ୍ଟି ଦେଲେ, କିନ୍ତୁ ଶିକ୍ଷାର ଗୁଣାତ୍ମକ ବିକାଶ ବିଷୟରେ ତାଙ୍କର ଧାରଣା ନଥିବା ସ୍ୱାଭାବିକ।

ଓଡିଶା ମାଧମିକ ଶିକ୍ଷାରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ତ୍ରୁଟି ହେଲା ଉଚ୍ଚତର ମାଧମିକ ଶିକ୍ଷା ପରିଚାଳନା କରିବାରେ ଅପାରଗତା ଓ ଅସ୍ଥିରତା । ମୁଦାଲିୟର କମିଶନଙ୍କର ଉଚ୍ଚତର ମାଧମିକ ଶିକ୍ଷା ପରିକଳ୍ପନା ପ୍ରତି ଓଡିଶାରେ ଯେଉଁ ଉପହାସ କରାଗଲା ତାହା ଅନୁଧାନ ଯୋଗ୍ୟ। କମିଶନଙ୍କର ସୁପାରିଶ କ୍ରମେ ରେଭେନ୍ସା କଲେଜିଏଟ୍ ହାଇସ୍କୁଲ, ଢେଙ୍କାନାଳ ବ୍ରଜନାଥ ବଡଜେନା ହାଇସ୍କୁଲ ପ୍ରଭୃତି କେତେକ ଜିଲ୍ଲା ସଦର ମହକୁମା ହାଇସ୍କୁଲକୁ ଉଚ୍ଚତର ମାଧମିକ ଶିକ୍ଷାରେ ପରିଣତ କରାଗଲା। ତାହା କିଛି ଦିନ ଧରି ଚାଲିଲା। ତା ସହିତ ବହୁମୁଖୀ ହାଇସ୍କୁଲ ଖୋଲିବା ପାଇଁ ସୁପାରିଶ ଥିଲେ ମଧ ତାହା କାର୍ଯ୍ୟକାରୀ ହୋଇପାରିଲା ନାହିଁ। କାରଣ ବହୁମୁଖୀ ସ୍କୁଲ ଖୋଲିବା ପାଇଁ କ'ଣ କ'ଣ ଦରକାର, ତାହା କିପରି ପରିଚାଳନା କରିବାକୁ ହୁଏ ସେ ବିଷୟରେ କାହାରି ଧାରଣା ନ ଥିଲା । ସେଥିପାଇଁ ତାଲିମ୍‌ପ୍ରାପ୍ତ ଶିକ୍ଷକ ନଥିଲେ। ବହୁମୁଖୀ ବିଦ୍ୟାଳୟ ଯାହା ମୁଦାଲିୟର କମିଶନଙ୍କ ମୁଖ୍ୟ ସୁପାରିଶ ଥିଲା ଓଡିଶାରେ ତାହା କାର୍ଯ୍ୟକାରୀ ହେଲା ନାହିଁ। ଉଚ୍ଚତର ମାଧମିକ ସ୍କୁଲ କିଛି ଦିନ ଚାଲିଲା ପରେ ସେ ଗୁଡିକ ପୁଣି ହାଇସ୍କୁଲରେ ପରିଣତ କରି ଦିଆଗଲା। ଏ ଖେଳ ପରେ ଯେତେବେଳେ କୋଠାରୀ କମିଶନ (୧୯୬୪ -୬୬) ଉଚ୍ଚତର ମାଧମିକ ଶିକ୍ଷା ଉପରେ ଅଧିକ ଗୁରୁତ୍ୱ ଦେଲେ ତା'ର ପ୍ରତିକ୍ରିୟା ସ୍ୱରୂପ ଓଡିଶାରେ +୨ କଲେଜ ସବୁ ଖୋଲିଲା। ଉଚ୍ଚତର ମାଧମିକ ଶିକ୍ଷା ଉପର ଦୁଇଟି ଶ୍ରେଣୀକୁ ନେଇ ଜୁନିୟର କଲେଜ ଖୋଲିଲା। ତାକୁ ସରକାର ମଞ୍ଜୁର କଲେ ଓ କେତେକ କ୍ଷେତ୍ରରେ ବିଧାନସଭା ସଦସ୍ୟମାନଙ୍କ ପ୍ରୋତ୍ସାହନରେ ଏ କଲେଜ ସବୁ ପ୍ରତିଯୋଗିତାମୂଳକ ଭାବରେ ଖୋଲିବାକୁ ଲାଗିଲା।

ଯଦି ହାଇସ୍କୁଲ ଗୁଡିକୁ ଉନ୍ନୀତ କରି ଉଚ୍ଚତର ମାଧମିକ ବିଦ୍ୟାଳୟରେ ପରିଣତି କରାଯାଇଥାନ୍ତା ତା' ହେଲେ ଓଡିଶାରେ ଅନ୍ତତଃ ପକ୍ଷେ ୬୦୦୦ ସ୍କୁଲରେ ପିଲାମାନେ ଉଚ୍ଚତର ମାଧମିକ ଶିକ୍ଷା ପାଇବାର ସୁଯୋଗ ପାଇଥାନ୍ତେ ଓ ସେ ସ୍କୁଲ ସବୁ ଓଡିଶାର ସବୁ ପଞ୍ଚାୟତରେ ଉପଲବ୍ଧ ହୋଇଥାନ୍ତା। ଜୁନିୟର କଲେଜରେ ଉଚ୍ଚତର ମାଧମିକ ଶିକ୍ଷା ପ୍ରଚଳିତ ହେବା ଦ୍ୱାରା ସମଗ୍ର ଓଡିଶାରେ ୧୨୦୦ଟି ଅନୁଷ୍ଠାନରେ ଉଚ୍ଚତର ମାଧମିକ ଶିକ୍ଷା ଉପଲବ୍ଧ ହେଲା। ଯେଉଁ ଅଞ୍ଚଳରେ ଆର୍ଥିକ ଦୁର୍ବଳତା ଯୋଗୁ ହେଉ ବା ପ୍ରୋତ୍ସାହନର ଅଭାବ ଯୋଗୁ ହେଉ ଜୁନିୟର କଲେଜ ଖୋଲି ନ ପାରିଲା ସେଠାରେ ପିଲାମାନେ ଉଚ୍ଚତର

ମାଧ୍ୟମିକ ଶିକ୍ଷାରୁ ବଞ୍ଚିତ ହେଲେ। ଏ ଅସୁବିଧା ସୁଧାରିବାର ଆଉ ବାଟ ନାହିଁ। କୋରାପୁଟ, ଫୁଲବାଣୀ ଭଳି ଅନୁନ୍ନତ ଆଦିବାସୀ ଜିଲ୍ଲାରେ ଏ ଅଭାବ ଅନୁଭୂତ ହେଉଛି ଓ ହେଉଥିବ ମଧ୍ୟ।

ପୃଥିବୀର କୌଣସି ଦେଶରେ "+୨" ନାମରେ କୌଣସି ଶିକ୍ଷା ନାହିଁ। ଶିକ୍ଷାର କୌଣସି ସ୍ତରର ନାମ "+୨" ହୋଇପାରେ ଏହା କଳ୍ପନାତୀତ ଥିଲା। କିନ୍ତୁ ଓଡିଶାରେ ତାହା ସମ୍ଭବ ହୋଇଛି। ଉଚ୍ଚତର ମାଧ୍ୟମିକ ଶିକ୍ଷାର ବିକଳ୍ପ ନାମ "+୨" ରାଧାକ୍ରିଷ୍ଣନ୍ କମିଶନଙ୍କର Intermediate ଶିକ୍ଷା , ମୁଦାଲିୟର ଓ କୋଠାରୀ କମିଶନଙ୍କର ଉଚ୍ଚତର ମାଧ୍ୟମିକ ଶିକ୍ଷାର ଓଡିଶା ନାମ ହେଉଛି "ଯୁକ୍ତ ଦୁଇ" । ଏ ଶିକ୍ଷା କେଉଁଠି ସ୍ଥାନୀୟ ଲୋକେ ଖୋଲିଲେ ଅନ୍ୟ କେଉଁଠାରେ ଚାରି ପାଞ୍ଚ ଜଣ M.A.ପାଶ୍ କରିଥିବା ପିଲା ମିଶି ଚାନ୍ଦା ଆଦାୟ କରି କଲେଜ ଖୋଲି ଦେଇ ସେଥିରେ ଆଧାପକ ହୋଇଗଲେ। ସେମାନଙ୍କର ଶିକ୍ଷାଦାନ ଦକ୍ଷତାର ଆକଳନ ଦରକାର ହେଲା ନାହିଁ। କାରଣ ସୋମାନେ ସଂଗଠନ, ପରିଚାଳନା ସମିତିର ମୁଖ୍ୟ ଓ ସର୍ବେସର୍ବା। ଉଚ୍ଚତର ମାଧ୍ୟମିକ ଶିକ୍ଷାର ଅଧୋଗତି ଖୁବ୍ ବେଗରେ ହୋଇ ଚାଲିଲା। ପରୀକ୍ଷାରେ କପି ପ୍ରବର୍ତ୍ତନ କରି ନିଜ ନିଜ କଲେଜର ଭଲ ଫଳାଫଳ ପାଇଁ ଚେଷ୍ଟା ଚାଲିଲା। ଏ ସବୁ ଉପଲବ୍ଧି କରି ପରୀକ୍ଷା ପରିଚାଳନାକୁ କଡାକଡି କରିଦେବା ଦ୍ୱାରା କିଛି କଲେଜ ବନ୍ଦ ହୋଇ ଯିବାର ନଜିର ବି ରହିଛି।

କୋଠାରୀ କମିଶନ ସୁପାରିଶ ଅନୁଯାୟୀ ୧୯୬୮ ମସିହାଠାରୁ ଜାତୀୟ ଶିକ୍ଷା ନୀତି ଅନୁସରଣରେ ଓଡିଶାର ହାଇସ୍କୁଲମାନଙ୍କରୁ ଏକାଦଶ ଶ୍ରେଣୀ ଉଠାଇ ଦେବା ପାଇଁ ପ୍ରଚେଷ୍ଟା ଆରମ୍ଭ ହେଲା। ତାହା କାର୍ଯ୍ୟକାରୀ ହେବା ପାଇଁ ୧୪ ବର୍ଷ ଲାଗିଗଲା। ୧୯୮୨ ମସିହାଠାରୁ ୧୦ + ୨ + ୩ ପଦ୍ଧତି ପ୍ରଚଳନ ହେଲା। ପ୍ରଥମ ଦଶ ବର୍ଷର ବିଭାଗ ହେଉଛି ୫ + ୩ +୨ ଅର୍ଥାତ୍ ପାଞ୍ଚବର୍ଷ ପ୍ରାଥମିକ ଶିକ୍ଷା, ତା ପର ତିନି ବର୍ଷ ଉଚ୍ଚପ୍ରାଥମିକ ଶିକ୍ଷା ଓ ଶେଷ ଦୁଇ ବର୍ଷ ମାଧ୍ୟମିକ ଶିକ୍ଷା। ଅଷ୍ଟମ ଶ୍ରେଣୀ ଉଚ୍ଚ ପ୍ରାଥମିକ ସ୍ତରରେ ରହିବାର କଥା। ଓଡିଶାରେ ତାହା ହେଲା ନାହିଁ। ଅଷ୍ଟମ ଶ୍ରେଣୀ ମାଧ୍ୟମିକ ଶିକ୍ଷାର ଅଂଶ ରୂପେ ବିବେଚିତ ହେଲା। ନବମ ଓ ଦଶମ ଦୁଇଶ୍ରେଣୀ ସହିତ ଏକାଦଶ ଓ ଦ୍ୱା ଦଶ ଶ୍ରେଣୀ ମିଶି ମାଧ୍ୟମିକ ଶିକ୍ଷା ହେବାର କଥା। କିନ୍ତୁ ଓଡିଶାରେ ଏକାଦଶ ଓ ଦ୍ୱାଦଶ ଶ୍ରେଣୀ "+୨" ପ୍ରଥମ ବର୍ଷ ଓ ଦ୍ୱିତୀୟ ବର୍ଷ ଭାବରେ କଲେଜରେ ରହିଗଲା। ମାଧ୍ୟମିକ ଶିକ୍ଷାର କ୍ରମାନ୍ୱୟତା ରକ୍ଷା କରାଯାଇପାରିଲା ନାହିଁ। ମାଧ୍ୟମିକ ଶିକ୍ଷାର ଗୁଣାତ୍ମକ ବିକାଶ ପାଇଁ ଉଦ୍ୟମ ହିଁ ହୋଇ ନାହିଁ। କେବଳ ଯୋଗବିଯୋଗରେ କାର୍ଯ୍ୟ

ସୀମାବଦ୍ଧ ରହିଲା । ମାଧ୍ୟମିକ ଶିକ୍ଷାର ଚାରି ଗୋଟି ଶ୍ରେଣୀରୁ ୧୯୮୨ ମସିହାରେ ଏକାଦଶ ଶ୍ରେଣୀର ବିଯୋଗ ହେଲା । ଏବେ ଅଷ୍ଟମ ଶ୍ରେଣୀ ଉଚ୍ଚ ପ୍ରାଥମିକ ସ୍କୁଲକୁ ଚାଲିଯିବାର ପ୍ରସ୍ତାବ ଗୃହୀତ ହୋଇଛି । ନିକଟ ଭବିଷ୍ୟତରେ ଉଚ୍ଚତର ମାଧ୍ୟମିକ ଶ୍ରେଣୀ ଦ୍ୱୟ ହାଇସ୍କୁଲରେ ଯୋଗ ହେବାର କୌଣସି ଲକ୍ଷଣ ଦେଖା ଯାଉ ନାହିଁ ।

ମାଧ୍ୟମିକ ଶିକ୍ଷା ବୋର୍ଡର ଗଠନ ଓ ପରିଚାଳନା ଏପରି ଭାବରେ ପ୍ରସ୍ତୁତ କରାଯାଇଛି ଯେ ଯଦି କେହି କିଛି ଗୁଣାତ୍ମକ ପରିବର୍ତ୍ତନ ପାଇଁ ପ୍ରସ୍ତାବ ଦେବ ତାହା ଗୃହୀତ ହେବାର ସମ୍ଭାବନା କମ୍ । କାରଣ ଶିକ୍ଷାର ଗୁଣାତ୍ମକ ପରିବର୍ତ୍ତନ ପ୍ରସ୍ତାବ ପ୍ରଥମେ ସଂପୃକ୍ତ ବିଷୟର ସିଲାବସ୍ କମିଟିକୁ ଯିବ । ସେଠାରେ କେତେକ ରକ୍ଷଣଶୀଳ ସଂସ୍କାର ବିରୋଧୀ ବ୍ୟକ୍ତିଙ୍କ ବିରୋଧ ଯୋଗୁ ପ୍ରସ୍ତାବ ଅନୁମୋଦନ ହେବାର ଆଶା କମ୍ । ତା ପରେ ସେ ପ୍ରସ୍ତାବ ଶିକ୍ଷା କମିଟିକୁ ଯିବ, ସେଠାରେ ମଧ୍ୟ ପ୍ରଫେସରମାନଙ୍କର ପ୍ରାଧାନ୍ୟ । ସେ କମିଟିରେ ସବୁ ଇନ୍‌ସ୍‌ପେକ୍ଟରମାନେ ସଦସ୍ୟ । ସେମାନେ ମୁଖ୍ୟ ଅଂଶ ଗ୍ରହଣ କରିବା କଥା । କିନ୍ତୁ ସେମାନେ କରନ୍ତି ନାହିଁ । ତାଙ୍କର ପ୍ରଫେସରମାନଙ୍କ ପ୍ରତି ସମ୍ମାନବୋଧ ଯୋଗୁ ନିଜର ମତାମତ (ଯଦି କିଛି ସ୍ୱତନ୍ତ୍ର ଥାଏ) ତାହା ପ୍ରତିଷ୍ଠିତ ହେବାକୁ ଦିଅନ୍ତି ନାହିଁ । ଫଳରେ ପ୍ରଫେସରମାନେ ଯେଉଁମାନଙ୍କର ମାଧ୍ୟମିକ ଶିକ୍ଷାରେ ଅଭିଜ୍ଞତା ନାହିଁ ବା ସୀମିତ ତାଙ୍କରି ମତ କାଏମ୍ ରହେ ।  ତା ଛଡା ନୂତନତ୍ୱର ପ୍ରବର୍ତ୍ତନ ବିପଦ ସଙ୍କୁଳ । ଯାହା ଚାଲିଛି ତାହା ଚାଲୁ ରହିଲେ କିଛି ବିପଦ (Risk) ନାହିଁ ।

OSSTA (Orissa Secondary School Teachers' Association) ରେ ଅନେକ ଅଭିଜ୍ଞ ଓ ଚିନ୍ତାଶୀଳ ଶିକ୍ଷକ ଅଛନ୍ତି । ସେମାନେ ଚେଷ୍ଟା କଲେ କିଛି ସୁଫଳ ଫଳନ୍ତା । ମାଧ୍ୟମିକ ଶିକ୍ଷାର କିଛି ଉନ୍ନତି ହୋଇପାରନ୍ତା । ସେମାନେ ନୀତିଗତ ଭାବରେ ସଂଘର ମାଧ୍ୟମିକ ଶିକ୍ଷା ବୋର୍ଡରେ ପ୍ରବେଶ ପାଇଁ ଲଢୁଛନ୍ତି । କିନ୍ତୁ ଫଳ ହେଉ ନାହିଁ । ସେଇମାନେ ଚେଷ୍ଟା କଲେ ମାଧ୍ୟମିକ ଶିକ୍ଷାର କିଛି ଉନ୍ନତି ହୋଇ ପାରନ୍ତା । କିନ୍ତୁ ସେମାନଙ୍କର ଉଦ୍ୟମ ନାହିଁ । ସୋମାନେ ତାଙ୍କର ଚାକିରୀ ସର୍ତ୍ତ, ଦରମା ଓ ଅନ୍ୟାନ୍ୟ ଭତ୍ତା ବଢିବା ଆଦିକାମରେ ତାଙ୍କର ଉଦ୍ୟମ ସୀମିତ ରଖୁଛନ୍ତି । ମାଧ୍ୟମିକ ଶିକ୍ଷାର ଉନ୍ନତି ପାଇଁ କେହି ଉଦ୍ୟମ କରୁଥିବା ଭଳିମନେ ହେଉନାହିଁ ।

କିଛି ବର୍ଷ ତଳେ ହୃଷିକେଶ ପଣ୍ଡା ବିଦ୍ୟାଳୟ ଓ ଗଣଶିକ୍ଷା ସଚିବ ଥିବା ସମୟରେ ଓଡିଶାର କିଛି ଶିକ୍ଷାବିତ୍‌ଙ୍କୁ ଡକାଇ ଏକ ସଭା କରିଥିଲେ । ସେଥିରେ ମାଧ୍ୟମିକ ଶିକ୍ଷାର ସ୍ଥିତି ଓ ଉନ୍ନତି ମାଧ୍ୟମିକ ଶିକ୍ଷା ପରୀକ୍ଷାରେ ଖରାପ ଫଳାଫଳ

ବିଷୟରେ ଆଲୋଚନା କରି ଉଚ୍ଚ ଶିକ୍ଷା ପାଇ ପାରୁନଥିବା ପିଲାଙ୍କ ପାଇଁ ଧନ୍ଦାମୂଳକ ଶିକ୍ଷା ପ୍ରବର୍ତ୍ତନ ବିଷୟରେ ପ୍ରଶ୍ନ ଉଠାଇ ଥିଲେ। ଆଲୋଚନାରେ ସ୍ଥିର ହେଲା ଯେ ମାଧ୍ୟମିକ ସ୍ତରରେ ଦୁଇଟି Optional Subject ରଖାଯିବ। ସେଥିରେ ଧନ୍ଦାମୂଳକ ଓ ବର୍ତ୍ତମାନ ପ୍ରଚଳିତ ପାଠ୍ୟବିଷୟ ମିଶାମିଶି ହୋଇ ରହିବ। ଯାହାର ଇଚ୍ଛା କେବଳ ଧନ୍ଦାମୂଳକ ବିଷୟ ବା ଉଚ୍ଚଶିକ୍ଷା ପାଇଁ Academic ବିଷୟ ନେଇ ପାରିବ। ଏହି ନିଷ୍ପତ୍ତି ପରେ ମାଧ୍ୟମିକ ଶକ୍ଷା ବୋର୍ଡ ନୂତନ ପାଠ୍ୟଯୋଜନା (New Scheme of Studies) ପ୍ରବର୍ତ୍ତନ କରିବାକୁ ସମସ୍ତ ପ୍ରସ୍ତୁତି ଚୂଡାନ୍ତ କଲାବେଳକୁ ହୃଷିକେଶ ବାବୁଙ୍କ ବଦଳି ହୋଇଗଲା। ନୂଆ ମନ୍ତ୍ରୀ ଓ ବିଦ୍ୟାଳୟ ଓ ଗଣଶିକ୍ଷା ସଚିବ ବିନା କାରଣରେ ନୂଆ ଶିକ୍ଷା ଯୋଜନାକୁ ଦୁଇବର୍ଷ ଗଡାଇ ଦେଲେ। ସରକାରୀ ଚିଠିରେ କାରଣ ଦର୍ଶା-ଯାଇନଥିଲା, କେଉଁ କାରଣ ଯୋଗୁ ନୂଆ ଶିକ୍ଷା ଯୋଜନା କାର୍ଯ୍ୟକାରୀ ହୋଇ ପାରିବ ନାହିଁ। ଏହା ସରକାରଙ୍କର ସ୍ୱତନ୍ତ୍ର କ୍ଷମତା ପ୍ରୟୋଗ ବଳରେ କୌଣସି କାରଣ ନ ଦର୍ଶାଇ ନୂଆ ଶିକ୍ଷା ଯୋଜନାକୁ ଦୁଇବର୍ଷ ଘୁଞ୍ଚାଇ ଦେଲେ।

ଯାହାହେଉ ଏବେ ନୂଆ ଶିକ୍ଷା ଯୋଜନା ପ୍ରବର୍ତ୍ତିତ ହୋଇଛି। ଧନ୍ଦାମୂଳକ ଶିକ୍ଷାର ତାଲିମ୍ ପ୍ରାପ୍ତ ଶିକ୍ଷକଙ୍କ ଅଭାବ ଥିବାରୁ ପ୍ରାରମ୍ଭିକ ସ୍ତରରେ ଶିକ୍ଷକମାନେ ପ୍ରସ୍ତୁତ ହୋଇ ପିଲାଙ୍କୁ ପଢାଇବେ ଓ ପିଲାମାନେ ନିଜ ଚେଷ୍ଟାରେ ପାଠପଢି ପରୀକ୍ଷା ଦେବାର ବ୍ୟବସ୍ଥା କରାଯାଇଛି। କାର୍ଯ୍ୟରତ ଶିକ୍ଷକମାନଙ୍କ ମଧ୍ୟରୁ କେତେକଙ୍କୁ ଧନ୍ଦାମୂଳକ ଶିକ୍ଷାର ତାଲିମ୍ ଦେବାକୁ ସରକାର ବ୍ୟବସ୍ଥା କରିବା କଥା। କିନ୍ତୁ କିଛି କାର୍ଯ୍ୟାନୁଷ୍ଠାନ ସେ ଦିଗରେ କରାଯାଇ ନାହିଁ। ଗତ ୧୫୦ ବର୍ଷରୁ ଉର୍ଦ୍ଧ୍ୱ ସମୟ ଧରି ଧନ୍ଦାମୂଳକ ଶିକ୍ଷା ପ୍ରବର୍ତ୍ତନ ପାଇଁ ବିଭିନ୍ନ କମିଟି କମିଶନ ସୁପାରିଶ କରିଥିଲେ ମଧ୍ୟ କିଛି ଆଖିଦୃଶିଆ କାର୍ଯ୍ୟ ହୋଇନଥିଲା। ଏଥିରେ ସରକାରଙ୍କର ଅନାଗ୍ରହ ଓ ଲୋକମାନଙ୍କର ଧନ୍ଦାମୂଳକ ଶିକ୍ଷା ପ୍ରତି ସ୍ପୃହାହୀନତା ମୁଖ୍ୟତଃ ଦାୟୀ। ରାଜ୍ୟର ସରକାର ଯଦି ମାଧ୍ୟମିକ ଶିକ୍ଷାର ଉନ୍ନତି ପାଇଁ ଚେଷ୍ଟା ନ କରିବେ ତାହେଲେ ଏ ଦେଶର ଭବିଷ୍ୟତ ପଥର ତଳେ ଚାପିହୋଇ ରହିବ। ଏବେ ତ ପିଲାମାନଙ୍କ ଉପରେ ଅଧିକ ପାଠ ବୋଝ ପଡୁଥିବା ଆଳରେ ହାଇସ୍କୁଲ ପାଠ୍ୟକ୍ରମରୁ ଐଚ୍ଛିକ ବିଷୟ (Optinal Subject) ଉଠାଇ ଦିଆଗଲା । ତା ସହିତ ଧନ୍ଦା ମୂଳକ ଶିକ୍ଷା ବି ଉଠିଗଲା । ଯେଉଁ ଉଚ୍ଚକୋଟୀର ଶିକ୍ଷାବିତ୍‌ଙ୍କ ପରାମର୍ଶରେ ବିଗତ ଦେଢଶହ ବର୍ଷର ଶିକ୍ଷା କମିଶନଙ୍କ ସୁପାରିଶକୁ ଅଳିଆଗଦାକୁ ପକାଇ ଦିଆଗଲା ତାଙ୍କ ନାମ ଇତିହାସରେ ଲିପିବଦ୍ଧ ହେବା ଉଚିତ୍ ।

ମାଧ୍ୟମିକ ଶିକ୍ଷାରେ ତତ୍ତ୍ୱଜ୍ଞ ଓ ଅଭିଜ୍ଞ ବ୍ୟକ୍ତିଙ୍କୁ ସଭାପତି ଭାବରେ ନିଯୁକ୍ତ ନକରିବା ଯୋଗୁଁ ଶିକ୍ଷା କ୍ଷେତ୍ରରେ ଉନ୍ନତି ହୋଇ ନାହିଁ। ମାଧ୍ୟମିକ ଶିକ୍ଷାର

ନୂତନ ଆଭିମୁଖ୍ୟ ସମ୍ବନ୍ଧରେ କେହି ଚିନ୍ତା କରିଛି କି ନାହିଁ କହି ହେବନାହିଁ, କିନ୍ତୁ କୌଣସି କାର୍ଯ୍ୟାନୁଷ୍ଠାନ ହୋଇ ନାହିଁ। ଶିକ୍ଷା ବିଭାଗର ପ୍ରଫେସର ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର ଦୁଇବର୍ଷ ପାଇଁ ମାଧ୍ୟମିକ ଶିକ୍ଷା ବୋର୍ଡ ସଭାପତି ହୋଇଥିଲେ। ମାଧ୍ୟମିକ ଶିକ୍ଷା କ୍ଷେତ୍ରରେ ତାଙ୍କର ସୀମିତ ଅଭିଜ୍ଞତା ଥିଲା। ତାଙ୍କ କାର୍ଯ୍ୟକାଳରେ ହାଇସ୍କୁଲ ସାର୍ଟିଫିକେଟ୍ ପରୀକ୍ଷା ଓ ମୂଲ୍ୟାୟନରେ କିଛି ପରିବର୍ତ୍ତନ ହୋଇଛି, ବିଶେଷକରି ଏକାଧିକ ପ୍ରଶ୍ନ ପତ୍ର ପ୍ରଚଳନ (Multiple sets of equated questions) ଦ୍ୱାରା, ସେ ପୁଣି ପ୍ରଫେସର ବିଧୁ ଭୂଷଣ ଦାସଙ୍କ ପରାମର୍ଶରେ। କିନ୍ତୁ ମାଧ୍ୟମିକ ଶିକ୍ଷାର ଆଭିମୁଖ୍ୟ ପରିବର୍ତ୍ତନ ଦିଗରେ କିଛି ହୋଇ ନାହିଁ। ତାଙ୍କ ପରେ ଡକ୍ଟର ନରେନ୍ଦ୍ର ପ୍ରସାଦ ଦାସ ଅଳ୍ପ ଦିନ ପାଇଁ ବୋର୍ଡ ସଭାପତି ହୋଇଥିଲେ ସେ ମାଧ୍ୟମିକ ଶିକ୍ଷାରେ ତତ୍ତ୍ୱଜ୍ଞ ଓ ଅଭିଜ୍ଞ ନ ହୋଇଥିଲେ ମଧ୍ୟ ପାଠ୍ୟପୁସ୍ତକ ଓ ପାଠ୍ୟକ୍ରମର ଉନ୍ନତି ପାଇଁ କିଛି ପଦକ୍ଷେପ ନେଇଥିଲେ। ସେ ବୋଧହୁଏ ପ୍ରଥମ ସଭାପତି ଯେ ପାଠ୍ୟ ପୁସ୍ତକ ପାଣ୍ଡୁଲିପି ପାଠ କରି ଦୋଷ ଦୁର୍ବଳତା ଦେଖାଇବାକୁ ଆରମ୍ଭ କରିଥିଲେ । ସେ ଅଧିକ କାଳ ସଭାପତି ରହି ପାରି ନଥିଲେ।

ମାଧ୍ୟମିକ ଶିକ୍ଷାର ଦୁର୍ଭାଗ୍ୟ ଯେ ମାଧ୍ୟମିକ ଶିକ୍ଷା ବୋର୍ଡ ସଭାପତିମାନେ ବୋର୍ଡରେ ଶିକ୍ଷାର ଉନ୍ନତି ପାଇଁ ପଦକ୍ଷେପ ନ ନେଇ ବୋର୍ଡ କର୍ମଚାରୀମାନଙ୍କୁ ସନ୍ତୁଷ୍ଟ କରିବାରେ ଅଧିକ ଧ୍ୟାନ ଦେଲେ। ବୋର୍ଡର କର୍ମଚାରୀମାନେ କର୍ତ୍ତବ୍ୟ କରିବାକୁ ଗଲେ ଗସ୍ତ ଖର୍ଚ୍ଚ ଓ ଦୈନିକ ଭତ୍ତା ପାଇବାର କଥା। ସରକାରୀ କର୍ମଚାରୀମାନେ ସମାନ କର୍ତ୍ତବ୍ୟ କରି ଗସ୍ତ ଖର୍ଚ୍ଚ ସହିତ ଗୋଟିଏ ଦିନ ପାଇଁ ଗୋଟିଏ ଭତ୍ତା ପାଆନ୍ତି, କିନ୍ତୁ ବୋର୍ଡ କର୍ମଚାରୀମାନେ ପରୀକ୍ଷା ସମ୍ବନ୍ଧୀୟ କର୍ତ୍ତବ୍ୟ କରିବାକୁ ଯାଇ ଗସ୍ତ ଖର୍ଚ୍ଚ ସହିତ ତିନଗୋଟି ଭତ୍ତା ପାଆନ୍ତି। ଏହା ଦ୍ୱାରା ବୋର୍ଡ କର୍ମଚାରୀମାନେ ସନ୍ତୁଷ୍ଟ ହେଲେ ବୋର୍ଡ ପ୍ରଶାସନରେ କୌଣସି ପ୍ରକାର ଗଣ୍ଡଗୋଳ ହେବ ନାହିଁ ଓ ଅନାୟାସରେ ସଭାପତିଙ୍କ କାର୍ଯ୍ୟକାଳ ବୃଦ୍ଧି ପାଇବ। ଆଇ.ଏ.ଏସ୍ ସଭାପତିମାନେ ବୋର୍ଡରେ ନିଜର କାର୍ଯ୍ୟକାଳ ବୃଦ୍ଧି ପାଇଁ ଚେଷ୍ଟିତ ନ ଥିଲେ। କୌଣସିମତେ ତିନିବର୍ଷ କାର୍ଯ୍ୟକାଳ ଶେଷ କରି ସେମାନେ ଚାଲି ଯାଆନ୍ତି ଅନ୍ୟ ଚାକିରୀକୁ। କିନ୍ତୁ ଅଣ-ଆଇ.ଏ.ଏସ୍ ସଭାପତିମାନଙ୍କ ମଧ୍ୟରୁ କେତେକ କର୍ମଚାରୀ ତୁଷ୍ଟିକରଣରେ ଯତ୍ନବାନ୍ ହେଲେ, କାରଣ ସେଠାରେ ତାଙ୍କର କାର୍ଯ୍ୟକାଳ ବୃଦ୍ଧି ପାଇବ। ବୋର୍ଡରେ ଅନ୍ୟ ଯାହା ସବୁ ଦୁର୍ନୀତି ଓ ଅନୈତିକ କାର୍ଯ୍ୟ ଚାଲେ ସେ ବିଷୟରେ ଆଲୋଚନା କରି ଲାଭ ନାହିଁ। ସେଥିରୁ କିଛି ଧରିବାକୁ ଚେଷ୍ଟାକରି ଆଇ.ଏ.ଏସ୍ ସଭାପତି ରାଇମୋହନ ଦାସ ଯେପରି ଭାବରେ ହଇରାଣ ହେଲେ, ତାହା ମୋର ଅଙ୍ଗେ ଲିଭାଇବା କଥା।

◆◆◆

## ପଞ୍ଚମ ଅଧ୍ୟାୟ

# ଶିକ୍ଷା ପ୍ରଶାସନ

ପରଦର୍ଶକ ଜୀବନ ଶେଷ କରି ୨୭.୧୨.୧୯୮୪ ତାରିଖରେ ମୁଁ ପ୍ରାଥମିକ ଶିକ୍ଷା ଉପନିର୍ଦ୍ଦେଶକ ଭାବରେ ଡି.ପି.ଆଇ ଅଫିସରେ ଯୋଗ ଦେଲି । ଯେଉଁ ପୃଷ୍ଠଭୂମିରେ ମୋତେ ସେଠାକୁ ବଦଳି କରାଗଲା ସେଥିରେ ଉପନିର୍ଦ୍ଦେଶକଙ୍କ ଦକ୍ଷତା ଓ ବିଶ୍ୱସନୀୟତା ଉପରେ ଅନେକ କିଛି ନିର୍ଭର କରୁଥିଲା । ତେଣୁ ପ୍ରାଥମିକ ଓ ପ୍ରୌଢଶିକ୍ଷା ନିର୍ଦ୍ଦେଶକ ଡକ୍ଟର ତାପସ୍ କବିଙ୍କୁ ମୁଁ କହିଲି "ଆପଣ ୧୫ ଦିନ ମୋ କାମ ଦେଖନ୍ତୁ । ତା ପରେ ଆପଣ ଚାହିଁଲେ ମୁଁ ଏଠି ରହିବି ନଚେତ୍ ମୁଁ କଲେଜକୁ ମୋ ନିଜ ପୋଷ୍ଟକୁ ଫେରିଯିବି", ସେ ମୋତେ କହିଲେ, ୨୧.୦୧.୧୯୮୫ ତାରିଖରେ ଶିକ୍ଷାମନ୍ତ୍ରୀଙ୍କ ଦପ୍ତରରେ ଗୋଟେ ମିଟିଂ ଅଛି । ଶିକ୍ଷକ ସଂଘ ସେଠାକୁ ଯିବେ । କାର୍ଯ୍ୟକ୍ରମ ଦେଖି ଆପଣ ସଂପୃକ୍ତ ବିଷୟରେ ପ୍ରସ୍ତୁତ ହୋଇ ଯିବାକୁ ହେବ । ମୁଁ ଦେଖିଲି ସେଥିରେ ଆମର ଦୁଇଟି ବିଷୟ ଅଛି :- (୧) ନୂତନ ଭାବେ ମଞ୍ଜୁରୀ ପ୍ରାପ୍ତ ମି.ଇ ସ୍କୁଲରେ ତୃତୀୟ ଶିକ୍ଷକ ନିଯୁକ୍ତି ଓ (୨) ଫୁଲବାଣୀ ଜିଲ୍ଲାର କତିଙ୍ଗିଆରେ ଥିବା ସାନୁଙ୍ଗା ପ୍ରଧାନ ମି.ଇ.ସ୍କୁଲର ଅନୁଦାନ ପ୍ରଦାନ ।

ମନ୍ତ୍ରୀଙ୍କ ଦପ୍ତରରେ କିପରି ମିଟିଂ ହୁଏ, ତା'ର ଆଦବ କାଇଦା ମୋତେ ଜଣା ନ ଥାଏ । ମୁଁ ସଂପୃକ୍ତ ବିଷୟରେ ସମସ୍ତ ତଥ୍ୟ ସଂଗ୍ରହ କରିଥାଏ ଓ ମୂଳ ଫାଇଲ୍ ନେଇ ଯାଇଥାଏ । ଶିକ୍ଷା ସଚିବ ସୁଧାଂଶୁ ମୋହନ ପଟ୍ଟନାୟକ, ନିର୍ଦ୍ଦେଶକ ଡକ୍ଟର ତାପସ କବି ଓ ମୁଁ ଛେ ମିଟିଂରେ ଯୋଗ ଦେବାକୁ ଯାଇଥିଲୁ । ଆମକୁ ମନ୍ତ୍ରୀ କହିଲେ, ତୃତୀୟ ଶିକ୍ଷକ ନିଯୁକ୍ତି ବିଷୟରେ କୁହ" । ମୁଁ କହିଲି, "ସଂଘ କ'ଣ ଚାହୁଁଛି ଆଗେ କହୁ ।" ଅବନୀ ବାବୁ (ବରାଳ) ଗୋଳମାଳିଆ କରି ତାଙ୍କ ବକ୍ତବ୍ୟ କହିଲେ, ମୁଁ କହିଲି, "ଆପଣ ଯାହା କହୁଛନ୍ତି କିଛି Clear ନୁହେଁ ।" ସେ କହିଲେ, "ଆପଣ Clear କରି କହନ୍ତୁ ।" ମୁଁ କହିଲି, "୧୯୭୯ ମସିହାରେ ଓଡିଶା ସରକାର ନିଜେ ମାଇନର ସ୍କୁଲକୁ ମଞ୍ଜୁରୀ ପ୍ରଦାନ କରୁଥିଲେ । ଡି.ପି.ଆଇ କେବଳ ସୁପାରିଶ ପଠାଉଥିଲେ । ସେ ବର୍ଷ ୨୭୯ ଗୋଟି ମି.ଇ

ସ୍କୁଲର ବିବରଣୀ ଡି.ପି.ଆଇ ପଠାଇଥିଲେ । ସରକାରୀ ସ୍ତରରେ ପରୀକ୍ଷା କରି ସବୁଯାକ ଫେରାଇ ଦେଲେ । ଗୋଟିଏ ହେଲେ ସ୍କୁଲ ମଞ୍ଜୁର କଲେ ନାହିଁ । ତାପରେ ଶିକ୍ଷକ ସଂଘ ପ୍ରଶ୍ନ ଉଠାଇଲେ ତା'ହେଲେ ୨୭୯ ଗୋଟି ସ୍କୁଲ ପିଲାଙ୍କର ଜୀବନ କ'ଣ ନଷ୍ଟ ହେବ ? ସରକାର ବିଚାର କରି ସବୁ ସ୍କୁଲକୁ ଗୋଟିଏ ବର୍ଷ ପାଇଁ ସର୍ତ୍ତମୂଳକ ମଞ୍ଜୁରୀ ପ୍ରଦାନ କଲେ । ଗୋଟିଏ ବର୍ଷ ପରେ ପ୍ରଦତ୍ତ ମଞ୍ଜୁରୀ ଅକାମୀ ହୋଇଯିବ ବୋଲି ଚିଠିରେ ଉଲ୍ଲେଖ କଲେ । ତାପରେ ସେ ସ୍କୁଲ ଗୁଡିକର ମଞ୍ଜୁରୀ ପାଇଁ ଆଉ କୌଣସି କାର୍ଯ୍ୟାନୁଷ୍ଠାନ ହୋଇନାହିଁ ।

୧୯୮୦ ମସିହାରେ ମାଇନର ସ୍କୁଲ ମଞ୍ଜୁରୀ ନିମିତ୍ତ ଥିବା ନିୟମ ବଦଳିଗଲା । ପୂର୍ବରୁ ଥିଲା ମାଇନର ସ୍କୁଲ ମଞ୍ଜୁରୀ ପାଇବାକୁ ହେଲେ ଦୁଇ ଏକର ଜମି, ତିନିଜଣ ଶିକ୍ଷକ ସହିତ ଅନ୍ୟ ସମସ୍ତ ଯଥା :- ଘର, ଫର୍ଣ୍ଣିଚର, ମାନଚିତ୍ର, ଚାର୍ଟ, ଖେଳଉପକରଣ, ଶିକ୍ଷାଦାନ ଉପକରଣ, ବିଜ୍ଞାନ ଉପକରଣ, ଲାଇବ୍ରେରୀ ଇତ୍ୟାଦି ସ୍କୁଲରେ ଥିଲେ ତାହା ମଞ୍ଜୁରୀ ପାଇବାକୁ ଯୋଗ୍ୟ ବିବେଚିତ ହେବ । ନୂଆ ନିୟମ ଅନୁସାରେ ଏକ ଏକର ଜମି, ଦୁଇଜଣ ଶିକ୍ଷକ ସହିତ ଅନ୍ୟ ସମସ୍ତ ଉପକରଣ ଯାହା ପୂର୍ବରୁ ଥିଲା ତାହା ଥିଲେ ସ୍କୁଲ ମଞ୍ଜୁରୀ ପାଇ ପାରିବ । ନୂଆ ନିୟମ ଅନୁସାରେ ଅନେକ ସ୍କୁଲ ମଞ୍ଜୁରୀ ପାଇଗଲେ । ଶିକ୍ଷକ ସଂଘ ଯେଉଁ ୧୨୭ ଜଣ ତୃତୀୟ ଶିକ୍ଷକଙ୍କ ପ୍ରଶ୍ନ ଉଠାଇଛନ୍ତି ସେମାନେ ପୁରୁଣା ନିୟମ ଅନୁସାରେ ନିଯୁକ୍ତି ପାଇଥିଲେ । ସେମାନେ ବର୍ତ୍ତମାନ କେଉଁ ସ୍କୁଲରେ ଅଛନ୍ତି ? ମୂଳରୁ ଯେଉଁ ଶିକ୍ଷକମାନେ ଥିଲେ ସେ ଅନ୍ୟତ୍ର ଚାଲି ଯାଇ ତାଙ୍କ ସ୍ଥାନରେ ନୂଆ ନିୟମ ପ୍ରବର୍ତ୍ତନ ପରେ ନୂଆ ଶିକ୍ଷକ ରହିଥିଲେ ସେମାନେ ସରକାରୀ ଅନୁଦାନ ପାଇବାକୁ ଯୋଗ୍ୟ ହେବେ ନାହିଁ । ଏ ସବୁ ଯୁକ୍ତି ଶୁଣିବା ପରେ ମନ୍ତ୍ରୀ ତାଙ୍କ ନିଷ୍ପତ୍ତି ପରେ ଜଣାଇବେ ବୋଲି କହିଲେ ।

ଆମର ଦ୍ୱିତୀୟ ଏଜେଣ୍ଡା ହେଲା ଫୁଲବାଣୀ ଜିଲ୍ଲାର ସାନୁଙ୍ଗା ପ୍ରଧାନ ମି.ଇ ସ୍କୁଲର ଅନୁଦାନ । ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ସଭାପତି ବନମାଳୀ ବ୍ରହ୍ମଚାରୀ କହିଲେ, ସରକାର ଆଦେଶ ଦେଇଥିଲେ ମଧ୍ୟ ଡି.ପି.ଆଇ ଟଙ୍କା ଦେଉ ନାହାନ୍ତି । ମୁଁ କହିଲି, ସରକାର ଆଦେଶ ଦେଇଥିବା କଥା ସତ, କିନ୍ତୁ ସେଥିରେ ଟିକିଏ କେଁ ରଖି ଦେଇଛନ୍ତି । ସେ ଆଦେଶରେ ଅଛି, "ଯଦି ସାନୁଙ୍ଗା ପ୍ରଧାନ ମି.ଇ ସ୍କୁଲ ଚାଲୁଥିଲା, ତା'ହେଲେ ତାଙ୍କୁ ଟଙ୍କା ୩୬୦୦୦ ଦିଆଯିବ । ଜିଲ୍ଲା ଶିକ୍ଷାଧିକାରୀ ସ୍କୁଲ ଚାଲୁଥିବା କଥା କହୁ ନାହାନ୍ତି । ଆଉ କିଏ କହିବ ସ୍କୁଲ ଚାଲୁ ଥିଲା କି ନାହିଁ ?" ତେଣୁ କଥା ହେଲା ଆଉଥରେ ଉପନିର୍ଦ୍ଦେଶକ ସେ ସ୍କୁଲ ଦେଖି ରିପୋର୍ଟ ଦିଅନ୍ତୁ ।

ସେ ଦିନର ମିଟିଂ ପରେ ନିର୍ଦ୍ଦେଶକ ଡକ୍ଟର ତାପସ କବି ଟିକିଏ ଆଶ୍ୱସ୍ତ ଅନୁଭବ କଲେ । ଏ ପର୍ଯ୍ୟନ୍ତ ତାଙ୍କ ତରଫରୁ କେହି ତଥ୍ୟ ଉପସ୍ଥାପନ କରୁ ନ ଥିଲେ । ଯେତେବେଳେ ନିର୍ଦ୍ଦେଶକଙ୍କର କେଉଁଠାରେ ମିଟିଂ ଥାଏ ମୁଁ ତାଙ୍କୁ ଆବଶ୍ୟକୀୟ ତଥ୍ୟ ଯୋଗାଇ ଦିଏ । ସେ ଚାହିଁଲେ ତାଙ୍କ ସାଙ୍ଗରେ ଯାଏ । ଅଫିସକାମ ବେଶ ସୁରୁଖୁରୁରେ ଚାଲିଲା ।

## ୫.୨ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀଙ୍କର ଟିକାବାଲି ବ୍ଲକ ପରିଦର୍ଶନ

ଫୁଲବାଣୀ ଜିଲ୍ଲାର ଟିକାବାଲି ବ୍ଲକ୍ ପରିଦର୍ଶକ ପାଇଁ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀଙ୍କର କାର୍ଯ୍ୟକ୍ରମ ସ୍ଥିର ହେଲା । ତାଙ୍କ କାର୍ଯ୍ୟକ୍ରମ ଭିତରେ "ଫୁଲବାଣୀ ଜିଲ୍ଲାରେ ଶିକ୍ଷାର ସ୍ଥିତି ବିଷୟରେ ଆଲୋଚନା" ଗୋଟିଏ କାର୍ଯ୍ୟକ୍ରମ ଥିଲା । ଏ କାର୍ଯ୍ୟକ୍ରମ ଦେଖି କେହି ଫୁଲବାଣୀ ଯିବାକୁ ରାଜି ହେଲେ ନାହିଁ । ଶେଷରେ ଶିକ୍ଷାମନ୍ତ୍ରୀ ଓ ଶିକ୍ଷା ସଚିବ ମୋତେ ଯିବା ପାଇଁ କହିଲେ । ମୁଁ ମଧ୍ୟ ରାଜି ହୋଇଗଲି । ଫୁଲବାଣୀ ଜିଲ୍ଲା ସମ୍ବନ୍ଧରେ ସମସ୍ତ ପରିସଂଖ୍ୟାନ ରିପୋର୍ଟ ସହ ଚଳିତ ବର୍ଷର ପରିସଂଖ୍ୟାନ ସଂଗ୍ରହ କଲି । ପ୍ରଧାନମନ୍ତ୍ରୀଙ୍କର ଯେଉଁ ଯେଉଁ ସ୍କୁଲ ଓ ସାକ୍ଷରତା କେନ୍ଦ୍ର ପରିଦର୍ଶନ କରିବାର କଥା ସେ ସବୁ ସ୍କୁଲକୁ ମୁଁ ସାଥିରେ ସ୍କୁଲ ଇନିସ୍ପେକ୍ଟର ଓ ଡି.ଆଇଙ୍କୁ ନେଇ ଗଲି । ତାଙ୍କର ଯାହା ଯାହା ଅସୁବିଧା ଥିଲା ଦୂର କରି ପ୍ରତି ସ୍କୁଲ ଓ ସାକ୍ଷରତା କେନ୍ଦ୍ର ପାଇଁ Information Sheet ତିଆରି କରିଦେଲୁ । ପାହାଡ ଉପରେ ଅବସ୍ଥିତ ଗୋଟିଏ ସ୍କୁଲରେ ଶିକ୍ଷକ ନ ଥାନ୍ତି । ଅନ୍ୟଗୋଟିଏ ସ୍କୁଲରୁ ଜଣେ ଶିକ୍ଷକଙ୍କୁ ଆଣି ସେଠାରେ ଅବସ୍ଥାପିତ କଲୁ । ସେ ଗାଁର ଜଣେ ଲୋକ ଯେତେବେଳେ ଜାଣିଲା ଯେ ପ୍ରଧାନମନ୍ତ୍ରୀ ଆସୁଛନ୍ତି, ସେଥିପାଇଁ ସମସ୍ତେ ତତ୍ପର ହୋଇ ପଡିଛନ୍ତି  ସେ କହିଲା, "ମୁଁ ପ୍ରଧାନମନ୍ତ୍ରୀଙ୍କୁ କହିବି, "ସେଇ ଯେ ଆମ୍ଭ ପାଚୁଥିଲା, ସେ ଦିନରୁ ମାଷ୍ଟ୍ର ନ ଥିଲା, ଦୁଇ ଦିନ ତଳେ ଆଉ ଗୋଟେ ମାଷ୍ଟ୍ର ଆସିଛି," ତାକୁ ଯେତେ ବୁଝାଇଲେ ବି ସେ ବୁଝିଲା ନାହିଁ । ଜିଦ୍ ଧରି ବସିଲା ।

ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ, ସୋନିଆ ଗାନ୍ଧୀଙ୍କ ସହିତ ୧୯୮୫ ମସିହା ଅଗଷ୍ଟମାସ ଫୁଲବାଣୀ ସର୍କିଟ୍ ହାଉସ୍‌ରେ ରହିଲେ । ସର୍କିଟ୍ ହାଉସ୍ ଚାରିପଟେ ତଥା ପାଖ ପାହାଡ ଯାକ କଡା ପହରା ବ୍ୟବସ୍ଥା ହୋଇଥିଲା । ଫୁଲବାଣୀରୁ ହେଲିକୋପ୍ଟରରେ ସେ ଦୁହେଁଯାକ ଯାଇ ରାଇକିଆ ଠାରୁ ପ୍ରାୟ ଦୁଇ କିଲୋମିଟର ଦୂରରେ ତିଆରି ହୋଇଥିବା ହେଲିପ୍ୟାଡ୍‌ରେ ଓହ୍ଲାଇଲେ । ସେଠାରୁ ଟିକାବାଲି ବ୍ଲକ୍‌ର ପୂର୍ବ ନିର୍ଦ୍ଧାରିତ ସାକ୍ଷରତା କେନ୍ଦ୍ର ଓ ପ୍ରାଥମିକ ସ୍କୁଲ ସବୁ ଦେଖିଲେ ।

ପ୍ରାୟ ପାଞ୍ଚଟା ବେଳକୁ ଖୁବ୍ ଜୋରରେ ଅସରାଏ ବର୍ଷା ହୋଇଗଲା । ଆମେ ସବୁ ପାହାଡ ତଳେ ଅପେକ୍ଷା କରି ରହିଥିଲୁ । ପାହାଡ ଉପରେ ସେଇ ପ୍ରାଥମିକ ସ୍କୁଲ ଯେଉଁଠାରେ ସେ ଲୋକ ଶିକ୍ଷକଙ୍କ ଅନୁପସ୍ଥିତି ବିଷୟ ପ୍ରଧାନମନ୍ତ୍ରୀଙ୍କୁ କହିବାକୁ ଜିଦ୍ ଧରିଥିଲେ । ଯଦି ସେ କହେ ଆମକୁ ବୁଝାଇବାକୁ ପଡିବ କେଉଁ ପରିସ୍ଥିତିରେ ସେ ଶିକ୍ଷକ ଅନୁପସ୍ଥିତ ରହିଛି ଓ ବିକଳ୍ପ ବ୍ୟବସ୍ଥା କରିବାକୁ ଏତେ ବିଳମ୍ବ କାହିଁକି ହେଲା । ସେ ସ୍କୁଲକୁ ଯିବା ପାଇଁ ପ୍ରଧାନମନ୍ତ୍ରୀ ପାହାଡ ତଳେ ପହଞ୍ଚିଲେ । ପାହାଡ ପାଦ ଦେଶରେ ଗୋଟିଏ ପେଟ୍ରୋଲ 4-Wheel ଜିପ୍ ଥୁଆ ହୋଇଥାଏ ପ୍ରଧାନମନ୍ତ୍ରୀ ଉପରକୁ ଯିବା ପାଇଁ । ରାସ୍ତାରେ ନୂଆ ମାଟି ଓ ମୋରମ ପଡିଥାଏ । ବର୍ଷାପରେ ଜିପର ଡ୍ରାଇଭର ଗାଡି ଉପରକୁ ନେବାକୁ ରାଜି ହେଲା ନାହିଁ । ଚକ କାଳେ ଖସିବ ସେଥିପାଇଁ ସେ ଭୟ କଲା । ପ୍ରଧାନମନ୍ତ୍ରୀ କହିଲେ, "ଡ୍ରାଇଭର ଠିକ୍ କଥା କହୁଛି, ଉପରକୁ ଯିବାକୁ ମନା କରି ସେଇଠାରୁ ଫେରିଗଲେ । ଆମର ବିପଦ ଟଳିଗଲା । ଆମେ ସିଧା ଚାଲିଲୁ ଫୁଲବାଣୀ । ସେଠାରେ ରାତି ଆଠଟାରେ ଆଲୋଚନା କାର୍ଯ୍ୟକ୍ରମ । ସେଠାରେ ପହୁଞ୍ଚି ଆମେ ତାକରାକୁ ଅପେକ୍ଷା କଲୁ । ସର୍କିଟ୍ ହାଉସ୍ ସାମନାରେ ମଞ୍ଚ ତିଆରି ହୋଇଥାଏ । ସେଠାରେ ଆଦିବାସୀ ନାଚ ଚାଲିଲା । ବିଭିନ୍ନ ଆଦିବାସୀ ତାଙ୍କର ନାଚ ଦେଖାଉଥିଲେ । ନାଚ ଏତେ ଭଲ ହେଲା ଯେ ଓ ଆଦିବାସୀମାନେ ନିଜ ନିଜ ସଂପ୍ରଦାୟର ନାଚ ଦେଖାଇବାକୁ ଏତେ ଆଗ୍ରହ ଦେଖାଇଲେ ଯେ ଆଲୋଚନା ସମୟ ଅତିକ୍ରାନ୍ତ ହୋଇଗଲା । ନଅଟା ବାଜି ଯିବାରୁ ପ୍ରଧାନମନ୍ତ୍ରୀ ଆଲୋଚନା ବାତିଲ୍ କରିଦେଲେ ।

ଶିକ୍ଷାସଚିବ ଇନିସ୍ପେକ୍ଟରଙ୍କ ଟେଲିଫୋନକୁ ଘନ ଘନ ଟେଲିଫୋନ୍ କରୁଥାନ୍ତି । ଆମେ ସେଠାକୁ ଫେରିଲା ପରେ ମୁଁ ପ୍ରଧାନମନ୍ତ୍ରୀଙ୍କ ପରିଦର୍ଶନର ସଂପୂର୍ଣ୍ଣ ବିବରଣୀ ଦେଲି । ତା ପରଦିନ ଆମେ ଭୁବନେଶ୍ୱର ଫେରିଲୁ ।

## ୫.୩ ସାନୁଙ୍ଗା ପ୍ରଧାନ ମି.ଇ. ସ୍କୁଲ ଅନୁଦାନ

ରାଇକିଆରୁ ଫୁଲବାଣୀ ଯିବା ବାଟରେ କତିଙ୍ଗିଆ ପଡେ । ଆମେ ପ୍ରଧାନମନ୍ତ୍ରୀଙ୍କ କାର୍ଯ୍ୟକ୍ରମ ପାଇଁ ତିନିଦିନ ଫୁଲବାଣୀରେ ରହିଲୁ । ପ୍ରତିଦିନ ଟିକାବାଲି ଓ ରାଇକିଆ ଯାଇ ପୁଣି ଫେରୁ । ଗୋଟିଏ ଦିନ ଇନିସ୍ପେକ୍ଟର ଓ ଡି.ଆଇ ଙ୍କୁ ସାଙ୍ଗରେ ନେଇ ସାନୁଙ୍ଗା ପ୍ରଧାନ ମି.ଇ ସ୍କୁଲ ଦେଖିବାକୁ ଗଲି । ଏଇ ସ୍କୁଲର ଅନୁଦାନ ପାଇଁ ନିମ୍ନ ମାଧମିକ ଶିକ୍ଷକ ସଂଘ ମନ୍ତ୍ରୀଙ୍କ ସଭାରେ ପାଟି କରୁଥିଲେ । ସେଠାକୁ ଯାଇ ଦେଖିଲୁ ଖଣ୍ଡେ ଛୋଟ (ପ୍ରାୟ ୩୦ ଫୁଟ୍ ଲମ୍ବ ଓ

୧୦ ଫୁଟ୍ ଓସାର) ନାଆ ଚାଳିଆ ଘର ଅଛି । ଉପରେ ଛପର ନାହିଁ । ବଟାଣରେ ଆଣ୍ଠୁଏ ଉଚ୍ଚରେ ଘାସ ଉଠିଛି । ନିକଟ ବା ଦୂର ଅତୀତରେ ସେଠାରେ ସ୍କୁଲ ଚାଲିବାର କୌଣସି ଲକ୍ଷଣ ଦେଖାଗଲା ନାହିଁ । ସେଠାରୁ ଫେରି ମୁଁ ସାନୁଙ୍ଗା ପ୍ରଧାନ ମି.ଇ. ସ୍କୁଲ୍ ବିଷୟରେ ରିପୋର୍ଟ ଲେଖି ସରକାରଙ୍କୁ ଦେଲି । ତା ପର ମିଟିଂରେ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ସଭାପତି ବନମାଳୀ ବ୍ରହ୍ମଚାରୀ କହିଲେ, "ଉପ ନିର୍ଦ୍ଦେଶକ ବିନା Programme ରେ ଚାଲିଗଲେ । Programme ଦେଇଥିଲେ ଆମେ ଯାଇଥାନ୍ତୁ । ମନ୍ତ୍ରୀ କହିଲେ, ଆଉଥରେ ତାଙ୍କୁ Programme copy ଦେଇ ପରିଦର୍ଶନ କରିବା ପାଇଁ ଯାଅ ।" ତାହାହିଁ ହେଲା, ଦ୍ୱିତୀୟ ଥର Programme ଦେଇ ଗଲା ବେଳକୁ ଦୁଇଟି ଝିଅ ସେ ପରିତ୍ୟକ୍ତ ଘର ପାଖରେ ଠିଆ ହୋଇଛନ୍ତି । ସ୍କୁଲ ସେକ୍ରେଟେରୀ ସାନୁଙ୍ଗା ପ୍ରଧାନଙ୍କୁ ଡକାଇ ଆଣିଲୁ । ଶିକ୍ଷକ ସଂଘ ତରଫରୁ କେହି ଗଲେ ନାହିଁ । ସେମାନେ ସେ ସ୍କୁଲର ଦୁର୍ବଳତା ଜାଣିଥିଲେ । ସେ ଝିଅ ଦୁଇଟିଙ୍କୁ ମୁଁ ପଚାରିଲି, ସେମାନେ କ'ଣ ପାଠ ପଢିଛନ୍ତି , କ'ଣ କରୁଛନ୍ତି, କୁଆଡେ ଆସିଛନ୍ତି ? ଇତ୍ୟାଦି । ସେମାନଙ୍କ କଥାରୁ ଜାଣିଲି ଯେ ସେମାନେ C.T. ପରୀକ୍ଷା ଦେଇଛନ୍ତି ସେଇ ବର୍ଷ । ଚାକିରି କରି ନାହାନ୍ତି । ସାନୁଙ୍ଗା ପ୍ରଧାନ ତାଙ୍କୁ ଡାକି ଆଣିଛନ୍ତି କହିବା ପାଇଁ ଯେ ସେମାନେ ୫ ବର୍ଷତଳେ ସେଇ ମି.ଇ ସ୍କୁଲରେ କାମ କରୁଥିଲେ । ବୁଝିବାରୁ ଜଣାଗଲା ଯେ ସେମାନେ ପାଞ୍ଚବର୍ଷ ତଳେ ଅଷ୍ଟମ ଶ୍ରେଣୀରେ ପାଠ ପଢୁଥିଲେ । ପରିଦର୍ଶନ ବେଳେ ମୋ ସହିତ ଡି.ଆଇ ଓ ଇନିସ୍ପେକ୍ଟର ଥିଲେ । ଦ୍ୱିତୀୟ ପରିଦର୍ଶନ ରିପୋର୍ଟ୍ ଦେଲା ପରେ ସାନୁଙ୍ଗା ପ୍ରଧାନ ମି.ଇ. ସ୍କୁଲର ଅନୁଦାନ କୁଆଡେ ଉଡିଗଲା ।

## ପ୍ରାଥମିକ ଶିକ୍ଷକଙ୍କ ବକେୟା ଦରମା

୧୯୮୫-୮୬ ବେଳକୁ ପ୍ରତିଦିନ ଖବର କାଗଜରେ ପ୍ରାଥମିକ ଶିକ୍ଷକମାନଙ୍କର ବକେୟା ଦରମା ବିଷୟରେ ବାହାରୁ ଥାଏ । ପ୍ରତିଦିନ ଖବର କାଗଜରେ ୨୦ ରୁ ୨୫ ଜଣ ଶିକ୍ଷକଙ୍କର ଦରମା ବାକି ଥିବା ଖବର ପଢି ଶିକ୍ଷାମନ୍ତ୍ରୀ ଓ ଶିକ୍ଷା ସଚିବ ବିବ୍ରତ ହୋଇଗଲେ । ଶିକ୍ଷା ସଚିବ ମୋତେ ଡାକି କହିଲେ, "ଆପଣ ଡି.ଆଇ. ମାନଙ୍କଠାରୁ ସଂଗ୍ରହ କରନ୍ତୁ ମୋଟ ଦରମା କେତେ ଟଙ୍କା ବାକି ଅଛି ?" ଡି.ଆଇ. ମାନଙ୍କୁ ମୁଁ ଗୋଟିଏ ଚିଠି କରି ଦେଲି ବିଭିନ୍ନ ସ୍କିମ୍‌ରେ ଥିବା ଶିକ୍ଷକମାନଙ୍କର ବାକି ଥିବା ଦରମା କେତେ ତା'ର ହିସାବ

ଦେବା ପାଇଁ । ଏ ହିସାବ ଦେବା ପରେ ଯଦି କୌଣସି ଶିକ୍ଷକଙ୍କର ଦରମା ବାକି ରହିଯାଏ , ତାହା ଡି.ଆଇ. ମାନେ ନିଜ ହାତରୁ ଭରଣା କରିବେ । ଡି.ଆଇ.ମାନେ ହିସାବ ଦେଲେ । ମୋଟ ବାକି ଦରମା ୧୯.୦୬ କୋଟି ଟଙ୍କା । ସେତେବେଳେ ଅର୍ଥ ବିଭାଗ ସଚିବ ରାଜ କିଶୋର ଭୂଜବଳ । ସେ ଏ ବିରାଟ ପରିମାଣ ଅର୍ଥ ବାକିଥିବା ଜାଣି ବିରକ୍ତ ହେଲେ ଓ କହିଲେ, "ଡି.ଆଇ. ମାନଙ୍କଠାରୁ ବିଲ୍ ଆଣ"। ବିଲ୍ ଆସିଲା ପରେ ସେ କହିଲେ, "ମୋର ଏଥିରେ ବିଶ୍ୱାସ ହେଉ ନାହିଁ ।" ତେଣୁ ସେ ୪୦୦ ଅଡିଟର ପଠାଇଲେ ପ୍ରତ୍ୟେକ ବ୍ଲକ୍, ମ୍ୟୁନିସିପାଲିଟି ଓ ଡି.ଆଇ. ଅଫିସ୍‌କୁ । ଅଡିଟରମାନେ ହିସାବ ନେଇ ଫେରିଲେ । ସେମାନଙ୍କ ହିସାବରେ ମଧ୍ୟ ସେତିକି ପରିମାଣ ଅର୍ଥ ବାକି ଥିବା କଥା କହିଲେ । ଦ୍ୱିତୀୟ ସପ୍ଲିମେଣ୍ଟାରି ବଜେଟ୍‌ରେ ଅର୍ଥ ବ୍ୟବସ୍ଥା କରାଗଲା ଓ ୧୯୮୭ ମାର୍ଚ୍ଚ ମାସରେ ଟ୍ରେଜେରୀରୁ ଟଙ୍କା ଉଠାଗଲା । ଦୀର୍ଘ ବର୍ଷର ବକେୟା ଦରମା ଦିଆ ଯିବାରୁ ଅନ୍ତତଃପକ୍ଷେ ଖବର କାଗଜରେ ସେ ବିଷୟ ଆଉ ବାହାରିଲା ନାହିଁ । ସବୁଦିନ ପାଇଁ ବକେୟା ସଫା ହୋଇଗଲା । ଏ କାମ ପାଇଁ ବହୁତ ଶ୍ରମ ସ୍ୱୀକାର କରିବାକୁ ପଡିଲା ।

## ଜାତୀୟ ଶିକ୍ଷା ନୀତି ବିତର୍କ

୧୯୮୫ ମସିହା ଶେଷଭାଗ ଆଡକୁ 'ଜାତୀୟ ଶିକ୍ଷା ନୀତି' ପ୍ରଣୟନ ପାଇଁ ଦେଶ ସାରା ବିତର୍କ ଆରମ୍ଭ ହୋଇଯାଇଥାଏ । 'Challenges of Education' ନାମରେ ଦୁଇ ଖଣ୍ଡି ପୁସ୍ତିକା ବହୁ ସଂଖ୍ୟାରେ ସବୁ ରାଜ୍ୟକୁ ପଠା ଯାଇଥାଏ । ରାଜ୍ୟ ଭାଷାରେ ତାକୁ ଭାଷାନ୍ତର କରି ଜିଲ୍ଲା ଓ ବ୍ଲକ୍ ସ୍ତରକୁ ଯୋଗାଇ ଦେବା ପାଇଁ ନିର୍ଦ୍ଦେଶ ଥିଲା । Orissa SCERT ସେ ବହି ଦୁଇଟିକୁ ଭାଷାନ୍ତର କଲେ, ତା ନାଁ ରହିଲା, "ଶିକ୍ଷାର ଆହ୍ୱାନ" । ସେ ବହି ସମସ୍ତଙ୍କୁ ଯୋଗାଇ ଦିଆଗଲା । ବ୍ଲକ୍ ଓ ଜିଲ୍ଲା ସ୍ତର ବିତର୍କରେ ଶିକ୍ଷାବିତ୍, ଶିକ୍ଷକ ଓ ଶିକ୍ଷା କର୍ମଚାରୀମାନଙ୍କର ମତାମତ ଆସିଲା । ରାଜ୍ୟସ୍ତରରେ ପ୍ରାଥମିକ ଶିକ୍ଷା ବିଷୟରେ ବିତର୍କ ଓ ସଂଯୋଜନା ଦାୟିତ୍ୱ ମୋ ଉପରେ ନ୍ୟସ୍ତ ହୋଇଥିଲା । ବିତର୍କରେ ବହୁ ଶିକ୍ଷାବିତ୍, ଶିକ୍ଷକ ଓ ଶିକ୍ଷା କର୍ମଚାରୀ ଯୋଗ ଦେଇଥିଲେ । ପ୍ରଫେସର ଶତ୍ରୁଘ୍ନନାଥ ପ୍ରାଥମିକ ଶିକ୍ଷା ଦଳଭୁକ୍ତ ହୋଇଥିଲେ । ସାର୍ବଜନୀନ ପ୍ରାଥମିକ ଶିକ୍ଷା ହାସଲ ପାଇଁ କେଉଁବର୍ଷ ଧାର୍ଯ୍ୟ କରାଯିବ ସେ ବିଷୟରେ ବିତର୍କ ହେଲାବେଳେ ଅଧିକାଂଶ ସଦସ୍ୟ କହିଲେ ସାର୍ବଜନୀନ ପ୍ରାଥମିକ ଶିକ୍ଷା ହାସଲ ପାଇଁ ୨୦୦୦ ମସିହା ବର୍ଷଟିକୁ ଧାର୍ଯ୍ୟ କରାଯାଉ । ଏହା ଶୁଣି ଶତ୍ରୁଘ୍ନ ବାବୁ

ରଖିଲେ, କହିଲେ, "୧୯୬୦ ମସିହାରେ ପ୍ରାଥମିକ ଶିକ୍ଷା ସାର୍ବଜନୀନ ହେବ ବୋଲି ସମ୍ବିଧାନରେ ଧାର୍ଯ୍ୟ କରାଯାଇଥିଲେ ମଧ୍ୟ ତାକୁ ଘୁଞ୍ଚାଇ ଘୁଞ୍ଚାଇ ଆମେ ଆସି ୧୯୮୫ ମସିହାରେ ପହଞ୍ଚିଲେଣି । ଲୋକଙ୍କୁ ଆମେ ବହୁତ ଠକିଲେଣି । ଏବେ ୨୦୦୦ ମସିହା ଧାର୍ଯ୍ୟ କଲେ ଲୋକଙ୍କ ପ୍ରତି ଘୋର ବିଶ୍ୱାସ ଘାତକତା ହେବ । ତେଣୁ ୧୯୯୦ ମସିହାକୁହିଁ ଧାର୍ଯ୍ୟ କରାଯାଉ ।" ମୁଁ କହିଲି, "ଆମେ ସ୍ୱପ୍ନବାଦୀ ବା କଳ୍ପନାବିଳାସୀ ନ ହୋଇ ବାସ୍ତବ ସ୍ଥିତି ପ୍ରତି ଧ୍ୟାନ ଦେବା ଆବଶ୍ୟକ । ଆଜି ପର୍ଯ୍ୟନ୍ତ ଆମେ ୩୩ ପ୍ରତିଶତ ଗାଁକୁ ପ୍ରାଥମିକ ସ୍କୁଲ ଯୋଗାଇ ପାରିନାହାନ୍ତି । ୨୭ ପ୍ରତିଶତ ପିଲା ସ୍କୁଲରେ ନାଁ ଲେଖାଇ ନାହାନ୍ତି । ୫୬ ପ୍ରତିଶତ ପିଲା ପଞ୍ଚମ ଶ୍ରେଣୀ ପାଶ୍ କରିବା ପୂର୍ବରୁ ପାଠ ତ୍ୟାଗ କରୁଛନ୍ତି । ତଫସିଲ୍ ଭୁକ୍ତ ଜାତି, ଉପଜାତି ତଥା ଝିଅମାନଙ୍କ କଥା କହିବା ଅନାବଶ୍ୟକ । ୧୬ ପ୍ରତିଶତ ପୁଅ ଓ ୮୦ ପ୍ରତିଶତ ଝିଅଙ୍କୁ ପ୍ରାଥମିକ ସ୍କୁଲକୁ ଆଣିବାକୁ ପଡିବ ଓ ପାଠ ତ୍ୟାଗୀମାନଙ୍କ ସଂଖ୍ୟା କମାଇବାକୁ ପଡିବ । ମନେ ରଖିବାକୁ ହେବ ଯେ ଯେଉଁମାନେ ସହଜରେ ସ୍କୁଲକୁ ଆସିବା କଥା ସେମାନେ ଆସି ଯାଇଛନ୍ତି । ଯେଉଁମାନେ ଆସି ନାହାନ୍ତି ଅର୍ଥନୈତିକ କାରଣରୁ ସେମାନେ ଆସି ପାରିନାହାନ୍ତି । ଦାରିଦ୍ର୍ୟ ସହିତ ସେମାନଙ୍କର ଶିକ୍ଷା ଜଡିତ । ଦାରିଦ୍ର୍ୟ ଦୂରୀକରଣ ଏତେ ସହଜ ନୁହେଁ। ଏତେ କାମ କ'ଣ ଆଉ ପାଞ୍ଚବର୍ଷ ମଧ୍ୟରେ କରିହେବ ? ଯଦି ନ ହେବ ସେ ତାରିଖ ଧାର୍ଯ୍ୟକରି ଲାଭ କ'ଣ ? ଏହା ଶୁଣି ଶତ୍ରୁଘ୍ନବାବୁ କହିଲେ, "ଯଦି ନ ହେବ, ତା'ହେଲେ ମୁଁ ଏ ଆଲୋଚନା ସ୍ଥଳ ଛାଡି ଚାଲିଯାଉଛି," ତେବେ ତାଙ୍କୁ ବହୁତ ବୁଝାଶୁଝା କରି ବିତର୍କ ସମାପ୍ତ କରାଗଲା ଓ ସରକାରଙ୍କୁ ରିପୋର୍ଟ ପ୍ରଦାନ କରାଗଲା ।

## ଆର୍ଥିକ ପରିଚାଳନାରେ ସୁଧାର

ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର ଦରମା ପାଇଁ ପ୍ରତି ବ୍ଲକ୍‌କୁ allotment ଦିଆଯାଏ । ବର୍ଷ ଶେଷ ବେଳକୁ ଦେଖାଯାଉଥିଲା ଯେ କେଉଁ ବ୍ଲକ୍ ରେ ୫୦ ଲକ୍ଷ ଟଙ୍କା ବଳି ପଡିଲାଣି ତ ଅନ୍ୟ କାହାର ୩୦ ଲକ୍ଷ ଅଭାବ ପଡିଲାଣି । ମୋଟାମୋଟି ଭାବରେ ପ୍ରତିବର୍ଷ ପ୍ରାୟ ୧୦ କୋଟି ଟଙ୍କା Surrender ହୋଇଯାଏ ଅଥଚ ଅନ୍ୟ ବ୍ଲକ୍ ମାନଙ୍କରେ ପାଞ୍ଚକୋଟି ଅଭାବ ପଡେ । ସଂପୃକ୍ତ କିରାଣିମାନଙ୍କୁ ଡାକି ପଚାରିଲି, "କେଉଁ ଭିତ୍ତିରେ ବ୍ଲକ୍‌କୁ ଟଙ୍କା ଦିଆ ଯାଉଛି ? ସେମାନେ କହିଲେ, "ଭିତ୍ତି କିଛି ନାହିଁ । ପୂର୍ବ ବର୍ଷ ଯେଉଁ ବ୍ଲକ୍‌କୁ ଯେତିକି

ଟଙ୍କା ଦିଆ ଯାଉଥିଲା, ଚଳିତ ବର୍ଷ ସେତିକି ଟଙ୍କା allot କରାଯାଏ ।" ମୁଁ କହିଲି, "ଯେଉଁ ବ୍ଲକ୍ ଗତ ବର୍ଷ ଟଙ୍କା ଖର୍ଚ୍ଚ କରି ନପାରି Surrender କରିଥିଲା, ତାକୁ ପୁଣି ସେତିକି ଟଙ୍କା ଦେଲେ ସେ ପୁଣି Surrender କରିବ ନାହିଁ ? ପୁଣି ତାକୁ ସେତିକି ଟଙ୍କା ଦେବାରେ ଯୁକ୍ତି କ'ଣ ? ଗୋଟିଏ ବର୍ଷରେ ତାଙ୍କର ପ୍ରକୃତ ଖର୍ଚ୍ଚର ହିସାବ କରିଦେଲେ ତେଣିକି ବାର୍ଷିକ ଦରମା ବୃଦ୍ଧି ପାଇଁ ପ୍ରତିବର୍ଷ ୩.୫ ପ୍ରତିଶତ ଟଙ୍କା ଅଧିକ ଦେଇ ମୋଟ ଟଙ୍କା allotment ଦିଆଯିବ । କେଉଁ ବ୍ଲକ୍‌ର ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଦରମା ପାଇଁ କେତେ ଟଙ୍କା ଦରକାର, ତାହା ନିର୍ଦ୍ଧାରିତ କରିବା ପାଇଁ ବିଭିନ୍ନ ଯୋଗ୍ୟତାଧାରୀ ଶିକ୍ଷକଙ୍କର ଏକ ବିବରଣୀ ଡି.ଆଇ.ଙ୍କ ଠାରୁ ଆଣିଲୁ । ପ୍ରତି ବ୍ଲକ୍‌ର ବିଭିନ୍ନ ଯୋଗ୍ୟତାଧାରୀ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର ହିସାବ ପାଇଲା ପରେ ସେମାନଙ୍କ ଦରମା ନିର୍ଦ୍ଧାରଣ କଲୁ ଓ ତା ସହିତ ପୂର୍ବ ବର୍ଷର ପ୍ରକୃତ କେତେ ଦରମା ଦିଆ ଯାଇଛି - ଏ ଦୁଇଟି ହିସାବକୁ ନେଇ ପ୍ରତି ବ୍ଲକ୍‌ର ଆବଶ୍ୟକତା ନିର୍ଦ୍ଧାରଣ କରିଦେଲୁ । ଯେଉଁମାନେ ଅଧିକ ଟଙ୍କା ପାଉଥିଲେ ସେମାନେ ଅଧିକ ଅର୍ଥ ଦାବି କଲେ । ଆମେ ତାଙ୍କୁ ଅଧିକ ଅର୍ଥ ଆବଶ୍ୟକତାର ହିସାବ ଦେଖାଇବାକୁ କହିବାରୁ ସେମାନେ ଚୁପ୍ ହୋଇଗଲେ । ଏହି ନିର୍ଦ୍ଧାରଣ ପରେ ଆର୍ଥିକ ପରିଚାଳନା ଅନେକଟା ସୁଧୁରି ଗଲା ।

## ୫.୪ ଓଡିଶାରେ ବାଳଭବନ କାର୍ଯ୍ୟକ୍ରମ

ପୁରୁଣା ଭୁବନେଶ୍ୱରରେ ରାଜ୍ୟ ଜୱାହାର ବାଳଭବନ କାର୍ଯ୍ୟ କରୁଥିଲା । ଏହା ଭାରତୀୟ ବାଳଭବନ ଦ୍ୱାରା ମଞ୍ଜୁରୀ ପ୍ରାପ୍ତ ଓ ସାହାଯ୍ୟ ପ୍ରାପ୍ତ । ଏହି କାର୍ଯ୍ୟକ୍ରମରେ ଅନେକ ଗୁଡିଏ ପିଲା ଅଂଶଗ୍ରହଣ କରୁଥିଲେ । ବାଳଭବନରେ ବହୁମୁଖୀ କାର୍ଯ୍ୟକ୍ରମ ସଂପାଦିତ ହୁଏ । ପିଲାମାନେ ଏହା ଦ୍ୱାରା ବହୁଭାବରେ ଉପକୃତ ହେଉଥିଲେ ।

ବାଳଭବନର ମୁଖ୍ୟ ଲକ୍ଷ୍ୟ ହେଲା ପିଲାମାନଙ୍କ ଅନ୍ତର୍ନିହିତ ପ୍ରତିଭାର ବିକାଶ । ସେଠାରେ ଚିତ୍ରାଙ୍କନ, ରଙ୍ଗକରଣ (ଡ୍ରଇଂ ଓ ପେଣ୍ଟିଂ) ସହିତ ନୃତ୍ୟ, ଗୀତ, ବାଦ୍ୟ ଶିଖିବାର ବ୍ୟବସ୍ଥା ବି ଥାଏ । କାଗଜକାଟି ଫୁଲ ତିଆରି କରିବା, ଛିଣ୍ଡା ଅଦରକାରୀ ବସ୍ତୁରୁ ଖେଳନା ତିଆରି କରିବା ଇତ୍ୟାଦିର ବ୍ୟବସ୍ଥା ମଧ୍ୟ ଥାଏ ।

ଭୁବନେଶ୍ୱର ଜୱାହାର ବାଳଭବନରେ ଉପରୋକ୍ତ ବ୍ୟବସ୍ଥା ଗୁଡିକ ବ୍ୟତୀତ ବତକ ପାଳନ, ଆକ୍ୱାରିଅମ୍‌ରେ ମତ୍ସ୍ୟପାଳନ ଆଦି କରାଯାଇ ଅନୁଷ୍ଠାନଟିକୁ ବେଶ୍ ଆକର୍ଷଣୀୟ କରା ଯାଇଥିଲା । ଦୁର୍ଭାଗ୍ୟକ୍ରମେ ଏହି ଅନୁଷ୍ଠାନ ଓ ଏହାର ପରିଚାଳକ ରମେଶ ଚନ୍ଦ୍ର ସାମନ୍ତରାୟଙ୍କ ଦୁର୍ନୀତି ସମ୍ବନ୍ଧରେ ଅନେକଗୁଡିଏ ଦରଖାସ୍ତ କେନ୍ଦ୍ରୀୟ ବାଳଭବନ ଅଫିସରେ ପହଞ୍ଚୁଥିବାରୁ ସେମାନେ ଏହାର ଅନୁଦାନ ବନ୍ଦ କରିଦେଲେ । କେନ୍ଦ୍ରୀୟ ବାଳଭବନର ବାର୍ଷିକ ଉତ୍ସବକୁ ଓଡିଶା ଜୱାହାର ବାଳଭବନ ସଂଗଠନ ଯାଇଥିଲେ । ସେମାନଙ୍କ ବାର୍ଷିକୋତ୍ସବରେ ଯୋଗ ଦେବାକୁ ଓଡିଶା ସରକାର ମୋତେ ପଠାଇଲେ । କେନ୍ଦ୍ରୀୟ ବାଳଭବନର ବହୁମୁଖୀ କାର୍ଯ୍ୟକ୍ରମ ମୋତେ ଖୁବ୍ ଭଲ ଲାଗିଲା । ସେମାନଙ୍କର ୬/୭ ଗୋଟି ବସ୍ ପିଲାମାନଙ୍କୁ ବିଭିନ୍ନ ଅନୁଷ୍ଠାନକୁ ନେବା ଆଣିବା କରିବାକୁ ନିୟୋଜିତ । ବିଭିନ୍ନ ଦେଶରୁ ପିଲାମାନେ ସେଠାରେ ଅଂଶଗ୍ରହଣ କରୁଥିଲେ । ଯେଉଁ ପିତାମାତା ନିଜ ପିଲାର ଅନ୍ତର୍ନିହିତ ଗୁଣର ବିକାଶ କରିବାକୁ ଆଗ୍ରହୀ ସେମାନେ ସ୍ୱେଚ୍ଛାକୃତ ଭାବରେ ସେଠାକୁ ଯାଆନ୍ତି । ପିଲାଙ୍କୁ ସେଠାରେ ବୁଲାଇ ଆଣିଲେ ପିଲା ନିଜ ପସନ୍ଦର କାର୍ଯ୍ୟକ୍ରମ ମନୋନୀତ କରି ନିଏ । ପିଲାର ଆକର୍ଷଣ କେଉଁ କାର୍ଯ୍ୟକ୍ରମ ପାଇଁ ତାହା ଚିହ୍ନଟ କରିବା ପାଇଁ କେନ୍ଦ୍ରୀୟ ବାଳଭବନ ଏକ ଚମତ୍କାର ଅନୁଷ୍ଠାନ ।

କେନ୍ଦ୍ରୀୟ ବାଳଭବନରେ ନିର୍ଦ୍ଦେଶିକା ମୋତେ ଭୁବନେଶ୍ୱର ଜୱାହାର ବାଳଭବନ ବିଷୟରେ ଓ ତାଙ୍କ ଦୁର୍ନୀତି ବିଷୟରେ ପଚାରିଲେ । ମୁଁ ତାଙ୍କୁ କହିଲି, ସେମାନେ ଯେଉଁ କାର୍ଯ୍ୟକ୍ରମ କରୁଛନ୍ତି ଭଲ କିନ୍ତୁ ଅର୍ଥାଭାବରୁ ସେମାନେ ଆଗେଇ ପାରୁ ନାହାନ୍ତି । ଆପଣ ତାଙ୍କୁ କେତେ ଅନୁଦାନ ଦେଉଛନ୍ତି ଯେ ସେଥିରୁ ସେ କେତେ ତାଙ୍କ କାର୍ଯ୍ୟକ୍ରମ ପାଇଁ ଖର୍ଚ୍ଚ କରିବେ ଓ କେତେ ଦୁର୍ନୀତି କରିବେ । ଯେ କୌଣସି ଅନୁଷ୍ଠାନ ବା ବ୍ୟକ୍ତିଙ୍କ ବିରୁଦ୍ଧରେ ଦରଖାସ୍ତ କରିବାକୁ ଆମ ସମାଜରେ ଦଳେ ଅସୂୟା ପରାୟଣ ବ୍ୟକ୍ତି ଥାନ୍ତି । ତାଙ୍କ କାମ ହେଉଛି ବ୍ୟକ୍ତି ବିଶେଷଙ୍କ ବିରୁଦ୍ଧରେ ଲେଖିବା, ଆପଣ ସେଥିପ୍ରତି ଧ୍ୟାନ ନ ଦେଇ ତାଙ୍କୁ ଅନୁଦାନ ଦିଅନ୍ତୁ । ରାଜ୍ୟରେ ସେଇ ଗୋଟିକ ବାଳଭବନ । ସେ ବନ୍ଦ ହୋଇଗଲେ ରାଜ୍ୟର କ୍ଷତି । ମୋ ସୁପାରିଶ କ୍ରମେ ସେ ଅନୁଦାନ ଦେଲେ ।

ଜୱାହାର ବାଳଭବନ ପରିଦର୍ଶନ ପାଇଁ ସରକାର ବହୁବାର ଭୁବନେଶ୍ୱର ଡି.ଆଇ କୁ ପଠାଇଛନ୍ତି । ସେ ଏହାକୁ ଭୁଲ୍‌କ୍ରମେ ଏକ ପ୍ରାଥମିକ ସ୍କୁଲ ମନେକରି,

ତା'ର କ'ଣ କ'ଣ ଅଭାବ ସେ ବିଷୟରେ ରିପୋର୍ଟ ଦେଇଛନ୍ତି । ବାଳଭବନ ଗୋଟିଏ ପ୍ରାଥମିକ ସ୍କୁଲ ନୁହେଁ । ତାକୁ ପ୍ରାଥମିକ ସ୍କୁଲ ଭାବି ପରିଦର୍ଶନ କଲେ ହେବ କେମିତି ? ମୁଁ ବାଳଭବନ କାର୍ଯ୍ୟକ୍ରମ କ'ଣ ? ତା'ର ଲକ୍ଷ୍ୟ କ'ଣ ? ତା'ର ଉପକାରିତା କ'ଣ ସେ ବିଷୟରେ ସରକାରଙ୍କୁ ରିପୋର୍ଟ ଦେଲା ପରେ ସରକାର ବାଳଭବନକୁ ଦୁଇ ଏକର ଜାଗା ଦେଲେ । ଘର ତିଆରି କରିବାକୁ କେନ୍ଦ୍ରୀୟ ବାଳଭବନ ଅନୁଦାନ ଦେବା କଥା । ସେମାନେ ନ ଦେବାରୁ ଓ ଦଳେ ଗୋଡ଼ମାରୁ ଜୱାହାର ବାଳଭବନ ବିରୁଦ୍ଧରେ ଲାଗିଯିବାରୁ ଓଡିଶାରେ ବାଳଭବନ ଆନ୍ଦୋଳନ ବହୁଦିନ ଧରି ଦୁର୍ବଳ ସ୍ଥିତିରେ ପଡି ରହିଛି । ଯଦି କେହି ବଦାନ୍ୟ ବ୍ୟକ୍ତି ଏହି ଅନୁଷ୍ଠାନ ଆଦର୍ଶରେ ଅନୁପ୍ରାଣିତ ହୋଇ ଅନୁଷ୍ଠାନଟିକୁ ପୁନରୁଜ୍ଜୀବିତ କରି ପାରନ୍ତି, ତା'ହେଲେ ଓଡିଆ ପିଲାମାନଙ୍କର ମହୋପକାର ସାଧନ ହୁଅନ୍ତା ।

## ୫.୫ ସ୍କୁଲ ମାନଚିତ୍ର ପ୍ରସ୍ତୁତି ତାଲିମ

ସାର୍ବଜନୀନ ପ୍ରାଥମିକ ଶିକ୍ଷା ପ୍ରବର୍ତ୍ତନ କାର୍ଯ୍ୟକ୍ରମରେ ପ୍ରଥମ କାର୍ଯ୍ୟକ୍ରମ ହେଉଛି ଠିକ୍ ସ୍ଥାନରେ ଆବଶ୍ୟକତା ମତେ ସ୍କୁଲ ଖୋଲି ସବୁ ପିଲାଙ୍କୁ ଶିକ୍ଷା ସୁବିଧା ଯୋଗାଇ ଦେବା । କେତେ ସ୍କୁଲ ଖୋଲିବାକୁ ହେବ ଓ କେଉଁଠାରେ ସ୍କୁଲ ଖୋଲିବାକୁ ହେବ ତାହା ନିରୂପଣ କରିବା ଏକ କଷ୍ଟକର ବ୍ୟାପାର । ସର୍ବ ଭାରତୀୟ ଶିକ୍ଷା ସର୍ଭେ କାର୍ଯ୍ୟକ୍ରମରେ କେତେ ସ୍କୁଲ ଖୋଲା ଯାଇଛି, କେତେ ପିଲାଙ୍କର ନାମ ଲେଖା ଯାଇଛି ଓ କେତେ ପିଲା ସ୍କୁଲ ଛାଡୁଛନ୍ତି ଇତ୍ୟାଦି ତଥ୍ୟ ଉପଲବ୍ଧ ହେଲେ ମଧ୍ୟ ନୂତନ ସ୍କୁଲ ପାଇଁ ସ୍ଥାନ ନିରୂପଣ କରିବା ଓ କେଉଁ ସ୍ଥାନରେ କେତେ ପିଲା ଶିକ୍ଷା ପରିସର ବାହାରେ ଅଛନ୍ତି ତାହା ଗଣିବା ସମ୍ଭବ ନୁହେଁ । ଜିଲ୍ଲାସ୍ତର ଓ ତା ଉପରକୁ ଗଲେ ସାମଗ୍ରୀକ ତଥ୍ୟ ମିଳିଯାଏ ସିନା ନିମ୍ନ ସ୍ତରର, ସ୍ଥାନୀୟ ସ୍ତରର ତଥ୍ୟ ଉପଲବ୍ଧ ହୋଇପାରେ ନାହିଁ । ସେଥିପାଇଁ ଫ୍ରାନ୍ସରୁ ନୂଆ ହୋଇ ଆମଦାନି ହୋଇଥିବା "School Mapping" ପାଇଁ National Staff College, New Delhi ଏବେକାର National Institute of Educational Planning & Administration (NIEPA) ଟ୍ରେନିଂ ପାଇଁ ବିଭିନ୍ନ ରାଜ୍ୟରୁ ଶିକ୍ଷା କର୍ମଚାରୀମାନଙ୍କୁ ଡାକିଲେ । ଓଡିଶାରୁ ମୁଁ ଯାଇ ସେ ତାଲିମରେ ଯୋଗ ଦେଇଥିଲି । ତାଲିମ ଅଧା ହୋଇଗଲା ପରେ "School Mapping" ଉପରେ ଖଣ୍ଡେ ବହି ଲେଖିବା ପାଇଁ କର୍ତ୍ତୃପକ୍ଷ ଚାହିଁଲେ । ଉତ୍ତର ପ୍ରଦେଶର

ଅତିରିକ୍ତ ଶିକ୍ଷା ସେକ୍ରେଟେରୀ ପରମାନନ୍ଦ ମିଶ୍ର ଓ ମୁଁ ଦୁଇଜଣ ବହି ଲେଖିବା ଦାୟିତ୍ୱରେ ରହିଲୁ । ପରମାନନ୍ଦ ବାବୁ ମୋ ଉପରେ ସଂପୂର୍ଣ୍ଣ ଦାୟିତ୍ୱ ଦେଇ ଅନ୍ୟ କାର୍ଯ୍ୟରେ ବ୍ୟସ୍ତ ରହିଲେ । ମୁଁ ଯେଉଁ ବହି ଲେଖିଲି ତା'ର ପାଣ୍ଡୁଲିପି ଆଲୋଚନା ପରେ ଛପା ଯାଇ ସବୁ ରାଜ୍ୟକୁ ପଠାଗଲା ।

National Staff College ଓଡିଶାର ଗୋଟିଏ ବ୍ଲକ୍‌ରେ ସ୍କୁଲ ମାନଚିତ୍ର ପ୍ରସ୍ତୁତ କରାଇବାକୁ ଚାହିଁଲେ । ତାଙ୍କର ଆବଶ୍ୟକତା ହେଲା ଯେଉଁ ବ୍ଲକ୍‌ରେ ସ୍କୁଲ ମାନଚିତ୍ର ପ୍ରସ୍ତୁତ ହେବ ସେଥିରେ ତଫସିଲ୍ ଭୁକ୍ତ ଜାତି, ଉପଜାତି, ସାଧାରଣ ବର୍ଗ ଲୋକ ଥିବେ । ସେ ଭଳି ଓଡିଶାରେ କେବଳ ବାଲେଶ୍ୱର ଜିଲ୍ଲାର ନୀଳଗିରି ବ୍ଲକ୍ । ସେଠାରେ ସ୍କୁଲ୍ ମାନଚିତ୍ର ପ୍ରସ୍ତୁତ କରାଗଲା । ପ୍ରାରମ୍ଭିକ ଅବସ୍ଥାରେ ବ୍ଲକ୍‌କୁ ଗୋଟିଏ Unit ଭାବରେ ଧରିନେଇ ସ୍କୁଲ ମାନଚିତ୍ର ପ୍ରସ୍ତୁତ କରାଯିବାରୁ ସ୍ପଷ୍ଟ ଚିତ୍ର ମିଳିଲା ନାହିଁ । ପରବର୍ତ୍ତୀ କାଳରେ Education For All କାର୍ଯ୍ୟକ୍ରମରେ ସ୍କୁଲ ମାନଚିତ୍ର ପ୍ରସ୍ତୁତି ବେଳେ ଅସୁବିଧା ହେବାରୁ "ଗ୍ରାମ ପଞ୍ଚାୟତ" କୁ ଏକକ ଭାବରେ ନେବାରୁ ସ୍ପଷ୍ଟ ଚିତ୍ର ମିଳିଲା । ନୂଆ ସ୍କୁଲ ପାଇଁ ସ୍ଥାନ ନିରୂପଣ କରିବା ସହଜ ହେଲା । ଅଭିଜ୍ଞତାରୁ ଏତିକି ଲାଭ ହେଲା ଯେ ସ୍କୁଲ ମାନଚିତ୍ର ପ୍ରସ୍ତୁତିରେ ଆଉ ଭୁଲ୍ ବା ଅସୁବିଧା ହେବାର ସୁଯୋଗ ରହିଲା ନାହିଁ ।

ସ୍କୁଲ ମାନଚିତ୍ର ଦ୍ୱାରା ନିରୂପିତ ସ୍ଥାନ ମାନଙ୍କରେ ସ୍କୁଲ ଖୋଲିବା ବୈଜ୍ଞାନିକ ପଦ୍ଧତି ଭୁକ୍ତ ହେଲେ ମଧ୍ୟ ଆର୍ଥିକ ଅଭାବ ଦୃଷ୍ଟିରୁ ରାଜ୍ୟ ସରକାର ସେ ସବୁ ସ୍ଥାନରେ ସ୍କୁଲ ଖୋଲିବାକୁ ସମ୍ମତ ହେଲେ ନାହିଁ । ପୁରୁଣା ପଦ୍ଧତିରେ ସ୍କୁଲ ଖୋଲା ଯିବାରୁ ଅନେକ ଛୋଟ ଛୋଟ ପଡା ଗ୍ରାମ ଓ କେତେକ ବିକ୍ଷିପ୍ତ ପରିବାର ସ୍କୁଲ ସୁବିଧା ପାଇବାରୁ ବଞ୍ଚିତ ହେଲେ । ତଥାପି ଶିକ୍ଷା ଯୋଜନା ଚାଲିଛି । ସର୍ବ ଶିକ୍ଷା ଅଭିଯାନ ଆଗେଇ ଚାଲିଛି ଓ ସ୍କୁଲ ପରିସର ବାହାରେ ଥିବା ପିଲାଙ୍କ ସଂଖ୍ୟା କମି ଯାଇଛି ବୋଲି DPEP / SSA ପୁସ୍ତିକା (୨୦୦୪)ରେ ପ୍ରକାଶ ପାଇଛି । ସତରେ କ'ଣ ହେଉଛି କିଏ ଜାଣେ ?

## ୫.୬ ଓଡିଶାର ଆଦିବାସୀ ଶିକ୍ଷା ସମ୍ବନ୍ଧରେ ଗବେଷଣା

୧୯୬୮ ମସିହା ପର୍ଯ୍ୟନ୍ତ ଓଡିଶାରେ ଗୋଟିଏ ଶିକ୍ଷା ବିଭାଗ ଥିଲା । ୧୯୬୮ ମସିହାରେ ଶିକ୍ଷା ବିଭାଗ ଦୁଇ ଭାଗରେ ବିଭକ୍ତ ହେଲା (୧) ଉଚ୍ଚ ଶିକ୍ଷା ବିଭାଗ (୨) ସ୍କୁଲ ଶିକ୍ଷା ବିଭାଗ । ଯେତେବେଳେ ଗୋଟିଏ ଶିକ୍ଷା ବିଭାଗ ଥିଲା ସେତେବେଳେ ମୁଁ ସରକାରୀ ଚାକିରି ଆରମ୍ଭ କଲି ସ୍କୁଲ ସବ୍‌ଇନିସ୍ପେକ୍ଟର

ଭାବରେ । ଚାରି ବର୍ଷ ସବ୍‌ଇନିସ୍ପେକ୍ଟର ଚାକିରି କଲାପରେମୁଁ ଓଡିଆରେ ଘରୋଇ ଭାବରେ ଏମ୍.ଏ ପରୀକ୍ଷାଦେଇ ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରି ପାଶ୍ କଲି । ଓଡିଶା ଲୋକ ସେବା ଆୟୋଗ ଦ୍ୱାରା ମନୋନୀତ ହୋଇ ଓଡିଶା କୃଷି ମହାବିଦ୍ୟାଳୟରେ ଓଡିଆ ଅଧ୍ୟାପକ ଭାବରେ ୨୪.୦୭.୧୯୬୨ ତାରିଖରେ ଯୋଗ ଦେଲି । ଓଡିଶା କୃଷି ମହାବିଦ୍ୟାଳୟରେ ୨୪.୦୮.୧୯୬୨ ତାରିଖରେ ଓଡିଶା କୃଷି ଓ ବୈଷୟିକ ବିଶ୍ୱ ବିଦ୍ୟାଳୟ ଉଦ୍‌ଘାଟିତ ହେବାରୁ ମୁଁ ସରକାରୀ ଚାକିରିକୁ ଫେରିଲି । ୧୯୬୯ ମସିହା ରେ Rationalisation of Field Wing ନାମରେ ଗୋଟିଏ ସର୍କୁଲାର କରାଗଲା । ଯାହାରକୁ ଜଣା ଯାଉଛି ଯେପରି କ୍ଷେତ୍ରୀୟ କର୍ମଚାରୀ ମାନଙ୍କର ସ୍ୱାର୍ଥରକ୍ଷା ପାଇଁ ଏହି ସର୍କୁଲାର କରାଗଲା । କିନ୍ତୁ ଏହା ଜଣେ ଦୁଇଜଣ ଅଫିସରଙ୍କ ସ୍ୱାର୍ଥରକ୍ଷା ପାଇଁ ଓ କେତେକଙ୍କୁ ସେମାନଙ୍କ ନ୍ୟାଯ୍ୟ ଦାବିରୁ ବଞ୍ଚିତ କରିବାପାଇଁ ଅଭିପ୍ରେତ ଥିଲା । ବୁଦ୍ଧିର ଖେଳରେ ମନ୍ଦ ଉଦ୍ଦେଶ୍ୟ ମଧ୍ୟ ସତ୍ ଉଦ୍ଦେଶ୍ୟ ଭାବରେ ଚିତ୍ରିତ ହୋଇପାରେ ତାହାର ଏ ସର୍କୁଲାର ଗୋଟିଏ ଉଦାହରଣ ।

ପରବର୍ତ୍ତୀ କାଳରେ ମୁଁ Representation କରି ସରକାରଙ୍କୁ ଅନୁରୋଧ କଲି ମୋ କଥା ବିଚାର କରିବା ପାଇଁ । ମୋର ସରକାରୀ ଚାକିରିରେ ପ୍ରବେଶ Field Wing ରେ ସବ୍‌ଇନିସ୍ପେକ୍ଟର ଭାବରେ । ଏଣୁ ମୋତେ Field Wing Service ରେ ଗଣା ଯିବା କଥା । ମୁଁ ପରବର୍ତ୍ତୀ କାଳରେ ଅଧ୍ୟାପକ ଚାକିରି କଲେ ମଧ ମୋର ଚାକିରିର ଅବିଚ୍ଛିନ୍ନତା ବଜାୟ ରହିଥିଲା । ମୋର ଦାବି ଯଥାର୍ଥ ଏ କଥା କେହି ବୁଝିଲେ ନାହିଁ । ତାଙ୍କୁ ବୁଝାଇବା ପାଇଁ ଯେଉଁ ଗୁଣ ଦରକାର ମୋର ତାହା ନ ଥିଲା । କାର୍ଯ୍ୟଦକ୍ଷତା ଦ୍ୱାରା ଉପରେ ହାକିମଙ୍କୁ ଯେତିକି ସନ୍ତୁଷ୍ଟ କରାଯାଇପାରିବ ମୁଁ ସେତିକି କରେ । ସେତିକିରେ ଉପରିସ୍ଥ କର୍ମଚାରୀଙ୍କୁ ସନ୍ତୁଷ୍ଟ କରି ହୁଏ ନାହିଁ । ତା ଛଡା ଯେଉଁ କେତେଜଣଙ୍କୁ ସେମାନଙ୍କ ନ୍ୟାଯ୍ୟ ଦାବିରୁ ବଞ୍ଚିତ କରିବା ପାଇଁ ଯୋଜନା ଥିଲା ତା ମଧ୍ୟରୁ ମୁଁ ଜଣେ । ତେଣୁ ମୋ କଥା ଉଦ୍ଦେଶ୍ୟମୂଳକ ଭାବେ ଶୁଣାଗଲା ନାହିଁ ।

ମୁଁ ୧୯୬୫ ଅକ୍ଟୋବର ମାସରେ ଶିକ୍ଷା ଅଧ୍ୟାପକଭାବେ ଯୋଗଦେଲି । ୧୯୭୬ ମସିହାରେ କେତେକ ଅଧ୍ୟାପକଙ୍କୁ 'ରିଡର' ଭାବରେ ପଦୋନ୍ନତି ଦିଆଗଲା । ସେତେବେଳେ ମୋର ଶିକ୍ଷା ଅଧ୍ୟାପକ ଭାବରେ ୧୧ ବର୍ଷ ଓ ଦ୍ୱିତୀୟ ଶ୍ରେଣୀ ଚାକିରୀରେ ୧୩ ବର୍ଷ ସଂପୂର୍ଣ୍ଣ ହୋଇଥିଲେ ମଧ ମୋ କଥା ବିଚାରକୁ ନିଆଗଲା ନାହିଁ । ୧୯୮୨ ଅକ୍ଟୋବର ମାସରେ ମୋତେ "ରିଡର"

ପଦକୁ ଉନ୍ନୀତ କରାଗଲା । ସେତେବେଳେ ମୁଁ ପୁରୀ ଶିକ୍ଷା ସର୍କଲର ଇନିସ୍ପେକ୍ଟର ଭାବରେ କାର୍ଯ୍ୟ କରୁଥିଲି । ସରକାର ମୋତେ ପଚାରିଲେ ମୁଁ ଇନିସ୍ପେକ୍ଟର ଭାବରେ ରହିବାକୁ ଚାହେଁ ନା ରିଡର ଭାବରେ ବଦଳି ହୋଇ ଯିବାକୁ ଚାହେଁ, ମୁଁ ରିଡର ଭାବରେ ଯୋଗ ଦେବାକୁ ଚାହେଁ ବୋଲି ଲେଖି ଜଣାଇ ଦେଲି । କିନ୍ତୁ ସରକାର ମୋତେ 'ରିଡର' ଭାବରେ ବଦଳି କଲେ ନାହିଁ । ଗୋଟିଏ କଥା ସ୍ପଷ୍ଟ ପ୍ରଫେସର ପୋଷ୍ଟକୁ ପଦୋନ୍ନତି ପାଇବାକୁ ହେଲେ Ph.D. ଡିଗ୍ରୀ ନିହାତି ଦରକାର । ସେଥିପାଇଁ ଗବେଷଣା କରିବାକୁ ପଡିବ । ମୁଁ ଓଡିଶାର ଆଦିବାସୀ ଶିକ୍ଷା ଉପରେ ଗବେଷଣା କରିବାକୁ ଉତ୍କଳ ବିଶ୍ୱ ବିଦ୍ୟାଳୟରେ ରେଜିଷ୍ଟ୍ରି କରାଇ ନେଲି ଓ ନିୟମିତ ପଢାପଢି ସହ ତଥ୍ୟ ସଂଗ୍ରହରେ ନିଜକୁ ନିୟୋଜିତ କଲି ।

ରାଜ୍ୟ ଶିକ୍ଷା ସର୍ଭେ ଅଫିସର ଭାବରେ କାର୍ଯ୍ୟ କରୁଥିବା ବେଳେ ଅନେକଗୁଡିଏ ଆଦିବାସୀ ଅଞ୍ଚଳ ବୁଲିବାର ସୁଯୋଗ ମିଳିଥିଲା । ବିଭିନ୍ନ ଆଦିବାସୀ ସଂପ୍ରଦାୟ ଓ ତାଙ୍କର ଜୀବନଧାରା ଓ ସଂସ୍କୃତି ସମ୍ବନ୍ଧରେ ପ୍ରତକ୍ଷ ଜ୍ଞାନ ଅର୍ଜନ କରିଥିଲି । ସର୍ଭେରୁ ଆଦିବାସୀ ଶିକ୍ଷା ସମ୍ବନ୍ଧରେ ପ୍ରଚୁର ତଥ୍ୟ ସଂଗ୍ରହ କରିଥିଲି । ଚାକିରି ସହିତ ଗବେଷଣା କରିବା ଏକ କଷ୍ଟକର ବ୍ୟାପାର ହେଲେ ମଧ୍ୟ ମୁଁ କର୍ତ୍ତବ୍ୟରେ ଖିଲାପ ନ କରି ଛୁଟି ଦିନ ମାନଙ୍କରେ ଓ ବଳକା ସମୟରେ ଗବେଷଣା କାର୍ଯ୍ୟ କଲି । ମୋର ସବ୍‌ଇନିସ୍ପେକ୍ଟର ଚାକିରି ଅଭିଜ୍ଞତା ଗବେଷଣା କାର୍ଯ୍ୟରେ ସାହାଯ୍ୟ କଲା ।

ଭୁବନେଶ୍ୱର ଆଞ୍ଚଳିକ ଶିକ୍ଷା କଲେଜର ପ୍ରଫେସର ଡକ୍ଟର କୈଳାସ ଚନ୍ଦ୍ର ପଣ୍ଡା ମୋର ଗାଇଡ୍ ହେଲେ । ଡକ୍ଟର ପଣ୍ଡାଙ୍କର ଗଭୀର ଜ୍ଞାନ ଓ ଗବେଷଣାରେ ପ୍ରଚୁର ଅଭିଜ୍ଞତା ମୋତେ ବହୁତ ସାହାଯ୍ୟ କଲା । ତାଙ୍କ ପରାମର୍ଶ ଓ ମାର୍ଗଦର୍ଶନ ମୋତେ ଗବେଷଣା କାର୍ଯ୍ୟରେ ଯଥେଷ୍ଟ ପ୍ରେରଣା ଯୋଗାଇଲା । ମୁଁ କଠିନ ପରିଶ୍ରମ କରି ପ୍ରାୟ ତିନିଚାରି ବର୍ଷରେ ମୋର ଗବେଷଣା କାର୍ଯ୍ୟ ଶେଷକରି ନିବନ୍ଧ ଲିଖନ କାର୍ଯ୍ୟ ମଧ୍ୟ ଶେଷ କରିଦେଲି ।

ଲଣ୍ଡନ ବିଶ୍ୱବିଦ୍ୟାଳୟର ପ୍ରଫେସର Elwin Thomas ଓ କଲ୍ୟାଣୀ ବିଶ୍ୱବିଦ୍ୟାଳୟର ପ୍ରଫେସର ଦୁର୍ଗା ଦାସ ଭଟ୍ଟାଚାର୍ଯ୍ୟଙ୍କ ଦ୍ୱାରା ସନ୍ଦର୍ଭ ପରୀକ୍ଷିତ ହେଲା । ମୌଖିକ ପରୀକ୍ଷା ବେଳକୁ ଅସୂୟା ପରବଶ ହୋଇ କୌଣସି ବ୍ୟକ୍ତି ଉତ୍କଳ ବିଶ୍ୱ ବିଦ୍ୟାଳୟ ପରୀକ୍ଷା ନିୟନ୍ତ୍ରକଙ୍କ Letter Head ରୁ କିଛି ପୃଷ୍ଠା ଚୋରିକରି ନେଇ ମୌଖିକ ପରୀକ୍ଷକଙ୍କ ନିକଟକୁ ଚିଠି ଲେଖି ଦେଲେ ଯେ

ମୌଖିକ ପରୀକ୍ଷା କାର୍ଯ୍ୟକ୍ରମ ବାତିଲ୍ ହୋଇଗଲା । ଯେଉଁମାନେ ଏ ପ୍ରକାର ଚିଠି ଲେଖିଥିଲେ ତାଙ୍କର ଉଦ୍ଦେଶ୍ୟ ଥିଲା ଯେ ୧୯୮୫ ମସିହାରେ ମୁଁ Ph.D. ନ ପାଇଲେ ୧୯୮୬ ମସିହାରେ ଯେଉଁ ପ୍ରଫେସର Selection ହେବ ସେଥିପାଇଁ ଯୋଗ୍ୟ ବିବେଚିତ ହେବି ନାହିଁ । ତେଣୁ ସେମାନଙ୍କର ପଦୋନ୍ନତି ସହଜରେ ହୋଇଯିବ । ତେବେ ସେମାନଙ୍କର ଏ ଷଡଯନ୍ତ୍ର ଧରା ପଡିଗଲା । ସମସ୍ତ ବିଘ୍ନ ଅତିକ୍ରମ କରି ମୋର ମୌଖିକ ପରୀକ୍ଷା ହେଲା ଓ ମୁଁ Ph.D ପାଇଗଲି । ସେମାନଙ୍କର ଏ ମନ୍ଦକାର୍ଯ୍ୟର କିଛି ପ୍ରଭାବ ପଡିଲା ନାହିଁ । କାରଣ ସେହିବର୍ଷ ଆଠ ଗୋଟି ନୂଆ ଶିକ୍ଷା ପ୍ରଫେସର ପଦ ସୃଷ୍ଟି ହେଲା ଓ ସେଥିପାଇଁ କେତେକଙ୍କୁ Ph.D ଡିଗ୍ରୀରୁ ରିହାତି ଦେଇ ପ୍ରଫେସର ଭାବରେ ନିଆଗଲା । ତଥାପି ଆଠ ଜଣ ନ ମିଳିବାରୁ ସାତଗୋଟି ପ୍ରଫେସର ପୋଷ୍ଟ ପୂରଣ ହେଲା । ସେମାନେ ଯଦି ପୂର୍ବରୁ ଜାଣିଥାନ୍ତେ ଏତେ ଗୁଡିଏ ପୋଷ୍ଟ ସୃଷ୍ଟି ହେବ ବୋଲି ବୋଧହୁଏ ଦୁଷ୍ଟ ବୁଦ୍ଧି କରି ମୋତେ Ph.D ଡିଗ୍ରୀରୁ ବଞ୍ଚିତ କରିବାକୁ ଚେଷ୍ଟା କରି ନ ଥାନ୍ତେ ।

ଶିକ୍ଷା ସଚିବ ଭାବ୍ରେ ସୁଧାଂଶୁ ମୋହନ ପଟ୍ଟନାୟକଙ୍କ ସ୍ଥାନରେ ୧୯୮୬ ମସିହାରେ ପ୍ୟାରିମୋହନ ମହାପାତ୍ର ଯୋଗ ଦେଲେ । ସେ ଯେଉଁଦିନ ଯୋଗ ଦେଲେ ମୁଁ ସେକ୍ରେଟେରିଏଟ୍ ଶିକ୍ଷା ବିଭାଗ ଦପ୍ତରରେ ଥିଲି । ପ୍ୟାରିବାବୁ ଯୋଗ ଦେଇଛନ୍ତି ଜାଣି ତାଙ୍କୁ ଦେଖା କରିବାକୁ ଗଲି । ସେ ମୋ ନାଁ ସହିତ ପରିଚିତ କିନ୍ତୁ ମୋତେ କେବେ ଦେଖି ନ ଥିଲେ । ମୁଁ ତାଙ୍କ ସାମନାରେ ବସିଥିବା ସମୟରେ ସେ ତାଙ୍କ ଘରୋଇ ସଚିବଙ୍କୁ ଡାକି କହିଲେ, "ପ୍ରାଥମିକ ଶିକ୍ଷା ଉପ ନିର୍ଦ୍ଦେଶକ ପି.ସି.ରାଉତଙ୍କୁ ଡାକ ।" ମୁଁ କହିଲି, "ମୁଁ ପି.ସି.ରାଉତ" ସେ କହିଲେ, "Not you, that father of Sarat Rout." ମୁଁ କହିଲି "I am the Father of Sarat Rout. କ'ଣ କହିବା କଥା କହନ୍ତୁ ।" ତା ପରେ ସେ କହିଲେ, "କ'ଣ ଆପଣ ଫାଇନାନ୍ସ ଡିପାର୍ଟମେଣ୍ଟରେ ଶିକ୍ଷା ବିଭାଗ ପ୍ରାପ୍ୟ ହିସାବ କରିବାରେ ୭କୋଟି୬୫ଲକ୍ଷ ଟଙ୍କା ଭୁଲ୍ କରି ଦେଇ ଆସିଛନ୍ତି ?" ମୁଁ କହିଲି, "କେଉଁଠୁ ଆପଣ ଏ ଭୁଲ୍ ଖବର ପାଇଲେ ? ଆମର Plan Scheme ରେ ବର୍ଷକୁ ୭.୬୫ କୋଟି ଟଙ୍କା ମହଙ୍ଗା ଭତ୍ତା ପାଇବାର କଥା । ସେମାନେ ଗୋଟିଏ ବର୍ଷର ମହଙ୍ଗା ଭତ୍ତା ଦେଇଛନ୍ତି ଓ ଆଉ ଗୋଟିଏ ବର୍ଷର ଦେଇ ନାହାନ୍ତି । ଏଥିରେ ହିସାବ ଭୁଲ୍ ର ପ୍ରଶ୍ନ ଉଠିଲା କେଉଁଠୁ ?" ସେ କହିଲେ, "ଆପଣ ଅର୍ଥ ସଚିବଙ୍କୁ କହିଲେ ନାହିଁ ?" ମୁଁ କହିଲି, "ଅର୍ଥ ସଚିବ ଜଣେ

ଉପ ନିର୍ଦ୍ଦେଶକଙ୍କ କଥା କାହିଁକି ଶୁଣିବେ ? ଶିକ୍ଷା ସଚିବ ଅର୍ଥ ସଚିବଙ୍କୁ କହିଥିଲେ ସେ ଶୁଣିଥାନ୍ତେ ବୋଧହୁଏ । ଏହା ଶୁଣି ସେ ନିଜେ ଅର୍ଥ ସଚିବଙ୍କ ପାଖକୁ ଯିବାକୁ ବାହାରିଲେ । ତାଙ୍କ ସହିତ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ରଜତ କର ଓ ମୁଁ ଗଲୁ ।

ସେତେବେଳେ ଅର୍ଥ ସଚିବ ରବି ନାରାୟଣ ଦାସ । ଆଲୋଚନା ପ୍ରସଙ୍ଗରେ ମୁଁ ବୁଝାଇ ଦେଲି କେଉଁ ପରିସ୍ଥିତିରେ ୭.୬୫ କୋଟି ଟଙ୍କା ବାକି ରହିଲା । ତା ସହିତ କହିଲି, 'ଅର୍ଥ ଉପସଚିବ ଦୀନାନାଥ ପଣ୍ଡାଙ୍କୁ ଡାକ । ସେ ସବୁ ଜାଣନ୍ତି । ପ୍ୟାରିବାବୁ ହଠାତ୍ ରାଗିଯାଇ କହିଲେ, "ଅର୍ଥ ସଚିବଙ୍କୁ ମୁଁ 'ସାର୍' ବୋଲି ସମ୍ବୋଧନ କରୁଛି, ଆପଣ କ'ଣ ତାଙ୍କୁ 'ତମେ ତମେ' କହୁଛନ୍ତି ? ମୁଁ କହିଲି, "ଆମର ସେମିତି ଚାଲେ, ସେ ମୋର ସହପାଠୀ" ଏହାପରେ ଦୀନାନାଥ ପଣ୍ଡା ଆସିଲେ ଓ କହିଲେ, "ଗୋଟିଏ ବର୍ଷର ମହଙ୍ଗା ଭତ୍ତା ୭.୬୫ କୋଟି ଟଙ୍କା ବାକି ଅଛି । ଏ ବର୍ଷ ଦିଆଯିବ । ଆମେ ସବୁ ଫେରି ଆସିଲୁ ।

୧୯୮୭ ମସିହା ମାର୍ଚ୍ଚ ମାସ ବେଳକୁ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ରଜତ କରଙ୍କ ସହିତ ମୋର କେତେକ ଘଟଣାରେ ମତ ପାର୍ଥକ୍ୟ ଦେଖା ଦେଲା । ଆମ ସଂପର୍କ ଖରାପ ହେବା ପୂର୍ବରୁ ମୁଁ ବଦଳି ହୋଇ ଯିବା ପାଇଁ ପ୍ୟାରି ବାବୁଙ୍କୁ ଅନୁରୋଧ କଲି । ସେତେବେଳେ ପ୍ରାଥମିକ ଶିକ୍ଷକଙ୍କ ବକେୟା ଦରମା ବାବଦକୁ ୧୯.୦୬ କୋଟି ଟଙ୍କା ମଞ୍ଜୁର ହୋଇଥାଏ । ପ୍ୟାରିବାବୁ ଚାହିଁଲେ ଏ ଟଙ୍କା ଶିକ୍ଷକମାନଙ୍କୁ Payment ହୋଇ ସାରିଲା ପରେ ବଦଳି ହେବ । ବହୁ ପରିଶ୍ରମ କରି ପୁରା ଟଙ୍କା ଶିକ୍ଷକମାନଙ୍କୁ Payment କରାଇଲି । ତା ପରେ ମୋର ମାଧ୍ୟମିକ ଶିକ୍ଷା ଉପନିର୍ଦ୍ଦେଶକ ଭାବେ ବଦଳି ହେଲା ।

## ୫.୭ ଜାତୀୟ ଶିକ୍ଷା ନୀତି - ପ୍ରାଥମିକ ଶିକ୍ଷା

ଭାରତ ସମ୍ବିଧାନ ପ୍ରବର୍ତ୍ତନର ୧୦ ବର୍ଷ ମଧ୍ୟରେ ୧୪ବର୍ଷ ବୟସ ପର୍ଯ୍ୟନ୍ତ ସବୁ ପିଲାଙ୍କର ଶିକ୍ଷାକୁ ସାର୍ବଜନୀନ କରିବାକୁ ସମ୍ବିଧାନର ୪୫ ଧାରାରେ ନିର୍ଦ୍ଦେଶ ଦିଆ ଯାଇଛି । ୧୯୬୦ ମସିହା ସୁଦ୍ଧା ଯେଉଁ ଲକ୍ଷ୍ୟ ପୂରଣ ହେବା କଥା ୧୯୮୫ ମସିହା ସୁଦ୍ଧା ହାସଲ ନ ହେବାରୁ ଭାରତ ସରକାର ବିବ୍ରତ । ସେଥିପାଇଁ ଜାତୀୟ ଶିକ୍ଷାନୀତିରେ ଅଗ୍ରାଧିକାର ଭିତ୍ତିରେ ପ୍ରାଥମିକ ଶିକ୍ଷାର ଉନ୍ନତି

କରିବାକୁ ଉଦ୍ୟମ କରାଯାଉଛି । ଶିକ୍ଷାନୀତିରେ ତିନୋଟି ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଯଥା :-

(୧) ୧୪ ବର୍ଷ ବୟସ ପର୍ଯ୍ୟନ୍ତ ସବୁ ପିଲାଙ୍କ ପାଇଁ ସ୍କୁଲ୍ ଯୋଗାଇ ଦିଆଯିବ

(୨) ୧୪ ବର୍ଷ ବୟସ ପର୍ଯ୍ୟନ୍ତ ସବୁ ପିଲା ସ୍କୁଲରେ ପ୍ରବେଶ କରିବେ ଓ ୧୪ ବର୍ଷ ଶେଷ ପର୍ଯ୍ୟନ୍ତ ସ୍କୁଲ ତ୍ୟାଗ କରିବେ ନାହିଁ ।

(୩) ସବୁ ପ୍ରାଥମିକ ସ୍କୁଲରେ ଗୁଣାତ୍ମକ ଶିକ୍ଷା ଦିଆଯିବ ।

ସ୍କୁଲଗୁଡିକୁ ଆକର୍ଷଣୀୟ କରାଯାଇ ଶିଶୁ କୈନ୍ଦ୍ରିକ ଶିକ୍ଷା ପ୍ରଚଳନ ଓ ଅଞ୍ଚଳ ଭିତ୍ତିକ ଶିକ୍ଷା ପ୍ରବର୍ତ୍ତନ ଉପରେ ଗୁରୁତ୍ୱ ଆରୋପ କରାଯିବ । ୧୯୮୭-୮୮ ମସିହା ସୁଦ୍ଧା ସ୍କୁଲ ମାନଚିତ୍ର ପ୍ରସ୍ତୁତ କରି ପ୍ରାଥମିକ ଶିକ୍ଷା ସୁବିଧା ନ ଥିବା ଗ୍ରାମ / ସାହି / ଜନବସତି ଚିହ୍ନଟ କରି ଶିକ୍ଷା ସୁବିଧା ଯୋଗାଇ ଦେବାକୁ ରାଜ୍ୟ ସରକାରମାନଙ୍କୁ ଦାୟିତ୍ୱ ଦିଆ ଯାଇଛି । ପ୍ରତ୍ୟେକ ପିଲା ସ୍କୁଲରେ ପ୍ରବେଶ କଲେ କି ନାହିଁ ଜାଣିବା ପାଇଁ ଅଣୁ - ଯୋଜନା ମାଧ୍ୟମରେ ଶିଶୁ-ସୁମାରି କରି ସବୁ ପିଲା ପାଠ ପଢିବାର ବ୍ୟବସ୍ଥା କରିବା ଦାୟିତ୍ୱ ମଧ୍ୟ ରାଜ୍ୟ ସରକାରଙ୍କୁ ଦିଆ ଯାଇଛି । ଏହି ଲକ୍ଷ୍ୟ ହାସଲ ପାଇଁ ଜାତୀୟ ଶିକ୍ଷା-ନୀତିରେ କେତେକ ସୂଚନା ଦିଆ ଯାଇଛି । ଯଥା :-

(୧) ଦେଶର ପ୍ରତ୍ୟେକ ପରିବାରର ପିଲାଙ୍କ ପାଇଁ ପ୍ରାଥମିକ ସ୍କୁଲ ବ୍ୟବସ୍ଥା,

(୨) ସାମାଜିକ, ଅର୍ଥନୈତିକ ପୃଷ୍ଠଭୂମି ନିର୍ବିଚାରରେ ପ୍ରତ୍ୟେକ ପିଲା ସଫଳତାର ସହିତ ସେହି ସ୍ତରକୁ ଯିବେ ଯେଉଁ ସ୍ତରକୁ ଦେଶର ବିତ୍ତଶାଳୀ ପରିବାରର ପିଲାମାନେ ଯାଇ ପାରୁଛନ୍ତି । ୧୯୬୮ ର ଜାତୀୟ ଶିକ୍ଷାନୀତିରେ ଘୋଷିତ Common School System ପ୍ରବର୍ତ୍ତନ କରାଯିବ ।

(୩) ବହୁମୁଖୀ ଓ ବହୁ ସ୍ତରୀୟ ଯୋଜନା କରାଯାଇ ଶିକ୍ଷାର ଉନ୍ନତି ସାଧନ କରାଯିବ ।

(୪) ସବୁ ପିଲାଙ୍କୁ ଉଚ୍ଚ ମାନର ଶିକ୍ଷା ପୂର୍ଣ୍ଣ ସମୟ ସ୍କୁଲରେ ଦିଆଯିବା ପାଇଁ ଉଦ୍ୟମ କରାଯିବ ।

(୫) ସମସ୍ତ ଶିକ୍ଷକ ଓ ସ୍ଥାନୀୟ ଲୋକେ (Community) ଶିକ୍ଷା ଯୋଜନା ପ୍ରସ୍ତୁତିରେ ଅଂଶ ଗ୍ରହଣ କରି ବିକେନ୍ଦ୍ରିତ ଯୋଜନାରେ ପିଲାମାନଙ୍କର ଶିକ୍ଷା ବ୍ୟବସ୍ଥା କରିବେ ।

ଭାରତରେ ସାର୍ବଜନୀନ ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ ବିଫଳ ହେବାର ମୁଖ୍ୟ କାରଣ ହେଲା ଆମ୍ଭେମାନେ କେବଳ ସ୍କୁଲ ଖୋଲିବା, ଶିକ୍ଷକ ନିଯୁକ୍ତି କରିବା ଓ ନାମଲେଖା ଅଭିଯାନ କରିବାରେ ସୀମିତ ରହିଗଲେ । ଏହି କାର୍ଯ୍ୟକ୍ରମକୁ ସଫଳ କରିବାକୁ ହେଲେ ଶିକ୍ଷକମାନଙ୍କର ତଥା ସ୍ଥାନୀୟ ଲୋକଙ୍କର (Community) ଅଂଶଗ୍ରହଣ ଅପରିହାର୍ଯ୍ୟ । ଶିକ୍ଷାନୁଷ୍ଠାନ ପରିଚାଳନା କ୍ଷେତ୍ରରେ ସ୍ଥାନୀୟ ଲୋକଙ୍କର ଅଂଶ ଗ୍ରହଣ ସମ୍ଭବ ନ ହେଲେ ଶିକ୍ଷାକୁ ଠିକଣା ବାଟରେ ପରିଚାଳନା କରିବା ସମ୍ଭବ ନୁହେଁ ।

ପ୍ରାଥମିକ ଶିକ୍ଷା ଶିକ୍ଷକ କୈନ୍ଦ୍ରିକ ବା ପାଠ୍ୟପୁସ୍ତକ କୈନ୍ଦ୍ରିକ ନ ହୋଇ ଶିଶୁ-କୈନ୍ଦ୍ରିକ ହେବା ଉଚିତ୍ । ପ୍ରାଥମିକ ଶିକ୍ଷାକୁ ଏକ ଭୟପୂର୍ଣ୍ଣ ପରିବେଶ ମଧ୍ୟରେ କାର୍ଯ୍ୟକାରୀ ହେଉଥିବା "ଘୋଷା ପାଠ" ରେ ପରିଣତ ନ କରି ବରଂ ଆନନ୍ଦ ଦାୟକ, ସୃଜନଶୀଳ ଓ ସନ୍ତୋଷଦାୟକ ପଠନ କାର୍ଯ୍ୟକ୍ରମରେ ପରିଣତ କରିଦେଲେ ବହୁଦିନରୁ ଆକାଂକ୍ଷୀତ ସଂସ୍କାର କାର୍ଯ୍ୟ ସଂପନ୍ନ ହେବ । ଏଥିପାଇଁ ପାଠ୍ୟକ୍ରମର ପରିବର୍ତ୍ତନ ଲୋଡା । ପ୍ରାଥମିକ ଶିକ୍ଷା ବିଷୟରେ ଆଭିମୁଖ୍ୟର ପରିବର୍ତ୍ତନ ଲୋଡା । ଗ୍ରାମାଞ୍ଚଳରେ ପିଲାମାନେ ଶାରୀରିକ ଶ୍ରମ କରିବାରେ ଅଭ୍ୟସ୍ତ । ତାଙ୍କର ଏହି ଅଭ୍ୟାସକୁ ଶୈକ୍ଷିକ କାର୍ଯ୍ୟକ୍ରମରେ ଉପଯୋଗ କରାଯିବା ଦରକାର ।

ତଫସିଲ୍ ଭୁକ୍ତ ଜାତି, ଉପଜାତି, ଓ ବାଳିକାମାନଙ୍କ ଶିକ୍ଷା ଅବହେଳିତ ହୋଇ ଆସିଛି । ସେଥିପାଇଁ ସେମାନଙ୍କ ଶିକ୍ଷା ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦିଆଯିବା ଦରକାର । ସେମାନଙ୍କ ପାଇଁ ସ୍ୱତନ୍ତ୍ର ପ୍ରୋତ୍ସାହନ ବ୍ୟବସ୍ଥା ବିଶେଷ କରି ଦାରିଦ୍ର୍ୟ ସୀମାରେଖା ତଳେ ଥିବା ସମସ୍ତ ପରିବାରର ପିଲାମାନଙ୍କ ପାଇଁ ସାହାଯ୍ୟ ବ୍ୟବସ୍ଥା ହେବା ଉଚିତ୍ । ପିଲାମାନଙ୍କ ପାଇଁ ବିନା ଭଡାରେ ବସ୍ ଯାତ୍ରା, ବାଳିକା ମାନଙ୍କ ପାଇଁ ମାଗଣା ଦୁଇ ହଳ ପୋଷାକ ଯୋଗାଇ ଦେବାକୁ ସୁପାରିଶ୍ କରାଯାଇଛି ।

ଶିକ୍ଷାନୁଷ୍ଠାନଗୁଡିକର ସୁପରିଚାଳନା ଓ ଗୁଣାତ୍ମକ ଅଭିବୃଦ୍ଧି ପାଇଁ ନିୟମିତ ପରିଦର୍ଶନ ସହିତ Monitoring ଆବଶ୍ୟକ । ଏଥିପାଇଁ ପ୍ରତ୍ୟେକ ସ୍କୁଲ ନିମିତ୍ତ ସକ୍ରିୟ ଗ୍ରାମ ଶିକ୍ଷା କମିଟି ଗଠନ ପାଇଁ ପ୍ରସ୍ତାବ ରହିଛି ।

ଶିକ୍ଷାନୁଷ୍ଠାନ ଗୁଡିକର ଦୟନୀୟ ଅବସ୍ଥା ଦୃଷ୍ଟିରୁ ଜାତୀୟ ଶିକ୍ଷାନୀତିରେ Operation Black Board ବା କଳାପଟା ଯୋଜନା କାର୍ଯ୍ୟକାରୀ କରାଯାଇଛି।

ଏଥିରେ ନିମ୍ନଲିଖିତ ଉପକରଣ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି।

(୧) ସବୁଋତୁରେ ବ୍ୟବହାର ଉପଯୋଗୀ ଦୁଇଟି ପକ୍କା କୋଠରୀ ।

(୨) କ୍ରୀଡା ଉପକରଣ, ଖେଳଣା, ଓ ଖେଳ ପଡିଆ ବ୍ୟବସ୍ଥା ।

(୩) କଳାପଟା (ଆବଶ୍ୟକତା ଅନୁଯାୟୀ) ଚକ୍ ଖଡି, ଡଷ୍ଟର ଇତ୍ୟାଦି ।

(୪) ମାନଚିତ୍ର (ଦେଶ, ରାଜ୍ୟ, ଜିଲ୍ଲାର) ।

(୫) ଶିକ୍ଷକଙ୍କ ପାଇଁ ସିଲାବସ୍, ପାଠ୍ୟ ପୁସ୍ତକ, ଶିକ୍ଷକ ସହାୟିକା ପୁସ୍ତକ।

(୬) ପିଲାମାନେ ବସିବାକୁ ଫର୍ଣ୍ଣିଚର / ଆସନ ।

(୭) ପିଇବା ପାଣି ବ୍ୟବସ୍ଥା ।

(୮) ଶୌଚାଗାର (ବାଳକ ଓ ବାଳିକାମାନଙ୍କ ପାଇଁ ସ୍ୱତନ୍ତ୍ର)

(୯) ପ୍ରତି ସ୍କୁଲରେ ଅନ୍ୟୂନ ଦୁଇଜଣ ଶିକ୍ଷକ । ଏକ ଶିକ୍ଷକ ବିଶିଷ୍ଟ ସ୍କୁଲ ରହିବ ନାହିଁ । ଦୁଇଜଣ ଶିକ୍ଷକଙ୍କ ମଧ୍ୟରୁ ଜଣେ ଶିକ୍ଷୟିତ୍ରୀ ରହିବେ ।

## ଅନୌପଚାରିକ ଶିକ୍ଷା

ଯେଉଁଠାରେ ନିୟମିତ ସ୍କୁଲ ପ୍ରତିଷ୍ଠା ପାଇଁ ଆବଶ୍ୟକ ସଂଖ୍ୟକ ପିଲା ନ ଥିବେ ସେଠାରେ ଅନୌପଚାରିକ ଶିକ୍ଷା ପ୍ରବର୍ତ୍ତନ ପାଇଁ ବ୍ୟବସ୍ଥା କରାଯାଇଛି । ଏହି ଶିକ୍ଷାର ବୈଶିଷ୍ଟ୍ୟ ଗୁଡିକ ହେଲା :-

(୧) ଏହା ଶିକ୍ଷାର୍ଥୀ-କୈନ୍ଦ୍ରିକ / ଶିକ୍ଷଣ କୈନ୍ଦ୍ରିକ ।

(୨) ପିଲାମାନଙ୍କ ନିଜର ସାମର୍ଥ୍ୟ ଅନୁସାରେ ଶିକ୍ଷାଲାଭ ।

(୩) ଗଣିତ ଓ ଭାଷା ଶିକ୍ଷା କ୍ଷେତ୍ରରେ ଔପଚାରିକ ସ୍କୁଲ ସହିତ ସମାନତା ।

(୪) ଅନୌପଚାରିକ ଶିକ୍ଷା ସହିତ ଅନ୍ୟ ଉତ୍ପାଦନଶୀଳ କାର୍ଯ୍ୟ ।

(୫) ବାଳିକାମାନେ ଓ ତଫସିଲ୍ ଭୁକ୍ତ ଜାତି ଓ ଉପଜାତି ପିଲାମାନେ ଔପଚାରିକ ସ୍କୁଲରେ ପାଉଥିବା ସମସ୍ତ ସୁବିଧା ଏଠାରେ ମଧ୍ୟ ଉପଲବ୍ଧ ହେବ ।

(୬) ଔପଚାରିକ ଓ ଅନୌପଚାରିକ ଶିକ୍ଷା ମଧ୍ୟରେ ପିଲାମାନେ ସୁବିଧା ଅନୁସାରେ ଅଦଳ ବଦଳ କରି ଅଧ୍ୟୟନ କରି ପାରିବେ । (Inter Channel Mobility) ।

ଅନୌପଚାରିକ ଶିକ୍ଷା କ୍ଷେତ୍ରରେ ସରକାର ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ପରିଚାଳନା ଦାୟିତ୍ୱ ବହନ କରିବେ ଓ ସ୍ଥାନୀୟ ଲୋକଙ୍କର ଅଂଶ ଗ୍ରହଣ ଉପରେ ଗୁରୁତ୍ୱ ଦେବେ ।

ଜାତୀୟ ଶିକ୍ଷାନୀତିର ରୂପାୟନ ପାଇଁ ଶତକଡା ୮୫ ଭାଗ ଅର୍ଥ କେନ୍ଦ୍ର ସରକାର ଯୋଗାଇ ଦେଇଛନ୍ତି ଓ ପରିଚାଳନା ପାଇଁ ଆବଶ୍ୟକୀୟ ପରାମର୍ଶ ମଧ୍ୟ ଦେଇଛନ୍ତି। ।

ଏ ସମସ୍ତ ସୁବିଧା ସତ୍ତ୍ୱେ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ଆଶା କରାଯାଉଥିବା ଉନ୍ନତି ସମ୍ଭବ ହୋଇ ପାରି ନାହିଁ । ନୀତି ଦୃଷ୍ଟିରୁ ସବୁ ଠିକ୍ ଥିଲେ ମଧ ଆବଶ୍ୟକତା ଅନୁଯାୟୀ ଅର୍ଥ ଯୋଗାଇ ଦିଆ ଯାଇଥିଲେ ମଧ୍ୟ ଯୋଜନା କାର୍ଯ୍ୟକାରୀ କରିବାରେ ଅବହେଳା, ଅନାନ୍ତରିକତା ଓ ଦୁର୍ନୀତି ବିଫଳତାର ମୂଳ କାରଣ । ନିୟମିତ ପରିଦର୍ଶନ ନ ହେବାରୁ, ସବ୍‌ଇନିସ୍ପେକ୍ଟର ମାନେ C.D.Block ଅଧୀନରେ ରହିବାରୁ, ସ୍ଥାନୀୟ ଲୋକଙ୍କ ଆଗ୍ରହ ଅଭାବରୁ ପ୍ରାଥମିକ ଶିକ୍ଷାର ଗୁଣାତ୍ମକ ବିକାଶ ହୋଇ ପାରିଲା ନାହିଁ । ଗ୍ରାମ ଶିକ୍ଷା କମିଟି ଗଠନ ପାଇଁ ଯେଉଁ ନିୟମ ପ୍ରସ୍ତୁତ ହୋଇଛି ତାହା ଠିକ୍ ନ ଥିବାରୁ କାର୍ଯ୍ୟକାରୀ ହୋଇ ପାରିଲା ନାହିଁ । ଅନୌପଚାରିକ ଶିକ୍ଷା ସଂପୂର୍ଣ୍ଣ ରୂପେ ଲୋପ ପାଇ ତା ସ୍ଥାନରେ (E.G.S) ନିଶ୍ଚିତ ଶିକ୍ଷା ଯୋଜନା କାର୍ଯ୍ୟକାରୀ ହେଲା । ତାହା ମଧ୍ୟ କାର୍ଯ୍ୟ କଲା ନାହିଁ । ଅନାବଶ୍ୟକ ସ୍ଥାନରେ (E.G.S) ଖୋଲିଲା। ଆବଶ୍ୟକ ସ୍ଥାନରେ ନାହିଁ । ଏଇ ଯୋଜନାରେ ପ୍ରଚୁର ଅର୍ଥ ନଷ୍ଟ ହେଲା ।

ଏ ସବୁର ପରିଣତି ସ୍ୱରୂପ ଶହଶହ ସରସ୍ୱତୀ ବିଦ୍ୟାମନ୍ଦିର, ଇଂରାଜି ମାଧ୍ୟମ ସ୍କୁଲ ଖୋଲି ସେଠାରେ ଧନୀକ ଶ୍ରେଣୀୟ ପିଲାମାନଙ୍କର ପାଠ ପଢ଼ା ସୁବିଧା କରାଗଲା। ଗରିବ ପିଲାମାନେ ସରକାରୀ ସ୍କୁଲରେ ପଡି ରହି ଶିକ୍ଷାରୁ ବଞ୍ଚିତ ହେଲେ ।

## ଉଚ୍ଚ ପ୍ରାଥମିକ ଶିକ୍ଷା

୧୧ ରୁ ୧୪ ବର୍ଷ ପିଲାଙ୍କ ପାଇଁ ଜାତୀୟ ଶିକ୍ଷାନୀତି, ୧୯୮୬ରେ ସ୍ୱତନ୍ତ୍ର ବିଚାର କରାଯାଇଛି । ଓଡିଶାରେ ଏହି ଶିକ୍ଷା ବିଚିତ୍ର ସ୍ଥିତିରେ ରହି ଯାଇଛି । ୧୦+୨+୩ ଶିକ୍ଷା ବ୍ୟବସ୍ଥା ନୀତିଗତ ଭାବରେ ଗୃହୀତ ହୋଇଛି । ସର୍ବଭାରତୀୟ ଶିକ୍ଷା ବ୍ୟବସ୍ଥାରେ ୫+୩+୨ ଅର୍ଥାତ୍ ପ୍ରାଥମିକ ଶିକ୍ଷା ୫ ବର୍ଷ, ଉଚ୍ଚ ପ୍ରାଥମିକ ୩ ବର୍ଷ ଓ ମାଧ୍ୟମିକ ୨ ବର୍ଷ ଭାବେ ପ୍ରଚଳିତ ଥିବା ସ୍ଥଳେ ଓଡିଶାରେ ଏହା ପ୍ରାଥମିକ ୫ ବର୍ଷ, ଉଚ୍ଚ ପ୍ରାଥମିକ ୨ ବର୍ଷ, ଓ ମାଧ୍ୟମିକ ଶିକ୍ଷା ୩ ବର୍ଷ । ଏ ବିଚିତ୍ର ସ୍ଥିତି ଏ ପର୍ଯ୍ୟନ୍ତ ଚାଲୁ ରହିଛି । ଏବେ ଅଷ୍ଟମ ଶ୍ରେଣୀକୁ ମାଧ୍ୟମିକ ସ୍ତରରୁ ବିଚ୍ଛିନ୍ନ କରି ଉଚ୍ଚ ପ୍ରାଥମିକ ସ୍କୁଲରେ ଯୋଡିବାର ବ୍ୟବସ୍ଥା

ଆରମ୍ଭ ହୋଇଛି । ମୌଳିକ ଶିକ୍ଷାରେ ସିନିୟର ବେସିକ୍ ସ୍କୁଲରେ ପ୍ରଥମ ଶ୍ରେଣୀଠାରୁ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ରହିଥିଲା ଓ ପଢାପଢି ପରୀକ୍ଷା ଆଦି ଠିକ୍ ଚାଲିଥିଲା । ହଠାତ୍ ସରକାର ସିନିୟର ବେସିକ୍ ସ୍କୁଲରୁ ଅଷ୍ଟମ ଶ୍ରେଣୀ ଉଠାଇ ଦେବାର ଆଇନ୍ କରିଦେଲେ । ବର୍ତ୍ତମାନ ପୁଣି ଅଷ୍ଟମ ଶ୍ରେଣୀ ଉଚ୍ଚ ପ୍ରାଥମିକ ସ୍କୁଲରେ ଯୋଡିବାର ବ୍ୟବସ୍ଥା କରୁଛନ୍ତି । ନୀତି ପରିବର୍ତ୍ତନରେ ବିଚାରହୀନତା ଶିକ୍ଷାର ଅବନତି ପାଇଁ ଦାୟୀ, ସିନିୟର ବେସିକ୍ ସ୍କୁଲରୁ ଅଷ୍ଟମ ଶ୍ରେଣୀ ଉଠାଇ ଦେଇ ପୁଣି ଯୋଡିବା ନିଷ୍ପତ୍ତି ଗୋଟିଏ ଅବ୍ୟବସ୍ଥିତ ଚିତ୍ତର ଉଦାହରଣ ।

Operation Black Board ବା କଳାପଟା ଯୋଜନାରେ ପ୍ରଥମ ଅବସ୍ଥାରେ ଉଚ୍ଚ ପ୍ରାଥମିକ ସ୍କୁଲ ଗୁଡିକୁ ଅନ୍ତର୍ଭୁକ୍ତ କରାଗଲା ନାହିଁ । ପରବର୍ତ୍ତୀ ଅବସ୍ଥାରେ ବିଳମ୍ବରେ କରାଗଲା । ଡି.ଆଇ. ମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏହି ସ୍କୁଲ ଗୁଡିକ ରହିଛି । ସେମାନଙ୍କର ଏହି ସ୍କୁଲ ଗୁଡିକୁ ପରିଦର୍ଶନ କରିବାକୁ ସମୟ ନାହିଁ । ଏ ସ୍କୁଲଗୁଡିକର ଭଲ ମନ୍ଦ, ଅଭାବ ଅସୁବିଧା ବୁଝିବାକୁ କେହି ନାହିଁ । ଗ୍ରାମ ଶିକ୍ଷା କମିଟି ଗଠନ କରି ପରିଚାଳନା ଦାୟିତ୍ୱ ତାଙ୍କୁ ଦେବାକୁ ସରକାର ନୀତିଗତ ନିଷ୍ପତ୍ତି ନେଇଛନ୍ତି । ତାହା ସବୁଠାରେ କାର୍ଯ୍ୟକାରୀ ହୋଇ ପାରି ନାହିଁ । ଇତି ମଧ୍ୟରେ ୮ ବର୍ଷ ବିତି ଗଲାଣି । ପରିଚାଳନା ଦୃଷ୍ଟିରୁ ସେମାନେ ଏକ ପ୍ରକାର ସ୍ୱାଧୀନ । ଯାହା ଜଣା ଯାଉଛି ସେମାନଙ୍କ ଉପରେ ଶାସନଗତ ଅଙ୍କୁଶ ନାହିଁ ।

ଷଷ୍ଠ ଓ ସପ୍ତମ ଶ୍ରେଣୀ ଦୁଇଟିକୁ ନେଇ କେଉଁଠି ସ୍ୱତନ୍ତ୍ର ମି.ଇ. ସ୍କୁଲ । କେଉଁଠି ପ୍ରାଥମିକ ଶ୍ରେଣୀ ସହିତ ମିଶି ରହିଛନ୍ତି ଯେପରି ଉନ୍ନୀତ ମଧ୍ୟ ଇଂରାଜି ସ୍କୁଲରେ । କେଉଁଠି ହାଇସ୍କୁଲ ସହିତ ମିଶି ଷଷ୍ଠ ସପ୍ତମ ଶ୍ରେଣୀ ରହିଛି । ଉନ୍ନୀତ ମଧ୍ୟ ଇଂରାଜି ସ୍କୁଲ ଗୁଡିକ ସରକାରୀ ନୁହନ୍ତି କି ବେସରକାରୀ ନୁହନ୍ତି । ତାଙ୍କ ପାଇଁ ସ୍ୱତନ୍ତ୍ର ଆଇନ୍ ଥିଲା । ଏବେ ସମୀକରଣ ହୋଇଛି କି ନାହିଁ ଜଣା ଯାଉ ନାହିଁ । ଏ ସ୍କୁଲଗୁଡିକ ଆଉ ମଧ ଇଂରାଜି ସ୍କୁଲ ନୁହନ୍ତି -ଉଚ୍ଚ ପ୍ରାଥମିକ ସ୍କୁଲ ନାମରେ ଅଭିହିତ ହେଉଛନ୍ତି ।

୧୧ ରୁ ୧୪ ବର୍ଷ ବୟସ ପିଲାମାନଙ୍କ ଜୀବନରେ ସନ୍ଧିସ୍ଥଳ । କାରଣ ଏହି ବୟସରେ ପିଲାମାନେ ବାଳକତ୍ୱ ଛାଡି ତାରୁଣ୍ୟରେ (Adolescence) ପ୍ରବେଶ କରନ୍ତି । ଏ ସମୟରେ ସେମାନଙ୍କ ଜୀବନରେ ଅସ୍ଥିରତା, ନୂଆ ଅନୁଭୂତି ପାଇଁ ଆସ୍ପୃହା , ନୂଆ ସ୍ୱପ୍ନ ଦେଖିବା ସହିତ ନିଜର ସୀମିତ ଶକ୍ତି ଯୋଗୁଁ

ସେମାନଙ୍କୁ ବିଚିତ୍ର ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡେ । ଏ ସମୟରେ ସେମାନଙ୍କର ଶୃଙ୍ଖଳିତ ଜୀବନ ଓ ଅନୁଶାସନ ଆବଶ୍ୟକ । ଅଥଚ ଆମ ରାଜ୍ୟରେ ଏହି ସ୍ତରର ଶିକ୍ଷା ଅବହେଳିତ, ଦିଶାହୀନ ଓ ବିଶୃଙ୍ଖଳ । ଏ ବିଷୟରେ ଗଭୀର ଅନୁଧ୍ୟାନ କରି ଉଚ୍ଚ ପ୍ରାଥମିକ ଶିକ୍ଷାକୁ ଏକ ନୂତନ ରୂପରେଖ ଦେଇ ଏହାର ପାଠ୍ୟକ୍ରମ ଓ ପାଠ୍ୟ ପୁସ୍ତକ ଉପରେ ଅଧିକ ଧ୍ୟାନ ଦିଆଯିବା ଆବଶ୍ୟକ ।

## ଉଚ୍ଚ ପ୍ରାଥମିକ ଶିକ୍ଷା ପାଠ୍ୟକ୍ରମ

ମଧ୍ୟ ଇଂରାଜି ସ୍କୁଲ ଶିକ୍ଷା ସ୍ତର କେବେ ସ୍ୱାଧୀନ ଓ ସ୍ୱତନ୍ତ୍ର ଶିକ୍ଷା ଭାବରେ ବିବେଚିତ ହୋଇନାହିଁ। କେତେବେଳେ ଏହାକୁ ନିମ୍ନ ମାଧ୍ୟମିକ (Lower Secondary) କେତେବେଳେ ଉଚ୍ଚ ପ୍ରାଥମିକ ସ୍ତର ଭାବରେ ବିବେଚିତ ହୋଇଛି । ତେଣୁ ଏହାର ପାଠ୍ୟକ୍ରମକୁ ସ୍ୱତନ୍ତ୍ର ମର୍ଯ୍ୟାଦା ଦିଆଯାଇ ନାହିଁ । ମାଧ୍ୟମିକ ଶିକ୍ଷା ପାଇଁ ଏହାକୁ ପୋଷକ ଭାବରେ ଗ୍ରହଣ କରାଯାଇଛି ।

ସ୍ୱାଧୀନତା ପ୍ରାପ୍ତି ପରେ ୧୯୪୭-୧୯୪୮ ବେଳକୁ ପରୀକ୍ଷା ମୂଳକ ଭାବରେ ହିନ୍ଦୀ ଶିକ୍ଷା ମଧ ଇଂରାଜି ସ୍କୁଲରେ ପ୍ରବର୍ତ୍ତନ କରାଗଲା ଓ କୃଷି, କାଠକାମ, ବେତ କାମ, ସିଲେଇ ଓ କାଗଜ ତିଆରି ଆଦି ଧନ୍ଦା ମୂଳକ ବିଷୟ ୨୬ ଗୋଟି ମଧ ଇଂରାଜି ସ୍କୁଲରେ ପ୍ରବର୍ତ୍ତିତ ହେଲା । ୧୯୪୯-୧୯୫୦ ବେଳକୁ ହିନ୍ଦୀ ଶିକ୍ଷାକୁ ବାଧ୍ୟତା ମୂଳକ କରାଗଲା । ୧୯୫୦-୧୯୫୧ ମସିହାରେ ମୌଳିକ ଶିକ୍ଷାର କିଛି ଆଙ୍ଗିକ ଓ ୧୯୫୭-୧୯୫୮ ମସିହାରେ ହସ୍ତଶିଳ୍ପ ୬୦ ଗୋଟି ମଧ ଇଂରାଜି ସ୍କୁଲରେ ପ୍ରବର୍ତ୍ତିତ ହେଲା । ଓଡିଶା ମାଧ୍ୟମିକ ଶିକ୍ଷା ବୋର୍ଡ ୧୯୬୦-୧୯୬୧ରେ ମଧ ଇଂରାଜି ସ୍କୁଲ ପାଇଁ ପାଠ୍ୟକ୍ରମ ପ୍ରସ୍ତୁତ କରି ପ୍ରଚଳନ କଲେ । ୧୯୬୯-୧୯୭୦ ମସିହାରୁ ମାଧ୍ୟମିକ ଶିକ୍ଷା ବୋର୍ଡ ହାତରୁ ଓଡିଶା ସରକାରଙ୍କ ଶିକ୍ଷା ବିଭାଗ ମଧ ଇଂରାଜି ସ୍କୁଲ ପାଇଁ ପାଠ୍ୟକ୍ରମ ପ୍ରସ୍ତୁତି କ୍ଷମତା ନିଜ ହାତକୁ ନେଇ ଗଲେ । ସେହି ବର୍ଷ ଷଷ୍ଠ ଶ୍ରେଣୀ ପାଇଁ ଓ ତା ପର ବର୍ଷ ସପ୍ତମ ଶ୍ରେଣୀ ପାଇଁ ପାଠ୍ୟକ୍ରମ ପ୍ରସ୍ତୁତ କରି ପ୍ରଚଳନ କଲେ । ପ୍ରଚଳିତ ପାଠ୍ୟକ୍ରମର ସ୍ୱରୂପ ଏହିପରି :-

## ୧୯୬୯ ରେ ପ୍ରବର୍ତ୍ତିତ ମଧ ଇଂରାଜୀ ସ୍କୁଲ ପାଠ୍ୟକ୍ରମ

| କ୍ରମିକ ନଂ | ବିଷୟ | ପୂର୍ଣ୍ଣସଂଖ୍ୟା |
|---|---|---|
| ୧. | ଆଧୁନିକ ଭାରତୀୟ ଭାଷା ( ଓଡିଆ, ବଙ୍ଗଳା, ହିନ୍ଦି, ଉର୍ଦ୍ଦୁ, ତେଲୁଗୁ ଇତ୍ୟଦି) | ୧୦୦ |
| ୨. | ସଂସ୍କୃତ ୫୦ | |
| ୩. | ଇଂରାଜି ୧୦୦ | |
| ୪. | ଗଣିତ (ଗଣିତ ୭୫ ଓ ଜ୍ୟାମିତି - ୨୫) | ୧୦୦ |
| ୫. | ସାଧାରଣ ବିଜ୍ଞାନ ୧୦୦ | |
| ୬. | ଇତିହାସ ଓ ନଗର ବିଜ୍ଞାନ (୪୦+ ୧୦) | ୫୦ |
| ୭. | ଭୂଗୋଳ ୫୦ | |
| ୮ | ଚିତ୍ରାଙ୍କନ ଓ ସୂକ୍ଷ୍ମକଳା | ୫୦ |
| ୯. | କୃଷି ବିଜ୍ଞାନ ବା ଅନ୍ୟ ଶିଳ୍ପ | ୫୦ |
| ୧୦ | ଶାରୀରିକ ଶିକ୍ଷା ( ବାଧ୍ୟତାମୂଳକ କିନ୍ତୁ ପରୀକ୍ଷା ନାହିଁ) | ୫୦ |
| | ମୋଟ | ୬୫୦ |

୧୯୬୯-୧୯୭୦ ମସିହାରେ Press, Preparation & Publication (PPP) କମିଟି ପ୍ରଥମ ଶ୍ରେଣୀ ଠାରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ସମସ୍ତ ଶ୍ରେଣୀ ପାଇଁ ଜାତୀୟକରଣ ପାଠ୍ୟ ପୁସ୍ତକ ରଚନା କରିବାର ଦାୟିତ୍ୱ ନେଇଥିଲେ । ଏହି କମିଟି ଜାତୀୟ କବି ବୀର କିଶୋର ଦାସ ଓ ପ୍ରଖ୍ୟାତ କବି ଅନନ୍ତ ଚରଣ ପଟ୍ଟନାୟକଙ୍କ ନେତୃତ୍ୱରେ ଗୁଣାତ୍ମକ ଓ ଉଚ୍ଚମାନର ପାଠ୍ୟପୁସ୍ତକ ପ୍ରସ୍ତୁତ କରିଥିଲେ। ୧୯୭୬ ମସିହା ଠାରୁ ମଧ ଇଂରାଜି ସ୍କୁଲ ପାଇଁ ପାଠ୍ୟକ୍ରମ ଓ ପାଠ୍ୟ ପୁସ୍ତକ ପ୍ରସ୍ତୁତି ଦାୟିତ୍ୱ ପୁଣି ମାଧମିକ ଶିକ୍ଷା ବୋର୍ଡକୁ ଦିଆଗଲା ।

ଏକ ସାମଗ୍ରିକ ଦୃଷ୍ଟିପାତ କଲେ ଜଣାଯିବ ଯେ ମଧ ଇଂରାଜି ସ୍କୁଲ ପାଠ୍ୟକ୍ରମ ଓ ପାଠ୍ୟ ପୁଂସ୍ତକ ପ୍ରସ୍ତୁତି ଦାୟିତ୍ୱ ବିଭିନ୍ନ ସମୟରେ ବିଭିନ୍ନ ଅନୁଷ୍ଠାନକୁ ଦିଆଯାଇ ତାର ଧାରାବାହିକତା ନଷ୍ଟ କରା ଯାଇଛି । ୧୯୬୯ରେ ସରକାରଙ୍କ ଦ୍ୱାରା ପ୍ରସ୍ତୁତ ପାଠ୍ୟକ୍ରମ ଓ ପାଠ୍ୟପୁସ୍ତକର ଏକ ବିଶେଷତ୍ୱ ଥିଲା, ତାହା ହେଉଛି

କୃଷି ବିଜ୍ଞାନ ଓ ଅନ୍ୟ ଶିଳ୍ପ ଶିକ୍ଷା ଓ ସରଳ ଲିଖିତ ମୌଖିକ ସଂସ୍କୃତ ଶିକ୍ଷା । ଏ ଦୁଇଟି ବିଶେଷତ୍ୱକୁ ମାଧ୍ୟମିକ ଶିକ୍ଷା ବୋର୍ଡ ରକ୍ଷା ନ କରି ଅବିଚାରିତ ଭାବରେ ପ୍ରତ୍ୟାହାର କରିନେଲେ ।

୧୯୯୦ ମସିହାରେ ପ୍ରଥମ ଶ୍ରେଣୀଠାରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ପାଠ୍ୟକ୍ରମ ଓ ପାଠ୍ୟପୁସ୍ତକ ପ୍ରସ୍ତୁତି ଦାୟିତ୍ୱ SCERT କୁ ଦିଆଗଲା । SCERT ଯେଉଁ ପାଠ୍ୟକ୍ରମ ମଧ୍ୟ ଇଂରାଜି ବା ଉଚ୍ଚ ପ୍ରାଥମିକ ସ୍କୁଲ ପାଇଁ ପ୍ରସ୍ତୁତ କଲେ ତାହା ନିମ୍ନ ପ୍ରକାର ଥିଲା ।

## ୧୯୯୧ ରେ ପ୍ରବର୍ତ୍ତିତ ମଧ୍ୟ ଇଂରାଜି ସ୍କୁଲ ପାଠ୍ୟକ୍ରମ

| କ୍ରମିକ ନଂ ସଂଖ୍ୟା | ବିଷୟ | ପୂର୍ଣ୍ଣସଂଖ୍ୟା | ସମୟ (%) | ସପ୍ତାହକୁ ପରିଅଡ଼ |
|---|---|---|---|---|
| ୧ | ଓଡ଼ିଆ | ୧୦୦ | ୧୪ | ୬ |
| ୨ | ଇଂରାଜି | ୧୦୦ | ୧୨ | ୫ |
| ୩ | ହିନ୍ଦୀ | ୫୦ | ୬ | ୩ |
| ୪ | ଗଣିତ | ୧୦୦ | ୧୨ | ୫ |
| ୫ | ବିଜ୍ଞାନ | ୧୦୦ | ୧୨ | ୫ |
| ୬ | ସାମାଜିକ ବିଜ୍ଞାନ | ୧୦୦ | ୧୨ | ୫ |
| ୭ | କର୍ମାନୁଭୂତି | ୧୦୦ | ୧୦ | ୪ |
| ୮ | ସ୍ୱାସ୍ଥ୍ୟ ଓ ଶାରୀରିକ ଶିକ୍ଷା | ୭୫ | ୭ | ୩ |
| ୯ | କଳାଶିକ୍ଷା | ୭୫ | ୭ | ୩ |

NCERT ଦ୍ୱାରା ପ୍ରସ୍ତୁତ ପାଠ୍ୟକ୍ରମ ଆଧାରରେ ଏହି ପାଠ୍ୟକ୍ରମ ପ୍ରସ୍ତୁତ କରାଯାଇଛି । NCERT ଦେଇଥିବା ମାର୍ଗଦର୍ଶନ ସଂପୂର୍ଣ୍ଣ ଭାବରେ ଅନୁସରଣ କରାଯାଇ ଏହି ପାଠ୍ୟକ୍ରମ ପ୍ରସ୍ତୁତ ଓ ପ୍ରଚଳିତ ହୋଇଛି । ଏଥିରେ ଥିବା କର୍ମାନୁଭୂତି, କଳାଶିକ୍ଷା ଓ ସ୍ୱାସ୍ଥ୍ୟ ଓ ଶାରୀରିକ ଶିକ୍ଷା କୌଣସି ସ୍କୁଲରେ କାର୍ଯ୍ୟକାରୀ ହେଉ ନାହିଁ । ଏହା ପରିଦର୍ଶକ ମାନେ ଜାଣି ମଧ୍ୟ କୌଣସି କାର୍ଯ୍ୟାନୁଷ୍ଠାନ କରି ନାହାନ୍ତି କି ତାଙ୍କ ପରିଦର୍ଶନ ମନ୍ତବ୍ୟରେ ଏ ବିଷୟରେ କିଛି ଉଲ୍ଲେଖ କରନ୍ତି ନାହିଁ । କୌଣସି ମତେ ଉଚ୍ଚ ପ୍ରାଥମିକ ଶିକ୍ଷା ଚାଲିଛି । ଗୁଣାତ୍ମକ ଶିକ୍ଷା କଥା କାହିଁକି କହିବା ।

## ୫.୮ ମାଧ୍ୟମିକ ଶିକ୍ଷା

ମାଧ୍ୟମିକ ଶିକ୍ଷା ଉପନିର୍ଦ୍ଦେଶକ ଭାବରେ ମୁଁ ୦୩.୦୬.୧୯୮୭ ତାରିଖରେ ଯୋଗ ଦେଲି । ସେତେବେଳେ ୪୧୦୦ ହାଇସ୍କୁଲ୍ ମଧ୍ୟରୁ ୫୩୫ ଟି ସରକାରୀ ସ୍କୁଲ ଓ ବାକି ୩୫୬୫ ଟି ବେସରକାରୀ ସ୍କୁଲ ଥିଲା । କେବଳ ସଂଖ୍ୟା ଦୃଷ୍ଟିରୁ ନୁହେଁ ବେସରକାରୀ ସ୍କୁଲର ସମସ୍ୟା ବେଶୀ ଓ ବହୁମୁଖୀ । ରେଣୁପ୍ରଭା ମହାନ୍ତି ସରକାରୀ ସ୍କୁଲର ଓ ରଙ୍ଗଲାଲ୍ ଅଗରଓ୍ୱାଲ୍ ହିନ୍ଦୀ ସଂସ୍କୃତ ସ୍କୁଲ ଉପ ନିର୍ଦ୍ଦେଶକ ଥିଲେ । ରେଣୁପ୍ରଭା ମହାନ୍ତି ସ୍କୁଲରେ କାମ କରି ଆସିଥିବା ସ୍ଥଳେ ରଙ୍ଗଲାଲ ବାବୁ ସିଧା କଲେଜରୁ ଆସିଥିଲେ । ସ୍କୁଲ ଶିକ୍ଷା ପ୍ରଶାସନ ବିଷୟରେ ତାଙ୍କର ଅଭିଜ୍ଞତା ନ ଥିଲା । ତେଣୁ ତାଙ୍କ କାମ ବେଳେବେଳେ ମୋତେ କରିବାକୁ ପଡୁଥିଲା ।

ବେସରକାରୀ ମାଧ୍ୟମିକ ଶିକ୍ଷା ପ୍ରଶାସନରେ ସେତେବେଳେ ପ୍ରତ୍ୟେକ ହାଇସ୍କୁଲ ଗୋଟିଏ ଗୋଟିଏ ପ୍ରଶାସନିକ ଏକକ ଥିଲା । ସ୍କୁଲର ପ୍ରଧାନ ଶିକ୍ଷକ ଅବସର ନେଲେ ବା ବହିଷ୍କୃତ ହେଲେ ସ୍କୁଲର ବରିଷ୍ଠତମ ସ୍ନାତକ ଶିକ୍ଷକ ଯଦି ତାଲିମ୍ ପ୍ରାପ୍ତ ହୋଇଥାନ୍ତି ଓ ସାତ ବର୍ଷ କାର୍ଯ୍ୟକାଳ ସଂପୂର୍ଣ୍ଣ କରିଥାନ୍ତି, ସେ ପ୍ରଧାନ ଶିକ୍ଷକ ଭାବେ ପଦୋନ୍ନତି ପାଉଥିଲେ । ବେସରକାରୀ ମାଧ୍ୟମିକ ସ୍କୁଲ୍ ପ୍ରଶାସନରେ କ୍ରମ ପରିବର୍ତ୍ତନ ମଧ୍ୟରେ ଏ ଧାରା ବହୁଦିନ ପର୍ଯ୍ୟନ୍ତ ଚାଲିଲା । ୧୯୬୯ ଶିକ୍ଷା ଆଇନ୍ ଅନୁସାରେ ଯେଉଁ ନିୟମ ତିଆରି ହୋଇଥିଲା ଶିକ୍ଷକମାନଙ୍କର ପଦୋନ୍ନତି ଆଇନ୍ ସେହି ଆଇନ ପରିସର ମଧ୍ୟରେ ଅନ୍ତର୍ଭୁକ୍ତ ।

୦୩.୦୬.୧୯୮୮ ତାରିଖରେ ସରକାର ଏକ ବିଜ୍ଞପ୍ତି ଜାରିକଲେ ଯେ ଏଣିକି ବେସରକାରୀ ମାଧ୍ୟମିକ ସ୍କୁଲ ଶିକ୍ଷକମାନଙ୍କର Common Cadre କରାଯିବ ଓ ରାଜ୍ୟର ତାଲିମ୍ ପ୍ରାପ୍ତ ସ୍ନାତକ ଶିକ୍ଷକମାନଙ୍କ ବରିଷ୍ଠତା ଭିତ୍ତିରେ ପ୍ରଧାନ ଶିକ୍ଷକ ପଦକୁ ପଦୋନ୍ନତି ଦିଆଯିବ । ଏ ବିଜ୍ଞପ୍ତି ପ୍ରକାଶ ପାଇଲା ପରେ ପୂର୍ବରୁ ପ୍ରଚଳିତ ପଦୋନ୍ନତି ନିୟମ ମନକୁମନ ଅକାମୀ ହୋଇଯିବା କଥା । ତେଣୁ ମୁଁ ସ୍କୁଲର ବରିଷ୍ଠତା ଭିତ୍ତିରେ ପଦୋନ୍ନତି ଦେବା ପ୍ରକ୍ରିୟା ବନ୍ଦ କରିଦେଲି । କିନ୍ତୁ ମୁଁ ମାଧ୍ୟମିକ ଶିକ୍ଷା ଉପନିର୍ଦ୍ଦେଶକ ପଦରୁ ବଦଳି ହୋଇଗଲା ପରେ ବହୁ ସଂଖ୍ୟାରେ ଶିକ୍ଷକ ବିଭିନ୍ନ ମାଧ୍ୟମରେ ପଦୋନ୍ନତି ପାଇଗଲେ । ସେତେବେଳେ Common Cadre ପାଇଁ ଚେଷ୍ଟା କରିଥିଲେ ହୋଇ ପାରିଥାନ୍ତା । ତାହା ନ କରିବାରୁ ଅନୁଷ୍ଠାନ ବରିଷ୍ଠତା ଭିତ୍ତିରେ ପଦୋନ୍ନତି ଦେବା ପ୍ରକ୍ରିୟା ଚାଲୁ ରହିଲା । ସେ ଭିତରେ ଅନେକ ସହକାରୀ ଶିକ୍ଷକ ସତ ମିଛ ରେକର୍ଡ ଯୋଗାଡ କରି ପଦୋନ୍ନତି ପାଇଗଲେ ।

## ମାଧ୍ୟମିକ ଶିକ୍ଷା ବୋର୍ଡ

ମାଧ୍ୟମିକ ଶିକ୍ଷା ଉପନିର୍ଦ୍ଦେଶକ ମାଧ୍ୟମିକ ଶିକ୍ଷା ବୋର୍ଡର ଜଣେ ସଦସ୍ୟ ହୋଇଥିବାରୁ ମୋତେ ମାଧ୍ୟମିକ ଶିକ୍ଷା ବୋର୍ଡର ସଦସ୍ୟ ଭାବରେ ନିଆଗଲା ।



ବାଣପୁର ଗୋଦାବରୀଶ ବିଦ୍ୟାପୀଠର ବିଜ୍ଞାନ ପ୍ରଦର୍ଶନୀ ଲେଖକ ଉଦ୍‌ଘାଟନ କରୁଛନ୍ତି ( ୧୯୮୭)।

ବୋର୍ଡରେ ମୋର ପୂର୍ବ ଅଭିଜ୍ଞତା ଥିଲା । ମାଧ୍ୟମିକ ଶିକ୍ଷା ବୋର୍ଡ ସାଧାରଣ ସଭା (General Body Meeting) ରେ ଯୋଗଦେବା ପାଇଁ ମୁଁ ଗଲି । ସେଠାର କର୍ମଚାରୀମାନେ ମୋତେ Executive Committee କୁ ଯିବାକୁ ଅନୁରୋଧ କଲେ । କିନ୍ତୁ ମୁଁ ମନାକଲି । କାରଣ ଡି.ପି.ଆଇ ଅଫିସରେ ଏତେ କାମ ଯେ Executive Committee ସଦସ୍ୟ ଭାବରେ ଦାୟିତ୍ୱ ମୁଣ୍ଡାଇବା ସମ୍ଭବ ନ ଥିଲା । କିନ୍ତୁ ପରିସ୍ଥିତି ଏପରି ହେଲା ଯେ ମୁଁ ସେଠାକୁ ଯିବାକୁ ବାଧ୍ୟ ହେଲି ।

ସାଧାରଣ ସଭା (General Body Meeting) ରେ ବଜେଟ୍ ଉପସ୍ଥାପନ ପରେ ବିତର୍କ ଆରମ୍ଭ ହେଲା । ମୁଁ କହିଲି, "ମାଧ୍ୟମିକ ଶିକ୍ଷା ବୋର୍ଡର ବାର୍ଷିକ ସାଧାରଣ ବଜେଟ୍ ରେ ଶିକ୍ଷାର ଉନ୍ନତି ପାଇଁ କିଛି ପ୍ରସ୍ତାବ ନାହିଁ । ଯାହା ସବୁ ପ୍ରସ୍ତାବ ରହିଛି, ସେ ସବୁ ପ୍ରଶାସନର ଉନ୍ନତି ପାଇଁ । ପ୍ରସ୍ତାବରେ ୧୦୪ ଗୋଟି କିରାଣୀ ପଦ ସୃଷ୍ଟି ପାଇଁ ପ୍ରସ୍ତାବକୁ ମୁଁ ବିରୋଧ କଲି । ଶିକ୍ଷାର ଉନ୍ନତି କଳ୍ପେ ଆଉ ଛଅ ଗୋଟି Subject Expert ପୋଷ୍ଟ ସୃଷ୍ଟି କରିବାକୁ ଓ ୧୨ ଜଣ Expert ଙ୍କ ଭିତରୁ ବରିଷ୍ଠତା ଭିତ୍ତିରେ ଜଣକୁ Class-I କୁ ପଦୋନ୍ନତି ଦେବା

ପାଇଁ ପ୍ରସ୍ତାବ ଦେଲି । ଏହା ଶୁଣି ସଭାପତି ଅର୍ଦ୍ଧେନ୍ଦୁ ଶେଖର ଷଡଙ୍ଗୀ କହିଲେ, "ମାଧ୍ୟମିକ ଶିକ୍ଷା ବଜେଟ୍‌ର ଶତକଡା ୨ ଅଂଶ ମୋତେ ଦିଅନ୍ତୁ , ଆପଣ ଯେଉଁ ପ୍ରସ୍ତାବ ଦେଉଛନ୍ତି ସବୁ ମୁଁ କାର୍ଯ୍ୟକାରୀ କରି ଦେବି ।" ଏହା ଶୁଣି ଚୌଦ୍ୱାର M.L.A ରସାନନ୍ଦ ସାହୁ (ବୋର୍ଡ ସଦସ୍ୟ) କହିଲେ, "ପୂର୍ଣ୍ଣବାବୁଙ୍କର କ'ଣ କ୍ଷମତା ଅଛି ବଜେଟ୍‌ର ଶତକଡା ୨ ଅଂଶ ଆପଣଙ୍କୁ ଦେବାକୁ ? ଆପଣ ଏପରି ଅବାସ୍ତବ ପ୍ରସ୍ତାବ କାହିଁକି ଦେଉଛନ୍ତି ?" ଏହିପରି ଭାବରେ ଯୁକ୍ତିତର୍କ ହେଉହେଉ କଥା ନିହାତି ଗୁରୁତର ଅବସ୍ଥାକୁ ଚାଲିଗଲା । ସମସ୍ତେ ଅଡି ବସିଲେ ବୋର୍ଡର ବାର୍ଷିକ ସାଧାରଣ ସଭାରେ ଆଉ ଆଲୋଚନା କରିବେ ନାହିଁ । ଏକ ପ୍ରକାର ଅଚଳ ଅବସ୍ଥା ସୃଷ୍ଟି ହୋଇଗଲା । ପ୍ରାୟ ଅଧ ଘଣ୍ଟା କାଳ ସମସ୍ତେ ଚୁପ୍‌ଚାପ୍ ବସିଲା ପରେ ସଭାପତି ସଦସ୍ୟ ରୁଦ୍ର ନାରାୟଣ ମହାନ୍ତିଙ୍କ ମାଧ୍ୟମରେ ଆମକୁ ପଚାରିଲେ, "କ'ଣ କଲେ ସଭା କାର୍ଯ୍ୟ ଚାଲିବ?" ଆମେ କହିଲୁ ଯେଉଁ ୧୦୪ କିରାଣି ପୋଷ୍ଟ ସୃଷ୍ଟି କରିବା ପାଇଁ ପ୍ରସ୍ତାବ ଦିଆଯାଇଛି ତାକୁ ଅଧା କରାଯାଉ, ଅର୍ଥାତ୍ ୫୨ଟି ପୋଷ୍ଟ ସୃଷ୍ଟି କରାଯାଉ । ବାକି ୫୨ଟି କିରାଣି ପୋଷ୍ଟ ବଦଳରେ ୬ଟି Subject Expert ପଦ ସୃଷ୍ଟି କରାଯାଉ ଓ ବରିଷ୍ଠତା ଭିତ୍ତିରେ ଜଣେ Subject Expert ଙ୍କୁ Class - I କରାଯାଉ । ସେଥିରେ ସଭାପତି ରାଜି ହୋଇଗଲେ ଓ ସଭାକାର୍ଯ୍ୟ ଚାଲିଲା ।

Executive Committee ରେ ଗୋଟିଏ ସଦସ୍ୟ ପଦ ଖାଲି ଥିଲା । ସେଥିପାଇଁ ସାଧାରଣ ସଭାରେ ନିର୍ବାଚନ ହେବ । ସଭାପତି ସଦସ୍ୟ ପଦ ଖାଲି ଥିବା କଥା ଘୋଷଣା କରି ପ୍ରସ୍ତାବ ମାଗିଲା କ୍ଷଣି ତତ୍‌କ୍ଷଣାତ୍ ରୁଦ୍ର ନାରାୟଣ ମହାନ୍ତି ଠିଆ ହୋଇପଡି ଛତ୍ରପୁର ଡି.ଆଇ.ଙ୍କ ନାମ ପ୍ରସ୍ତାବ ଦେଲେ । ଠିକ୍ ତା ପରେ ପରେ ମୋର ସହପାଠୀ, ବନ୍ଧୁ ତଥା ସହକର୍ମୀ ଦେବେନ୍ଦ୍ର ନାଥ ରାଉତ ମୋ ନାଁ ପ୍ରସ୍ତାବ କଲେ । ଛତ୍ରପୁର ଡି.ଆଇ. ତାଙ୍କ ନାମ ପ୍ରତ୍ୟାହାର କଲେ । ତା ପରେ ସଭାପତି ବାରମ୍ବାର ଅନ୍ୟ ପ୍ରସ୍ତାବ ମାଗିଲେ । ତାଙ୍କ ଉଦ୍ଦେଶ୍ୟ ଥିଲା ଅନ୍ୟ କେହି Executive Committee କୁ ଆସୁ । ସେ ଦିନର ତିକ୍ତ ଅନୁଭୂତି ପରେ ମୋତେ ସେ ଚାହୁଁ ନ ଥିଲେ । କିନ୍ତୁ ଅନ୍ୟ ପ୍ରସ୍ତାବ ଆସିଲା ନାହିଁ । ତେଣୁ ସେ ବାଧ ହୋଇ ମୋତେ ନିର୍ବାଚିତ ବୋଲି ଘୋଷଣା କଲେ । ତା ପରେ ଆଉ କିଛି ଅପ୍ରୀତିକର ଘଟଣା ଘଟି ନାହିଁ।

ଦୀର୍ଘଦିନ ଧରି ସରକାରୀ 'B' type ଶିକ୍ଷକମାନେ 'A'type ସ୍କୁଲ ଶିକ୍ଷକମାନଙ୍କ ସହିତ ସମାନତା ଦାବି କରି ଆସୁଥିଲେ । ସରକାର ସେମାନଙ୍କ କଥା ବିଚାର ନ କରିବାରୁ ସେମାନେ ହାଇକୋର୍ଟରେ ମକଦ୍ଦମା କଲେ ।

ହାଇକୋର୍ଟରେ ସେମାନଙ୍କ ସପକ୍ଷରେ ନିଷ୍ପତ୍ତି ହେବାରୁ ସରକାର ସୁପ୍ରିମ କୋର୍ଟକୁ ଗଲେ । ସୁପ୍ରିମ୍ କୋର୍ଟ ତାଙ୍କ Judgement ରେ ଦୁଇଟି ବିକଳ୍ପ ସରକାରଙ୍କୁ ଦେଲେ :- (୧) B' type ସ୍କୁଲ ଶିକ୍ଷକମାନଙ୍କୁ ସାଧାରଣ Cadre ରେ ସାମିଲ କରି ତାଙ୍କର ବରିଷ୍ଠତା ଭିତ୍ତିରେ ପିଛିଲା ତାରିଖରୁ ପଦୋନ୍ନତି ଦିଆଯାଉ କିମ୍ବା (୨) ସେମାନଙ୍କ ପାଇଁ ସ୍ୱତନ୍ତ୍ର ନୂଆ Cadre ସୃଷ୍ଟିକରି ସେମାନଙ୍କ ସଂଖ୍ୟାର ଅନୁପାତରେ ତାଙ୍କୁ ପଦୋନ୍ନତି ଦିଆଯାଉ । ମୋତେ ଏ ଫାଇଲ୍ ଦିଆଗଲା ପରୀକ୍ଷା କରିବା ପାଇଁ । ତା ପୂର୍ବରୁ ସେମାନଙ୍କୁ ସାଧାରଣ Cadre ରେ ରଖି ପିଛିଲା ତାରିଖରୁ ପଦୋନ୍ନତି ଦେବା ପ୍ରସ୍ତାବ ସପକ୍ଷରେ ମାଧ୍ୟମିକ ଶିକ୍ଷା ନିର୍ଦ୍ଦେଶକ ଚିଠି ଦେଇଥିଲେ। ତାହା କରା ଯାଇଥିଲେ କେତେକ 'B' type ସ୍କୁଲ ଶିକ୍ଷକ ପଦୋନ୍ନତି ପାଇବା ସହିତ କେତେକ କାର୍ଯ୍ୟରତ ଇନିସ୍ପେକ୍ଟରଙ୍କୁ ନିମ୍ନ ସ୍ତରକୁ ଖସାଇବାକୁ ପଡିଥାନ୍ତା । ତେଣୁ ତା ବଦଳରେ ଦ୍ୱିତୀୟ ବିକଳ୍ପ ଗ୍ରହଣ କରି ସେମାନଙ୍କ ସଂଖ୍ୟା ଅନୁପାତରେ ପଦୋନ୍ନତି ଦେଲେ, ସେମାନେ ଉପକୃତ ହେବେ ଓ ତା'ସହିତ କୌଣସି କାର୍ଯ୍ୟରତ ଇନିସ୍ପେକ୍ଟର ତଳ ପାହ୍ୟାକୁ ଖସିବାର ଭୟ ନ ଥିବ । ତାହାହିଁ କାର୍ଯ୍ୟକାରୀ ହେଲା ଓ ସୁପ୍ରିମ କୋର୍ଟକୁ ଏହି ନିଷ୍ପତ୍ତି ବିଷୟ ଜଣାଇ ଦିଆଗଲା ।

## ୫.୯ ପଞ୍ଚମ ସର୍ବଭାରତୀୟ ଶିକ୍ଷା ସର୍ଭେ

ପଞ୍ଚମ ସର୍ବଭାରତୀୟ ଶିକ୍ଷା ସର୍ଭେ ୧୯୮୬ ମସିହାରେ ହେବାର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ସେତେବେଳେ ମୁଁ ପ୍ରାଥମିକ ଶିକ୍ଷା ଉପନିର୍ଦ୍ଦେଶକ ଥାଏ । ଶିକ୍ଷା ସଚିବ ସୁଧାଂଶୁ ମୋହନ ପଟ୍ଟନାୟକ ମୋତେ କହିଲେ "ରାଜ୍ୟ ଶିକ୍ଷା ସର୍ଭେ ଅଫିସର ପଦ ପାଇଁ ସ୍କୁଲ ବିଭାଗରୁ ଗୋଟିଏ ଓ ଉଚ୍ଚଶିକ୍ଷା ବିଭାଗରୁ ଗୋଟିଏ ନାଁ ପ୍ରସ୍ତାବ ଦିଅନ୍ତୁ । ମୁଁ କହିଲି, "ସ୍କୁଲ ବିଭାଗରୁ ଢେଙ୍କାନାଳ ବ୍ରଜନାଥ ବଡଜେନା ହାଇସ୍କୁଲ ପ୍ରଧାନ ଶିକ୍ଷକ ରୁଦ୍ର ନାରାୟଣ ମିଶ୍ର ଓ ଉଚ୍ଚ ଶିକ୍ଷା ବିଭାଗରୁ ଶିକ୍ଷା ଅଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର । ଏ ଦୁଇ ଜଣ ମଧ୍ୟରୁ ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ରଙ୍କୁ ରାଜ୍ୟ ଶିକ୍ଷା ସର୍ଭେ ଅଫିସର ଭାବରେ ନିଯୁକ୍ତ କରାଗଲା । ସର୍ଭେ କାର୍ଯ୍ୟ ଚାଲିଲା । ଯେତେବେଳେ ବ୍ଲକ୍ ଟେବଲ୍ ସମୀକ୍ଷା କରିବା ପ୍ରଶ୍ନ ଉଠିଲା, ସେତେବେଳେ ଶିକ୍ଷା ସଚିବ ମୋତେ କହିଲେ, "ଆପଣ କିଛି Sample ସମୀକ୍ଷା କରି ଦେଖାଇ ଦିଅନ୍ତୁ । ମୁଁ କିଛି ବ୍ଲକ୍ ଟେବ୍‌ଲ୍ ସମୀକ୍ଷା କରି ଦେଖାଇ ଦେଲି । ତା ଦ୍ୱାରା ସମସ୍ୟା ସମାଧାନ ହେଲା ନାହିଁ । ଶିକ୍ଷା ସଚିବ ପୁଣି ମୋତେ କହିଲେ,

ତାଙ୍କ ଅଫିସରମାନଙ୍କୁ ନେଇ କିଛି ବ୍ଲକ୍ ଟେବଲ୍ ସମୀକ୍ଷା କରନ୍ତୁ । ମୁଁ ଛତ୍ରପୁର, ବ୍ରହ୍ମପୁର, ଗୁଣୁପୁର, ପାରଳାଖେମୁଣ୍ଡି, ରାୟଗଡା, କୋରାପୁଟ, ଜୟପୁର, ମାଲକାନଗିରି, ନବରଙ୍ଗପୁର, ଭବାନୀପାଟଣା ଓ ଭଞ୍ଜନଗର ଶିକ୍ଷା ଜିଲ୍ଲାମାନଙ୍କର ସବୁ ବ୍ଲକ୍ ଟେବଲ୍ ସମୀକ୍ଷା କଲି, ତା'ପରେ ନିମାପଡାରେ ରାଜ୍ୟର ସର୍ଭେ ଟେବଲ୍ ତିଆରି ହେଲା ଓ NCERT କୁ ଦିଆଗଲା ।

ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ସର୍ବ ଭାରତୀୟ ଶିକ୍ଷା ସର୍ଭେର ରିପୋର୍ଟ ରାଜ୍ୟ ସ୍ତରରେ ପ୍ରସ୍ତୁତ କରାଯାଇଥିଲା । ଭାରତ ସରକାର ତଥା NCERT ସେ ରିପୋର୍ଟଗୁଡିକୁ ଉଚ୍ଚ ସ୍ତରର ବୋଲି ପ୍ରଶଂସା କରିଛନ୍ତି । ପଞ୍ଚମ ଶିକ୍ଷା ସର୍ଭେ ରିପୋର୍ଟ ପ୍ରସ୍ତୁତ ପାଇଁ ବିଶ୍ଳେଷକ ଓ ଲେଖକ ମଧ୍ୟ ଥିଲେ । କିନ୍ତୁ ରିପୋର୍ଟ ଲେଖା ହୋଇ ପାରିଲା ନାହିଁ । ରିପୋର୍ଟ ଛପା ହେବା ପାଇଁ ଏକ ଲକ୍ଷ ଟଙ୍କା ଡି.ପି.ଆଇ ଅଫିସ ତହବିଲ୍‌ରେ ବହୁଦିନ ପର୍ଯ୍ୟନ୍ତ ପଡି ରହିଲା । କିନ୍ତୁ ଉଦ୍ୟମ ଅଭାବରୁ ରିପୋର୍ଟ ଲେଖା ହୋଇ ପାରିଲା ନାହିଁ । ୧୯୯୦ ମସିହା ପରେ ମୁଁ ଅବସର ନେବାର ବର୍ଷକ ପରେ ଥରେ ଖଣ୍ଡେ ଚିଠି ପାଇଲି ପଞ୍ଚମ ଶିକ୍ଷା ସର୍ଭେ ରିପୋର୍ଟରେ ଗୋଟିଏ ନିର୍ଦ୍ଦିଷ୍ଟ ଅଂଶ ଲେଖିବା ପାଇଁ ଗୋଟିଏ ମିଟିଂ ଡକା ହୋଇଥିଲା । ମୁଁ, ଡକ୍ଟର ଶରତ ଚନ୍ଦ୍ର ଦାସ ଓ ଅନ୍ୟ କେତେକ ଯାହାଙ୍କର ପୂର୍ବ ସର୍ଭେ ରିପୋର୍ଟ ଲେଖିବାର ଅଭିଜ୍ଞତା ଥିଲା ସେ ମିଟିଂରେ ଯୋଗ ଦେଇଥିଲୁ । ସେଠାରେ ସଂପୃକ୍ତ ସର୍ଭେ ଟେବୁଲ୍ ମାଗିଲୁ । ମିଟିଂ ଶେଷ ସୁଦ୍ଧା ଟେବୁଲ୍ ମିଳିଲା ନାହିଁ । ତତ୍‌କାଳୀନ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଡକ୍ଟର ଗିରୀଶ ବାଳା ମହାନ୍ତି ନିଜକୁ ଲେଖକ ମଣ୍ଡଳୀର ସଭାପତି ଭାବେ ଘୋଷଣା କରି ଆମକୁ ବିଦାୟ କରିଦେଲେ । ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଡକ୍ଟର ଗିରୀଶବାଳା ମହାନ୍ତି ଓ ପଞ୍ଚମ ଶିକ୍ଷା ସର୍ଭେ ଅଫିସର ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ରଙ୍କ ଅବହେଳା ଯୋଗୁଁ ପଞ୍ଚମ ଶିକ୍ଷା ସର୍ଭେ ରିପୋର୍ଟ ଲେଖାଯାଇ ପାରିଲା ନାହିଁ । ଓଡିଶାର ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ ଓ ଷଷ୍ଠ ଶିକ୍ଷା ସର୍ଭେ ରିପୋର୍ଟ ଲେଖାଯାଇ ଛପା ଯାଇଛି , କିନ୍ତୁ ପଞ୍ଚମ ଶିକ୍ଷା ସର୍ଭେ ରିପୋର୍ଟ ନାହିଁ । ମୁଁ ଯେତେବେଳେ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଥିଲି, କେବଳ ପ୍ରାଥମିକ ଶିକ୍ଷା ସଂପୃକ୍ତ ଟେବୁଲ୍ ଗୁଡିକ ଗୋଟିଏ ଛୋଟ ପୁସ୍ତିକାକାରରେ ଛପାଇ ଥିବାରୁ ବର୍ତ୍ତମାନ ସେତିକି ମାତ୍ର ପଞ୍ଚମ ଶିକ୍ଷା ସର୍ଭେର ଉପଲବ୍ଧ ତଥ୍ୟ ।

## ୫.୧୦ ଧନ୍ଦାମୂଳକ ଶିକ୍ଷା ପ୍ରବର୍ତ୍ତନ

ଭାରତ ସରକାର ୧୯୮୮ ମସିହା ପ୍ରାଗନ୍ତ ଭାଗରେ ଯୁକ୍ତ ଦୁଇ ସ୍ତରରେ ଧନ୍ଦାମୂଳକ ଶିକ୍ଷା ପ୍ରବର୍ତ୍ତନ ପାଇଁ ଓଡିଶା ସରକାରଙ୍କୁ ଚିଠି ଲେଖିଥିଲେ । ଶିକ୍ଷା ସଚିବ ପ୍ୟାରିମୋହନ ମହାପାତ୍ର ହାଇସ୍କୁଲମାନଙ୍କରୁ ତଥ୍ୟ ମଗାଇ ଧନ୍ଦା ମୂଳକ ଶିକ୍ଷା ପ୍ରବର୍ତ୍ତନ ପାଇଁ ପ୍ରସ୍ତାବ ପ୍ରସ୍ତୁତ କରିବାକୁ ମୋତେ କହିଲେ । ମୁଁ ୬୦ ଗୋଟି ସ୍କୁଲରୁ ତଥ୍ୟ ମଗାଇ ତା ଭିତରୁ ୩୧ ଟି ସ୍କୁଲରେ ଧନ୍ଦାମୂଳକ ଶିକ୍ଷା ପ୍ରବର୍ତ୍ତନ ପାଇଁ ପ୍ରସ୍ତାବ ନେଇ ଦିଲ୍ଲୀ ଗଲି । ଶିକ୍ଷା ବିଭାଗର ସଂପୃକ୍ତ କିରାଣି ଏ ପ୍ରସ୍ତାବ ଦେଖି କହିଲେ, ଏମିତି ପ୍ରସ୍ତାବ ଦେଲେ ହେବ ନାହିଁ । ସେ ବୈଷୟିକ ଶିକ୍ଷା ପ୍ରବର୍ତ୍ତନ ପାଇଁ ପ୍ରସ୍ତୁତ Cabinet Memorandum ଓ କର୍ଣ୍ଣାଟକ ରାଜ୍ୟର ମଞ୍ଜୁରୀ ପାଇଥିବା ଗୋଟିଏ ପ୍ରସ୍ତାବ Xerox copy କରି ମୋତେ ଦେଲେ ଓ କର୍ଣ୍ଣାଟକ ପ୍ରସ୍ତାବ ଢାଞ୍ଚାରେ ପ୍ରସ୍ତାବ କରିବାକୁ କହିଲେ । ମୁଁ ଏ ଦୁଇଟି Document ପାଠ କରି ନୂଆକରି ପ୍ରସ୍ତାବ ପ୍ରସ୍ତୁତ କରି ପୁଣି ଥରେ ଦିଲ୍ଲୀ ନେଇ ଗଲି । ଏଥର ଭାରତ ସରକାରଙ୍କ ଶିକ୍ଷା ବିଭାଗ ପ୍ରସ୍ତାବ ମଞ୍ଜୁର କରି ଏକ କୋଟି ଏକସ୍ତରି ଲକ୍ଷ ଟଙ୍କାର ଅନୁଦାନ ଚିଠି ମୋ ହାତରେ ପଠାଇ ଦେଲେ । ତଦନୁଯାୟୀ ୩୧ ଟି ସ୍କୁଲରେ ଧନ୍ଦାମୂଳକ ଶିକ୍ଷା ପ୍ରବର୍ତ୍ତନ କରାଗଲା । ଯେଉଁ ସ୍କୁଲ ଗୁଡିକୁ ବଛା ଯାଇଥିଲା ତା ଭିତରେ କଟକର C.R.R । ହାଇସ୍କୁଲ, ଭୁବନେଶ୍ୱର କୃଷି ବିଶ୍ୱ ବିଦ୍ୟାଳୟ ନିକଟରେ ଥିବା କଲ୍ୟାଣ ବିଭାଗର ତପୋବନ ହାଇସ୍କୁଲ, କେଉଁଝର ମାଟ୍ କାମବେଡା I.T.I ପାଖରେ ଥିବା ମାଟ୍‌କାମବେଡା ହାଇସ୍କୁଲ, ସୁନ୍ଦରଗଡର କାଳୁଙ୍ଗା ହାଇସ୍କୁଲ, କୋରାପୁଟ ଜିଲ୍ଲାର କୈଳାସପୁର ହାଇସ୍କୁଲ ଇତ୍ୟାଦି ଥିଲା ।

ପ୍ରତ୍ୟେକ ନିର୍ବାଚିତ ସ୍କୁଲ ପାଖରେ ସାହାଯ୍ୟକାରୀ I.T.I, ବୈଷୟିକ ଅନୁଷ୍ଠାନ, କଳକାରଖାନା, ଆଦିକୁ ଦୃଷ୍ଟିରେ ରଖା ଯାଇଥିଲା । ଆବଶ୍ୟକତା ଅନୁସାରେ ବ୍ଲକ୍ ସଦର ମହକୁମାରେ ଥିବା ହାଇସ୍କୁଲ ଗୁଡିକ ବଛା ଯାଇଥିଲା । ପ୍ରଥମ ଦଫାରେ ବଛା ଯାଇଥିବା ସ୍କୁଲ ଗୁଡିକରେ ସମସ୍ତ ସୁବିଧା ଉପଲବ୍ଧ ହୋଇଥିଲା । ତେଣୁ ଧନ୍ଦାମୂଳକ ଶିକ୍ଷା କାର୍ଯ୍ୟକ୍ରମ ଭଲ ଭାବରେ ଚାଲିଥିଲା । ଦ୍ୱିତୀୟ ଦଫାରେ ଯେଉଁ ୧୫୦ଟି ଧନ୍ଦାମୂଳକ ଶିକ୍ଷା କେନ୍ଦ୍ର ମିଳିଲା ସେ ସବୁ ଯେଉଁ ହାଇସ୍କୁଲ ଓ କଲେଜରେ ଖୋଲିଲା ସେଠାରେ ସର୍ବନିମ୍ନ ସୁବିଧା ଉପଲବ୍ଧ ହେବ କି ନାହିଁ ସେ ବିଚାର କେହି କଲେ ନାହିଁ । ଶିକ୍ଷାନୀତି ଅପେକ୍ଷା ରାଜନୀତି ଦ୍ୱିତୀୟ ଥର ଅଧିକ କାମ କଲା । ପ୍ରତିଯୋଗିତା କରି ଲୋକ ପ୍ରତିନିଧିମାନେ

ଯାହିତାହି ସ୍କୁଲରେ ଧନ୍ଦାମୂଳକ ଶିକ୍ଷା କେନ୍ଦ୍ର ଖୋଲିଦେଲେ । ସେଠାରେ ସ୍କୁଲ ଚାଲିଲା ନାହିଁ । ଶିକ୍ଷକ ନିଯୁକ୍ତି କ୍ଷେତ୍ରରେ ନିୟମ ବହିର୍ଭୂତ କାର୍ଯ୍ୟକରି ନାନା ବିଭ୍ରାଟ ସୃଷ୍ଟି କଲେ । କେନ୍ଦ୍ର ସରକାରଙ୍କ ଯନ୍ତ୍ରପାତି କିଣା ଓ Laboratory ପାଇଁ ଦିଆ ଯାଇଥିବା ଅନୁଦାନ ଶେଷ ପର୍ଯ୍ୟନ୍ତ ଉପଯୋଗ ହେଲା ନାହିଁ । ବିନା Practical ଟ୍ରେନିଂରେ ଯେଉଁ ଧନ୍ଦାମୂଳକ ଶିକ୍ଷା ପ୍ରଚଳିତ ହେଲା ସେଠାରୁ ପାଶ୍ କରିଥିବା ପିଲାଙ୍କର ନିଯୁକ୍ତି ଯୋଗ୍ୟତା ରହିଲା ନାହିଁ । ଯେଉଁମାନେ କାମ କରି ଶିଖି ନାହାନ୍ତି ତାଙ୍କୁ କାହିଁକି କିଏ ନିଯୁକ୍ତି ଦେବ ?

## ୫.୧୧ ଜାତୀୟ ଶିକ୍ଷା ନୀତି, ୧୯୮୬ ଓ ମାଧ୍ୟମିକ ଶିକ୍ଷା

ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବାକୁ ଯେତେ ଅଧିକ ଉଦ୍ୟମ ହେଉଛି ମାଧ୍ୟମିକ ଶିକ୍ଷା ଉପରେ ଚାପ ସେତିକି ବଢିବଢି ଯାଉଛି । ଯେତେ ଅଧିକ ପିଲା ପ୍ରାଥମିକ ସ୍କୁଲରେ ପ୍ରବେଶ କରୁଛନ୍ତି ସେତେ ଅଧିକ ସ୍ଥାନ ମାଧ୍ୟମିକ ସ୍କୁଲ ମାନଙ୍କରେ ଆବଶ୍ୟକ । ଏମିତି ସାଧାରଣ ଭାବରେ ଦେଖିଲେ ବହୁତ ଗ୍ରାମ / ଜନବସତି ଅଛି ଯାହାର ୧୦ କିଲୋମିଟର ଦୂରତ୍ୱ ମଧ୍ୟରେ ହାଇସ୍କୁଲ ନାହିଁ । ସ୍କୁଲ ମାନଚିତ୍ର ପ୍ରସ୍ତୁତ କରି ଯେଉଁ ଅଞ୍ଚଳରେ ମାଧ୍ୟମିକ ଶିକ୍ଷା ବ୍ୟବସ୍ଥା ନାହିଁ ସେଠାରେ ସ୍କୁଲ ଖୋଲିବାକୁ ଜାତୀୟ ଶିକ୍ଷା ନୀତିରେ ଘୋଷଣା କରା ଯାଇଛି । କିନ୍ତୁ ତାହା କାର୍ଯ୍ୟକାରୀ ହେଉନାହିଁ । ବୈଜ୍ଞାନିକ ପଦ୍ଧତିରେ କ୍ଷେତ୍ର ଅଧ୍ୟୟନ କରି ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତି କୌଶଳ ଖୁବ୍ କମ୍ ଅଫିସରଙ୍କୁ ଜଣା । ଯେଉଁମାନଙ୍କୁ ଜଣା ଅଛି ତାଙ୍କୁ ଏ ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତି କାର୍ଯ୍ୟରେ ନିୟୋଜିତ କରାଯାଉ ନାହିଁ । ଦ୍ୱିତୀୟତଃ କ୍ଷେତ୍ର ଅଧ୍ୟୟନ କରି ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତ କଲେ ଯେଉଁ ଆବଶ୍ୟକତା ନିର୍ଦ୍ଧାରିତ ହେବ, ତାକୁ କାର୍ଯ୍ୟକାରୀ କରିବାକୁ ସରକାରଙ୍କର ସ୍ପୃହା ଓ ଆର୍ଥିକ ସମ୍ବଳ ନାହିଁ । ଗୋଳମାଳିଆ ପରିସ୍ଥିତି ମଧ୍ୟରେ କାମ ଚାଲିଥିଲେ ସରକାରଙ୍କର ଉପରେ ଚାପ ପଡିବ ନାହିଁ ।

ମାଧ୍ୟମିକ ବିଦ୍ୟାଳୟମାନଙ୍କରେ ବହୁ ଅଭାବ ଅସୁବିଧା ରହିଛି । ସେଥିଯୋଗୁଁ ଉନ୍ନତ ମାନର ଶିକ୍ଷା ଦେବା ସମ୍ଭବ ହେଉନାହିଁ । ବିଶେଷତଃ ଘର, ଶିକ୍ଷକ, ଶିକ୍ଷାଦାନ ଉପକରଣ, ବୈଜ୍ଞାନିକ ଯନ୍ତ୍ରପାତିର ଅଭାବ ଗୁଣାତ୍ମକ ଶିକ୍ଷା ପ୍ରଦାନରେ ବାଧା ସୃଷ୍ଟି କରୁଛି । ମାଧ୍ୟମିକ ବିଦ୍ୟାଳୟ ଅଭାବ ସମ୍ବନ୍ଧରେ ଏ ପର୍ଯ୍ୟନ୍ତ କୌଣସି ସର୍ଭେ କରାଯାଇ ନାହିଁ । ଅତିଶୀଘ୍ର ସର୍ଭେ କରି ସ୍କୁଲ ଗୁଡିକର ଆବଶ୍ୟକତା ନିର୍ଦ୍ଧାରିତ ହେବା ଦରକାର ।

ମାଧ୍ୟମିକ ବିଦ୍ୟାଳୟମାନଙ୍କରେ ଦୁଇ ଶ୍ରେଣୀର ପିଲା ପଢନ୍ତି , ଗୋଟିଏ ଶ୍ରେଣୀ, ଯେଉଁମାନେ ମାଧ୍ୟମିକ ଶିକ୍ଷା, ଶେଷ କରି ଜୀବନ କ୍ଷେତ୍ରରେ ପ୍ରବେଶ କରିବେ ଓ ଦ୍ୱିତୀୟ ଶ୍ରେଣୀ ଯେଉଁମାନେ ମାଧ୍ୟମିକ ଶିକ୍ଷା ପରେ ଉଚ୍ଚ ଶିକ୍ଷା ପାଇବାକୁ ଯିବେ । ଯେଉଁମାନେ କର୍ମମୟ ଜୀବନରେ ପ୍ରବେଶ କରିବେ ସେମାନଙ୍କ ପାଇଁ ଧନ୍ଦାମୂଳକ ଶିକ୍ଷା ପ୍ରୟୋଜନ ଓ ଯେଉଁମାନେ ଉଚ୍ଚ ଶିକ୍ଷା କ୍ଷେତ୍ରକୁ ଯିବେ ତାଙ୍କ ପାଇଁ ଉନ୍ନତମାନର ଶିକ୍ଷା ଆବଶ୍ୟକ । ଆମ ସ୍କୁଲ ଗୁଡିକ କୌଣସି ଗୋଟିଏ ଶ୍ରେଣୀର ପିଲାଙ୍କ ଆବଶ୍ୟକତା ପୂରଣ କରି ପାରୁ ନାହିଁ ।

ସାଧାରଣ ଭାବରେ ଅନୁଭୂତ କେତେକ ଅଭାବ ଦୂର କରିବା ପାଇଁ ଜାତୀୟ ଶିକ୍ଷା ନୀତିରେ ଉଲ୍ଲେଖ ଅଛି । ଯଥା :-

(୧) ସ୍ୱାସ୍ଥ୍ୟ ଓ ଶାରୀରିକ ଶିକ୍ଷାର ଗୁରୁତ୍ୱ ଦୃଷ୍ଟିରୁ ପ୍ରତ୍ୟେକ ସ୍କୁଲରେ ଖେଳ ପଡିଆ ରହିବା ଦରକାର । ଯେଉଁ ସ୍କୁଲରେ ଖେଳ ପଡିଆ ନାହିଁ ନିକଟରେ ଥିବା ସରକାରୀ ଖୋଲା ଜାଗା ଖେଳ ପଡିଆ ପାଇଁ ଦିଆଯିବ।

(୨) ଅତିରିକ୍ତ ଶ୍ରେଣୀ କୋଠରୀ ନିର୍ମାଣ । ମାଧ୍ୟମିକ ବିଦ୍ୟାଳୟରେ ଛାତ୍ରଛାତ୍ରୀ ସଂଖ୍ୟା ବଢୁ ଥିବାରୁ ଅତିରିକ୍ତ ଶ୍ରେଣୀ କୋଠରୀ ନିର୍ମାଣ କରାଯିବା ଦରକାର ।

(୩) ପ୍ରତ୍ୟେକ ସ୍କୁଲରେ ବିଜ୍ଞାନାଗାର ଓ ବୈଜ୍ଞାନିକ ପରୀକ୍ଷା ପାଇଁ ଯନ୍ତ୍ରପାତି ଓ ରାସାୟନିକ ଦ୍ରବଣ ଆଦି ଦରକାର । ସେଥିପାଇଁ ବ୍ୟବସ୍ଥା କରାଯିବ ।

(୪) ହାଇସ୍କୁଲ ଓ ହାୟର ସେକେଣ୍ଡାରୀ ସ୍କୁଲର ଅନୁପାତ ୨.୫ ୧ ହେବ ।

(୫) ଶିକ୍ଷକମାନଙ୍କର ଦକ୍ଷତା ବୃଦ୍ଧି ପାଇଁ ପ୍ରାକ୍ ନିଯୁକ୍ତି ଓ ନିଯୁକ୍ତି ପର ତାଲିମ ପାଇଁ ବ୍ୟବସ୍ଥା କରାଯିବ ।

(୬) Core - Curriculum - NCERT ଦ୍ୱାରା ପ୍ରକାଶିତ ମାଧ୍ୟମିକ ଶିକ୍ଷା ପାଠ୍ୟକ୍ରମ ସଂସ୍କାର ଅନୁସରଣରେ ମାଧ୍ୟମିକ ଶିକ୍ଷା ପାଠ୍ୟକ୍ରମର ପରିବର୍ତ୍ତନ କରାଯିବ । ଯେଉଁ ବିଷୟଗୁଡିକ ବାଧ୍ୟତାମୂଳକ ଭାବେ ପାଠ୍ୟପୁସ୍ତକରେ ରଖାଯିବ ସେ ଗୁଡିକ ହେଲା :-

(କ) ଭାରତର ସ୍ୱାଧୀନତା ଆନ୍ଦୋଳନର ଇତିହାସ ।

(ଖ) ଗଣତନ୍ତ୍ର ଓ ଧର୍ମ ନିରପେକ୍ଷତା ଆଦି ସମ୍ବିଧାନ ବର୍ଣ୍ଣିତ ଆଦର୍ଶର ଅନୁବର୍ତ୍ତନ ଓ ସମ୍ବିଧାନ ପ୍ରତି ଅନୁରକ୍ତି ।

(ଗ) ଜାତୀୟ ସଂହତି ଓ ସାମାଜିକ ପ୍ରତିବନ୍ଧକ ଦୂରୀକରଣ ।

(ଘ) ପରିବେଶ ସଂରକ୍ଷଣ ।

(ଙ) ଭାରତର ସାଂସ୍କୃତିକ ପରମ୍ପରା ପ୍ରତି ସମ୍ମାନ ।

(ଚ) ବୈଜ୍ଞାନିକ ଚିନ୍ତାଧାରାର ବିକାଶ ।

(ଛ) ଭାରତୀୟତା ଅନୁସରଣରେ ମୂଲ୍ୟବୋଧ ବୃଦ୍ଧି ।

(ଜ) କ୍ଷୁଦ୍ର ପରିବାର ଆଦର୍ଶ ।

(ଝ) ଲିଙ୍ଗଭେଦ ଦୂରୀକରଣ ।

ଏବେ ମାଧ୍ୟମିକ ଶିକ୍ଷାକୁ ସାର୍ବଜନୀନ କରିବା ପ୍ରସ୍ତାବ କାର୍ଯ୍ୟକ୍ରମ୍ ଆରମ୍ଭ ହେଲାଣି । ଏଥିରେ ହାଇସ୍କୁଲ ସଂଖ୍ୟା ତ ବଢ଼ିବ । ତା ସହିତ ମାଧ୍ୟମିକ ଶିକ୍ଷାର ଗୁଣାତ୍ମକ ବିକାଶ ମଧ୍ୟ ସମ୍ଭବ ହେବ । ମାଧ୍ୟମିକ ଶିକ୍ଷାକୁ ଚିରାଚରିତ ରୀତିରେ ନ ଦେଖି ନୂତନ ଭାବରେ ଦେଖିବାର ସୁଯୋଗ ସୃଷ୍ଟି ହୋଇଛି ।

## ୫.୧୨ କୋଣାର୍କ ହାଇସ୍କୁଲ ପ୍ରଧାନ ଶିକ୍ଷକ ନିଯୁକ୍ତି ।

କୋଣାର୍କ ହାଇସ୍କୁଲ ପ୍ରଧାନ ଶିକ୍ଷକ ଯମେଶ୍ୱର ମିଶ୍ର ଅବସର ଗ୍ରହଣ କଲେ । ନିୟମ ଅନୁସାରେ ସ୍କୁଲର ବରିଷ୍ଠତମ ତାଲିମ୍ ପ୍ରାପ୍ତ ସ୍ନାତକ ଶିକ୍ଷକ ପଦୋନ୍ନତି ପାଇ ପ୍ରଧାନ ଶିକ୍ଷକ ହେବା କଥା । ନିୟମ ଦୃଷ୍ଟିରୁ ବଂଶୀଧର ସେଠ ପଦୋନ୍ନତି ପାଇବାର କଥା କିନ୍ତୁ ଶିକ୍ଷାମନ୍ତ୍ରୀ ଯଦୁନାଥ ଦାଶ ମହାପାତ୍ର କୋଣାର୍କ ହାଇସ୍କୁଲର ଚତୁର୍ଥ ଶିକ୍ଷକ ମାୟାଧର ସାହୁଙ୍କୁ ପଦୋନ୍ନତି ଦେବା ପାଇଁ ଅଡି ବସିଲେ । ମୁଁ ଉପନିର୍ଦ୍ଦେଶକ ଭାବରେ ସେ ଦୁଇଟିଯାକ ଶିକ୍ଷକଙ୍କର ତୁଳନାତ୍ମକ ବିବରଣୀ ପ୍ରସ୍ତୁତ କରି ମନ୍ତ୍ରୀଙ୍କୁ ଦେଖାଇଲି । ବଂଶୀଧର ସେଠ ତାଲିମପ୍ରାପ୍ତ ଗ୍ରାଜୁଏଟ୍ ଶିକ୍ଷକ ଭାବରେ ମାୟାଧର ସାହୁଙ୍କ ଠାରୁ ୨୨ ବର୍ଷ ସିନିୟର । ମାୟାଧର ସାହୁଙ୍କ ଚାକିରୀ କାଳ ୨୪ ବର୍ଷ ଅଣତାଲିମ୍ ପ୍ରାପ୍ତ ଗ୍ରାଜୁଏଟ୍ ଶିକ୍ଷକ ଭାବରେ । ତେଣୁ ବଂଶୀଧର ସେଠଙ୍କ ଠାରୁ ସେ ସିନିୟର ହେବା ପ୍ରଶ୍ନ ଉଠୁ ନାହିଁ । ମନ୍ତ୍ରୀ କୌଣସି ଯୁକ୍ତି ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ । ସେ ଜିଦ୍ ଧରିଲେ ମାୟାଧର ସାହୁ ପ୍ରଧାନ ଶିକ୍ଷକ ହେବେ ।

ମନ୍ତ୍ରୀଙ୍କ ସହିତ ଆଲୋଚନା କରିବାକୁ ମାଧ୍ୟମିକ ଶିକ୍ଷା ନିର୍ଦ୍ଦେଶକ ମନୀଷ କୁମାର ଚକ୍ରବର୍ତ୍ତୀ ଯାଇଥିଲେ । ସେ ଯାଇ ପହଞ୍ଚିଲା ବେଳକୁ ଶିକ୍ଷା ସଚିବ ସେଠାରେ ଥିଲେ । ପ୍ରଧାନ ଶିକ୍ଷକ ନିଯୁକ୍ତି ସମସ୍ୟା ଆଲୋଚନା ହେଲା । ଶିକ୍ଷା ସଚିବ କହିଲେ ବଂଶୀଧର ସେଠଙ୍କୁ ପଦୋନ୍ନତି ଦେଇ ପ୍ରଧାନ ଶିକ୍ଷକ ନିଯୁକ୍ତି

କରି ଦିଅ । ଏଥିରେ ମନ୍ତ୍ରୀଙ୍କର ମୋ ଉପରେ ଭୀଷଣ ରାଗ । ତାଙ୍କର ଧାରଣା ଆଇନ୍‌ଗତ ପ୍ରଶ୍ନ ମୁଁ ନ ଉଠାଇଥିଲେ ମାୟାଧର ସାହୁ ପ୍ରଧାନ ଶିକ୍ଷକ ନିଯୁକ୍ତ ହୋଇ ଯାଇଥାନ୍ତେ ।

ପରେ ଯେତେବେଳେ ପ୍ରଧାନ ଶିକ୍ଷକମାନଙ୍କ ବଦଳି ଆଇନ ପ୍ରବର୍ତ୍ତନ କରାଗଲା, ବଂଶୀଧର ସେଠଙ୍କୁ କୋଣାର୍କ ହାଇସ୍କୁଲରୁ ବଦଳି କରି ତତ୍କାଳୀନ ପୁରୀ ସର୍କଲ ଇନିସ୍ପେକ୍ଟର ପୀତାମ୍ବର ନନ୍ଦ ମାୟାଧର ସାହୁଙ୍କୁ ପ୍ରଧାନ ଶିକ୍ଷକ ଭାବେ ନିଯୁକ୍ତି ଦେଲେ ।

## ୫.୧୩ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ନିଯୁକ୍ତି

ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ରଜତ୍ କୁମାର କରଙ୍କର SCERT ନିର୍ଦ୍ଦେଶକ ଭାବରେ ବଦଳି ହେବାରୁ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ପଦ ଖାଲି ପଡିଲା । ସେ ପଦକୁ କାହାକୁ ପଦୋନ୍ନତି ଦିଆଯିବ ସେ ବିଷୟରେ ବିଚାର ଆଲୋଚନା ହେଲା । ମୋତେ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଭାବରେ ପଦୋନ୍ନତି ଦିଆ ଯିବାକୁ ଏକ ପ୍ରକାର ନିଷ୍ପତ୍ତି ହୋଇଗଲା । ଶିକ୍ଷାମନ୍ତ୍ରୀ ଅନୁପସ୍ଥିତ ଥିବାରୁ ନିଷ୍ପତ୍ତି ଶେଷ ହୋଇ ପାରିଲା ନାହିଁ । ପରଦିନ ଶିକ୍ଷାମନ୍ତ୍ରୀ ଗସ୍ତରୁ ଫେରି ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଗଲେ । ସେଠାରେ ମୁଖ୍ୟମନ୍ତ୍ରୀ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ନିଯୁକ୍ତି ବିଷୟ ଆଲୋଚନା ପ୍ରସଙ୍ଗରେ ମୋତେ ପଦୋନ୍ନତି ଦେବା କଥା କହିଲେ ।

ଶିକ୍ଷାମନ୍ତ୍ରୀ ଆପତ୍ତି କଲେ । ସେ କହିଲେ ତାଙ୍କ ପୁଅ ରାଷ୍ଟ୍ର ମନ୍ତ୍ରୀ ଥିବାରୁ ସେ କାହା କଥା ମାନିବେ ନାହିଁ । ଏଣୁ ତାଙ୍କୁ ନିର୍ଦ୍ଦେଶକ ଭାବରେ ପଦୋନ୍ନତି ଦିଆ ନ ଯାଉ । ମୁଖ୍ୟ କଥା ହେଲା କୋଣାର୍କ ହାଇସ୍କୁଲ ପ୍ରଧାନ ଶିକ୍ଷକ ନିଯୁକ୍ତିରେ ତାଙ୍କ ପ୍ରାର୍ଥୀ ମାୟାଧର ସାହୁ ପଦୋନ୍ନତି ନ ପାଇବାରୁ ସେ ମୁଖ୍ୟତଃ ମୋତେ ଦାୟୀ କରୁଥିଲେ । ତାଙ୍କର ଧାରଣା ଯେ ମୁଁ ନିୟମ କଥା ନ ଉଠାଇଥିଲେ ମାୟାଧର ସାହୁ ପ୍ରଧାନ ଶିକ୍ଷକ ଭାବେ ନିଯୁକ୍ତି ପାଇ ଯାଇଥାନ୍ତେ । କୋଣାର୍କ ହାଇସ୍କୁଲ ପ୍ରଧାନ ଶିକ୍ଷକ ନିଯୁକ୍ତି କ୍ଷେତ୍ରରେ ମୁଁ ଯାହା କରିଛି ତାହା ନ୍ୟାୟ ସଙ୍ଗତ ଓ ନିୟମ ସଙ୍ଗତ । ମନ୍ତ୍ରୀଙ୍କ କଥା ନ ମାନି ମୁଁ ଠିକ୍ କରିଛି । ମନ୍ତ୍ରୀ ରାଗିଲେ ମୋର କ୍ଷତି ହେବ ଏହା ମୁଁ ଆଗରୁ ଜାଣିଥିଲି ।

ଶିକ୍ଷାମନ୍ତ୍ରୀ ବିକଳ୍ପ ପ୍ରସ୍ତାବ ଭାବରେ ଶିବରାମ ପଟ୍ଟନାୟକଙ୍କ ନାମ ସୁପାରିଶ କଲେ । ଶିବରାମ ବାବୁ ଦ୍ୱିତୀୟ ଶ୍ରେଣୀ ଚାକିରିରେ ପ୍ରାୟ ଏକ ବର୍ଷ ନଅ ମାସ ମୋ ଠାରୁ ଜୁନିୟର ହୋଇଥିବାରୁ ସରକାରଙ୍କର ଏ ପ୍ରକାର ନିଷ୍ପତ୍ତି ବିରୁଦ୍ଧରେ

ମୁଁ ଅବସର ଗ୍ରହଣ କରିବା ପାଇଁ ଆବେଦନ କଲି । ଆବେଦନର ଗୋଟିଏ ନକଲ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଓ ଆଉ ଗୋଟିଏ ନକଲ ଶିକ୍ଷା ସଚିବଙ୍କ ପାଖକୁ ପଠାଇ ଦେଲି । ମୁଁ ଦରଖାସ୍ତ ଦେବା ପରଦିନ ଶିକ୍ଷା ସଚିବ ପ୍ୟାରୀ ବାବୁ ମୋତେ ଡାକି କହିଲେ, "ଆପଣ ମାସକୁ ଟ.୩୩୫୦/- ଦରମାରେ ନିର୍ଦ୍ଦେଶକ ଚାକିରୀ କରିବେ କାହିଁକି ? ସେତେବେଳେ ନିର୍ଦ୍ଦେଶକଙ୍କର ଦରମା ଟ.୩୩୫୦/- ଥିଲା । ଆପଣଙ୍କର ତ ଯୋଗ୍ୟତା ଅଛି ପ୍ରଫେସର ହେବା ପାଇଁ ମାସିକ ଦରମା ଟ.୪୫୦୦/- । ସରକାର ଆପଣଙ୍କୁ ପ୍ରଫେସର ଭାବରେ ନିଯୁକ୍ତି ଦେବା ପାଇଁ ସ୍ଥିର କରିଛନ୍ତି । ଏଣୁ ଆପଣଙ୍କ ଅବସର ଗ୍ରହଣ ପାଇଁ ଦେଇଥିବା ଦରଖାସ୍ତ ମୁଁ ଚିରି ଦେଉଛି । ଏହା କହି ମୋ ଦରଖାସ୍ତ ଦୁଇଟିଯାକ ନକଲ ମୋ ଆଗରେ ଚିରିଦେଲେ । ମୁଁ ବି ଭାବିଲି ଭାବ ପ୍ରବଣ ହୋଇ ଚାକିରି ଛାଡିବି କାହିଁକି, ପ୍ରଫେସର ହେବି ନାହିଁ କାହିଁକି ? ଅନ୍ତତଃ ମାସକୁ ଟ.୧୧୫୦/- ଅଧିକ ମିଳିବ ତ !

ଯେଉଁଦିନ କୋଣାର୍କ ହାଇସ୍କୁଲ ପ୍ରଧାନ ଶିକ୍ଷକ ନିଯୁକ୍ତିରେ ମୁଁ ନିୟମ କଥା କହି ମନ୍ତ୍ରୀଙ୍କ ପ୍ରାର୍ଥୀଙ୍କୁ ବଞ୍ଚିତ କଲି, ସେ ଦିନ ମୁଁ ଜାଣିଥିଲି ମନ୍ତ୍ରୀ ଯଦୁନାଥ ଦାଶ ମହାପାତ୍ର ମୋର କିଛି କ୍ଷତି କରିବେ । କିନ୍ତୁ ସେ କ୍ଷତି ମୋତେ ପଦୋନ୍ନତିରୁ ବଞ୍ଚିତ କରିବା ଭଳି ଏତେ ବିରାଟ ହେବ ଏହା ମୁଁ କଳ୍ପନା କରି ନଥିଲି । ମୁଁ ସାଧାରଣତଃ ଅନ୍ୟ କାହା ପ୍ରତି ଅନ୍ୟାୟ ହେଲେ ବରଦାସ୍ତ କରେ ନାହିଁ । କିନ୍ତୁ ମୋ ପ୍ରତି ଯେତେବେଳେ ଅନ୍ୟାୟ ହେଲା ତାକୁ ବରଦାସ୍ତ କଲି । ପରେ ଯଦୁନାଥ ଦାଶ ମହାପାତ୍ରଙ୍କ ଅବସ୍ଥା ଯାହା ହେଲା ଏଠାରେ ବର୍ଣ୍ଣନା କରିବା ଅନାବଶ୍ୟକ । ଅନ୍ୟାୟ କରିଥିବା ଲୋକ ଅବଶ୍ୟ ଦଣ୍ଡିତ ହେବ ଏ କଥାର ପ୍ରକୃଷ୍ଟ ଉଦାହରଣ ପୂର୍ବତନ ଶିକ୍ଷାମନ୍ତ୍ରୀ ଯଦୁନାଥ ଦାଶ ମହାପାତ୍ର ।



## ଷଷ୍ଠ ଅଧ୍ୟାୟ

# ଶିକ୍ଷା ପ୍ରଫେସର ନିଯୁକ୍ତି ଓ ଧନ୍ଦାମୂଳକ ଶିକ୍ଷା ପ୍ରବର୍ତ୍ତନ

ଭାରତୀୟ ଶିକ୍ଷା ନୀତି, ୧୯୮୬ ଅନୁସାରେ ଶିକ୍ଷକ ତାଲିମ୍ ଓ ଶିକ୍ଷକ ଶିକ୍ଷାକୁ ଅତିଶୟ ଗୁରୁତ୍ୱପୂର୍ଣ୍ଣ ବିଚାର କରାଯାଉଥିଲା। ଶିକ୍ଷାର ଉନ୍ନତି ପାଇଁ ଶିକ୍ଷକମାନେ ତାଲିମ୍ ପାଇବା ସହିତ ଚାକିରିକାଳୀନ ତାଲିମ୍ ଓ ଶିକ୍ଷା କ୍ଷେତ୍ରରେ ନୂତନ ଆବିଷ୍କୃତ ପଦ୍ଧତିର ପ୍ରୟୋଗ ବିଷୟରେ ଅବଗତ ହେବା ନିହାତି ଦରକାର। ଉଚ୍ଚାଙ୍ଗ ତାଲିମ୍ ପାଇଁ ଉଚ୍ଚ ଶିକ୍ଷିତ ଅଭିଜ୍ଞ ଶିକ୍ଷକମାନଙ୍କର ଆବଶ୍ୟକତା ରହିଛି। ଏଥିପାଇଁ ଭାରତ ସରକାର ଓଡିଶାରେ ତିନିଗୋଟି I. A.S.E. (Institute of Advanced Studies in Education) କଟକ, ସମ୍ବଲପୁର ଓ ବ୍ରହ୍ମପୁରରେ ଖୋଲିଲେ। ତା ସହିତ ଛଅ ଗୋଟି ଟ୍ରେନିଂ କଲେଜକୁ ଉନ୍ନୀତ କରି CTE (College of Teacher Education ) ରେ ପରିଣତ କଲେ ଓ ୧୩ ଗୋଟି DIET (District Institute of Education and Training) ଖୋଲିଲେ। ଓଡିଶାର ଜିଲ୍ଲା ସଂଖ୍ୟା ବଢିଯାଇ ୩୦ ହୋଇଗଲା ପରେ ପ୍ରତ୍ୟେକ ଜିଲ୍ଲାରେ ଗୋଟିଏ ଲେଖାଏଁ DIET ଦାବି କରାଗଲା। ପ୍ରାରମ୍ଭିକ ଅବସ୍ଥାରେ ଆଉ ଚାରିଗୋଟି DIET ଖୋଲିବା ପାଇଁ ପ୍ରସ୍ତାବ ରହିଛି। ନୂତନ ଶିକ୍ଷାନୀତି, ୧୯୮୬ ଯୋଜନାରେ ଆଠଗୋଟି ଶିକ୍ଷା ପ୍ରଫେସର ପଦ ସହିତ ଅନେକଗୁଡିଏ ଅଧ୍ୟାପକ ପଦ ମଧ୍ୟ ସୃଷ୍ଟି କରାଗଲା।

ଓଡିଶାରେ ସୃଷ୍ଟି ହୋଇଥିବା ଆଠଗୋଟି ପ୍ରଫେସର ପଦ ମଧ୍ୟରୁ ସାତଗୋଟି ପଦ ପୂରଣ ପାଇଁ ପଦକ୍ଷେପ ନିଆଗଲା। ଯେଉଁମାନଙ୍କର ଆବଶ୍ୟକ ଯୋଗ୍ୟତାରୁ କିଛି କମ୍ ଥିଲା ତାହା କୋହଳ କରିବା ପାଇଁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଗଲା। ଦେବେନ୍ଦ୍ର ନାଥ ରାଉତ ଓ ଇନ୍ଦିରା ନନ୍ଦ Ph.D ଯୋଗ୍ୟତା ନଥିବାରୁ ତାହା କୋହଳ କରି ଚଳାଇ ନେବା ପାଇଁ ସରକାରୀ ଆଦେଶ ନାମା ବାହାର କରାଗଲା। ମୋର ଯୋଗ୍ୟତା ଓ ଅଭିଜ୍ଞତାର କିଛି ଅଭାବ ନଥିଲା।

ତଥାପି ମୁଖ୍ୟ ସଚିବ ମୋ କ୍ଷେତ୍ରରେ ଆପତ୍ତି ଉଠାଇ ଫାଇଲ ଫେରାଇ ଦେଲେ। ତାଙ୍କର ପ୍ରଥମ ଆପତ୍ତି ହେଲା ମୁଁ ରିଡର ନିଯୁକ୍ତି ବେଳେ ସ୍କୁଲ ଇନ୍ସପେକ୍ଟର ଥିଲି ଓ ପ୍ରଶାସନିକ ପଦବୀରେ ରହିବା ପାଇଁ ମତ (Option) ଦେଇଥିଲି। ତେଣୁ ମୋତେ ପ୍ରଫେସର ଭାବରେ ନିଯୁକ୍ତି ଦିଆଯାଇପାରିବ ନାହିଁ। ପ୍ରକୃତରେ ରିଡର ନିଯୁକ୍ତି ବେଳେ ମୁଁ କଲେଜକୁ ଫେରିଯିବା ପାଇଁ Option ଦେଇଥିଲି। ପୁରୁଣା ଫାଇଲ୍ ଖୋଜି ତାହା ବାହାର କରାଗଲା ଓ ସେ ଆପତ୍ତି କାର୍ଯ୍ୟକାରୀ ହେଲା ନାହିଁ। ମୁଖ୍ୟ ସଚିବଙ୍କ ଦ୍ୱିତୀୟ ଆପତ୍ତି ହେଲା ରିଡର ଭାବରେ ନିଯୁକ୍ତି ପରେ ମୁଁ ଦିନକ ପାଇଁ ପାଠ ପଢାଇ ନାହିଁ। ଶିକ୍ଷା ସଚିବ ପ୍ୟାରିବାବୁ ନୋଟ୍ ଦେଲେ ଯେ ସରକାର ତାଙ୍କ ସୁବିଧା ଦୃଷ୍ଟିରୁ ମୋତେ ପ୍ରଶାସନିକ ପଦରେ ନିଯୁକ୍ତି ଦେବାରୁ ପାଠ ପଢାଇବାର ସୁଯୋଗ ନଥିଲା । କଲେଜରେ ପୋଷ୍ଟିଂ ହୋଇଥିଲେ ଅବଶ୍ୟ ପାଠ ପଢାଇଥାନ୍ତି। ସେଥିରେ ମୋର ଦୋଷ ରହିଲା କେଉଁଠି ? ମୁଖ୍ୟ ସଚିବଙ୍କର ତୃତୀୟ ଆପତ୍ତି ହେଲା ମୋର Ph.D ଡିଗ୍ରୀ ଶିକ୍ଷା ବିଷୟରେ ନୁହେଁ। ମୋତେ ପଚାରିବାରୁ ମୁଁ ବିଶ୍ୱ ବିଦ୍ୟାଳୟ ବିଜ୍ଞପ୍ତି ଓ ମୋର Ph.D ସାର୍ଟିଫିକେଟ୍ ନକଲ ଦେଲି। ସେଥିରୁ ପ୍ରମାଣିତ ହେଲା ଯେ ମୋର Ph.D ଡିଗ୍ରୀ ଶିକ୍ଷା ବିଷୟରେ। ଏହି ପ୍ରକ୍ରିୟାରେ ପ୍ରାୟ ତିନି ମାସ ବିତିଗଲା। ଏହା ପରେ ଅନ୍ୟ କୌଣସି ଆପତ୍ତି ଉଠାଇବାକୁ ସୁଯୋଗ ନଥିବାରୁ ବାଧ ହୋଇ ମୋତେ ପ୍ରଫେସର ଭାବରେ ପଦୋନ୍ନତି ମିଳିଲା।

ପ୍ରଫେସର ଭାବରେ ନିଯୁକ୍ତି ପାଇ ମୁଁ ୧୭।୧୦।୧୯୮୮ ତାରିଖରେ ଯୋଗ ଦେଲି କିନ୍ତୁ ଶିକ୍ଷା ପ୍ରଫେସର ଭାବରେ ପାଠ ପଢାଇବାର ସୁଯୋଗ ମୋତେ ମିଳିଲା ନାହିଁ। ଧନ୍ଦାମୂଳକ ଶିକ୍ଷା କାର୍ଯ୍ୟ ମୁଁ ଆରମ୍ଭ କରିଥିଲି ମାଧ୍ୟମିକ ଶିକ୍ଷା ଉପନିର୍ଦ୍ଦେଶକ ଥିବା ସମୟରେ। ଏବେ ସେହି ଧନ୍ଦାମୂଳକ ଶିକ୍ଷା ପ୍ରବର୍ତ୍ତନ ଦାୟିତ୍ୱରେ ରହିଲି। SCERT ବିଲ୍ଡିଂରେ ମୋର ସ୍ୱତନ୍ତ୍ର ଅଫିସ୍। ଧନ୍ଦାମୂଳକ ଶିକ୍ଷାର ସ୍ୱତନ୍ତ୍ର ସଂସ୍ଥା, କର୍ମଚାରୀ, ଆସବାବପତ୍ର, ଫର୍ଣ୍ଣିଚର। ଧନ୍ଦାମୂଳକ ଶିକ୍ଷା ପାଇଁ ପାଠ୍ୟକ୍ରମ ଓ ପାଠ୍ୟପୁସ୍ତକ ପ୍ରସ୍ତୁତି ମୁଖ୍ୟ କାମ।

ଧନ୍ଦାମୂଳକ ଶିକ୍ଷାର ପ୍ରଶାସନିକ ଭାଗ ରହିଲା ମାଧ୍ୟମିକ ଶିକ୍ଷା ନିର୍ଦ୍ଦେଶାଳୟରେ। ପାଠ୍ୟକ୍ରମ, ପାଠ୍ୟପୁସ୍ତକ ପ୍ରସ୍ତୁତି ଦାୟିତ୍ୱ ପ୍ରଫେସର ଅଧୀନରେ। ମାଧ୍ୟମିକ ଶିକ୍ଷା ନିର୍ଦ୍ଦେଶାଳୟରେ ଜଣେ Joint Director ପ୍ରଶାସନିକ ପରିଚାଳନା କଲେ। କୋରାପୁଟରେ Executive Engineer ଥିବା ଉଦୟ ଚନ୍ଦ୍ର

ପଣ୍ଡା Joint Director ଭାବରେ ଅବସ୍ଥାପିତ ହେଲେ । Joint Director ଓ ପ୍ରଫେସରଙ୍କ ମଧ୍ୟରେ ସହଯୋଗ ଓ ସଂଯୋଗ ଠିକ୍ ବାଟରେ କାମ ନ କଲେ ଏ କାର୍ଯ୍ୟକ୍ରମରେ ସଫଳତା ମିଳିବା କଷ୍ଟକର। ପ୍ରାରମ୍ଭିକ ଅବସ୍ଥାରେ ମୁଁ ଉଭୟ ଦାୟିତ୍ୱ ପରିଚାଳନା କରିବାରୁ କାମ ବେଶ୍ ସୁରୁଖୁରୁରେ ଚାଲୁଥିଲା। ପରବର୍ତ୍ତୀ ଅବସ୍ଥାରେ ଉଦୟବାବୁ ଯୋଗ ଦେବା ପରେ ତାଙ୍କର ପାଠପଢା, ଧନ୍ଦାମୂଳକ ଶିକ୍ଷାରେ ଅଭିଜ୍ଞତା ନଥିବାରୁ ଅସୁବିଧା ହେଲା। ତାଙ୍କର ପୂର୍ବ କାର୍ଯ୍ୟ ପରିସର ସଂପୂର୍ଣ୍ଣ ଅଲଗା ହୋଇଥିବାରୁ ନୂଆ କାମ ସହିତ ନିଜକୁ ଚଳାଇବା ତାଙ୍କ ପାଇଁ କଷ୍ଟକର ହେଲା।

## ୬.୨ ଧନ୍ଦାମୂଳକ ଶିକ୍ଷାର ସ୍ୱରୂପ

ଓଡିଶାର ଧନ୍ଦାମୂଳକ ଶିକ୍ଷାରେ ମୁଖ୍ୟତଃ ପାଞ୍ଚଗୋଟି ବିଭାଗ ରହିଲା ଯଥା: (୧) କୃଷି ବିଭାଗ (୨) ଯନ୍ତ୍ରବିଦ୍ୟା ବିଭାଗ (୩) ବାଣିଜ୍ୟ ବିଭାଗ (୪) ସ୍ୱାସ୍ଥ୍ୟ ସହାୟକ ସେବା ଓ (୫) ସାମାଜିକ ସେବା । ପ୍ରତ୍ୟେକ ବିଭାଗରେ କେତେଗୁଡିଏ ଉପବିଭାଗ ରହିଲା।

**(୧) କୃଷି ବିଭାଗ**

(କ) ଉଦ୍ୟାନ ବିଦ୍ୟା ( Horticulture)

(ଖ) ଫସଲ ଉତ୍ପାଦନ( Crop production)

(ଗ) ପାଟ, ମଠା ଓ ସିଲ୍କ ଚାଷ (Seri - Culture)

(ଘ) କୁକୁଡା ପାଳନ ( Poultry Farming)

(ଙ) ଗୋପାଳନ ( DairyFarming)

(ଚ) ମତ୍ସ୍ୟପାଳନ ( Inland Fisheries)

**(୨) ଯନ୍ତ୍ରବିଦ୍ୟା ବିଭାଗ** ( Engineering)

(କ) କୋଠାବାଡିର ରକ୍ଷଣାବେକ୍ଷଣ ( Building maintenance)

(ଖ) ଦୃଶ୍ୟ-ଶ୍ରାବ୍ୟ ଯନ୍ତ୍ରୀ (Audio-visual Technician)

(ଗ) ବିଦ୍ୟୁତ୍ ଚାଳିତ ଯନ୍ତ୍ରଚାଳନା ( Power-driven farm machinery)

(ଘ) ବୟନ ଶିଳ୍ପର ନକ୍ସା ପ୍ରସ୍ତୁତି ( Textile Designing)

(ଙ) ଗୃହୋପକରଣ ରକ୍ଷଣାବେକ୍ଷଣ ( Repair and maintenance of Domestic Appliances)

(ଚ) କଂପ୍ୟୁଟର ଯନ୍ତ୍ରୀ (Computer Technician)

**(୩) ବାଣିଜ୍ୟ ବିଭାଗ** (Commerce)

(କ) ହିସାବ ରକ୍ଷଣ ଓ ନୀରିକ୍ଷଣ (Accounting & Auditing)

(ଖ) ବୀମା କରଣ ( Insurance)

(ଗ) ଟିକସ ସହାୟକ ( Tax Assistant)

(ଘ) କାର୍ଯ୍ୟାଳୟ ପରିଚାଳନା (Office Management)

**(୪) ସ୍ୱାସ୍ଥ୍ୟ ସହାୟକ ସେବା** (Para-medical services)

**(୫) ସାମାଜିକ ସେବା** ( Social sector services)

(କ) ଖାଦ୍ୟ ଯୋଗାଣ ଓ ହୋଟେଲ୍ ପରିଚାଳନା (Catering and Resturant Management)

(ଖ) କ୍ରେସ୍ ଓ ପ୍ରାକ୍ ବିଦ୍ୟାଳୟ ପରିଚାଳନା (Crech and Pre-school Management)

(ଗ) ପରିଭ୍ରମଣ ଓ ପର୍ଯ୍ୟଟନ ସହାୟକ ସେବା (Travel and Tourism Assistance)

କେନ୍ଦ୍ର ସରକାର ପ୍ରଥମ ଥର ୩୧ ଟି, ଦ୍ୱିତୀୟ ଥର ୧୫୦ ଟି ଓ ତୃତୀୟ ଥର ୫୦ ଟି ଧନ୍ଦାମୂଳକ ବିଦ୍ୟାଳୟ ମଞ୍ଜୁର କରିଥିଲେ। ମୋଟ ୨୩୧ ଟି ବିଦ୍ୟାଳୟରୁ କୁପରିଚାଳନା ଓ ଅଯୋଗ୍ୟ ସ୍ଥାନରେ ସ୍ଥାପନା ଯୋଗୁ ପ୍ରାୟ ୧୦୦ଟିରୁ ଉର୍ଦ୍ଧ୍ୱ ବିଦ୍ୟାଳୟ ଲୋପ ପାଇଗଲାଣି। ଘର ତିଆରି ପାଇଁ ଯେଉଁ ଟଙ୍କା ଖର୍ଚ୍ଚ ହୋଇଥିଲା ତାହା ଅକାରଣ ହୋଇଗଲା। ବାକି ୧୨୦ଟି ବିଦ୍ୟାଳୟ ଉଚ୍ଚମାଧମିକ ଶିକ୍ଷା ସ୍ତରରେ ଉଭୟ ସ୍କୁଲ ଓ କଲେଜରେ ଚାଲୁଛି। ପରୀକ୍ଷାଗାର, ବିଜ୍ଞାନଗାର ଘର ତିଆରି ହୋଇଥିଲେ ମଧ୍ୟ ଯନ୍ତପାତି କିଣା ଯାଇନଥିବାରୁ ଧନ୍ଦାମୂଳକ ଶିକ୍ଷାରୁ ଉର୍ତ୍ତୀର୍ଣ୍ଣ ଛାତ୍ରଛାତ୍ରୀଙ୍କର ଆଦର ନାହିଁ। ନିଯୁକ୍ତି କଥା ପଚାରେ କିଏ ? ଏପରିକି ଆତ୍ମ ନିଯୁକ୍ତି କ୍ଷେତ୍ରରେ ଏମାନେ ସଫଳ ହୋଇ ପାରୁ ନାହାଁନ୍ତି।



କେ.କେ. ପୁର ହାଇସ୍କୁଲ ପରିଦର୍ଶନ ପୂର୍ବରୁ ଲେଖକଙ୍କୁ ସମ୍ବର୍ଦ୍ଧନା (୧୯୮୮)।

ଧନ୍ଦାମୂଳକ ଶିକ୍ଷା ନୂତନ ଭାବେ ପ୍ରବର୍ତ୍ତିତ ହେଉଥିବାରୁ ଶିକ୍ଷା ବିଭାଗର ଅନେକ ପ୍ରଚଳିତ ନିୟମ ଓ ଆଇନର ପରିବର୍ତ୍ତନ ଆବଶ୍ୟକ ହେଲା। ପ୍ରଥମ କଥା ହେଲା - ପରୀକ୍ଷା ପରିଚାଳନା। ଏହା ଉଚ୍ଚମାଧ୍ୟମିକ ସ୍ତରର ପାଠ୍ୟ ହୋଇଥିବାରୁ ଉଚ୍ଚତର ମାଧ୍ୟମିକ ଶିକ୍ଷା ପରିଷଦ ଏହାର ପରୀକ୍ଷା ପରିଚାଳନା କରିବାର କଥା। ଏଥିପାଇଁ ଶିକ୍ଷା ସଚିବଙ୍କ ଅଫିସରେ ଉଚ୍ଚତର ମାଧ୍ୟମିକ ଶିକ୍ଷା ପରିଷଦର Chairman, Vice-chairman ଓ Secretary ଙ୍କ ସହିତ ଧନ୍ଦାମୂଳକ ଶିକ୍ଷା ତରଫରୁ ମୁଁ ଧନ୍ଦାମୂଳକ ଶିକ୍ଷା ଉପନିର୍ଦ୍ଦେଶକ ଯୋଗ ଦେଇ ଉଚ୍ଚତର ମାଧ୍ୟକମିକ ଶିକ୍ଷା ପରିଷଦରେ ଏକ ସିଲାବସ୍ କମିଟି ଓ ପରୀକ୍ଷା ପରିଚାଳନା କମିଟି ଗଠନ କରିବା ପାଇଁ ପ୍ରସ୍ତାବ ଗ୍ରହଣ କଲୁ। ଦ୍ୱିତୀୟତଃ ଯେଉଁ ସ୍କୁଲମାନଙ୍କରେ ଧନ୍ଦାମୂଳକ ଶିକ୍ଷା ପ୍ରବର୍ତ୍ତନ କରାଗଲା ତା'ର ପରିଚାଳନା ଦାୟିତ୍ୱ ଧନ୍ଦାମୂଳକ ଶିକ୍ଷା ଅଧକ୍ଷ କିପରି ବହନ କରିବେ ତାହା ସ୍ଥିର କରାଗଲା.ହାଇସ୍କୁଲ ପରିଚାଳନା ସମିତି ସହିତ କିପରି ସଂପର୍କ ରହିବ ତାହା ସ୍ଥିର କରାଗଲା।

ଧନ୍ଦାମୂଳକ ଶିକ୍ଷାର ୩୧ ଟି ଅଧକ୍ଷ ପଦ ସୃଷ୍ଟି କରାଗଲା ଓ ବରିଷ୍ଠତା ଭିତ୍ତିରେ ଶିକ୍ଷକମାନଙ୍କ ମଧ୍ୟରୁ ୩୧ଟି Junior Class -I ପଦବୀରେ ଅବସ୍ଥାପିତ କରାଗଲା। ଶିକ୍ଷା ବିଭାଗର Junior Class - I Post ପୂର୍ବରୁ ନଥିଲା । ତେଣୁ ସେ ପଦ ସୃଷ୍ଟି ପାଇଁ ବିହିତ ପଦ କ୍ଷେପ ନିଆଗଲା। ୧୩ ଟି ଜିଲ୍ଲା ପାଇଁ (ସେତେବେଳେ ଓଡିଶାରେ ୧୩ ଟି ଜିଲ୍ଲା ଥିଲା ) ୧୩ ଟି ଜିଲ୍ଲା ଅତିରିକ୍ତ ଇନ୍ସ୍‌ପେକ୍ଟର ପଦ ସୃଷ୍ଟି କରାଗଲା। ସେମାନେ ଧନ୍ଦାମୂଳକ ଶିକ୍ଷା ପାଇଁ ସର୍ଭେ କରିବା ସହିତ ପ୍ରଶାସନିକ କାର୍ଯ୍ୟରେ ଇନ୍ସ୍‌ପେକ୍ଟରଙ୍କୁ ସାହାଯ୍ୟ କରିବାର ବ୍ୟବସ୍ଥା ହେଲା। ଧନ୍ଦାମୂଳକ ଶିକ୍ଷା ଅଧକ୍ଷମାନଙ୍କୁ ଶିକ୍ଷା Cadre ଭୁକ୍ତ କରିବାକୁ ମଧ୍ୟ ଆଇନର ପରିବର୍ତ୍ତନ ଆବଶ୍ୟକ ହେଲା।

ପ୍ରତି ଧନ୍ଦାମୂଳକ ଶିକ୍ଷାନୁଷ୍ଠାନର ନିକଟସ୍ଥ କଳ କାରଖାନା ITI ଓ କାର୍ଯ୍ୟଶାଳା ସହିତ ଘନିଷ୍ଠ ସଂପର୍କ ରହିବା ପ୍ରୟୋଜନ। କାରଣ ସେଠାରେ କାମ କରୁଥିବା ଶିଳ୍ପୀ, ଶ୍ରମିକ ଓ ଶ୍ରମ ଅଧିକାରୀଙ୍କ ଠାରୁ ଶିକ୍ଷାର୍ଥୀମାନେ Practical ତାଲିମ୍ ନେବେ । ଶିକ୍ଷା ଶେଷରେ ଯଥା ସମ୍ଭବ ସେଇଠାରେ ଶିକ୍ଷା ନବିସ୍ ଭାବରେ କାମ କରିବେ। କେଉଁଠାରେ କୌଣସି ସ୍କୁଲର ସମନ୍ୱୟର ଅଭାବ ହେଲେ ତାର ସମାଧାନ ପାଇଁ ଅତିରିକ୍ତ ଇନ୍ସିପେକ୍ଟର ଓ ଇନ୍ସିପେକ୍ଟର ସଂପୃକ୍ତ ଅନୁଷ୍ଠାନ ସହ ଆଲୋଚନା କରି ସମାଧାନ ପନ୍ଥା ବାହାର କରିବେ। ତା ନ ହେଲେ ଧନ୍ଦାମୂଳକ ଶିକ୍ଷା ବନ୍ଦ ହୋଇଯିବାର ସମ୍ଭାବନା ।

ଧନ୍ଦାମୂଳକ ଶିକ୍ଷା ଯୋଜନାରେ ପୂର୍ଣ୍ଣସମୟ ଶିକ୍ଷକ ନିଯୁକ୍ତି ବ୍ୟବସ୍ଥା ନାହିଁ। କେବଳ ଜଣେ ଅଧ୍ୟକ୍ଷ ଓ ଜଣେ ସଂଯୋଜକ ନିଯୁକ୍ତି ପାଇଁ ବ୍ୟବସ୍ଥା ଅଛି। ଯେଉଁ ସବୁ ଧନ୍ଦାମୂଳକ ବିଷୟ ନିର୍ବାଚିତ ହେବ ତା ପାଇଁ part time ଶିକ୍ଷକ ନିକଟସ୍ଥ କୌଣସି ସଂସ୍ଥାରେ ଥିବା ଦରକାର। ବ୍ଲକ ଗୁଡିକର ମୁଖ୍ୟ ଦପ୍ତରରେ ଧନ୍ଦାମୂଳକ ଶିକ୍ଷାନୁଷ୍ଠାନ ଖୋଲିବା ପାଇଁ ଅଗ୍ରାଧିକାର ଦିଆଯିବାର ମୁଖ୍ୟ କାରଣ ହେଲା ବ୍ଲକରେ କୃଷି ସଂପ୍ରସାରଣ ଅଫିସର, ବାଣିଜ୍ୟ ଉନ୍ନୟନ ଅଫିସର (Industry Promotion Officer), CDPO ଆଦିଙ୍କ ସହିତ ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ରର ବିଭିନ୍ନ ବିଭାଗର ଡାକ୍ତର, ପଶୁଡାକ୍ତରଙ୍କ ସେବା ଉପଲବ୍ଧ। ଏମାନଙ୍କ ସାହାଯ୍ୟରେ ଧନ୍ଦାମୂଳକ ବିଦ୍ୟାଳୟ ପରିଚାଳନା ସମ୍ଭବ। ବ୍ଲକ ମୁଖ୍ୟ ଦପ୍ତରଠାରୁ ଦୂରେଇ ଗଲେ ସେଠାରେ Part time Teacher ସୁବିଧା ମିଳିବ ନାହିଁ। ତେଣୁ ଧନ୍ଦାମୂଳକ ଶିକ୍ଷା ବ୍ୟାହତ ହେବାର ସମ୍ଭାବନା।

ଦ୍ୱିତୀୟଥର, ଓଡିଶାରେ ଯେଉଁ ୧୫୦ ଗୋଟି ଧନ୍ଦାମୂଳକ ଶିକ୍ଷା କେନ୍ଦ୍ର ଖୋଲିଲା, ଅଧିକାଂଶ ବ୍ଲକ୍ ମୁଖ୍ୟ ଦପ୍ତରଠାରୁ ଦୂରରେ ଖୋଲିଲା । କାରଣ ରାଜନୈତିକ ନେତାମାନେ ଭାଗ କରି ନିଜ ଇଚ୍ଛାନୁସାରେ ଅନୁଷ୍ଠାନ ଖୋଲି ଦେଲେ । ସେଠାରେ ଅନୁଷ୍ଠାନ ଚଳି ପାରିବ କି ନାହିଁ , କେହି ସେ ବିଚାର କଲେ ନାହିଁ । ସେମାନେ ରାଜନୈତିକ ଚାପ ପକାଇ ସ୍କୁଲ ତାଙ୍କ ସୁବିଧାରେ ଖୋଲିବାକୁ ଚାହିଁଲେ, ଶିକ୍ଷା ବିଭାଗର ଅଫିସରମାନେ ସେ ସ୍ଥାନର ବ୍ୟବସ୍ଥା ବିଷୟରେ ଦୃଷ୍ଟି ଦେଲେ ନାହିଁ । ଫଳରେ ପରବର୍ତ୍ତୀକାଳରେ ନା ନା ବିଭ୍ରାଟ ଦେଖା ଦେଲା। ସେମାନେ Part time ଶିକ୍ଷକ ବଦଳରେ ନିୟମିତ ଶିକ୍ଷକ

ନିଯୁକ୍ତ କରିଦେଲେ । ସେମାନଙ୍କୁ ଦରମା ଦେବା ବ୍ୟବସ୍ଥା ସେ Schemeରେ ନାହିଁ । ସେମାନେ କାମ କରି ଦରମା ନ ପାଇବାରୁ ହାଇକୋର୍ଟକୁ ଗଲେ । ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ବିରକ୍ତି ପ୍ରକାଶ କରି ଅନୁଷ୍ଠାନ ସବୁ ବନ୍ଦ କରିଦେଲେ ।

ଧନ୍ଦାମୂଳକ ଶିକ୍ଷା କ୍ଷେତ୍ରରେ ସବୁଠୁ ବଡ ଅସୁବିଧା ହେଲା ଯନ୍ତ୍ରପାତିର ଅଭାବ । Laboratory ଘର ତିଆରି ପାଇଁ କେନ୍ଦ୍ର ସରକାର ଟଙ୍କା ଦେଲେ । ଘର ତିଆରି ହେଲା କିନ୍ତୁ ବିଜ୍ଞାନାଗାର ଓ କର୍ମଶାଳା ପ୍ରସ୍ତୁତି କାର୍ଯ୍ୟ ହେଲା ନାହିଁକି ଯନ୍ତ୍ରପାତି କିଣା ହେଲା ନାହିଁ । ସେତେବେଳେ Joint Director ଥିବା ଉଦୟ ଚନ୍ଦ୍ର ପଣ୍ଡାଙ୍କ ଅବହେଳା ଯୋଗୁଁ କି ଅନ୍ୟ କିଛି କାରଣ ଯୋଗୁଁ ଯନ୍ତ୍ରପାତି କିଣା ହେଲା ନାହିଁ । ଫଳରେ ଧନ୍ଦାମୂଳକ ଶିକ୍ଷା ପାଇ ପରୀକ୍ଷାରେ ପାଶ୍ କରିଥିବା ପିଲାଙ୍କର Practical ହୋଇ ପାରି ନ ଥିବାରୁ ସେମାନଙ୍କର କାର୍ଯ୍ୟ କରିବାର ଦକ୍ଷତା ରହିଲା ନାହିଁ । ସେମାନଙ୍କୁ କେଉଁ କାରଖାନା କାହିଁକି ନିଯୁକ୍ତି ଦେବ ? ସେମାନେ ଚାକିରି ପାଇଲେ ନାହିଁ କି ଆତ୍ମନିଯୁକ୍ତି ପାଇଁ ତାଙ୍କର ଉଦ୍ୟମ ରହିଲା ନାହିଁ । ସବୁ ପାଶ୍ କରିଥିବା ପିଲା ଚାକିରି ଦାବି କରି Strike କଲେ ଓ ସେକ୍ରେଟେରିଏଟ୍ ଫାଟକ ପାଖରେ ବସି ରହିଲେ । ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ କହିଲେ, ଆତ୍ମ ନିଯୁକ୍ତି ପାଇଁ ତମକୁ ତାଲିମ୍ ଦିଆଗଲା । ତମେ ଏଠି ଆସି ଚାକିରି ପାଇଁ ଧାରଣା ଦେଉଛ କାହିଁକି ? ସେ ଧନ୍ଦାମୂଳକ ଶିକ୍ଷା ଉଠାଇ ଦେବା ପାଇଁ ହୁକୁମ କରି ଦେଲେ । ପରେ ହାଇକୋର୍ଟ୍ ଏହି ଶିକ୍ଷା ଚାଲୁ ରହିବା ପାଇଁ ଆଦେଶ ଦେବାରୁ ଏହା ଚାଲୁ ରହିଲା । କିନ୍ତୁ ମୂଳ ଅସୁବିଧା ଦୂର ହୋଇନାହିଁ ।

ଅନ୍ୟ ରାଜ୍ୟରେ ଧନ୍ଦାମୂଳକ ତାଲିମ୍ ପାଇଥିବା ବ୍ୟକ୍ତିମାନଙ୍କୁ ସରକାର ଆବଶ୍ୟକ ହେଉଥିବା ଜମି ଓ ଅର୍ଥ ଯୋଗାଇ ଦେଇ ଆତ୍ମ ନିଯୁକ୍ତି ସୁଯୋଗ ସୃଷ୍ଟି କରୁଛନ୍ତି । କିନ୍ତୁ ଓଡିଶାରେ ସେ ସୁଯୋଗ କାହାକୁ ଦିଆଗଲା ନାହିଁ । ଧନ୍ଦାମୂଳକ ତାଲିମ୍ ନେଉଥିବା ପିଲାମାନେ ଆତ୍ମ-ବିଶ୍ୱାସ ଓ ସାହସ ଅଭାବ ଯୋଗୁଁ ଆତ୍ମ ନିଯୁକ୍ତିରେ ବି ବିଫଳ ହେଲେ । ଏମାନେ ମାସିକ ଟ.୧୫୦୦/-ରେ ଚାକିରି କରିବାକୁ ବରଂ ରାଜି ହେଲେ ଆତ୍ମ ନିଯୁକ୍ତି ଦ୍ୱାରା ମାସିକ

ଟ.୧୫,୦୦୦/- ଙ୍କା (ଯାହା କର୍ଣ୍ଣାଟକ ଓ ଅନ୍ୟ ରାଜ୍ୟରେ ସମ୍ଭବ ହୋଇଛି ) ରୋଜଗାର କରିବାକୁ ଚାହିଁଲେ ନାହିଁ ।

ବର୍ତ୍ତମାନ ଧନ୍ଦାମୂଳକ ଶିକ୍ଷାର ପୁନରୁଦ୍ଧାର କରିବାକୁ ଉଦ୍ୟମ ଆରମ୍ଭ ହୋଇଛି । ଏଥିପାଇଁ ଏକ ସ୍ୱତନ୍ତ୍ର ନିର୍ଦ୍ଦେଶାଳୟ ଖୋଲା ଯାଇଛି । ପୂର୍ବରୁ ପ୍ରଶାସନିକ ବିଭାଗ ଓ Academic Section ଅଲଗା ରହିବା ଦ୍ୱାରା କାର୍ଯ୍ୟ ଯେପରି ବାଧାପ୍ରାପ୍ତ ହେଉଥିଲା ବର୍ତ୍ତମାନ ସେ ଅସୁବିଧା ଦୂର ହୋଇଛି । ଉଭୟ ବିଭାଗର ଏକତ୍ରିକରଣ କରାଯାଇ କାର୍ଯ୍ୟ ଧାରା ସୁସଂହତ କରାଯାଇଛି । ଆଶା କରାଯାଉଛି ଯେ ଧନ୍ଦାମୂଳକ ଶିକ୍ଷାର ବିକାଶ ଘଟିଲେ ଓଡିଶାରେ ସାମାଜିକ ସେବା ସହିତ ଅନ୍ୟ ଆନୁଷଙ୍ଗିକ କାର୍ଯ୍ୟରେ ଉନ୍ନତି ଘଟିବ ।



## ସପ୍ତମ ଅଧ୍ୟାୟ

# ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ

ପ୍ରାଥମିକ ଶିକ୍ଷା ନର୍ଦ୍ଦେଶକ ଭାବରେ ଶିବରାମ ପଟ୍ଟନାୟକ ପ୍ରାୟ ୧୧ ମାସ କାମ କଲେ । ଏହି ୧୧ ମାସ ଭିତରେ ସରକାରଙ୍କର କୌଣସି ଯୋଜନା କାର୍ଯ୍ୟକାରୀ ହେଲା ନାହିଁ । ବଶେଷତଃ ଶିକ୍ଷାକର୍ମୀ ନିଯୁକ୍ତି ଯୋଜନା କାର୍ଯ୍ୟକାରୀ ନ ହେବାରୁ ସ୍କୁଲରେ ବହୁ ସଂଖ୍ୟକ ଶିକ୍ଷକ ପଦ ଖାଲି ପଡିଲା । ପିଲାଙ୍କର ପାଠ ପଢା ଭୀଷଣ ଭାବରେ କ୍ଷତିଗ୍ରସ୍ତ ହେଲା । ନିର୍ଦ୍ଦେଶାଳୟର ଦୈନନ୍ଦିନ କାର୍ଯ୍ୟ ବ୍ୟାହତ ହେଲା । ଶିବରାମ ବାବୁ ଅଫିସରେ ରହନ୍ତି ନାହିଁ । ୧୦ ଟା ବେଳେ ଆସି ପ୍ରାୟ ୧୫ ମିନିଟ୍ ରହି ଘରକୁ ଚାଲି ଯାନ୍ତି । ଅଧିକାଂଶ ଦିନ ଉପରକୁ ତାଙ୍କ ଅଫିସ ରୁମ୍‌କୁ ନ ଆସି ତଳେ ଗାଡିରେ ବସି କିଛି ଫାଇଲ୍ ଦସ୍ତଖତ କରି କେଉଁଠାକୁ ଚାଲିଯାନ୍ତି । ବହୁ ବ୍ୟକ୍ତି ଯେଉଁମାନେ ନିର୍ଦ୍ଦେଶକଙ୍କୁ ଦେଖା କରିବାକୁ ଆସିଥାନ୍ତି ଭେଟ ନ ପାଇ ଅସନ୍ତୁଷ୍ଟ ହୋଇ ଫେରିଯାନ୍ତି । ନିର୍ଦ୍ଦେଶକ ଯଦି କାମ ନ କରି ଅଫିସରୁ ଖସିଯାନ୍ତି ଅଫିସ ଲୋକ କାମ କରିବେ କାହିଁକି ? ଶିକ୍ଷା ପ୍ରଶାସନ ଚାଲିବ କେମିତି ?

ଶିକ୍ଷାମନ୍ତ୍ରୀ ଯଦୁନାଥ ଦାଶ ମହାପାତ୍ର ଯାହାଙ୍କର ସ୍ୱତନ୍ତ୍ର ସୁପାରିଶ କ୍ରମେ ଶିବରାମ ବାବୁ ନିର୍ଦ୍ଦେଶକ ନିଯୁକ୍ତ ହୋଇଥିଲେ ସେ ଶିବରାମ ବାବୁଙ୍କ ଠାରୁ କିଛି ଅସମ୍ମାନଜନକ ମନ୍ତବ୍ୟ ପାଇ ଭୀଷଣ କ୍ଷୁବ୍ଧ ହେଲେ । ତାଙ୍କୁ ନିର୍ଦ୍ଦେଶକ ଭାବରେ ନିଯୁକ୍ତ କରିଥିବାରୁ ମନ୍ତ୍ରୀ ଅନୁତପ୍ତ ହେଲେ । ନିଜେ ତ କରିଛନ୍ତି । କହିବେ କାହାକୁ ?

ପ୍ୟାରିବାବୁ ପ୍ରତି ସୋମବାର ଦିନ Staff Meeting କରି ତାଙ୍କ ଦପ୍ତର ତଥା ନିର୍ଦ୍ଦେଶାଳୟର ଅଫିସରମାନଙ୍କ ସହିତ ଆଲୋଚନା କରନ୍ତି । ୧୯୮୯ ମସିହା ଜୁନ୍ ମାସ ଗୋଟିଏ ମିଟିଂରେ ସେ ଶିବରାମ ବାବୁଙ୍କୁ ପଚାରିଲେ ଆପଣ ଶିକ୍ଷାକର୍ମୀ ଯୋଜନା କାର୍ଯ୍ୟକାରୀ କଲେଣି । ପ୍ରାୟ ତିନିମାସ ତଳୁ ସରକାର ଶିକ୍ଷାକର୍ମୀ ଯୋଜନା କରି କାର୍ଯ୍ୟକାରୀ କରିବା ପାଇଁ ନିର୍ଦ୍ଦେଶାଳୟକୁ ପଠାଇଥିଲେ । ସେ ଯୋଜନା କାର୍ଯ୍ୟକାରୀ ନ ହେବାରୁ ସ୍କୁଲମାନଙ୍କରେ ଶିକ୍ଷା

ବ୍ୟବସ୍ଥା ବିପର୍ଯ୍ୟସ୍ତ ହେବାକୁ ଆରମ୍ଭ କରୁଥିଲା । ଶିକ୍ଷା ସଚିବ ଭୀଷଣ ବିରକ୍ତ ହୋଇ ଶିବରାମ ବାବୁଙ୍କୁ ପଚାରିଲେ, "Central Advisory Board of Education (CABE) meeting ରେ ଯୋଗ ଦେବାକୁ ଆପଣ ଉଡାଜାହାଜ ଟିକେଟ୍ କିଣିଛନ୍ତି ? ଯଦି କିଣିଛନ୍ତି ଫେରାଇ ଦିଅନ୍ତୁ । ଆପଣ ଦିଲ୍ଲୀ ଯିବା ଦରକାର ନାହିଁ । ଏଠାରେ ରହି ଶିକ୍ଷାକର୍ମୀ ଯୋଜନା କାର୍ଯ୍ୟକାରୀ କରନ୍ତୁ" ଓ ମୋତେ କହିଲେ, "ଆପଣ CABE ମିଟିଂରେ ଯୋଗ ଦେବାକୁ ଉଡାଜାହାଜ ଯାତ୍ରା ପାଇଁ ଟିକେଟ୍ କିଣନ୍ତୁ ।" ତଦନୁସାରେ ମୁଁ ଦିଲ୍ଲୀ ଗଲି ଓ CABE ମିଟିଂରେ ଯୋଗ ଦେଲି । ଫେରିବା ବେଳକୁ ମୋତେ ପ୍ୟାରିବାବୁ କହିଲେ, "ଭୁବନେଶ୍ୱର ଫେରି ଆପଣ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଭାବରେ ଯୋଗ ଦେବେ ।"

ନାଟକୀୟ ଭାବରେ ମୁଁ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଭାବରେ ୧୬.୦୭.୧୯୮୯ ତାରିଖରେ ଯୋଗ ଦେଲି । ଶିବରାମ ବାବୁଙ୍କୁ ଉଚ୍ଚତର ମାଧ୍ୟମିକ ଶିକ୍ଷା ପରିଷଦର Vice-Chairman ଭାବରେ ବଦଳି କରି ଦିଆଗଲା । ଶିବରାମ ବାବୁଙ୍କର ଏହି ବଦଳି ଅସମ୍ମାନଜନକ ହେଲେ ମଧ୍ୟ ତାକୁ ପରିବର୍ତ୍ତନ କରିବାକୁ ସେ ଆବେଦନ କଲେ ନାହିଁ । ଶିକ୍ଷାମନ୍ତ୍ରୀଙ୍କ ବିଷୟରେ ତାଙ୍କର ଆଶୋଭନୀୟ ମନ୍ତବ୍ୟ, କର୍ତ୍ତବ୍ୟରେ ଅବହେଳା, ସରକାରୀ ଯୋଜନା କାର୍ଯ୍ୟକାରୀ ନ କରିବା ଆଦି ବିଭିନ୍ନ କାରଣରୁ ଶିବରାମ ବାବୁ ମ୍ରିୟମାଣ ହୋଇ ପଡିଥିଲେ ।



**ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଭାବେ କାର୍ଯ୍ୟରତ ଲେଖକ (୧୯୮୯) ।**

ତେଣୁ ସେ କୌଣସି ଆପତ୍ତି ନ କରି ତାଙ୍କର ନୂଆ ପଦ ଗ୍ରହଣ କରିନେଲେ ।

## ୭.୨ ଶିକ୍ଷାକର୍ମୀ ନିଯୁକ୍ତି ଯୋଜନା

ନିର୍ଦ୍ଦେଶକ ଭାବରେ ଯୋଗ ଦେବା ପରେ ମୋର ପ୍ରଥମ କାମ ହେଲା ଶିକ୍ଷାକର୍ମୀ ଯୋଜନା କାର୍ଯ୍ୟକାରୀ କରିବା । କେଉଁ ସ୍କୁଲରେ କେତେ ଶିକ୍ଷକ ପଦ ଖାଲି ପଡିଛି ତାର ବ୍ଲକ୍ ୱାରି ତାଲିକା ଡି.ଆଇ.ମାନଙ୍କ ଠାରୁ ମଗାଇଲି । ଶିକ୍ଷାକର୍ମୀମାନେ ଯେଉଁ Undertaking ଦେଇ ଚାକିରିରେ ଯୋଗ ଦେବେ ତାହା ଅତିରିକ୍ତ ଶିକ୍ଷା ସଚିବଙ୍କ ସହିତ ଚୂଡାନ୍ତ କରାଗଲା । ଡି.ଆଇ.ମାନଙ୍କ ନିକଟକୁ Undertaking form ଓ ନିଯୁକ୍ତି ପତ୍ରର ନମୂନା ପଠାଇ ଦିଆଗଲା । ଦୁଇମାସ ମଧ୍ୟରେ ଖାଲିଥିବା ଶିକ୍ଷକ ପଦ ଗୁଡିକ ପୂରଣ ହୋଇଗଲା । ପ୍ରାୟ ୭୦୦୦ ଶିକ୍ଷାକର୍ମୀ ନିଯୁକ୍ତ ହୋଇଗଲେ ।

ଏହାପରେ ଛାତ୍ରଛାତ୍ରୀ ସଂଖ୍ୟା ଦୃଷ୍ଟିରୁ କେଉଁ ସ୍କୁଲରେ କେତେ ଅଧିକ ଶିକ୍ଷାକର୍ମୀ ନିଯୁକ୍ତି ଆବଶ୍ୟକ ତାହା ନିର୍ଦ୍ଧାରଣ କରିବାକୁ ସ୍କୁଲୱାରି ଓ ଶ୍ରେଣୀୱାରୀ ପିଲା ସଂଖ୍ୟା ଓ ଶିକ୍ଷକ ସଂଖ୍ୟା ହିସାବକୁ ନେଇ କେଉଁ ବ୍ଲକ୍‌ରେ କେତେ ଶିକ୍ଷକ ଆବଶ୍ୟକ ତାହା ସ୍ଥିର କରାଗଲା । ଏଥିପାଇଁ ଭୁବନେଶ୍ୱର ରାମକୃଷ୍ଣ ମିଶନ୍ ସ୍କୁଲରେ ଶିକ୍ଷା ବିଭାଗ ଅଫିସରଙ୍କ ତତ୍ତ୍ୱାବଧାନରେ କାମ କରାଗଲା । ଶେଷରେ ପ୍ରାୟ ୬୫୪୨ ଶିକ୍ଷାକର୍ମୀ ପଦ ସୃଷ୍ଟି କରିବାକୁ ଅର୍ଥବିଭାଗକୁ ପ୍ରସ୍ତାବ ଦିଆଗଲା । ଏଥିପାଇଁ ଶିକ୍ଷା ବଜେଟ୍‌ରେ ଥିବା ଅର୍ଥଠାରୁ ଅଧିକ ଅର୍ଥ ଆବଶ୍ୟକ ନ ଥିବାରୁ ଅର୍ଥ ବିଭାଗ ମଞ୍ଜୁରୀ ଶୀଘ୍ର ମିଳିଗଲା । ଶିକ୍ଷାକର୍ମୀଙ୍କର ମାସିକ ଭତ୍ତା ନିୟମିତ ଶିକ୍ଷକଙ୍କ ଦରମାର ଏକ ତୃତୀୟାଂଶ ହୋଇଥିବାରୁ ଅଧିକ ଅର୍ଥର ଆବଶ୍ୟକତା ନ ଥିଲା ।

## ୭.୩ କଳାପଟା ଯୋଜନା

ସେତେବେଳେ କଳାପଟା ଯୋଜନା କାର୍ଯ୍ୟ ଚାଲୁ ରହିଥିଲା । କଳାପଟା ଯୋଜନା ଦାୟିତ୍ୱରେ ଯୋଜନା ଉପନିର୍ଦ୍ଦେଶକ ରାଜେନ୍ଦ୍ର ପ୍ରସାଦ ମହାନ୍ତି ରହିଥିଲେ । ଜଣେ ପଡୋଶୀ ସ୍ତ୍ରୀ ଲୋକଙ୍କ ବେକରୁ ସୁନା ଚେନ୍ ଛିଣ୍ଡାଇ ଚୋର ନେଇ ପଳାଉଥିବା ବେଳେ ତାକୁ ଧରିବାରୁ ସେ ଛୁରା ଭୁଷି ତାଙ୍କୁ ମାରିଦେଲା । ସେ ପଦରେ ଜଣେ ସଚ୍ଚୋଟ୍ ଓ କାର୍ଯ୍ୟଦକ୍ଷ ଅଫିସରଙ୍କର ପ୍ରୟୋଜନ ହେଲା । ସେତେବେଳେ SCERT ରେ ଉପନିର୍ଦ୍ଦେଶକ ଭାବରେ ଡକ୍ଟର ନରେନ୍ଦ୍ର ପ୍ରସାଦ

ଦାସ କାମ କରୁଥିଲେ । ମୁଁ ତାଙ୍କ ନାଁ ପ୍ରସ୍ତାବ ଦେଲି ଓ ସରକାର ତାହା ଗ୍ରହଣ କଲେ । ନରେନ୍ଦ୍ର ବାବୁ ଯୋଜନା ଉପନିର୍ଦ୍ଦେଶକ ଭାବରେ ଯୋଗ ଦେଲେ ।

କଳାପଟା ଯୋଜନାରେ ସେତେବେଳେ ଜିନିଷ ଯୋଗାଣ ଚାଲିଥିଲା । ଜିନିଷ ଯୋଗାଇବା ପୂର୍ବରୁ ତା'ର ନିରୀକ୍ଷଣ କରିବାକୁ ମୁଁ ଏକ କମିଟି ଗଠନ କରିଦେଲି । ସେଥିରେ ଯୋଜନା ଉପ-ନିର୍ଦ୍ଦେଶକ ଡକ୍ଟର ନରେନ୍ଦ୍ର ପ୍ରସାଦ ଦାସ ଆବାହକ ବିତ୍ତ ପରାମର୍ଶ ଦାତା ପୀତାମ୍ବର ବିଶ୍ୱାଳ ସଦସ୍ୟ ଓ ପ୍ରାଥମିକ ଶିକ୍ଷା ଉପ-ନିର୍ଦ୍ଦେଶକ ବ୍ରହ୍ମାନନ୍ଦ ମହାନ୍ତି ସଦସ୍ୟ ରହିଲେ । ଏମାନଙ୍କ ତତ୍ତ୍ୱାବଧାନରେ କଳାପଟା ଯୋଜନା ସୁଚାରୁ ରୂପେ ଚାଲିବାରୁ ମୁଁ ନିଶ୍ଚିନ୍ତ ରହିଲି । କଳାପଟା ଯୋଜନା ସମ୍ବନ୍ଧରେ କୌଣସି ପ୍ରକାର ଆପତ୍ତି ବା ଅନିୟମିତତା ମୋ ଦୃଷ୍ଟିକୁ ଆସିନାହିଁ ।

## ୭.୪ ପରିଦର୍ଶକ ସମ୍ମିଳନୀ

ପ୍ରାଥମିକ ଶିକ୍ଷା ପ୍ରଶାସନ କ୍ଷେତ୍ରରେ ଥିବା ଅନେକ ଗୁଡିଏ ସମସ୍ୟା ମୁଁ ପ୍ରାଥମିକ ଶିକ୍ଷା ଉପନିର୍ଦ୍ଦେଶକ ଥିବା ସମୟରେ ସମାଧାନ କରିଥିଲି, ବିଶେଷତଃ ଦରମା ପ୍ରଦାନ ସଂପର୍କରେ । ତଥାପି ୪୦,୦୦୦ ପ୍ରାଥମିକ ସ୍କୁଲ ଓ ୯,୦୦୦ ଉଚ୍ଚ ପ୍ରାଥମିକ (M.E .U.G.M.E) ସ୍କୁଲର ପରିଚାଳନା ଏତେ ସହଜ ନୁହେଁ, କିଛି ନା କିଛି ସମସ୍ୟା ରହିବ । ପ୍ରାଥମିକ ଶିକ୍ଷା ପ୍ରଶାସନ କ୍ଷେତ୍ରରେ ଡି.ଆଇ ମାନଙ୍କର କାର୍ଯ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେତେବେଳେ ଇନିସ୍ପେକ୍ଟରମାନେ ସେମାନଙ୍କ ଅଧୀନରେ ଥିବା ଡି.ଆଇ ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ସ୍କୁଲ ଶିକ୍ଷା ପାଇଁ ପରୋକ୍ଷ ଭାବରେ ଉତ୍ତରଦାୟୀ ଥିଲେ । ତା ଛଡା ଶିକ୍ଷାକର୍ମୀ ଯୋଜନା କାର୍ଯ୍ୟକାରିତାର ଅଗ୍ରଗତି ସମ୍ବନ୍ଧରେ ଜାଣିବା ମଧ୍ୟ ଆବଶ୍ୟକ ହେଉଥିଲା । ତେଣୁ ପ୍ରାୟ ଦୁଇ ମାସ ଅନ୍ତରରେ ମୁଁ ଡି.ଆଇ ଓ ଇନିସ୍ପେକ୍ଟରମାନଙ୍କର ସମ୍ମିଳନୀ ଡକାଇ ତାଙ୍କଠାରୁ ତଥ୍ୟ ସଂଗ୍ରହ କରୁଥିଲି । ସେମାନେ ମଧ୍ୟ ପ୍ରଶାସନିକ ଜଟିଳତା ସମ୍ବନ୍ଧରେ ପ୍ରତ୍ୟକ୍ଷ ଭାବରେ ଆଲୋଚନା କରି ସନ୍ଦେହ ମୋଚନ କରୁଥିଲେ । ଏହା ଦ୍ୱାରା ସବୁ ଶିକ୍ଷା ଜିଲ୍ଲାରେ ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ସ୍କୁଲର ତଥା ଶିକ୍ଷକମାନଙ୍କର ଅବସ୍ଥା ସମ୍ବନ୍ଧରେ ପ୍ରତ୍ୟକ୍ଷ ଭାବରେ ଜାଣିବାର ସୁବିଧା ହେଉଥିଲା । ସୁଖର କଥା ପ୍ରାୟ ସବୁ ସମ୍ମିଳନୀରେ ସବୁ ଇନିସ୍ପେକ୍ଟର ଓ ଡି.ଆଇ ମାନେ ଯୋଗ ଦେଉଥିଲେ ଓ ଆବଶ୍ୟକୀୟ ତଥ୍ୟ ଉପସ୍ଥାପନ କରି ପ୍ରଶାସନକୁ ସହାୟ କରୁଥିଲେ ।

## ୭.୫ ନୂତନ ଶିକ୍ଷା ଜିଲ୍ଲା ସୃଷ୍ଟି

କେତେଗୁଡିଏ ଶିକ୍ଷା ଜିଲ୍ଲା ଆକାରରେ ଖୁବ୍ ବଡ ହୋଇଥିବାରୁ ସେଠାରେ ନାନା ପ୍ରକାର ପ୍ରଶାସନିକ ଅବ୍ୟବସ୍ଥା ଦେଖା ଦେଉଥିଲା । ବହୁ ପୂର୍ବରୁ ଏ ଅସୁବିଧା ହୋଇ ଆସୁଥିଲା । ସରକାର ମଧ୍ୟ ଏ ବିଷୟରେ ଅବହିତ ଥିଲେ । ମୁଁ ଆଠଗୋଟି ନୂଆ ଶିକ୍ଷା ଜିଲ୍ଲା ଖୋଲିବା ପାଇଁ ପ୍ରସ୍ତାବ ଦେଲି । ସରକାର ମଞ୍ଜୁର କରିବାରୁ ବେତନଟୀ, ବସ୍ତା, ତିର୍ତ୍ତୋଲ, ଆସିକା, ଉମରକୋଟ୍, ମାଲକାନାଗିରି ପ୍ରଭୃତି ସ୍ଥାନରେ ଶିକ୍ଷା ଜିଲ୍ଲାମାନ ଖୋଲାଗଲା । ପୂର୍ବରୁ ଓଡିଶାରେ ୫୬ଟି ଶିକ୍ଷା ଜିଲ୍ଲା ଥିଲା ତାହା ୬୪କୁ ବୃଦ୍ଧି ପାଇଲା ।

## ୭.୬ ଶିକ୍ଷା ପରିସଂଖ୍ୟାନ ପୁସ୍ତିକା ପ୍ରକାଶନ

ଶିକ୍ଷା ପରିସଂଖ୍ୟାନ ପ୍ରାୟ ପ୍ରତ୍ୟେକ ଆଲୋଚନା ବେଳେ ଆବଶ୍ୟକ ହୁଏ । ପ୍ରତିଥର ପରିସଂଖ୍ୟାନ ସଂଗ୍ରହ ପାଇଁ ଅନେକ ସମୟ ନଷ୍ଟ ହୁଏ । ୧୯୭୮ ମସିହାରେ ତତ୍କାଳୀନ ପରିସଂଖ୍ୟାନ ଅଫିସର ପାତ୍ରବାବୁଙ୍କ ଉଦ୍ୟମରେ 'Education in Orissa' ନାମରେ ଖଣ୍ଡେ ପରିସଂଖ୍ୟାନ ପୁସ୍ତିକା ଛପା ହୋଇଥିଲା । ମଝିରେ ୧୧ ବର୍ଷ ବିତି ଯାଇଥିଲେ ବି ପରିସଂଖ୍ୟାନ ବହି ଖଣ୍ଡିଏ ପ୍ରକାଶ ପାଇ ପାରିଲା ନାହିଁ । ତେଣୁ ମୁଁ Education in Orissa ବହି ଖଣ୍ଡେ ପ୍ରସ୍ତୁତ କରିବାକୁ ପରିସଂଖ୍ୟାନ ବିଭାଗକୁ କହିଲି । ସେତେବେଳେ ନଗେନ୍ଦ୍ର ନାଥ ଦାଶ ପରିସଂଖ୍ୟାନ ଅଫିସର ଥିଲେ । ସେ ଓ ତାଙ୍କ ପରିସଂଖ୍ୟାନ ବିଭାଗର ସହକର୍ମୀ ମାନଙ୍କର କଠିନ ପରିଶ୍ରମ ଯୋଗୁଁ ଖୁବ୍ କମ୍ ଦିନ ମଧ୍ୟରେ ବହିଟି ସଂପୂର୍ଣ୍ଣ ହୋଇଗଲା । ଶିକ୍ଷା ସଚିବ ପ୍ୟାରିବାବୁ ୧୫ ଦିନ ମଧ୍ୟରେ ବହିଟି Orissa Text Book Press ରେ ଛପାଇ ଦେଲେ । ବହୁଦିନର ଏକ ଅଭାବ ପୂରଣ ହୋଇଗଲା ।

## ୭.୭ ପଞ୍ଚମ ସର୍ବଭାରତୀୟ ଶିକ୍ଷାର ସଂକ୍ଷିପ୍ତ ପ୍ରକାଶନ

ସର୍ବ ଭାରତୀୟ ପଞ୍ଚମ ଶିକ୍ଷା ସର୍ଭେ ୧୯୮୬ ମସିହାରେ ଆରମ୍ଭ ହୋଇ ୧୯୮୭ ମସିହାରେ ଶେଷ ହେଲା । କିନ୍ତୁ ସର୍ଭେ ରିପୋର୍ଟ ଲେଖାଯିବାର କୌଣସି ଲକ୍ଷଣ ପ୍ରକାଶ ପାଇଲା ନାହିଁ । ମୁଁ ଦେଖିଲି ଯେ ପଞ୍ଚମ ଶିକ୍ଷା ସର୍ଭେର କୌଣସି Data ଭବିଷ୍ୟତରେ ଖୋଜିଲେ ମିଳିବ ନାହିଁ । ତେଣୁ ପ୍ରାଥମିକ ଶିକ୍ଷା

ସଂପର୍କିତ ସମସ୍ତ ତଥ୍ୟ ଏକତ୍ରୀତ କରି ଖଣ୍ଡିଏ ପୁସ୍ତିକା ଛପାଇବା ପାଇଁ ଉଦ୍ୟମ କଲି । ଏ କାମରେ ମୋତେ ହରେକୃଷ୍ଣ ନନ୍ଦ ଓ ଗଣେଶ ଚନ୍ଦ୍ର ନାୟକ Statistical Investigator ଦ୍ୱୟ ବହୁତ ସାହାଯ୍ୟ କଲେ । ଶ୍ରୀ ଲକ୍ଷ୍ମୀ ପ୍ରସାଦ ସାମନ୍ତରାୟ ମଧ୍ୟ ଯଥାସାଧ୍ୟ ସାହାଯ୍ୟ କରିଛନ୍ତି । ଏହି ପୁସ୍ତିକା ଖଣ୍ଡି ମଧ୍ୟ ପ୍ୟାରିବାବୁ ୧୫ ଦିନ ମଧ୍ୟରେ ଛପାଇ ଆଣିଥିଲେ । ପଞ୍ଚମ ସର୍ବଭାରତୀୟ ଶିକ୍ଷା ସର୍ଭେର କେବଳ ପ୍ରାଥମିକ ଶିକ୍ଷା ସଂପର୍କିତ ତଥ୍ୟ ବର୍ତ୍ତମାନ ଉପଲବ୍ଧ ।

## ୭.୮ ଉଚ୍ଚ ପ୍ରାଥମିକ ବୃତ୍ତି ପରୀକ୍ଷା ସଂସ୍କାର

ସେତେବେଳେ ପଞ୍ଚମ ଶ୍ରେଣୀ ପରେ ଉଚ୍ଚ ପ୍ରାଥମିକ ବୃତ୍ତି ପରୀକ୍ଷା ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶାଳୟ ପରିଚାଳନା କରୁଥିଲେ । ଦେଖିଲି ଯେଉଁ ପ୍ରଶ୍ନ ସବୁ ପଚରା ଯାଉଛି ତାହା କେଉଁ କାଳର ପୁରୁଣା ଢାଞ୍ଚାରେ ପ୍ରସ୍ତୁତ ହେଉଛି । ଇତି ମଧ୍ୟରେ ପରୀକ୍ଷା ପଦ୍ଧତିରେ କେତେ କ'ଣ ପରିବର୍ତ୍ତନ ହୋଇଗଲାଣି । ବସ୍ତୁତଃ Objective Type ପ୍ରଶ୍ନ ସହିତ ଆମ ପ୍ରାଥମିକ ବିଦ୍ୟାଳୟ ଛାତ୍ରଛାତ୍ରୀମାନେ ପରିଚିତ ନୁହନ୍ତି । କ୍ଷୁଦ୍ର ଉତ୍ତର ମୂଳକ ପ୍ରଶ୍ନ ସହିତ ସେମାନେ ପରିଚିତ ନୁହନ୍ତି । ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସେମାନେ Objective Type ଓ କ୍ଷୁଦ୍ର ଉତ୍ତରମୂଳକ ପ୍ରଶ୍ନର ସମ୍ମୁଖୀନ ହେବେ । ଏବେଠାରୁ ତାଙ୍କୁ ସେ ପ୍ରକାର ପ୍ରଶ୍ନରେ ଅଭ୍ୟସ୍ତ ନ କଲେ ସେମାନେ ଭବିଷ୍ୟତରେ ସମସ୍ୟାର ସମ୍ମୁଖୀନ ହେବାର ସମ୍ଭାବନା ଅଛି । ପ୍ରଶ୍ନ ପତ୍ରର ସଂସ୍କାର ପାଇଁ ଅଧ୍ୟାପକ ଗୌରିଶଙ୍କର ମହାପାତ୍ର ଓ ମୋର ଛାତ୍ର ଅଧ୍ୟାପକ ଧ୍ରୁବ ଚରଣ ମିଶ୍ରଙ୍କୁ ଅନୁରୋଧ କଲି । ଉଭୟ ବିଜ୍ଞାନର ଛାତ୍ର ହୋଇଥିବାରୁ ଗଣିତ ଓ ବିଜ୍ଞାନ ବିଷୟକ ପ୍ରଶ୍ନଗୁଡିକ ବେଶ୍ ଉନ୍ନତ ଧରଣର ହେଲା । ଅନ୍ୟ ପ୍ରଶ୍ନ ଗୁଡିକ ମଧ୍ୟ ସେମାନେ ଉନ୍ନତ କରି ଦେଲେ । ପରୀକ୍ଷା ପ୍ରଶ୍ନର ଢାଞ୍ଚା ବଦଳି ଥିବାରୁ ନମୂନା ପ୍ରଶ୍ନପତ୍ର ପ୍ରତ୍ୟେକ ସ୍କୁଲକୁ ପଠାଇ ପରିବର୍ତ୍ତନର ସୂଚନା ଦିଆଗଲା । ଭବିଷ୍ୟତରେ ଯେପରି କେହି ଆପତ୍ତି ନ କରେ ଯେ ପ୍ରଶ୍ନର ଢାଞ୍ଚା ବଦଳିବାରୁ ଆମ ପିଲା ପରୀକ୍ଷାରେ ଭଲ କଲେ ନାହିଁ । ପରୀକ୍ଷାରେ ଦେଖାଗଲା ପିଲାମାନେ ପ୍ରଶ୍ନ ପରିବର୍ତ୍ତନ ଯୋଗୁଁ ବେଶ୍ ଖୁସି ଥିଲେ । କୌଣସି ସ୍ଥାନରୁ ଆପତ୍ତି ଆସିଲା ନାହିଁ ।

## ୭.୯ ପ୍ରାଥମିକ ଶିକ୍ଷକମାନଙ୍କ ସରକାରୀ କରଣ

୧୯୭୫ ମସିହାରେ ମାଧ୍ୟମିକ ଶିକ୍ଷକମାନଙ୍କୁ ପ୍ରତ୍ୟକ୍ଷ ଦରମା ପ୍ରଦାନ ଆରମ୍ଭ ପରଠାରୁ ପ୍ରାଥମିକ ଶିକ୍ଷକମାନେ ସରକାରୀ ହେବା ପାଇଁ ଆନ୍ଦୋଳନ ଚାଲୁ ରଖିଥଲେ । ଆନ୍ଦୋଳନ ଏତେ ତୀବ୍ର ହେଲା ଯେ ସରକାର ପ୍ରାଥମିକ ଶିକ୍ଷକମାନଙ୍କୁ ସରକାରୀ କର୍ମଚାରୀ ଭାବରେ ଘୋଷଣା କରିବାକୁ ବାଧ୍ୟହେଲେ । ସେଥିପାଇଁ ଯେତେ ଟଙ୍କା ଆବଶ୍ୟକ ବଜେଟ୍‌ରେ ତା'ର ଅଭାବ ରହିଥିଲା । ଦରମାରେ ତ ପରିବର୍ତ୍ତନ ନାହିଁ । ତା ସହିତ ଘରଭଡା ଭତ୍ତା ଦିଆଯିବ । ସେଥିପାଇଁ ଟଙ୍କା ନାହିଁ । ତେଣୁ ପ୍ରସ୍ତାବ ଟାଳି ଦେବା ପାଇଁ ଅର୍ଥ ବିଭାଗ କହିଲା । ପ୍ରାଥମିକ ଶିକ୍ଷକ ସଂଘ ମହା ସଚିବ ସଚ୍ଚିଦାନନ୍ଦ ରାଉତ ଓ ଅନ୍ୟ ସଦସ୍ୟମାନଙ୍କ ସହିତ ଆଲୋଚନା କରି ସେମାନଙ୍କୁ ଘର ଭଡା ବାବଦକୁ Postal Certificate ନେବାକୁ ମୁଁ ରାଜି କରାଇଲି । ଫଳରେ ୦୫.୦୯.୧୯୮୯ ତାରିଖଠାରୁ (ଶିକ୍ଷକ ଦିବସ) ପ୍ରାଥମିକ ଶିକ୍ଷକମାନଙ୍କୁ ସରକାରୀ କର୍ମଚାରୀ ଭାବରେ ଘୋଷଣା କରାଗଲା । ପ୍ରାଥମିକ ଶିକ୍ଷକମାନଙ୍କ ସହିତ ଉନ୍ନୀତ ମଧ ଇଂରାଜି ସ୍କୁଲର (U.G.M.E) ପ୍ରଧାନ ଶିକ୍ଷକମାନଙ୍କୁ ମଧ୍ୟ ସରକାରୀ କର୍ମଚାରୀ ଭାବରେ ଘୋଷଣା କରାଗଲା । ଉନ୍ନୀତ ମଧ ଇଂରାଜି ସ୍କୁଲର ସହକାରୀ ଶିକ୍ଷକମାନେ ପ୍ରାଥମିକ ଶିକ୍ଷକ ହୋଇଥିବାରୁ ତାଙ୍କ ପାଇଁ ସ୍ୱତନ୍ତ୍ର ଘୋଷଣା ଆବଶ୍ୟକ ହେଲା ନାହିଁ ।

## ୭.୧୦ ବେସରକାରୀ ମି.ଇ ସ୍କୁଲ ଶିକ୍ଷକମାନଙ୍କ ସରକାରୀ କରଣ

୧୯୮୯ ମସିହା ଡିସେମ୍ବର ମାସରେ ଖୋର୍ଦ୍ଧା ଶିକ୍ଷା ଜିଲ୍ଲା ମଧ ଇଂରାଜି ସ୍କୁଲ ପ୍ରଧାନ ଶିକ୍ଷକ ମାନଙ୍କର ନାଚୁଣୀ ଠାରେ ଏକ ସମ୍ମିଳନୀ ଅନୁଷ୍ଠିତ ହେଲା । ସେଠାକୁ ପ୍ରାଥମିକ ଶିକ୍ଷା ଉପ ନିର୍ଦ୍ଦେଶକଙ୍କୁ ଓ ମୋତେ ଅତିଥି ଭାବରେ ନିମନ୍ତ୍ରଣ କରାଯାଇଥିଲା । ମୋତେ ଛାଡି ଅନ୍ୟ ଅତିଥିମାନେ ଭାଷଣ ଦେଲେ । ଶେଷକୁ ମୁଁ ଥାଏ । ମୋତେ ଗୋଟାଏ ଦାବି ଫର୍ଦ୍ଦ ପ୍ରଧାନ ଶିକ୍ଷକମାନେ ଧରାଇ ଦେଲେ । ଦେଖିଲି ତା ଭିତରେ ଔଷଧ ଖର୍ଚ୍ଚ, ଘର ଭଡା ଆଦି ବହୁତ ଦାବି କରାଯାଇଛି । ମୁଁ ଭାଷଣ ଦେଲାବେଳେ କହିଲି, "ଆପଣମାନେ ଯେତେ ଦାବି ଉପସ୍ଥାପନ କରିଛନ୍ତି, ତାକୁ ଗୋଟି ଗୋଟି କରି ଆଲୋଚନା କରିବାର ଆବଶ୍ୟକତା ନାହିଁ । ଗୋଟିଏ ବିଷୟ ଆଲୋଚନା କଲେ ତା ଭିତରେ ସବୁ ଦାବିଯାକ ରହିଯିବ ।

ସେ ବିଷୟଟି ହେଉଛି, ଆପଣମାନଙ୍କୁ ସରକାରୀ କର୍ମଚାରୀ କରିଦେବା । ଆପଣମାନେ ବେସରକାରୀ ସ୍କୁଲ ଶିକ୍ଷକ ହୋଇଥିବାରୁ ଓ ପରିଚାଳନା ସମିତି ଅଧୀନରେ ଥିବାରୁ ବିଶେଷ ଅସୁବିଧା ହେବ ନାହିଁ, କାରଣ ତିନି ମାସ ତଳେ ଉନ୍ନୀତ ମଧ୍ୟ ଇଂରାଜି ସ୍କୁଲ ପ୍ରଧାନ ଶିକ୍ଷକମାନଙ୍କୁ ସରକାରୀ କର୍ମଚାରୀ କରାଯାଇଛି । ସେମାନେ ମଧ୍ୟ ବେସରକାରୀ । ଯଦି ତାଙ୍କୁ ସରକାରୀ କର୍ମଚାରୀ କରାଯାଇ ପାରିଲା ଆପଣ ମାନଙ୍କୁ କାହିଁକି କରାଯାଇ ପାରିବ ନାହିଁ ?

ଏ ସମ୍ମିଳନୀ ପରେ ବାରବାଟୀ ଷ୍ଟାଡିୟମରେ ନିମ୍ନ ମାଧମିକ ସ୍କୁଲ ଶିକ୍ଷକ ସଂଘ ସମ୍ମିଳନୀ ହେଲା । ସେଠାରେ ଶିକ୍ଷକ ସଂଘ ନେତାମାନେ ମୋତେ ମାଇକ୍‌ରେ ନାଁ ଧରି ଗାଳିଦେଲେ । ତାଙ୍କର ଅଭିଯୋଗ ହେଲା ମୁଁ ସେମାନଙ୍କ ସଂଘ ଭାଙ୍ଗି ଦେବାକୁ ଚକ୍ରାନ୍ତ କରିଛି । ପ୍ରଥମେ ପ୍ରାଥମିକ ଶିକ୍ଷକ, ତା'ପରେ ଉନ୍ନୀତ ମଧ୍ୟ ଇଂରାଜି ସ୍କୁଲ ପ୍ରଧାନ ଶିକ୍ଷକମାନଙ୍କୁ ସରକାରୀ କର୍ମଚାରୀ କରାଇ ପୁଣି ବେସରକାରୀ ମି.ଇ ସ୍କୁଲ ଶିକ୍ଷକଙ୍କୁ ସଂଘରୁ ବାହାର କରିବା ପାଇଁ ଉଦ୍ୟମ କରୁଛି, ଇତ୍ୟାଦି । ଏ ଖବର ପାଇଲା ପରେ ମୁଁ ସତକୁ ସତ ବେସରକାରୀ ମି.ଇ ସ୍କୁଲ ଶିକ୍ଷକମାନଙ୍କୁ ସରକାରୀ କର୍ମଚାରୀ କରିବା ପାଇଁ ବିଧିବଦ୍ଧ ପ୍ରସ୍ତାବ ଦେଲି । ସେଥିପାଇଁ Cabinet Memorandum ମଧ୍ୟ ମୁଁ ଓ ଅତିରିକ୍ତ ଶିକ୍ଷା ସଚିବ ଅର୍ଜୁନ ବେହେରା ପ୍ରସ୍ତୁତ କଲୁ । ସେତେବେଳେ ମୁଖ୍ୟମନ୍ତ୍ରୀ ହେମାନନ୍ଦ ବିଶ୍ୱାଳ । Cabinet ରେ ଆଲୋଚନା ପରେ ପ୍ରସ୍ତାବ ଗୃହୀତ ହୋଇଗଲା ।

୧୯୯୦ ମସିହାରେ ସାଧାରଣ ନିର୍ବାଚନ ହେଲା । ନିର୍ବାଚନ ଜିତି ଜନତା ଦଳ ସରକାର ଗଠନ କଲେ । ସେମାନେ କହିଲେ କଂଗ୍ରେସ ସରକାର ଅମଳରେ Cabinet ରେ ଗୃହୀତ ପ୍ରସ୍ତାବ କାର୍ଯ୍ୟକାରୀ ହେବନାହିଁ । ମି.ଇ ସ୍କୁଲ ଶିକ୍ଷକମାନେ ପୁଣିଥରେ ଉଦ୍ୟମ କଲେ । କିଛି ମୋଟା ଅଙ୍କର ଅର୍ଥ ଖର୍ଚ୍ଚକରି ପୁଣି ଥରେ ସରକାରୀ ଚିଠି ନଂ 22044 VEM - 18/92E Dated 12.05.1992 ଚିଠିରେ ପିଛିଲା ତାରିଖ ୦୧.୦୪.୧୯୯୧ଠାରୁ ସରକାରୀ ଭାବରେ ଘୋଷିତ ହେଲେ । ବାକିଥିବା ତିନିଶହ ଦଶଟି ସ୍କୁଲ ପରବର୍ତ୍ତୀ ସମୟରେ ସରକାରୀ ହେଲେ । ରାଜନୀତି ବିଜ୍ଞାନ ଛାତ୍ରମାନେ କହି ପାରିବେ, ଥରେ ମନ୍ତ୍ରୀମଣ୍ଡଳ ବୈଠକରେ ଗୃହୀତ ପ୍ରସ୍ତାବ ଅକାମୀ ହୋଇ ପାରେ କି ? ମି.ଇ ସ୍କୁଲ ଶିକ୍ଷକମାନେ ସରକାରୀ କର୍ମଚାରୀ ହେବାପାଇଁ ପୁଣି ଥରେ ଉଦ୍ୟମ କରିବା ଦରକାର ଥିଲା କି ? ସେଥିପାଇଁ ସେମାନେ ଯେଉଁ ଅର୍ଥ ଖର୍ଚ୍ଚ କଲେ ତାହା କାହା ପକେଟକୁ ଗଲା ?

## ୭.୧୧ ଶିକ୍ଷକ ଓ ଶିକ୍ଷା କର୍ମଚାରୀଙ୍କର ଆପତ୍ତି ଶୁଣାଣି

ପ୍ରାଥମିକ ଶିକ୍ଷାରେ ବହୁତ ସମସ୍ୟା । ଦେଢଲକ୍ଷରୁ ଅଧିକ ଶିକ୍ଷକ ଶିକ୍ଷୟିତ୍ରୀ । ଅଧିକାଂଶ ଅଫିସର ସହାନୁଭୂତିଶୀଳ ହେଲେ ମଧ୍ୟ କେତେକ ଅଫିସରଙ୍କ ଅତ୍ୟାଚାରରେ ବହୁତ ଶିକ୍ଷକ ଅତ୍ୟାଚାରିତ ହେଉଥିଲେ । ସେମାନେ ଦୁଃଖ ଜଣାଇବା ପାଇଁ ନିର୍ଦ୍ଦେଶାଳୟକୁ ଆସି ନିର୍ଦ୍ଦେଶକଙ୍କୁ ଭେଟିବା ତ ଦୂରର କଥା ଉପନିର୍ଦ୍ଦେଶଙ୍କୁ ବି ଦେଖାକରି ପାରୁ ନ ଥିଲେ । ସରକାର ସପ୍ତାହରେ ଗୋଟିଏ ଦିନ Grievance day କରିଥିଲେ ମଧ୍ୟ ତାହା ପ୍ରାଥମିକ ଶିକ୍ଷା ପାଇଁ ପର୍ଯ୍ୟାପ୍ତ ନୁହେଁ । ମୁଁ ଉପନିର୍ଦ୍ଦେଶକ ଥିଲାବେଳେ ଯେତେଦିନ ଭୁବନେଶ୍ୱରରେ ରହୁଥିଲି ୧୨ଟାରୁ ୪ଟା ମଧରେ କିଛି କିଛି ଶିକ୍ଷକଙ୍କର ଦୁଃଖ ଶୁଣୁଥିଲି । ଶିକ୍ଷକମାନଙ୍କ ପ୍ରତି ମୋର ସହାନୁଭୂତିଶୀଳ ମନୋଭାବ ଥିବା କଥା ବାହାରେ ପ୍ରଚାର ହୋଇଯାଇଥିଲା । ଅଧିକାଂଶ କ୍ଷେତ୍ରରେ ଶିକ୍ଷକମାନଙ୍କ ପ୍ରତି ଅନ୍ୟାୟ ହୋଇଥିବାର ମୁଁ ଅନୁଭବ କରୁଥିଲି । ମୋର ଅଧିକାଂଶ ନିଷ୍ପତ୍ତି ଶିକ୍ଷକମାନଙ୍କ ସପକ୍ଷରେ ଗଲା । ଏଇ ପୃଷ୍ଠ ଭୂମିରୁ ମୁଁ ନିର୍ଦ୍ଦେଶକ ହେବାପରେ ପ୍ରତିଦିନ ୩୦-୩୫ ଜଣ ଶିକ୍ଷକ ତାଙ୍କ ପ୍ରତି ହୋଇଥିବା ଅନ୍ୟାୟ କଥା ଜଣାଇବାକୁ ମୋ ପାଖକୁ ଆସିଲେ । ଯଦି ମୁଁ ଭୁବନେଶ୍ୱରରେ ଥାଏ, ସଚିବାଳୟ ବା ମନ୍ତ୍ରୀଙ୍କ ଦପ୍ତରରେ ମିଟିଂ ନ ଥାଏ, ମୁଁ ୧୧ଟାରୁ ୪ଟା ପର୍ଯ୍ୟନ୍ତ ଶିକ୍ଷକମାନଙ୍କର ଦୁଃଖ ଓ ଆପତ୍ତି ଶୁଣେ । ସଙ୍ଗେ ସଙ୍ଗେ ସଂପୃକ୍ତ ଫାଇଲ୍ ମଗାଇ ମୋର ନିଷ୍ପତ୍ତି ଦରଜ କରି ଦିଏ ଓ ସେହିଦିନ ୫ଟା ପରେ ମୋର ଆଦେଶ ସେମାନଙ୍କୁ ଦେଇଦିଏ । ଏଥିପାଇଁ ଦୁଇ ଜଣ Steno ରହିଥାନ୍ତି ।

ଚାରିଟା ପରଠାରୁ ରାତି ୮ଟା ପର୍ଯ୍ୟନ୍ତ ମୋର ଫାଇଲ କାମ ଚାଲେ । କେବଳ ଉପନିର୍ଦ୍ଦେଶକମାନେ ରାତି ୮ଟା ପର୍ଯ୍ୟନ୍ତ ରହନ୍ତି ଯଦି ତାଙ୍କର ଫାଇଲ୍ ଥାଏ । ନ ହେଲେ ସେମାନେ ଚାଲିଯାନ୍ତି । ଶିକ୍ଷା ସଚିବ ପ୍ୟାରିବାବୁ ମୋତେ ଦିନେ କହିଲେ, "ମୁଁ ବହୁତ ଆପତ୍ତି ଆପଣଙ୍କ ବିଷୟରେ ପାଉଛି । ଆପଣ ୧୧ ଟାରୁ ୪ଟା ପର୍ଯ୍ୟନ୍ତ ଅଫିସ କାମ କରୁ ନାହାନ୍ତି ।" ମୁଁ ଉତ୍ତର ଦେଲି, "ଆପତ୍ତି ସତ୍ୟ ? ସେଇ ସମୟରେ ମୁଁ ଶିକ୍ଷକମାନଙ୍କର ଦୁଃଖ ଦୁର୍ଦ୍ଦଶା ତାଙ୍କଠାରୁ ଶୁଣେ । ୪ଟା ଠାରୁ ରାତି ୮ଟା ପର୍ଯ୍ୟନ୍ତ ଅଫିସ ଫାଇଲ କାମ କରେ । ଅଫିସକାମ କିଛି ବାକି ରହି ଯାଉ ନାହିଁ ତ !"

ଶେଖ୍ ତାହୁର ବକ୍ସ ଡି.ପି.ଆଇ ଅଫିସର ପ୍ରଶାସନିକ ଅଫିସର ଥିଲେ । ତିନିଗୋଟି ଯାକ ନିର୍ଦ୍ଦେଶାଳୟରେ ସେ ପ୍ରଶାସନିକ ଅଫିସର ହୋଇଥିଲେ

ମଧ୍ୟ ତାଙ୍କୁ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶାଳୟରେ ଅବସ୍ଥାପିତ କରାଯାଇଥିଲା । ମୁଁ ନିର୍ଦ୍ଦେଶକ ଭାବରେ ଯୋଗ ଦେବା ପୂର୍ବରୁ ମୋତେ କେତେକ କହିଲେ, "ତାହୁର ବକ୍ସ ଭାରି ଏକଜିଦିଆ - Headstrong - କିଛି କଥା ଶୁଣିବେ ନାହିଁ । ସେ ଯେଉଁ କୋଠରୀରେ ବସୁଥିଲେ ତାହା ବେଶ୍ ବଡ । ଶିବରାମ ବାବୁ ସେ କୋଠରୀରେ ବସିବାକୁ କହିବାରୁ ସେ ଛାଡିଲେ ନାହିଁ । ଶିବରାମ ବାବୁ ଗୋଟିଏ ଛୋଟ କୋଠରୀରେ ବସିଲେ ଯେଉଁ କୋଠରୀରେ ମୁଁ ଉପନିର୍ଦ୍ଦେଶକ ଭାବେ ବସୁଥିଲି । କିନ୍ତୁ ମୁଁ ନିର୍ଦ୍ଦେଶକ ଭାବରେ ଯୋଗ ଦେବାକୁ ଗଲାବେଳକୁ ସେ ତାଙ୍କ କୋଠରୀ ଛାଡି ଶିବରାମ ବାବୁ ଯେଉଁ କୋଠରୀରେ ବସୁଥିଲେ । ସେଠାକୁ ଚାଲି ଯାଇଛନ୍ତି । ମୁଁ ପଚାରିଲି, "ଆପଣ ଏଠିକି କାହିଁକି ଚାଲି ଆସିଲେ ?" ସେ କହିଲେ, "ମୁଁ ଯେଉଁ କୋଠରୀରେ ବସୁଥିଲି ତାହା ବଡ କୋଠରୀ, ନିର୍ଦ୍ଦେଶକ ବସିବା ପାଇଁ ଉପଯୁକ୍ତ । ଶିବରାମ ବାବୁ ତ କେବେ ଅଫିସରେ ବସନ୍ତି ନାହିଁ । ତାଙ୍କୁ ଛାଡିଥାନ୍ତି କାହିଁକି ? ଆପଣ ଆସିଲେଣି ଆପଣ ସେଠାରେ ବସନ୍ତୁ ।" ମୁଁ ତାପରେ ସେ କୋଠରୀର କିଛି ଉନ୍ନତି କରାଇ ସେଠାରେ ବସିଲି । ତାହୁର ବକ୍ସ ମୁଁ ଯୋଗ ଦେବାର ଚାରି ମାସ ପରେ ଅବସର ଗ୍ରହଣ କଲେ । ପ୍ରଶାସନିକ କାର୍ଯ୍ୟରେ ସେ କିଛି ଅସୁବିଧା କରି ନାହାନ୍ତି । ତାଙ୍କର କୌଣସି ମନ୍ଦଗୁଣ ଥିବାର ସୂଚନା ମଧ୍ୟ ମୁଁ ପାଇଲି ନାହିଁ ।

## ପ୍ରାଥମିକ ସ୍କୁଲ ଘର ନିର୍ମାଣ ସମସ୍ୟା

ପ୍ରାଥମିକ ସ୍କୁଲମାନଙ୍କର ଘର ଅଭାବ ସମସ୍ୟା ସର୍ବକାଳୀନ ସମସ୍ୟା । ନିୟମିତ ବ୍ୟବଧାନରେ ପ୍ରାଥମିକ ସ୍କୁଲଘର ନିର୍ମାଣ ପାଇଁ ଅର୍ଥ ବ୍ୟବସ୍ଥା କରାଯାଉଥିଲେ ମଧ୍ୟ ସେ ସମସ୍ୟାର ଅନ୍ତ ହୁଏ ନାହିଁ । କେତେକ କ୍ଷେତ୍ରରେ କ୍ଷେତ୍ର କର୍ମଚାରୀମାନେ ଭୁଲ୍ ରିପୋର୍ଟ ପ୍ରଦାନ କରନ୍ତି । ସ୍କୁଲର ଯଥେଷ୍ଟ .ଘର ଥିଲେ ମଧ୍ୟ ସେମାନେ ଘର ଅଭାବ ବୋଲି ରିପୋର୍ଟ ଦିଅନ୍ତି । ତା ଛଡା ମଝିରେ ମଝିରେ ଝଡ ବାତ୍ୟାରେ ଘର ଭାଙ୍ଗିଗଲେ ନୂଆ ଘର ଦରକାର ହୁଏ । ପୂର୍ବରୁ ଗ୍ରାମବାସୀମାନେ ପ୍ରାଥମିକ ସ୍କୁଲ ପାଇଁ ଘର ତିଆରି କରୁଥିଲେ ଓ ବାର୍ଷିକ ଛପର ସହ ମରାମତି ବି କରୁଥିଲେ । କିନ୍ତୁ ଯେଉଁ ଦିନୁ ଗୋଷ୍ଠୀ ଉନ୍ନୟନ ବ୍ଲକ୍ (Community Development Block) ପ୍ରାଥମିକ ସ୍କୁଲମାନଙ୍କ ପାଇଁ ପକ୍କାଘର ତିଆରି କରି ଦେଲେଣି, ସେ ଦିନରୁ ଲୋକେ ଧରିନେଲେଣି ଯେ ପ୍ରାଥମିକ ସ୍କୁଲ ପାଇଁ ଘର ତିଆରି କରିବା ଦାୟିତ୍ୱ ସରକାରଙ୍କର । ପ୍ରକାରାନ୍ତରେ ସରକାର ସେ ଦାୟିତ୍ୱ ବହନ କରିବା ଫଳରେ ଏକ ସୀମାହୀନ ସମସ୍ୟା ଭିତରେ

ପଶି ଯାଇଛନ୍ତି । ଯେତେ ଘର ତିଆରି ଗ୍ରାଣ୍ଟ ଦେଲେ ମଧ୍ୟ ଘର ସମସ୍ୟାର ଅନ୍ତ ହେଉ ନାହିଁ । ଗୋଟିଏ ବର୍ଷ ହଜାରେ ସ୍କୁଲକୁ ଘର ତିଆରି ପାଇଁ ଟଙ୍କା ଦେଲେ ତା ପର ବର୍ଷକୁ ଦୁଇ ହଜାର ସ୍କୁଲର ଘର ନାହିଁ ବୋଲି ରିପୋର୍ଟ ଆସିବ ।'

ନବମ ଅର୍ଥ କମିଶନଙ୍କର ୧୧କୋଟି ଟଙ୍କା ପ୍ରାଥମିକ ସ୍କୁଲ ଘର ତିଆରି ଓ ମରାମତି ପାଇଂ ୧୯୮୯ ମସିହାରେ ଦିଆଗଲା । ପ୍ରତ୍ୟେକ ନୂଆ ଘର ପାଇଁ ଟ.୭୦,୦୦୦ ଙ୍କା ଓ ମରାମତି ପାଇଁ ୨୭,୦୦୦ ଟଙ୍କା ଦିଆଗଲା । ଅଥଚ ୧୯୯୦ ମସିହାରେ ନୂଆ ସରକାର ଆସିଲା ପରେ ପୁଣି ରିପୋର୍ଟ ଆସିଲା ପ୍ରାଥମିକ ସ୍କୁଲମାନଙ୍କର ଘର ଅଭାବ ।

ଏବେ ଡି.ପି.ଇ.ପି ଓ ସର୍ବଶିକ୍ଷା ଅଭିଯାନ ଯୋଜନାରେ ପ୍ରାଥମିକ ସ୍କୁଲଘର ତିଆରି ପାଇଁ କ୍ଷେତ୍ର କର୍ମଚାରୀଙ୍କ ରିପୋର୍ଟ ଆଧାରରେ ଟଙ୍କା ଦିଆ ଯାଉଛି । କୌଣସି କୌଣସି ସ୍ଥାନରେ ରାଜନୈତିକ ଚାପ ଫଳରେ ଘର ତିଆରି ପାଇଁ ଟଙ୍କା ଦିଆଯାଉଛି । ଯେଉଁ ସ୍କୁଲର ଦୁଇଟି ପକ୍କାଘର ଅଛି ତୃତୀୟ ଘର ପାଇଁ ଟଙ୍କା ଦିଆଯିବା ଓ ତୃତୀୟ ଘର ତିଆରି ହେବା ବିଷୟ ମୁଁ ବ୍ୟକ୍ତିଗତ ଭାବରେ ଜାଣେ । ଆବଶ୍ୟକତା ନ ଥିବା ସ୍ଥଳେ ଏପରି ଭାବରେ ଅଧିକ ଘର ତିଆରି ଦ୍ୱାରା ବହୁ ଅର୍ଥ ବରବାଦ ହେଉଛି । ଏହାର ଗୋଟିଏ କାରଣ ଯେଉଁ ସବ୍‌ଇନିସ୍ପେକ୍ଟର ପ୍ରାଥମିକ ଶିକ୍ଷା ଦାୟିତ୍ୱରେ ଥିଲେ ସେମାନଙ୍କୁ ଗତ ୨୫ ବର୍ଷ ହେଲା ବ୍ଲକ୍‌ରେ ଅବସ୍ଥାପିତ କରା ଯାଇଛି । ସେମାନେ ଖୁବ୍ କମ୍ ସମୟ ପ୍ରାଥମିକ ଶିକ୍ଷା ପାଇଁ ଦେଉଛନ୍ତି । ପ୍ରାଥମିକ ସ୍କୁଲ ପରିଦର୍ଶନ ପାଇଁ ସେମାନଙ୍କ ଚାକିରୀ ଉଦ୍ଦିଷ୍ଟ ଥିଲେ ମଧ୍ୟ ସେମାନେ ଅଧିକ ସମୟ ଦେଇ ପାରୁନାହାନ୍ତି । ବ୍ଲକ୍ ହାକିମଙ୍କର ଆଦେଶ ଅନୁସାରେ ଉନ୍ନୟନ କାମ ପାଇଁ ସମୟ ଦେଲେ କିଛି ଅର୍ଥ ଲାଭର ସମ୍ଭାବନା ରହିଛି । ଏ ବିଷୟରେ ମୁଁ ବାରମ୍ବାର ପ୍ରଶ୍ନ ଉଠାଇଛି କିନ୍ତୁ ଫଳାଫଳ କିଛି ହୋଇନାହିଁ । ଶିକ୍ଷା ସଚିବ ଓ ଶିକ୍ଷାମନ୍ତ୍ରୀମାନେ କହନ୍ତି ଏହା ମୁଖ୍ୟମନ୍ତ୍ରୀଙ୍କର ନିଷ୍ପତ୍ତି ଓ ଭାରତ ସରକାରଙ୍କର ପରାମର୍ଶ ଅନୁସାରେ କାର୍ଯ୍ୟକାରୀ ହେଉଛି । ପ୍ରାଥମିକ ଶିକ୍ଷାର ମାନ ନିମ୍ନଗାମୀ ହେଉଥିବା କଥା ଭାରତ ସରକାର ଓ ମୁଖ୍ୟମନ୍ତ୍ରୀ ଜାଣନ୍ତି । ତା'ର କାରଣ ମଧ୍ୟ ଜାଣନ୍ତି । କିନ୍ତୁ ଅମଲାତନ୍ତ୍ରର ପ୍ରଭାବକୁ ପ୍ରତିହିତ କରିପାରୁ ନାହାନ୍ତି । ଲୋକେ ଇଂରାଜି ମାଧମ ସ୍କୁଲ, ସରସ୍ୱତୀ ଶିଶୁ ମନ୍ଦିର ସହିତ ବହୁ ବେସରକାରୀ ବିକଳ୍ପ ବ୍ୟବସ୍ଥା କରୁଛନ୍ତି ସରକାରଙ୍କର ଜ୍ଞାତସାରରେ । ପ୍ରାଥମିକ ଶିକ୍ଷାର ସଂସ୍କାର କରାଯାଉ ନାହିଁ ।

ମୁଁ ୨୮.୦୨.୧୯୯୦ ତାରିଖରେ ସରକାରୀ ଚାକିରିରୁ ଅବସର ଗ୍ରହଣ କଲି । ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଭାବରେ ମୋର କାର୍ଯ୍ୟକାଳ ସୀମିତ ଥିଲା ମାତ୍ର ସାତ ମାସ ୧୪ ଦିନ । ସେତେବେଳେ ସରକାରଙ୍କର ଆର୍ଥିକ ସଙ୍କଟ ଗୁରୁତର । ଉନ୍ନତି ମୂଳକ କାମ ପାଇଁ ସମ୍ବଳ ସୀମିତ । ପରବର୍ତ୍ତୀ କାଳରେ ଯେପରି ଦକ୍ଷିଣ ଓଡିଶା ଶିକ୍ଷା ଯୋଜନା (South Orissa Education Project) ସମସ୍ତଙ୍କ ପାଇଁ ଶିକ୍ଷା (Education For All) DPEP ଓ ସର୍ବଶିକ୍ଷା ଅଭିଯାନ କାର୍ଯ୍ୟକାରୀ ହେଲା ସେତେବେଳେ ତାହା ସ୍ୱପ୍ନ ଥିଲା । ପ୍ରାଥମିକ ଶିକ୍ଷାର ସମସ୍ୟା ବହୁତ । ସମସ୍ୟା ସମାଧାନ ପାଇଁ ରାଜ୍ୟ ସ୍ତରରେ ଖୁବ୍ କମ୍ ଲୋକ ଚିନ୍ତା କରନ୍ତି । ଯେଉଁମାନେ ଚିନ୍ତା କରନ୍ତି ସେମାନଙ୍କ ହାତରେ ଯଦି କ୍ଷମତା ଓ ଅର୍ଥ ନାହିଁ ସେ ଚିନ୍ତା ନିରର୍ଥକ । ଯାହାଙ୍କ ହାତରେ କ୍ଷମତା ଓ ଅର୍ଥ ଅଛି ସେ ଚିନ୍ତା କରିବାକୁ ଇଛା କଲେ ମଧ କରି ପାରନ୍ତି ନାହିଁ । ଶିକ୍ଷାମନ୍ତ୍ରୀ ଓ ଶିକ୍ଷା ସଚିବ ପ୍ରାଥମିକ ଶିକ୍ଷକମାନଙ୍କ ଚାକିରି ସମସ୍ୟା, ଦରମା, ବକେୟା ଦରମା ପ୍ରଦାନ ଆଦି ସମସ୍ୟାରେ ଏପରି ବିବ୍ରତ ଯେ ଶିକ୍ଷାର ଗୁଣାତ୍ମକ ଉନ୍ନତି ବିଷୟରେ ଚିନ୍ତା କରିବାକୁ ସମୟ ଓ ସୁଯୋଗ ପାଆନ୍ତି ନାହିଁ।



ଲେଖକଙ୍କର ଅବସର ଗ୍ରହଣ ଦିନ ସନ୍ଧ୍ୟାରେ ପ୍ରାଥମିକ ନିର୍ଦ୍ଦେଶାଳୟର ଉପନିର୍ଦ୍ଦେଶକଗଣ, ପୁରୀ ଶିକ୍ଷାମଣ୍ଡଳ ଅଧିକାରୀ ପାତ୍ରଙ୍କର ନନ୍ଦ ଓ ଅନ୍ୟାନ୍ୟ ସହକର୍ମୀଗଣ (୧୯୯୦)।

ମୁଁ ପ୍ରାଥମିକ ଶିକ୍ଷା ସବ୍‌ଇନିସ୍ପେକ୍ଟର ଭାବରେ ସରକାରୀ ଚାକିରି ଆରମ୍ଭ କରିଥିଲି । ପ୍ରାଥମିକ ଶିକ୍ଷା ବିଷୟରେ ମୋର ଅଭିଜ୍ଞତା ପ୍ରଚୁର । ଯେତେବେଳେ ମୁଁ ପ୍ରାଥମିକ ଶିକ୍ଷା ପାଇଁ କିଛି କରିପାରିଥାନ୍ତି ସେତେବେଳେ ମୋତେ କଲେଜରେ ରହିବା ପାଇଁ ବାଧ କରାଗଲା । ପ୍ରଶାସନ କ୍ଷେତ୍ରକୁ ଯିବା ପାଇଁ ମୁଁ ଯେତେ Representation କଲେ ମଧ୍ୟ କେହି ଶୁଣିଲେ ନାହିଁ । ଉପରିସ୍ଥ କର୍ମଚାରୀଙ୍କୁ ଖୁସି କରାଇବାପାଇଁ କାର୍ଯ୍ୟ ଦକ୍ଷତା ବ୍ୟତୀତ ମୋର ଅନ୍ୟ କିଛି ଗୁଣ ନ ଥିଲା । ଯେଉଁ ଅଫିସରମାନେ ମୋର କାମ ଦେଖି ମୋତେ ପଦୋନ୍ନତି ଦେବା ପାଇଁ କହୁଥିଲେ ସେମାନଙ୍କ ସଂଖ୍ୟା ସୀମିତ । ସର୍ବଭାରତୀୟ ସେବା ଅଧିକାରୀ ଜ୍ଞାନଚାନ୍ଦ, ହେରମ୍ବ ନାରାୟଣ ଦାସ ମହାପାତ୍ର, ସୁଧାଂଶୁ ମୋହନ ପଟ୍ଟନାୟକ, ପ୍ୟାରୀମୋହନ ମହାପାତ୍ର, ସୂର୍ଯ୍ୟ ନାରାୟଣ ମହାପାତ୍ରଙ୍କ ନାମ ଉଲ୍ଲେଖଯୋଗ୍ୟ । ପ୍ରଫେସର ବିଧୁ ଭୂଷଣ ଦାସ ଓ ପ୍ରଫେସର ଦେବେନ୍ଦ୍ର ନାଥ ମିଶ୍ରଙ୍କ ନାମ ସର୍ବାଗ୍ରେ ଉଲ୍ଲେଖନୀୟ । ତାଙ୍କ ପ୍ରୋତ୍ସାହନରେ ଚାକିରିକାଳ ମଧ୍ୟରେ ତଥା ତା'ପରେ ମୁଁ ବହୁତ କାମ କରିବାର ସୁଯୋଗ ପାଇଛି ।

ପ୍ରାଥମିକ ଶିକ୍ଷାର ଉନ୍ନତି ପାଇଁ ମୋର ଅନେକ ସ୍ୱପ୍ନ ଥିଲା । ପ୍ରାଥମିକ ଶିକ୍ଷା ସମ୍ବନ୍ଧରେ ମୋର ଅଭିଜ୍ଞତା ଓ ଆନ୍ତରିକତା ମୋତେ ସବୁବେଳେ ପ୍ରାଥମିକ ଶିକ୍ଷା ଆଡକୁ ଆକର୍ଷିତ କରେ । କିନ୍ତୁ କିଛି କାମ କରିବାକୁ ସୁଯୋଗ ଜୁଟେ ନାହିଁ । ଯେତେବେଳେ ସୁଯୋଗ ମିଳିଛି ମୁଁ ଉପଯୋଗ କରିଛି । ସ୍କୁଲ ଇନିସ୍ପେକ୍ଟର ଥିଲା ବେଳେ ପ୍ରାଥମିକ ଶିକ୍ଷା ମୋର ପ୍ରତ୍ୟକ୍ଷ ଦାୟିତ୍ୱ ନ ଥିଲେ ମଧ୍ୟ ମୁଁ ପ୍ରାଥମିକ ସ୍କୁଲ ପରିଦର୍ଶନ କରୁଥିଲି । ଯେଉଁ ହାଇସ୍କୁଲ ମୁଁ ପରିଦର୍ଶନ କରେ ତା'ନିକଟସ୍ଥ ପ୍ରାଥମିକ ସ୍କୁଲ ନିଶ୍ଚୟ ଦେଖେ । ବାଟରେ ଗଲାବେଳେ ରାସ୍ତାକଡ ପ୍ରାଥମିକ ସ୍କୁଲରେ ପଶିଯାଏ । ସମସ୍ତ ଆନ୍ତରିକତା ସତ୍ତ୍ୱେ ପ୍ରାଥମିକ ଶିକ୍ଷା ପାଇଁ ଯଥେଷ୍ଟ ନ କରିପାରିବାର ଦୁଃଖ ମନରେ ରହିଗଲା ।



## ଅଷ୍ଟମ ଅଧ୍ୟାୟ

# ସରକାରୀ ଚାକିରିରୁ ଅବସର ନେବା ପରେ

ବିଷୟବୃଦ୍ଧି ସଂପନ୍ନ ଅଫିସରମାନେ ଚାକିରିରୁ ଅବସର ନେବାର କିଛି ମାସ ପୂର୍ବରୁ ଉପରିସ୍ଥ ହାକିମ ବା କିଛି ମନ୍ତ୍ରୀଙ୍କୁ ସନ୍ତୁଷ୍ଟ କରି ସରକାରୀ ବା ଅର୍ଦ୍ଧସରକାରୀ ପରିଚାଳିତ ସଂସ୍ଥାରେ ନିଜର ନିଯୁକ୍ତି ପାଇଁ ବ୍ୟବସ୍ଥା କରିଥାନ୍ତି । ଅବସର ନେବାକ୍ଷଣି ବା ତା ପୂର୍ବରୁ ନୂଆ ଚାକିରିରେ ବାହାଲ ହୋଇଯାନ୍ତି । କେତେକ କ୍ଷେତ୍ରରେ ମନ୍ତ୍ରୀ ପରିଷଦର ବନ୍ଧୁବାନ୍ଧବ ବା ତୋଷାମଦକାରୀଙ୍କୁ ଏ ସୁଯୋଗ ମିଳେ । ମୋର ପୁନଃନିଯୁକ୍ତିର କୌଣସି ଯୋଗ୍ୟତା ନ ଥିଲା ।

ମୁଁ ଅବସର ନେବାର ୫ ଦିନ ଭିତରେ ବିଜୁ ପଟ୍ଟନାୟକଙ୍କ ମୁଖ୍ୟ ମନ୍ତ୍ରୀତ୍ୱରେ ଜନତା ଦଳ ସରକାର ଓଡିଶାରେ ଗଠିତ ହୋଇଥିଲା । ଜନତା ଦଳ ମନ୍ତ୍ରୀମଣ୍ଡଳରୁ କୌଣସି ପ୍ରକାର ସାହାଯ୍ୟ ଆଶା କରିବା ତ ଦୂରର କଥା ବରଂ କେତେକ ମନ୍ତ୍ରୀଙ୍କର ବିରୋଧ ଆଶା କରୁଥିଲି । ନିଜର ଯୋଗ୍ୟତା ଓ ଦକ୍ଷତା ବ୍ୟତୀତ ଅନ୍ୟ କୌଣସି ଉପାୟରେ ଉପରିସ୍ଥ ହାକିମ ବା ମନ୍ତ୍ରୀଙ୍କୁ ସନ୍ତୁଷ୍ଟ କରିବାର ସାଧନ ମୋ ନିକଟରେ ନ ଥିଲା । ମୋର ଜନତା ଦଳ ମନ୍ତ୍ରୀଙ୍କ ବିରାଗ ଭାଜନ ହେବାର କେତେଗୁଡିଏ କାରଣ ଥିଲା । ପ୍ରଥମ କାରଣ ହେଲା ମୋ ପୁଅ ଶରତ ରାଉତ କଂଗ୍ରେସ ମନ୍ତ୍ରୀମଣ୍ଡଳରେ ଥିଲେ State Minister for Tourism & Culture । ଦ୍ୱିତୀୟ କାରଣ ହେଲା ଜନତା ଦଳର କୌଣସି ନେତାଙ୍କର ଅନ୍ୟାୟ ଅନୁରୋଧ ରକ୍ଷା କରିବାରେ ମୁଁ ସମର୍ଥ ହୋଇ ପାରି ନ ଥିଲି । ତୃତୀୟ କାରଣ ହେଲା ସୁକିନ୍ଦା ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀଭାବେ ନିର୍ବାଚନ ଲଢି ମୋ ପୁଅ ଶରତ ଠାରୁ ୧୯୮୦ ଓ ୧୯୮୫ ନିର୍ବାଚନରେ ଦୁଇଥର ପରାଜିତ ହୋଇ ପ୍ରଫୁଲ୍ଲ ଚନ୍ଦ୍ର ଘଡେଇ ୧୯୯୦ ନିର୍ବାଚନରେ ଜନତା ଦଳ ପ୍ରାର୍ଥୀ ଭାବେ ଜିତି ଜନତା ଦଳ ମନ୍ତ୍ରୀ ମଣ୍ଡଳର ସର୍ବଶେଷ ତଥା ବିଭାଗ ବିହୀନ ମନ୍ତ୍ରୀଭାବେ ଯୋଗ ଦେଇଥିଲେ । ମୋତେ ଯେପରି ଅବସର ନେବା ପରେ କୌଣସି ପ୍ରକାର ସରକାରୀ ବା ଅର୍ଦ୍ଧସରକାରୀ କାମ ନ ମିଳେ ସେ ଦିଗରେ ସେ ବିଶେଷ ଯତ୍ନବାନ

ଥିଲେ । ତା ବ୍ୟତୀତ ମୋତେ ସମସ୍ତ ସରକାରୀ କମିଟିରୁ ବାହାର କରିଦେବା ପାଇଁ ସେ ତତ୍‌କାଳୀନ ଶିକ୍ଷା ସଚିବଙ୍କୁ ପରାମର୍ଶ ଦେଇଥିଲେ । ତେଣୁ ମୋତେ କୌଣସି ପ୍ରକାର ସରକାରୀ ଅନୁକମ୍ପା ମିଳିବା ଆଶା କରା ଯାଉ ନ ଥିଲା ।

ସରକାରୀ ଚାକିରିରୁ ଅବସର ନେବା ଦିନ ମୁଁ ଶିକ୍ଷା ବିଭାଗ ସଚିବାଳୟ ଓ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶାଳୟ ସବୁ ଅଫସର ତଥା କର୍ମଚାରୀଙ୍କୁ ଭେଟିଥିଲି । କେବଳ ଶିକ୍ଷା ସଚିବ ଅଭୟାନନ୍ଦ ରଥଙ୍କୁ ଭେଟିପାରି ନ ଥିଲି । ସେ ନିର୍ବଚନ କାର୍ଯ୍ୟରେ ସମ୍ବଲପୁରରେ ଥିଲେ । ମାର୍ଚ୍ଚ ଦୁଇ ତାରିଖ ଦିନ ତାଙ୍କୁ ଭେଟିଲି । ସେ କହିଲେ, "ଆପଣଙ୍କର ତ କିଛି କାମ ନାହିଁ । ଆପଣ ଆମକୁ ସାହାଯ୍ୟ କରିବାକୁ ଆସିବେ ?" ମୁଁ ସେଥିରେ ରାଜି ହୋଇଗଲି ଓ ସେ ଡକାଇବାକ୍ଷଣି ଯାଇ ତାଙ୍କୁ ଯଥା ଶକ୍ତି ସାହାଯ୍ୟ କଲି ।

## ୮.୧ ମଧ୍ୟାହ୍ନ ଭୋଜନ ଯୋଜନା

ମୁଖ୍ୟମନ୍ତ୍ରୀ ହେଲା ପରେ ବିଜୁବାବୁ ପ୍ରଥମେ ଘୋଷଣା କଲେ ସବୁ ପ୍ରାଥମିକ ସ୍କୁଲ ପିଲାଙ୍କୁ ମଧ୍ୟାହ୍ନ ଭୋଜନ ଦିଆଯିବ । ଏହା ତାଙ୍କ ନିର୍ବାଚନ ଇସ୍ତାହାରରେ ଥିଲା । ଶିକ୍ଷା ସଚିବ ଅଭୟବାବୁ ମଧ୍ୟାହ୍ନ ଭୋଜନ ଦାୟିତ୍ୱ ଜଣେ ଉପସଚିବଙ୍କୁ ଦେଲେ ଓ ତାଙ୍କୁ ସାହାଯ୍ୟ କରିବାକୁ ମୋତେ କହିଲେ । ମୁଁ ପ୍ରଥମେ ପରାମର୍ଶ ଦେଲି ଦୁଇ ଜଣ ଅଫିସରଙ୍କୁ ଆନ୍ଧ୍ର ଓ ତାମିଲନାଡୁ ପଠାଇବାକୁ। ସେମାନେ ଦେଖି ଆସିବେ ସେ ଦୁଇ ରାଜ୍ୟରେ ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମ କିପରି ଚାଲିଛି । ଯେଉଁ ଅଫିସର ଆନ୍ଧ୍ରପ୍ରଦେଶ ଯାଇଥିଲେ ସେ କିଛି RTE (Ready to Eat) ପୁଡିଆ ଧରି ଫେରିଲେ । ସେ କହିଲେ ଆନ୍ଧ୍ର ପ୍ରଦେଶରେ RTE ପୁଡିଆରେ ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମ ଚାଲିଛି । ସେ ପୁଡିଆରେ କିଛି ଅଟାଗୁଣ୍ଡ, ମକା ଗୁଣ୍ଡ, ଗୁଡ ଓ ଭିଟାମିନ୍ ମିଶା ଯାଇ ପ୍ରସ୍ତୁତ ହୋଇଛି । ମଧ୍ୟାହ୍ନ ବିରତି ବେଳେ ଏହି ପୁଡିଆରୁ ଗୋଟିଏ ଲେଖାଁଏ ପ୍ରତି ପିଲାଙ୍କୁ ଧରାଇ ଦିଆଯାଏ । ପିଲାମାନେ ସାଙ୍ଗରେ ତାଟିଆ ଗୋଟେ ଲେଖାଁଏ ଆଣି ଥାନ୍ତି । ଏହି ପୁଡିଆ ଭାଙ୍ଗି ସେଥିରେ ପାଣି ମିଶାଇ ଗୋଳାଇ ଦିଅନ୍ତି ଓ ତାକୁ ଖାଇ ମଧ୍ୟାହ୍ନ ଭୋଜନ କାମ ଶେଷ କରନ୍ତି ।

ତାମିଲନାଡୁ ଯେଉଁ ଅଫିସର ଯାଇଥିଲେ ସେ କେବଳ Stystem Study କରି ଫେରିଲେ । ତାଙ୍କ ମତରେ ସଂପୂର୍ଣ୍ଣ ସ୍କୁଲଟି ଗୋଟିଏ ରୋଷେଇ ଘର ଭଳି ଜଣା ଯାଉଥିଲା । ସ୍କୁଲରେ ପାଠପଢା ବଦଳରେ ମଧ୍ୟାହ୍ନ ଭୋଜନ

ଉପରେ ଅଧିକ ଗୁରୁତ୍ୱ ଦିଆଯାଉଥିଲା । ବିଜୁବାବୁ କହିଲେ, "ପିଲାଙ୍କୁ ମଧ୍ୟାହ୍ନ ଭୋଜନ ପୁଡିଆ ଦିଆଯିବ ନାହିଁ । ରୋଷେଇବାସ କରି ପିଲାଙ୍କୁ ପେଟ ଭରି ଖାଇବାକୁ ଦିଆଯିବ । ଗରିବ ପିଲାଗୁଡାକ ଘରେ ଖାଇବାକୁ ପାଉ ନାହାନ୍ତି । ଅନ୍ତତଃ ଗୋଟିଏ ବକ୍ତ ପେଟଭରି ଖାଆନ୍ତୁ ।" ତାପରେ ହିସାବ ଚାଲିଲା ଚାଉଳ, ଡାଲି, ତେଲ, ଲୁଣ, ଫୁଟଣ, କାଠ ଖର୍ଚ୍ଚ କେତେ ? ଇତ୍ୟାଦି । ଇତି ମଧ୍ୟରେ କେନ୍ଦ୍ର ସରକାର ସମସ୍ତ ପିଲାଙ୍କୁ ମଧ୍ୟାହ୍ନ ଭୋଜନ ଦେବା ପାଇଁ ଆବଶ୍ୟକୀୟ ଅର୍ଥ ପ୍ରଦାନ କଲେ । ସେଥିରେ ମଧ୍ୟାହ୍ନ ଭୋଜନ ଚାଲିଲା । ରାଜ୍ୟ ସରକାର ଖର୍ଚ୍ଚରୁ ରିହାତି ପାଇଲେ ।

ମଧ୍ୟାହ୍ନ ଭୋଜନର ପରିଣତି ଯାହା ହୋଇଛି, ତାହା ଦେଖିବା ପରେ ଅନେକ ଶିକ୍ଷାବିତ୍‌ଙ୍କ ମନରୁ ମଧ୍ୟାହ୍ନ ଭୋଜନ ପ୍ରତି ସ୍ପୃହା ତୁଟି ଯାଇଛି । ଅବଶ୍ୟ ମଧ୍ୟାହ୍ନ ଭୋଜନ ଦ୍ୱାରା ଛାତ୍ରଛାତ୍ରୀ ସଂଖ୍ୟା ବଢିଛି କିନ୍ତୁ କେତେ ପ୍ରକୃତରେ ବଢିଛି ଜାଣିବା ସମ୍ଭବ ନୁହେଁ । କାରଣ ମିଥ୍ୟା ନାମାଙ୍କନ ଓ ଉପସ୍ଥାନ ବି ବଢିଛି । ପାଠପଢା ଅବହେଳିତ ହୋଇଛି । ତେବେ ଓଡିଶା ଭଳି ଦରିଦ୍ର ରାଜ୍ୟରେ ସ୍କୁଲକୁ ଯାଉଥିବା ପିଲା ଗୋଟିଏ ବକ୍ତ ପେଟପୂରା ଖାଇବା ଗୋଟାଏ ବଡ ଉପଲବ୍ଧି । ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମରୁ ବାଦ ଦେଇ ସ୍କୁଲ ଘର ବାହାରେ ରୋଷେଇ କରାଯାଇ ପାରିଲେ ପାଠପଢା କ୍ଷତି ହୁଅନ୍ତା ନାହିଁ ଓ ଗରିବ ପିଲାମାନେ ବି ଉପକୃତ ହୋଇ ପାରନ୍ତେ । ପ୍ରତିକାମ ପାଇଁ ଶିକ୍ଷକମାନଙ୍କୁ ଉପଯୋଗ କଲେ ପାଠପଢା ବ୍ୟାହତ ହେବ । ଏ କଥା କ'ଣ ସରକାରଙ୍କୁ ବୁଝାଇବା ଦରକାର ?

## ୮.୨ କଳିଙ୍ଗ ବିହାର ପ୍ରକଳ୍ପ

ବିଜୁବାବୁଙ୍କର ଶିକ୍ଷା ବିଷୟକ ଦ୍ୱିତୀୟ ଯୋଜନା 'କଳିଙ୍ଗ ବିହାର' ପ୍ରକଳ୍ପ । ଏହି ପ୍ରକଳ୍ପରେ ଆଦିବାସୀ ପିଲାମାନଙ୍କ ପାଇଁ Education Complex ପ୍ରସ୍ତୁତ କରିବା ପ୍ରସ୍ତାବ ରହିଲା । ଆଦିବାସୀ ପିଲା ପ୍ରଥମ ଶ୍ରେଣୀରେ ନାମ ଲେଖାଇ ଗୋଟିଏ ଶିକ୍ଷାନୁଷ୍ଠାନରେ ଗ୍ରାଜୁଏଟ୍ ହୋଇ ବାହାରିବାର ପରିକଳ୍ପନା ଥିଲା । ତଦନୁଯାୟୀ ପ୍ରକଳ୍ପ ପ୍ରସ୍ତୁତି ଚାଲିଲା । ଗୋଟିଏ ହତାରେ ପ୍ରାଥମିକ, ମାଧ୍ୟମିକ, ଓ କଲେଜ ପାଇଁ ଘର ତିଆରି, ସମସ୍ତଙ୍କ ପାଇଁ ହଷ୍ଟେଲରେ ରହିବା, ଗାଧୋଇବା ପାଇଁ Bathing Pond, ଖେଳ ପଡିଆ ଇତ୍ୟାଦି ପାଇଁ ଯୋଜନା ପ୍ରସ୍ତୁତ ହେଲା । ପ୍ରଥମ ଅବସ୍ଥାରେ ଚାରିଗୋଟି 'କଳିଙ୍ଗ ବିହାର'ପାଇଁ ସ୍ଥାନ

ଚିହ୍ନଟ ହେଲା :- ମୟୁରଭଞ୍ଜ ଜିଲ୍ଲାର ବିଶୋଇ, କୋରାପୁଟ ଜିଲ୍ଲାର କତିଗୁଡା, ଫୁଲବାଣୀ ଜିଲ୍ଲାର ବାଲିଗୁଡା ଓ କେଉଁଝର ଜିଲ୍ଲାର ଶୁଆକାଟି । ପ୍ରକଳ୍ପ ନେଇ ବିଜୁବାବୁଙ୍କୁ ଦେଖାଇବାରୁ ସେ କହିଲେ,"ଏତେ ଗୁଡାଏ ପିଲା ରହିବେ । ତାଙ୍କ ପାଇଁ ଡାକ୍ତରଖାନା ଓ ଖେଳକୁଦ ପାଇଁ Sports Complex ଗୋଟାଏ ନିହାତି ଦରକାର । ତାହା ମଧ୍ୟ ଯୋଡି ଦିଆଗଲା । ଚାରିଗୋଟି ଅନୁଷ୍ଠାନ ପାଇଁ ୨୬ କୋଟି ଟଙ୍କା ଖର୍ଚ୍ଚର ଅଟକଳ କରାଗଲା । ସେଥିରେ ବିଜୁବାବୁ ସନ୍ତୁଷ୍ଟ ହେଲେ ନାହିଁ । ସେ କହିଲେ ଟଙ୍କା ପାଇଁ କିଛି ଚିନ୍ତା ନାହିଁ । ଇଂଲଣ୍ଡର ଶିଳ୍ପପତି ସ୍ୱରାଜ ପଲ ଟଙ୍କା ଦେବେ ।

ସେତେବେଳେ ମେଷ୍ଟୋ-କଳିଙ୍ଗ ଇସ୍ପାତ କାରଖାନା ତିଆରି ପାଇଁ ଖୁବ୍ ଜୋରରେ ଚର୍ଚ୍ଚା ଚାଲିଥାଏ । ବ୍ରିଟିଶ ରାଜଦୂତ, ବ୍ରିଟିଶ ଶିଳ୍ପପତି ସ୍ୱରାଜ ପଲ ଓ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ତିନିଜଣ ହାତକୁ ହାତ ଧରି ଉପରକୁ ଟେକି ମେଷ୍ଟୋ-କଳିଙ୍ଗ ଇସ୍ପାତ କାରଖାନା ପ୍ରତିଷ୍ଠା ପାଇଁ ଘୋଷଣା କଲେ ଓ ପ୍ରତୀକ ସ୍ୱରୂପ ତିନିଗୋଟି କଦମ୍ବ ଗଛ ଲଗାଇବା ଫଟୋ ଖବର କାଗଜରେ ବାହାରିଥିଲା । ସାଙ୍ଗେ ସାଙ୍ଗେ ମେଷ୍ଟୋ-କଳିଙ୍ଗ ଇସ୍ପାତ କାରଖାନାର ପାଚେରୀ ୧୦ କୋଟି ଟଙ୍କା ବ୍ୟୟରେ ତିଆରି ହୋଇଗଲା । ଏବେ ସେ ପାଚେରୀ ପାଖ ଗାଁ ଲୋକମାନେ ପଥର ତାଡି ନେଉଛନ୍ତି । ସେତେବେଳେ ମେଷ୍ଟୋ - କଳିଙ୍ଗ ଇସ୍ପାତ କାରଖାନା ପାଇଁ ୧୩୫୦୦ କୋଟି ଟଙ୍କାର ଅଟକଳ କରା ଯାଇଥିଲା । ସ୍ୱରାଜ ପଲ୍ କହିଲେ ସେ ୨୦୦ କୋଟି ଟଙ୍କା ଦେବେ । ତା ବଦଳରେ ସେ ତାଙ୍କ ନିଜସ୍ୱ ଆନୁଷ୍ଠାନିକ ଶିଳ୍ପ ପ୍ରତିଷ୍ଠା ପାଇଁ ସେଇ ପାଖରେ ୨୦୦ ଏକର ଜାଗା ମାଗିଲେ । ୧୩୫୦୦ କୋଟି ଟଙ୍କାରୁ ୨୦୦ କୋଟି ଟଙ୍କା ଦେଇ ୨୦୦ ଏକର ଜମି ମାଗଣାରେ ନେବାକୁ ଆଶା କରିଥିବା ଲୋକ ପାଖରୁ ବିଜୁବାବୁ 'କଳିଙ୍ଗ ବିହାର'ପାଇଁ ପ୍ରାୟ ୧୦୦ କୋଟି ଆଣିବା ପ୍ରସ୍ତାବ ହାସ୍ୟାସ୍ପଦ ନୁହେଁ ତ ଆଉ କ'ଣ ?

ଏଠାରେ ପ୍ରସ୍ତୁତ ହୋଇଥିବା କଳିଙ୍ଗ ବିହାର ପ୍ରକଳ୍ପ ଉପରେ ଅସନ୍ତୁଷ୍ଟ ହୋଇ ବିଜୁବାବୁ ତାଙ୍କ ଘରୋଇ ସଚିବ ପ୍ୟାରୀମୋହନ ବାବୁଙ୍କୁ ଦିଲ୍ଲୀର କୌଣସି ଏକ Consultancy କୁ ନିଯୁକ୍ତ କରିବାକୁ କହିଲେ । ପ୍ୟାରୀବାବୁ ଦିଲ୍ଲୀର ED-CIL ନାମକ ଏକ Consultancy କୁ ନିଯୁକ୍ତ କଲେ । ସେ କଳିଙ୍ଗ ବିହାର ପ୍ରକଳ୍ପ ପ୍ରସ୍ତୁତ କରିବାକୁ ୧୦ ଲକ୍ଷ ଟଙ୍କା ଦାବି କଲେ ଓ ପାଞ୍ଚ ଲକ୍ଷ

ଟଙ୍କା ଅଗ୍ରୀମ ନେଲେ । ସେତେବେଳେ କୋରାପୁଟ ଜିଲ୍ଲାର କୋଲାବ ନଗର ଘରସବୁ ଖାଲି ପଡିଥିଲା । ସେଇ ଘରର ସାମାନ୍ୟ ପରିବର୍ତ୍ତନ କରି କଳିଙ୍ଗ ବିହାର ପ୍ରକଳ୍ପ କରିବାକୁ ସ୍ଥିର ହେଲା । ଦିଲ୍ଲୀର ED-CIL କଳିଙ୍ଗ ବିହାର ପ୍ରକଳ୍ପ ପ୍ରସ୍ତୁତି ପୂର୍ବରୁ କୋଲାବନଗର ଯାଇ, ସେଠାରେ କ'ଣ ଅଛି ଓ ସେ ସବୁ କିପରି କାମରେ ଲଗାଯାଇ ପାରିବ ତାହା ଅନୁଧ୍ୟାନ କଲେ । ପ୍ରାୟ ୧୯୯୨ ମଧ ଭାଗ ବେଳକୁ ED-CIL ଗୋଟିଏ ମଧ୍ୟବର୍ତ୍ତୀ କାଳୀନ ରିପୋର୍ଟ ଦେଲେ । ସେ ରିପୋର୍ଟର ଗୋଟିଏ ନକଲ ମୋତେ ଦିଆ ଯାଇଥିଲା । ଅନ୍ୟ ଶିକ୍ଷାବିତ୍ ମଧ୍ୟ ପାଇଥିଲେ । ·

ଗୋଟିଏ ଦିନ ED-CILର କର୍ମକର୍ତ୍ତାମାନେ ଆଲୋଚନା ପାଇଁ ଆସି ପହଞ୍ଚିଲେ । ମୁଁ ସେ ପ୍ରକଳ୍ପଟିକୁ ପାଠ କରି ଦେଖିଲି ଯେ ସେଥିରେ ଶିକ୍ଷା କଥା କିଛି ନାହିଁ । କେବଳ ଘର ଦ୍ୱାର ଅଦଳ ବଦଳ ଓ ମରାମତି ପାଇଁ ୧୦୦ କୋଟି ଟଙ୍କା ଅଟକଳ କରାଯାଇଛି । ଯେତେବେଳେ ମୁଁ ଆଲୋଚନାକୁ ଗଲି · ସେଇ କଥା କହିଲି । ଏ ରିପୋର୍ଟରେ ଶିକ୍ଷା କଥା କିଛି ନାହିଁ । କେବଳ ଘରଦ୍ୱାର ଅଦଳ ବଦଳ ଓ ମରାମତି ପ୍ରସ୍ତାବ ରହିଛି । ଏ ବିଷୟରେ ମୁଁ କିଛି କହିପାରିବି ନାହିଁ । Engineering ପାଠ ମୁଁ ପଢି ନାହିଁ । ଏ କଥା ଶୁଣି ଆଦିବାସୀ ହରିଜନ ବିଭାଗ ସଚିବ D.P.Bhattacharya ଯାଇ ପ୍ୟାରୀବାବୁଙ୍କୁ ଡାକି ଆଣିଲେ । ପ୍ୟାରୀବାବୁ ମୋ କଥା ଶୁଣି କହିଲେ, ଠିକ୍ ଅଛି । ସେମାନେ ଶିକ୍ଷା ବିଷୟରେ କ'ଣ ଲେଖିଥାନ୍ତେ ସେ କଥା କହନ୍ତୁ । ପୂର୍ବରୁ ଆମେ ଯେଉଁ ପ୍ରକଳ୍ପ ପ୍ରସ୍ତୁତ କରିଥିଲୁ ତା'ରି ଆଧାରରେ ମୁଁ ସୂଚନା ଦେଲି । ସେ ସୂଚନା ନେଇ ସେମାନେ ଗଲେ ଯେ ଆଉ ଫେରିଲେ ନାହିଁ । ପ୍ରକଳ୍ପ ପ୍ରଶ୍ନ ଆଉ ଉଠିଲା ନାହିଁ । ଦୈବକ୍ରମେ ମେଷ୍ଟୋ-କଳିଙ୍ଗ ଇସ୍ପାତ କାରଖାନା ପ୍ରସ୍ତାବ କାର୍ଯ୍ୟକାରୀ ହେଲା ନାହିଁ । ସ୍ୱରାଜ ପଲ ଭାରତକୁ ଅନ୍ୟ କାମରେ ଆସୁଥିବେ କିନ୍ତୁ ମେଷ୍ଟୋ-କଳିଙ୍ଗ ଇସ୍ପାତ କାରଖାନା ସମ୍ବନ୍ଧରେ ନୁହେଁ । ସେ କଳିଙ୍ଗ ବିହାର ପାଇଁ ଟଙ୍କା ଦେବା ପ୍ରସ୍ତାବ କେବେ ଉଠିନାହିଁ । ବିଜୁବାବୁଙ୍କର କଳିଙ୍ଗ ବିହାର ପ୍ରକଳ୍ପ ପ୍ରସ୍ତାବ ମହତ ଥିଲା କିନ୍ତୁ ତାହା କାର୍ଯ୍ୟକାରୀ ହୋଇ ପାରିଲା ନାହିଁ ।

ବିଜୁବାବୁଙ୍କ ଜୀବଦ୍ଦଶାରେ ତାଙ୍କ କଳିଙ୍ଗ ବିହାର ପ୍ରକଳ୍ପ କାର୍ଯ୍ୟକାରୀ ହେଲା ନାହିଁ । ଏବେ ବିଜୁବାବୁଙ୍କ ଅଧୁରା ସ୍ୱପ୍ନକୁ ସାକାର କରିବା ପାଇଁ ବହୁତ ଲୋକ ବାହାରିଛନ୍ତି, ବିଶେଷକରି ତାଙ୍କର ସୁଯୋଗ୍ୟ ସନ୍ତାନ ନବୀନ ପଟ୍ଟନାୟକ

ମୁଖ୍ୟମନ୍ତ୍ରୀ ହେବାପରେ ବିଜୁବାବୁଙ୍କ ଅସଂପୂର୍ଣ୍ଣ ଯୋଜନାକୁ ସଂପୂର୍ଣ୍ଣ କରିବାକୁ ଶପଥ ନେଇଛନ୍ତି । ତାଙ୍କୁ ସହଯୋଗ କରିବାପାଇଁ ତାଙ୍କ ମନ୍ତ୍ରୀମଣ୍ଡଳ ଓ ତାଙ୍କ ଦଳ ଆସେମ୍ବ୍ଲି ସଦସ୍ୟମାନେ ଅଣ୍ଟା ଭିଡି ଠିଆ ହୋଇଛନ୍ତି । କିନ୍ତୁ ବିଜୁବାବୁଙ୍କର ଏଇ ଅଧୁରା ସ୍ୱପ୍ନ ବିଷୟରେ ସେମାନେ ଅବହିତ ଅଛନ୍ତି କି ନାହିଁ କିଛି ଜଣା ପଡୁନାହିଁ ।

ବିଜୁବାବୁଙ୍କର ଏ ଅଧୁରା ସ୍ୱପ୍ନ ସହିତ ସଂପୃକ୍ତ ନ ଥିବା ଜଣେ ବ୍ୟକ୍ତି ଅଚ୍ୟୁତ ସାମନ୍ତ Kalinga Institute of Social Science (Kiss) ପ୍ରତିଷ୍ଠା କରି ତା ମାଧ୍ୟମରେ ୫୦୦୦ ଆଦିବାସୀ ଛାତ୍ର ଛାତ୍ରୀଙ୍କୁ ଗୋଟିଏ ପରିସର ମଧ୍ୟରେ ପ୍ରାଥମିକ ଶ୍ରେଣୀଠାରୁ ଡିଗ୍ରୀ ସ୍ତର ପର୍ଯ୍ୟନ୍ତ ଶିକ୍ଷା ଦେବା ବ୍ୟବସ୍ଥା କରି ବିଜୁବାବୁଙ୍କ ସ୍ୱପ୍ନକୁ ସାକାର କରିଛନ୍ତି ।

## ୮.୩ ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତି
## (School Mapping)

ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବା ପାଇଁ ଯେଉଁ ମୁଖ୍ୟ ତିନିଗୋଟି କାର୍ଯ୍ୟକ୍ରମ ରହିଛି ତାହା ହେଲା :- (୧) ସବୁ ସ୍କୁଲଗାମୀ ବୟସର ପିଲାଙ୍କ ପାଇଁ ବିଦ୍ୟାଳୟ ପ୍ରତିଷ୍ଠା । (୨) ସବୁ ପିଲାଙ୍କର ନାମାଙ୍କନ, ଶିକ୍ଷା କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ ଓ ୧୪ ବର୍ଷ ଶେଷ ପର୍ଯ୍ୟନ୍ତ ପାଠ ନ ଛାଡିବା ଓ (୩) ସବୁ ପିଲାଙ୍କୁ ଉଚ୍ଚମାନର ଶିକ୍ଷା ପ୍ରଦାନ କରିବା ।

ଏ ପର୍ଯ୍ୟନ୍ତ ପ୍ରଥମ କାର୍ଯ୍ୟକ୍ରମଟି ଯେ ପୂରଣ ହୋଇ ନାହିଁ - ଏ କଥା ସ୍ୱୀକାର କରିବାକୁ ପଡିବ । ଗତ ଷାଠିଏ ବର୍ଷ ଭିତରେ ଅନେକ ପ୍ରାଥମିକ ସ୍କୁଲ ପ୍ରତିଷ୍ଠିତ ହୋଇଛି । କିନ୍ତୁ ଆବଶ୍ୟକତା ମତେ କେତେକ ସ୍କୁଲ ପ୍ରତିଷ୍ଠିତ ହୋଇନାହିଁ । କେଉଁଠାରେ ବିଦ୍ୟାଳୟ ସ୍ଥାପିତ ହେବା ଉଚିତ ତାହା ନିର୍ଦ୍ଧାରିତ ହୁଏ ବିଦ୍ୟଳୟ ମାନଚିତ୍ରରୁ । ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତ କରି ରାଜ୍ୟରେ ବା ଦେଶରେ କେତେ ସ୍କୁଲ ଦରକାର ଓ କେଉଁ କେଉଁଠାରେ ଦରକାର ତାହା ପ୍ରଥମେ ନିର୍ଦ୍ଧାରିତ ହେବା ଦରକାର ।

ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତି (School Mapping) ଏକ ବିଜ୍ଞାନସମ୍ମତ ପ୍ରକ୍ରିୟା । ଏଥିରେ ଏକ କ୍ଷୁଦ୍ର ଭୌଗୋଳିକ ବା ରାଜନୈତିକ ଏକକ ନିଆଯାଇ ତା ମଧ୍ୟରେ ଥିବା ଗ୍ରାମ / ସାହିର ଦୂରତା ନିର୍ଦ୍ଧାରଣ କରାଯାଇ ଏକ Matrix

ପ୍ରସ୍ତୁତ କରାଯାଏ । ତା ପୂର୍ବରୁ ସେହି ଭୌଗୋଳିକ ବା ରାଜନୈତିକ ଏକକର ମାନଚିତ୍ର ପ୍ରସ୍ତୁତ କରାଯାଇ ଗ୍ରାମ /ସାହିଗୁଡ଼ିକର ଅବସ୍ଥିତି ଦର୍ଶାଯାଏ । ତା ପରେ କେଉଁ ଗ୍ରାମ ସାହିରେ ବିଦ୍ୟାଳୟ ଅଛି ତାହା ଦେଖାଇ ଦିଆଯାଏ ଓ କେଉଁ ଗ୍ରାମ / ସାହିରେ ବିଦ୍ୟାଳୟ ଆବଶ୍ୟକ ତାହା ନିର୍ଦ୍ଧାରଣ କରାଯାଏ । ସାର୍ବଜନୀନ ଶିକ୍ଷାରେ ଅନୁଷ୍ଠାନ ପ୍ରତିଷ୍ଠା ପାଇଁ ଏହି ପ୍ରକ୍ରିୟା ଏକାନ୍ତ ଆବଶ୍ୟକ ।

ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତି ଏକ କଷ୍ଟକର ବ୍ୟାପାର । ଏହି ପ୍ରକ୍ରିୟାରେ ଯେଉଁ ଆବଶ୍ୟକତା ନିର୍ଦ୍ଧାରଣ କରାଯାଏ ତଦନୁସାରେ ବିଦ୍ୟାଳୟ ପ୍ରତିଷ୍ଠା କରିବା ସର୍ବଦା ସମ୍ଭବ ନ ହୋଇପାରେ । ପ୍ରତ୍ୟେକ ପିଲାର ବିଦ୍ୟାଳୟ ଆବଶ୍ୟକତା ପୂରଣ ପାଇଁ ବିଭିନ୍ନ ପ୍ରକାର ବ୍ୟବସ୍ଥା ଗ୍ରହଣ କରାଯାଇପାରେ । ଯଥା :- ବିଦ୍ୟାଳୟ ପ୍ରତିଷ୍ଠା କରିବା , କେତେକ ସାହି ବା Habitation କୁ ମିଶାଇ କେନ୍ଦ୍ର ସ୍ଥଳରେ ଗୋଟିଏ ବିଦ୍ୟାଳୟ ସ୍ଥାପନ କରିବା, ଯେଉଁଠାରେ ଦୂର ଦୂରାନ୍ତର ପିଲାମାନେ ବିଚ୍ଛିନ୍ନ ଭାବେ ରହୁଛନ୍ତି ସେଠାରେ ଛାତ୍ରାବାସ ଯୋଗାଇ ଦେବା ଇତ୍ୟାଦି । ଆମ ରାଜ୍ୟରେ ସବୁ ପ୍ରକାର ବ୍ୟବସ୍ଥାର ପ୍ରଚଳନ କରାଯାଇଛି କିନ୍ତୁ ବିଜ୍ଞାନ ସମ୍ମତ ପଦ୍ଧତିରେ ଧାରାବାହିକ ଭାବରେ ଯୋଜନାବଦ୍ଧ ରୀତିରେ କିଛି କରାଯାଇ ନାହିଁ । ସବୁ ଉଦ୍ୟମଗୁଡ଼ିକ ବିକ୍ଷିପ୍ତ ଓ ଅସଂଯୋଜିତ ।

National Institute of Educational Planning & Administration (NIEPA) ବା ଜାତୀୟ ଶିକ୍ଷା ଯୋଜନା ପ୍ରଶାସନ ପ୍ରତିଷ୍ଠାନର ମୂଳ ନାମ ଥିଲା Asian Institute, ତା'ପର ନାମ ହେଲା National Staff College ଓ ଶେଷ ନାମ ହେଲା NIEPA : ଏହି ପ୍ରତିଷ୍ଠାନରେ ପ୍ରଥମେ ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତି ପାଇଂ ୧୯୮୫ ମସିହାରେ ତାଲିମ୍ ଦିଆ ଯାଇଥିଲା । ସେଠାରେ ମୁଁ ୧୯୮୫ ରେ ପ୍ରଥମ Batch ଟ୍ରେନିଂ ନେଇଥିଲି । ପରୀକ୍ଷାମୂଳକ ପ୍ରୟୋଗ ପାଇଁ NIEPA ପ୍ରତ୍ୟେକ ରାଜ୍ୟରେ ଗୋଟିଏ ଗୋଟିଏ ବ୍ଲକ୍‌ରେ ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତି ପାଇଁ ଯୋଜନା କରିଥିଲେ । ତଫସିଲ୍ ଭୁକ୍ତ ଜାତି, ଉପଜାତି, ଓ ସାଧାରଣ ବର୍ଗର ଲୋକଙ୍କ ଦ୍ୱାରା ଅଧ୍ୟୁଷିତ ବ୍ଲକରେ ଏହି ପରୀକ୍ଷା କରାଯିବା ପାଇଁ ନିର୍ଦ୍ଦେଶ ଦିଆ ଯାଇଥିଲା । ଓଡ଼ିଶାରେ ନୀଳଗିରି ବ୍ଲକରେ ଏହି ପରୀକ୍ଷା କରାଯିବା ପାଇଁ ନିଷ୍ପତ୍ତି ହୋଇଥିଲା । ମୁଁ ଅବସର ନେବା ପରେ ପ୍ରାଥମିକ ଶିକ୍ଷା ଉପନିର୍ଦ୍ଦେଶକ କାଳୀଦତ୍ତ ଦାଶ ଏହି ପ୍ରକଳ୍ପ ଦାୟିତ୍ୱରେ ରହିଲେ । ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତି ପାଇଁ ଗୋଟିଏ କମିଟି ଗଠିତ ହେଲା । ସେଥିରେ

ମୋତେ ମୁଖ୍ୟ ଭାବରେ ରଖା ଯାଇଥିଲା । ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତି ପାଇଁ ମୋତେ ନୀଳଗିରି ବ୍ଲକକୁ ଯିବାକୁ ପଡିଲା । ସେତେବେଳେ ସମଗ୍ର ନୀଳଗିରି ବ୍ଲକକୁ ଗୋଟିଏ ଏକକ (Unit) ଭାବରେ ନିଆ ଯାଇଥିବାରୁ ଯେଉଁ Matrix ପ୍ରସ୍ତୁତ ହେଲା ତାହା ଖୁବ୍ ବଡ ହେଲା ଓ ପ୍ରାଥମିକ ସ୍କୁଲ ଆବଶ୍ୟକ ହେଉଥିବା ସ୍ଥାନ ନିର୍ଦ୍ଧାରଣ କରିବାକୁ ଜଟିଳତର ପ୍ରକ୍ରିୟା ଗ୍ରହଣ କରିବାକୁ ପଡିଲା । ପରବର୍ତ୍ତୀ କାଳରେ "ସମସ୍ତଙ୍କ ପାଇଁ ଶିକ୍ଷା" କାର୍ଯ୍ୟକ୍ରମରେ କ୍ଷୁଦ୍ର ଏକକ ନେଇ ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତି ପରୀକ୍ଷା କରାଗଲା ଓ ଦେଖାଗଲା ଯେ କ୍ଷୁଦ୍ର ଏକକ ନେଇ ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତି ଅପେକ୍ଷାକୃତ ସହଜ ଓ ସଫଳ ପ୍ରକ୍ରିୟା ।

ଯେତେବେଳେ ସମସ୍ତଙ୍କ ପାଇଁ ଶିକ୍ଷା (Education For All - EFA) କାର୍ଯ୍ୟକାରୀ ହେଲା ସେତେବେଳେ ଆମେ ୧୦ଟି ବ୍ଲକରେ ପ୍ରତି ଗ୍ରାମ ପଞ୍ଚାୟତକୁ ଏକକ ଭାବରେ ନେଇ ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତ କଲୁ । ପ୍ରାରମ୍ଭିକ ସ୍ତରରେ ସ୍କୁଲ ସବ୍‌ଇନିସ୍‌ପେକ୍ଟରମାନେ କିଛି ଭୁଲକଲେ ମଧ୍ୟ ଧୀରେ ଧୀରେ ଏହି ପ୍ରକ୍ରିୟାରେ ଅଭ୍ୟସ୍ତ ହୋଇଗଲେ ।

ଓଡିଶାରେ ବିଳମ୍ବରେ District Primary Education Program (DPEP) ଆରମ୍ଭ ହେଲା । ଯେତେବେଳେ ଭାରତର ଅନ୍ୟ ରାଜ୍ୟମାନଙ୍କରେ DPEP ଆରମ୍ଭ ହେଲା ସେତେବେଳେ ଓଡିଶାରେ (South Orissa Education Project) ଦକ୍ଷିଣ ଓଡିଶା ଶିକ୍ଷା ପ୍ରକଳ୍ପ କାର୍ଯ୍ୟକାରୀ କରିବାକୁ ପ୍ରସ୍ତାବ ଥିବାରୁ ଏଠାକୁ DPEP ଦିଆଯିବ ନାହିଁବୋଲି ଭାରତ ସରକାର ସ୍ଥିର କଲେ । ଦକ୍ଷିଣ ଓଡିଆ ଶିକ୍ଷା ପ୍ରକଳ୍ପ କାର୍ଯ୍ୟକାରୀ ହେଲାନାହିଁ । କାରଣ ଓଡିଶା ସରକାର ଯେଉଁମାନଙ୍କୁ ଏ ପ୍ରକଳ୍ପ କାର୍ଯ୍ୟକାରୀ କରିବା ପାଇଁ ନିୟୋଜିତ କଲେ ସେମାନଙ୍କର ଆବଶ୍ୟକ ଅଭିଜ୍ଞତା , ଯୋଗ୍ୟତା ଓ ଦକ୍ଷତା ନ ଥିଲା ଓ ଜର୍ମାନୀର ଯେଉଁ ସଂସ୍ଥା ଅର୍ଥ ଯୋଗାଇବା କଥା ସେ ଚାହିଁଲା ଯେ ତାଙ୍କ ଲୋକ ପ୍ରତ୍ୟକ୍ଷ Supervision କରିବେ । ଦକ୍ଷିଣ ଓଡିଶା ଶିକ୍ଷା ପ୍ରକଳ୍ପ ବିଫଳ ହେବା ପାଇଁ ପ୍ରାୟ ଦେଢବର୍ଷ ଲାଗିଗଲା । ତା'ପରେ ଓଡିଶାରେ ଆଠଗୋଟି ଜିଲ୍ଲାରେ DPEP କାର୍ଯ୍ୟକାରୀ ହେଲା । ୧୯୯୪ ମସିହାଠାରୁ । ତାର ପ୍ରଥମ ନିର୍ଦ୍ଦେଶକ ଡକ୍ଟର ଦେବେନ୍ଦ୍ର କୁମାର ରାୟ ପ୍ରାରମ୍ଭିକ ସ୍ତରରେ ବିଶେଷ ଅଗ୍ରଗତି କରି ପାରିଲେ ନାହିଁ । ତାଙ୍କ ପରେ ବେଣୁଧର ମିଶ୍ର, ଗୋପୀନାଥ ମହାନ୍ତି ପ୍ରଭୃତି କଠିନ ପରିଶ୍ରମ କଲେ । କିନ୍ତୁ ସେମାନଙ୍କର ଅଭିଜ୍ଞତାର ଅଭାବ ଯୋଗୁଁ ଶିକ୍ଷା ଠିକଣା ବାଟରେ ଚାଲି ପାରିଲା ନାହିଁ ।

୧୯୯୯ ମସିହାରେ ସର୍ବଭାରତୀୟ ସେବା ଅଫିସର ବିଜୟ ଆରୋରା DPEP ନିର୍ଦ୍ଦେଶକ ହୋଇ ଆସିଲେ । ସେତେବେଳେ ଭାରତ ସରକାର ଚାହିଁଲେ DPEP ଚାଲୁଥିବା ୧୧ଟି ଜିଲ୍ଲାରେ ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତି କାର୍ଯ୍ୟକ୍ରମ କରି ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠାର ଆବଶ୍ୟକତା ନିର୍ଦ୍ଧାରଣ କରାଯାଉ । ସେତେବେଳେ ଡକ୍ଟର ହରିହର ସାହୁ DPEP ରେ ଅତିରିକ୍ତ ନିର୍ଦ୍ଦେଶକ ଥିଲେ। ସେ ହିଁ ଜଣେ ଅଫିସର ଯାହାଙ୍କର ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତି ସମ୍ବନ୍ଧରେ ଜ୍ଞାନ ଥିଲା । ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତି ପୂର୍ବରୁ ତାଙ୍କୁ ବଦଳି କରି ଦିଆଗଲା । ତା ପରେ ନିର୍ଦ୍ଦେଶକ ବିଜୟ ଆରୋରା ରିପୋର୍ଟ୍ କରିଦେଲେ ଯେ ସବୁ DPEP ଜିଲ୍ଲାରେ ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତ ହୋଇଗଲା ଓ କେତେ ସ୍କୁଲ ଦରକାର ତା'ର ଏକ କାଳ୍ପନିକ ସଂଖ୍ୟା ଦେଇ ଦିଆଗଲା । ଏହି ରିପୋର୍ଟ୍ ପଠାଇବା ପୂର୍ବରୁ ହରିହର ସାହୁଙ୍କୁ ବଦଳି କରିବାର ବିଶେଷ କାରଣ ହେଉଛି ସେ ମିଥ୍ୟା ରିପୋର୍ଟ୍ କରିବା ବିରୋଧୀ ଓ ଦ୍ୱିତୀୟ କାରଣ ହେଲା ତାଙ୍କୁ ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତି କୌଶଳ ଜଣାଥିଲା । ଅନ୍ୟ କାହାକୁ ଜଣା ନ ଥିବାରୁ ସେମାନେ ମିଥ୍ୟା ରିପୋର୍ଟ୍ ପ୍ରଦାନରେ ସହାୟକ ହେଲେ । ଏତେ ବଡ ମିଥ୍ୟା ରିପୋର୍ଟ୍ ଦେବା ପାଇଁ ଯଥେଷ୍ଟ ସାହସ ଦରକାର । ସେ ସାହସ ବିଜୟ ଆରୋରାଙ୍କର ଥିଲା । ତାଙ୍କ ଭଳି ସାହସୀ ଅଫିସର ଖୁବ୍ କମ୍ ଦେଖାଯାନ୍ତି ।

DPEP କାର୍ଯ୍ୟକ୍ରମ କେତେ ସଫଳ ଓ କେତେ ବିଫଳ ହୋଇଛି ତାହା କୌଣସି ବାହ୍ୟ ମୂଲ୍ୟାୟନ ସଂସ୍ଥା ଦ୍ୱାରା ନିର୍ଦ୍ଧାରିତ ହୋଇନାହିଁ । ତେବେ ସଫଳତା ତୁଳନାରେ ବିଫଳତା ଯେ ଅଧିକ ତାହା ସାଧାରଣ ଲୋକଙ୍କ ଆଖିକୁ ଦେଖା ଯାଉଛି । ଯଦି କେବେ DPEP କାର୍ଯ୍ୟକାରୀ ହେଉଥିବା ଜିଲ୍ଲାରେ ସାର୍ବଜନୀନ ପ୍ରାଥମିକ ଶିକ୍ଷାର ବିଫଳତା ଠିକ୍ ଭାବରେ ଆକଳନ କରାଯାଏ ତେବେ ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତି ସମ୍ବନ୍ଧରେ ଯେଉଁ ମିଥ୍ୟା ରିପୋର୍ଟ୍ ଦିଆ ଯାଇଛି ତାହା ହିଁ ଶ୍ରେଷ୍ଠତମ କାରଣ ଭାବରେ ବିବେଚିତ ହେବ । ମିଥ୍ୟା ରିପୋର୍ଟ ଉପରେ ଆଧାରିତ କାର୍ଯ୍ୟକ୍ରମର ସଫଳତା ଆସିବ କେଉଁଠୁ ?

DPEP କାର୍ଯ୍ୟକ୍ରମ ସଂପର୍କରେ ଯେଉଁ ସବୁ ପରିସଂଖ୍ୟାନ ପ୍ରକାଶ ପାଏ ତାହା ସବୁବେଳେ ସନ୍ଦେହ ଉଦ୍ରେକ କରାଏ । ଗୁଣାତ୍ମକ ଶିକ୍ଷା ପାଇଁ DPEP ଅଟକଳର ୭୦ ଶତାଂଶ ଖର୍ଚ୍ଚ କରାଯାଏ । ଗୁଣାତ୍ମକ ଶିକ୍ଷା ପାଇଁ ଶିକ୍ଷକମାନଙ୍କର ତାଲିମ୍ ଆବଶ୍ୟକ । ବିଶେଷତଃ କର୍ମ ମାଧ୍ୟମରେ ଶିକ୍ଷା ଓ ଆନନ୍ଦମୟ ଶିକ୍ଷା

ପାଇଁ ଯେଉଁ ତାଲିମ ଆବଶ୍ୟକ ତାହା ନୀତିଗତ ଭାବରେ ଠିକ୍ ଅଛି । କିନ୍ତୁ ବାସ୍ତବ କ୍ଷେତ୍ରରେ ସେ ତାଲିମ୍ କାର୍ଯ୍ୟକାରୀ ହେଉନାହିଁ । ମୁଁ ଦେଖିବା ଭିତରେ ଗୁଣୁପୁର ଶିକ୍ଷା ଜିଲ୍ଲାରେ ପ୍ରଶାନ୍ତ ବାବୁଙ୍କ ଅଧିନାୟକତ୍ୱରେ ଯେଉଁ ତାଲିମ ଦିଆ ଯାଉଥିଲା ତାହା ଶିକ୍ଷକମାନେ ଗ୍ରହଣ କରୁଥିଲେ ଓ ତା'ର ପ୍ରୟୋଗ ମଧ ସଫଳ ହୋଇଥିଲା । କେଉଁଝର ଜିଲ୍ଲାରେ ସେ ତାଲିମ ସଫଳ ହୋଇପାରି ନାହିଁ । ଅନ୍ୟ ଜିଲ୍ଲା ମାନଙ୍କରେ କ'ଣ ହୋଇଛି ଠିକ୍ ଭାବରେ ମୋତେ ଜଣା ନାହିଁ ।

DPEP ଅଟକଳର ଶତକଡା ୨୪ ଭାଗ ଘର ତିଆରିରେ ଖର୍ଚ୍ଚ ହେବାର ବ୍ୟବସ୍ଥା ଥିଲା । ମୁଁ ଦେଖିବା ଭିତରେ କେବଳ ଗଜପତି ଜିଲ୍ଲାରେ ଘର ତିଆରି ଖର୍ଚ୍ଚ ଟଙ୍କାର ସଦ୍‌ବିନିଯୋଗ ହୋଇଛି । କାରଣ ଗଜପତି ଜିଲ୍ଲା କଲେକ୍ଟର ସକ୍ରିୟ ଭାବରେ ଘର ତିଆରି କାର୍ଯ୍ୟ ଦେଖୁଥିଲେ । ଢେଙ୍କାନାଳ ଜିଲ୍ଲାରେ ଉଭୟ ଘର ତିଆରି ଓ ଶିକ୍ଷାର ଗୁଣାତ୍ମକ ବିକାଶ ଠିକ୍ ଭାବରେ ହୋଇଥିବାର ଜଣାଯାଏ । ଯାହା ସଫଳତା ମିଳିଛି ସେ ସବୁ ବିଜୟ ଆରୋରା ନିର୍ଦ୍ଦେଶକ ଭାବରେ ଯୋଗ ଦେବା ପୂର୍ବରୁ ।



## ନବମ ଅଧ୍ୟାୟ

# Techno - Economic Survey
# ବଣ୍ଡା ଉନ୍ନୟନ ସଂସ୍ଥା

ଭାରତ ସରକାରଙ୍କ ଅନୁସୂଚିତ ଜନଜାତି କାର୍ଯ୍ୟକ୍ରମରେ ଓଡିଶାରେ ୧୬ ଗୋଟି ଅଣୁ ଯୋଜନା (Micro Project) କାର୍ଯ୍ୟକାରୀ ହେଉଛି । ଯେଉଁଗୁଡିଏ ଆଦିମ ଅଧିବାସୀ (Primitive Tribes) ଅଛନ୍ତି ସେମାନଙ୍କର ଉନ୍ନତି ବିଧାନ ପାଇଁ ଅଣୁ ଯୋଜନା ପ୍ରସ୍ତୁତ ହୋଇଛି । ପ୍ରତ୍ୟେକ ଆଦିମ ଅଧିବାସୀଙ୍କ ପାଇଁ ସ୍ୱତନ୍ତ୍ର ଅଣୁ ଯୋଜନା ପ୍ରସ୍ତୁତ ହୋଇଛି । ସେମାନଙ୍କ ସଂପ୍ରଦାୟର ସ୍ୱାତନ୍ତ୍ର୍ୟକୁ ବିଚାରକୁ ନେଇ ସେମାନଙ୍କ ଅର୍ଥନୈତିକ ତଥା ସାମାଜିକ ଉନ୍ନତି ପାଇଁ ଯୋଜନା ପ୍ରସ୍ତୁତ ହୋଇଛି । ସାଧାରଣ ବିକାଶ ଧାରାରେ ସେମାନେ ଉପକୃତ ହୋଇ ପାରୁ ନ ଥିବାରୁ ତାଙ୍କୁ ଯୋଜନାର କେନ୍ଦ୍ରବିନ୍ଦୁ କରି ଅଣୁ-ଯୋଜନା ପ୍ରସ୍ତୁତ ହୋଇଛି । ଓଡିଶାର ତଫସିଲ୍ ଭୁକ୍ତ ଜାତି ଓ ଜନଜାତି ଉନ୍ନୟନ ବିଭାଗ ଅଣୁ ଯୋଜନାଗୁଡିକ ଦାୟିତ୍ୱରେ ଅଛନ୍ତି । ସାଧାରଣ ପ୍ରଶାସନ ବିଭାଗରେ କାଳେ ଅଣୁଯୋଜନା ଗୁଡିକ ଅବହେଳିତ ହୋଇଯିବେ ସେଥିପାଇଁ ସେହି ବିଭାଗର ଗୋଟିଏ ଗବେଷଣା ଓ ଟ୍ରେନିଂ ପ୍ରତିଷ୍ଠାନକୁ ଦାୟିତ୍ୱ ଦିଆ ଯାଇଛି । ଅଣୁ ଯୋଜନା ପାଇଁ ପ୍ରଚୁର ଅର୍ଥ ଦିଆଯାଉଛି ଓ ସରକାରୀ ରିପୋର୍ଟରେ ଉନ୍ନୟନର ସୁନେଲି ଚିତ୍ର ପ୍ରତିଫଳିତ ହେଉଛି । ପ୍ରକୃତରେ କେତେ କାମ ହୋଇଛି ଜାଣିବା ପାଇଁ ଭାରତ ସରକାର ଚାହିଁଲେ SC / ST ବିଭାଗ ବାହାରେ ଥିବା କେତେକ ବିଶେଷଜ୍ଞଙ୍କୁ ନେଇ ଗୋଟିଏ ଦଳ ଗଠନ କରାଯାଇ ସେମାନଙ୍କୁ ଅଣୁ ଯୋଜନା ଉନ୍ନୟନ କାର୍ଯ୍ୟର ମୂଲ୍ୟାୟନ ପାଇଁ ଦାୟିତ୍ୱ ଦିଆଯାଉ ।

୧୯୯୧ ମସିହାରେ ରବୀନ୍ଦ୍ର ମୋହନ ସେନାପତି SC / ST ବିଭାଗର ପ୍ରମୁଖ ସଚିବ ଥିଲେ । ସେ Tribal Harijan Resarch and Training Institute (THRTI) ଆଦିବାସୀ ହରିଜନ ଗବେଷଣା ଓ ତାଲିମ ପ୍ରତିଷ୍ଠାନ ଜରିଆରେ ଏହି ମୂଲ୍ୟାୟନ କାର୍ଯ୍ୟ କରିବା ପାଇଁ ବ୍ୟବସ୍ଥା କଲେ । ଏହି ଦଳରେ

ଉଦ୍ୟାନ କାର୍ଯ୍ୟ ପାଇଁ ବିକ୍ରମ ଚରଣ ମଲ୍ଲିକ, ପଶୁ ସଂପଦ ବିକାଶ କାର୍ଯ୍ୟ ଦେଖିବା ପାଇଁ ସତ୍ୟେନ୍ଦ୍ର ପ୍ରସାଦ କର, ସ୍ୱାସ୍ଥ୍ୟାବସ୍ଥା ଦେଖିବା ପାଇଁ ଡକ୍ଟର ତ୍ରୈଲୋକ୍ୟ ପାଣି, ଶିକ୍ଷା ପାଇଁ ଡକ୍ଟର ପୂର୍ଣ୍ଣଚନ୍ଦ୍ର ରାଉତ୍ , କୃଷି ପାଇଁ ରମାକାନ୍ତ ମିଶ୍ର, ଜଙ୍ଗଲ ବିକାଶ ଦେଖିବା ପାଇଁ ରଙ୍ଗାଧର ମିଶ୍ର, ସ୍ୱାସ୍ଥ୍ୟ ଓ ପରିମଳ ବ୍ୟବସ୍ଥା ଦେଖିବା ପାଇଁ ଏସ୍.କେ.ବୈଶାଖଙ୍କୁ ନେଇ ଏହି ଦଳ ଗଠିତ ହୋଇଥିଲା । ଏମାନେ ପ୍ରଥମେ କୋରାପୁଟ ଜିଲ୍ଲା ଖଇରାପୁଟ ବ୍ଲକର ବଣ୍ଡା ବିକାଶ ସଂସ୍ଥା (Bonda Development Agency) କାର୍ଯ୍ୟ ମୂଲ୍ୟାୟନ ପାଇଁ ଗଲେ ।

ଏହି ଦଳ ପାଇଁ ଗୋଟିଏ ମିନିବସ୍ ଓ ଗୋଟିଏ ଜିପ୍ ବ୍ୟବସ୍ଥା କରାଯାଇଥିଲା । ସେଥିରେ ପେଟ୍ରୋମାକ୍ସ ଲାଇଟ୍ , ରୋଷେଇବାସ ପାଇଁ ଡେକଚି, କଡା, ବାସନ କୁସନ ସହିତ ସମସ୍ତ ସରଞ୍ଜାମ ଦିଆ ଯାଇଥିଲା । ଏହି ଦଳର ସଦସ୍ୟମାନେ ଚାଉଳ, ଡାଲି, ତେଲ, ଲୁଣ, ପିଆଜ, ରସୁଣ, ଅଦା ପ୍ରଭୃତି ମସଲା କିଣି ସାଙ୍ଗରେ ନିଅନ୍ତି । ଜଙ୍ଗଲ ଜାଗାରେ ଯେପରି ହଇରାଣ ନ ହୁଅନ୍ତି ସେଥିପାଇଁ ପରିବା ବ୍ୟତୀତ ଆଉ ସବୁ ସରଞ୍ଜାମ ଏମାନେ କିଣି ନିଅନ୍ତି । ରୋଷେଇବାସ ଓ ଅନ୍ୟାନ୍ୟ କାର୍ଯ୍ୟ ପାଇଁ ଦୁଇଜଣ ପିଅନ ମଧ୍ୟ ସାଙ୍ଗରେ ଯା'ନ୍ତି ।

୨୩.୦୩.୧୯୯୧ ତାରିଖରେ ଯାତ୍ରାରମ୍ଭ କରି ରାୟଗଡାରେ ପ୍ରଥମ ରାତ୍ରି ଯାପନ କରି ୨୪.୦୩.୧୯୯୧ ତାରିଖରେ ଅଶୋକ ଦଳୱାଇଙ୍କ ସହିତ ଆଦିବାସୀ ଉନ୍ନୟନର ବିଭିନ୍ନ ଦିଗ ସମ୍ବନ୍ଧରେ ଆଲୋଚନା କଲୁ । ୨୫.୦୩.୯୧ ତାରିଖରେ ଖଇରାପୁଟ ବ୍ଲକ୍ ଉନ୍ନୟନ ଅଫିସରଙ୍କ ସହିତ ବଣ୍ଡା ଉନ୍ନୟନ ବିଷୟରେ ଆଲୋଚନା କଲୁ ଓ ୨୬.୦୩.୧୯୯୧ ତାରିଖରେ ବଣ୍ଡା ଉନ୍ନୟନ ସଂସ୍ଥାର ସଦର ମହକୁମା ମୁଦୁଲିପଡା ଆଶ୍ରମ ସ୍କୁଲରେ ରହିଲୁ । ସେତେବେଳେ ବଣ୍ଡା ଉନ୍ନୟନ ସଂସ୍ଥା ଅଫିସର ଅଶୋକ ଦାସ ନୂଆ ହୋଇ ସେଠାରେ ଯୋଗ ଦେଇଥାନ୍ତି । ଯୁବକ ଲୋକ କାମ କରିବା ପାଇଁ ପ୍ରବଳ ଉତ୍ସାହ । ସେ ଏହି ମୂଲ୍ୟାୟନ ପ୍ରକ୍ରିୟାକୁ ସ୍ୱାଗତ କଲେ । କାରଣ ଆମ ରିପୋର୍ଟ ତାଙ୍କ କାର୍ଯ୍ୟର ପ୍ରାରମ୍ଭିକ ଅବସ୍ଥା ସମ୍ବନ୍ଧରେ ସୂଚନା ଦେବ । ସେ ଆମ କ୍ଷେତ୍ର ପରିଦର୍ଶନରେ ବହୁତ ସାହାଯ୍ୟ କଲେ । ତାଙ୍କ ଡ୍ରାଇଭର ଆମ ସହିତ ବଣ୍ଡାମାନଙ୍କର କଥାବାର୍ତ୍ତା ସମୟରେ ଦୋଭାଷୀ କାମ କରି ସେମାନଙ୍କର କଥା ସବୁ ବୁଝାଇ ଦେଉଥିଲେ ।

ପ୍ରଥମ ଦିନ ମୂଲ୍ୟାୟନକାରୀ ଦଳ ମୁଦୁଲିପଡାଠାରୁ ୬ କିଲୋମିଟର ଦୂର ଡୁମୁରିପଡା ଓ ସେଠାରୁ ଫେରି ବଣ୍ଡାପଡା ଗଲେ । ଦ୍ୱିତୀୟ ଦିନ ଅଣ୍ଡ୍ରାହାଲ ଗ୍ରାମ ପଞ୍ଚାୟତ ମୁଖ୍ୟ ଦପ୍ତର ଯାଇ ଲୋକଙ୍କ ସହିତ ଆଲୋଚନା କଲେ । ପ୍ରତିଦିନ ଉପରବେଳା ଅଫିସ ରେକର୍ଡ ଦେଖାଦେଖିରେ କଟେ । ଦୁଇ ଦିନର କ୍ଷେତ୍ର ପରିଦର୍ଶନ, ଆଲୋଚନା ଓ ଅଫିସ ରେକର୍ଡ ଦେଖି ଯେଉଁ ଚିତ୍ର ମିଳିଲା ତାହା ଅତିଶୟ ସାଂଘାତିକ । ଅଫିସ ରେକର୍ଡର ରିପୋର୍ଟ ସହିତ ବାସ୍ତବ ସ୍ଥିତିର କୌଣସି ସମ୍ବନ୍ଧ ନାହିଁ । ଯାହା ରିପୋର୍ଟ ହୋଇଛି ତାହା ସଂପୂର୍ଣ୍ଣ ମିଥ୍ୟା ।

ବଣ୍ଡାମାନେ ଦୁଇ ଭାଗରେ ବିଭକ୍ତ :- ଯଥା (୧) ପାର୍ବତ୍ୟ ବଣ୍ଡା ଓ (୨) ତଳ ବଣ୍ଡା । ଯେଉଁ ବଣ୍ଡାମାନେ ପାହାଡରୁ ଓହ୍ଲାଇ ତଳକୁ ଚାଲି ଯାଇଛନ୍ତି ସେମାନେ ଅନ୍ୟମାନଙ୍କ ସହିତ ମିଶି ଉନ୍ନତ ହୋଇ ଯାଇଛନ୍ତି । ତେଣୁ ସେମାନଙ୍କୁ ବଣ୍ଡାମାନଙ୍କ ସହିତ ଏକାଠି ବିଚାର କରାଯାଏ ନାହିଁ । ଯେଉଁମାନେ ବଣ୍ଡା ପର୍ବତରେ ରହିଛନ୍ତି ସେମାନଙ୍କ ଉନ୍ନୟନ ପାଇଁ ବଣ୍ଡା ଉନ୍ନୟନ ସଂସ୍ଥା (B.D.A) କାମ କରେ ।

ସେଠାରେ ୧୦ ବର୍ଷକାଳ ଆଠ ଗୋଟି ପ୍ରାଥମିକ ସ୍କୁଲ ଚାଲୁଥିବାର ରେକର୍ଡ ଥିଲେ ମଧ୍ୟ ସଖୀପଡାଠାରେ ଗୋଟିଏ ପ୍ରାଥମିକ ସ୍କୁଲ ବ୍ୟତୀତ ଅନ୍ୟ କୌଣସିଠାରେ ସ୍କୁଲ ଚାଲେ ନାହିଁ । ଅଥଚ ଶିକ୍ଷକମାନେ ନିୟମିତ ଦରମା ପାଆନ୍ତି । ୧୯୮୩ ମସିହାରୁ ଆଠଗୋଟି ସ୍କୁଲଘର ନିର୍ମାଣ ନିମିତ୍ତ ପ୍ରତି ସ୍କୁଲକୁ ୨୦,୯୯୮ଟଙ୍କା ଲେଖାଁଏ ଅନୁଦାନ ଦିଆଯାଇଛି । କେବଳ ଡୁମୁରିପଡାରେ ଗୋଟିଏ କାଠର Frame ତିଆରି ହୋଇଥିଲା । ତାହା ଭାଙ୍ଗି ପଡିଛି । ବଣ୍ଡା ପଡାରେ ଗୋଟିଏ ଘରର କାନ୍ଥ ୪ ଫୁଟ ତିଆରି ହୋଇ ପଡି ରହିଛି । ଆଉ କୌଣସିଠାରେ କିଛି ତିଆରି ହୋଇନାହିଁ । ବି.ଡି.ଓ କହୁଛନ୍ତି କଣ୍ଟ୍ରାକ୍ଟର ଟଙ୍କା ନେଇ ପଳାଇ ଯାଇଛି । ସଖୀପଡା ବ୍ୟତୀତ ଅନ୍ୟ କୌଣସି ସ୍କୁଲରେ ପିଲାମାନଙ୍କ ନାମ ଲେଖା ଯାଇନାହିଁ । ଶିକ୍ଷକ ଯାଆନ୍ତି ନାହିଁ କି ପାଠ ପଢା ହୁଏ ନାହିଁ ।

ଲକ୍ଷ ଲକ୍ଷ ଗଛ ଲଗାଯାଇଥିବାର ରେକର୍ଡ ଅଛି କିନ୍ତୁ ଗୋଟିଏ ଗଛ ବଞ୍ଚି ନାହିଁ । ଶହ ଶହ ଏକର ପଡିଆ ଜମି ଉଠିଆ ହୋଇଥିବାର ରିପୋର୍ଟ ଅଛି । ପ୍ରକୃତରେ ଉଠିଆ ହୋଇଛି ଅଳ୍ପ କେତେ ଏକର । ବଣ୍ଡାମାନଙ୍କୁ ଘୁଷୁରି ଚାଷର ବିକାଶ ପାଇଁ ମାଗଣାରେ ଧଳା ଘୁଷୁରି ଦିଆ ଯାଇଥିଲା । ସବୁଯାକ ଧଳା ଘୁଷୁରି ମାରି ଖାଇ ଯାଇଛନ୍ତି । ଏବେ ଘୁଷୁରି ସେଠାରେ ଅଛନ୍ତି କିନ୍ତୁ ଧଳା ଘୁଷୁରିର ଚିହ୍ନବର୍ଣ୍ଣ ନାହିଁ ।

ଜଙ୍ଗଲ ସୃଷ୍ଟି ପାଇଁ ଟଙ୍କା ଖର୍ଚ୍ଚ ହୋଇଛି, କିନ୍ତୁ ଜଙ୍ଗଲ ନାହିଁ । ପ୍ରାକୃତିକ ଜଙ୍ଗଲ ଯାହା ଥିଲା ସେ ସବୁ ବିଲୟମୁଖୀ । ଉଦ୍ୟାନ ପାଇଁ ଟଙ୍କା ଖର୍ଚ୍ଚ ହୋଇଛି । କିନ୍ତୁ ଉଦ୍ୟାନ ନାହିଁ । ପ୍ରାକୃତିକ ଭାବରେ ଶହ ଶହ ଉନ୍ନତ ଧରଣର ଖଜା ପଣସ ଗଛ ପର୍ବତ ସାରା ରହିଛି । ପଣସ ପାଚିବାବେଳେ ବଣ୍ଡା ସ୍ତ୍ରୀ ଲୋକମାନେ ନିକଟସ୍ଥ ହାଟରେ ନେଇ ବିକ୍ରି କରନ୍ତି । ଡାକ୍ତର କହିଲେ ଲୋକମାନଙ୍କର ସ୍ୱାସ୍ଥ୍ୟବସ୍ଥା ଭଲ ନାହିଁ । କିନ୍ତୁ ତାଙ୍କ ପିଲାମାନଙ୍କର ପୁଷ୍ଟିର ଅଭାବ ନାହିଁ । ବୋଧହୁଏ ସକାଳେ ସଲପ ରସ ପିଇବା ଦ୍ୱାରା ତାଙ୍କର ପୁଷ୍ଟିର ଅଭାବ ପୂରଣ ହୋଇଯାଏ ।

ବଣ୍ଡା ସ୍ତ୍ରୀ ଲୋକମାନେ 'ରିଙ୍ଗା' ପିନ୍ଧନ୍ତି । ରିଙ୍ଗା ହେଉଛି ୩ ଫୁଟ୍ ଲମ୍ବ ଓ ଏକ ଫୁଟ୍ ଓସାର ଏକ ମୋଟା ପରିଧେୟ, କେବଳ ଅଣ୍ଟା ଚାରିପଟେ ଗୁଡାଇ ପିନ୍ଧନ୍ତି । ଦେହର ଉପରଭାଗ କେବଳ ମାଳି ଓ ବେକରେ ଆଲୁମିନିୟମ ବଳା ପିନ୍ଧନ୍ତି । ମୁଣ୍ଡ ସବୁବେଳେ ଲଣ୍ଡିତ । ଯେଉଁ ଝିଅମାନେ ମୁଦୁଲିପଡାରେ ଗାଲିଚା ବୁଣାରେ ନିଯୁକ୍ତ ସେମାନେ ଶାଢୀ ପିନ୍ଧନ୍ତି । ମୁଣ୍ଡରେ ଲମ୍ବା ଚୁଟି ରଖନ୍ତି ଓ ସେମାନଙ୍କ ଚଳଣିରେ ଆଧୁନିକତା ଦେଖିବାକୁ ମିଳେ ।

ଗାଁ ମାନଙ୍କର ପରିମଳ ବ୍ୟବସ୍ଥା ନିହାତି ଖରାପ । ଗୋଟିଏ ବଖରା ଘରେ ମଣିଷ, ଘୁଷୁରି, କୁକୁଡା, ଛେଳି ଏକାଠି ରହନ୍ତି । ଘର ସାମନାରେ ଖଣ୍ଡେ ଛୋଟ ଚାଳିଆ ଥାଏ । ଚାରିଆଡେ ପାହାଡ, ପଥର । ଝରଣାର ପାଣି ସେମାନେ ପିଅନ୍ତି । କେବଳ ସଦର ମହକୁମାରେ ଅଫିସ ଓ କେତେକ କ୍ୱାଟର ତିଆରି ହୋଇଛି । ଗୋଟିଏ ଫାଣ୍ଡି ସେଠାରେ ଅଛି । ପୋଲିସ ବ୍ୟବସ୍ଥା ଅତ୍ୟନ୍ତ ଦୁର୍ବଳ, ଗ୍ରାମ ଗୋଷ୍ଠୀ ଓ ଦଳମାନଙ୍କ ମଧ୍ୟରେ ସଂଘର୍ଷ ଓ ମୃତ୍ୟୁ ସେଠାରେ ସାଧାରଣ ଘଟଣା । ଧନୁର୍ବିଦ୍ୟାରେ ଛୋଟ ପିଲାମାନେ ବି ଧୁରନ୍ଧର ।

ବଣ୍ଡା ପର୍ବତକୁ ଦ୍ୱିତୀୟ ଥର ଯାଇଥିଲୁ *୫/୬/୧୯୯୧*ରେ । *୦୭/୦୬/୧୯୯୧*ରେ ଦାନ୍ତିପଡା ପ୍ରାଥମିକ ସ୍କୁଲ ପରିଦର୍ଶନ କରି ଗ୍ରାମବାସୀଙ୍କ ସହିତ ଆଲୋଚନା କଲୁ । ଅଣ୍ଡ୍ରାହାଲ ପଞ୍ଚାୟତ HeadQuarter ରେ ଲୋକମାନଙ୍କ ସହିତ ଆଲୋଚନା ବେଳେ ଜାଣିଲୁ ସ୍କୁଲଘର ତିଆରି ପାଇଁ ଗାଁ ଭିତରେ କେହି ଜାଗା ଛାଡିବାକୁ ରାଜି ନୁହନ୍ତି । ଗୋଟିଏ ଅଙ୍ଗନବାଡି କେନ୍ଦ୍ର ସେଠାରେ ଅଛି । ବିଭାସିନୀ ସିଂ ନାମ୍ନୀ ଜଣେ ମହିଳା ସେଠାରେ ଅଙ୍ଗନବାଡି କର୍ମୀ ଭାବେ କାମ କରନ୍ତି । ତାଙ୍କଠାରୁ ଅଣ୍ଡ୍ରାହାଲ ପଞ୍ଚାୟତ ସମ୍ବନ୍ଧରେ ଅନେକ

ତଥ୍ୟ ମିଳିଲା । ବଣ୍ଡା ପାହାଡରେ ବଣ୍ଡାମାନଙ୍କ ମଧ୍ୟରେ ସେ ଯେପରି ତାଙ୍କର କର୍ତ୍ତବ୍ୟ ସଂପାଦନ କରନ୍ତି ତାହା ପ୍ରଶଂସା ଯୋଗ୍ୟ । ବଣ୍ଡା ସ୍ତ୍ରୀ ଲୋକମାନଙ୍କ ମଧ୍ୟରେ ସେ ଅତ୍ୟନ୍ତ ପ୍ରିୟ । ତାଙ୍କ କଥାକୁ ବଣ୍ଡାମାନେ ମାନି ଚଳନ୍ତି ।

ଅଣ୍ଡ୍ରାହାଲରୁ ମୁଦୁଲିପଡା ଫେରି ପ୍ରକଳ୍ପ ନିର୍ଦ୍ଦେଶକ ଅଶୋକ ଦାସଙ୍କ ସହିତ ଆଲୋଚନା କରି ବାକିଥିବା ତଥ୍ୟ ସମ୍ବନ୍ଧୀୟ ରେକର୍ଡପତ୍ର ସଂଗ୍ରହ କରି ଖଇରୀପୁଟ ବ୍ଲକ୍ ଅଫିସକୁ ଫେରିଲୁ । ସେଠାରେ ବି.ଡି.ଓ, ସି.ଡି.ପି.ଓ ତଥା ବ୍ଲକ୍‌ର ଅନ୍ୟାନ୍ୟ ସଂପ୍ରସାରଣ ଅଧିକାରୀମାନଙ୍କ ସହିତ ଆଲୋଚନା ବେଳେ ବଣ୍ଡା ଗ୍ରାମଗୁଡିକ ଯେ ଅବହେଳିତ ହୁଅନ୍ତି ତାହା ସ୍ପଷ୍ଟ ଜଣାଗଲା । ଆମେ ସବୁ ଦେଖି ଆସିଥିବାରୁ ଆମକୁ ଠକିବା ସହଜ ନ ଥିଲା । ସେମାନେ ବ୍ଲକର ଗ୍ରାମସଂଖ୍ୟା ସହିତ ବଣ୍ଡା ଗ୍ରାମର ଅନୁପାତ ବାହାର କରି ଖର୍ଚ୍ଚର ଅନୁପାତ ସହିତ ତୁଳନା କଲେ । କିନ୍ତୁ ଆମର କହିବା କଥା ହେଲା ଅବହେଳିତ ବଣ୍ଡାମାନଙ୍କର ଉନ୍ନୟନ ପାଇଁ ଅଧିକ ଖର୍ଚ୍ଚ ଓ ତଦାରଖ ଆବଶ୍ୟକ । ବି.ଡି.ଓ ଶିକ୍ଷକମାନଙ୍କୁ ଦରମା ଦିଅନ୍ତି । ସେମାନେ ଯେ ଆଦୌ କାମ କରିବାକୁ ଯାଆନ୍ତି ନାହିଁ । ସେ କଥା କ'ଣ ସେ ଜାଣନ୍ତି ନାହିଁ ? ସ୍କୁଲ ସବ୍‌ଇନିସ୍ପେକ୍ଟର ବିଲ୍ ଦିଅନ୍ତି । ନିୟମିତ ପରିଦର୍ଶନ ତାଙ୍କର କର୍ତ୍ତବ୍ୟ ଭିତରେ ଅନ୍ତର୍ଗତ । ଅଥଚ ସ୍କୁଲ ଯେ ନାହିଁ, ତାହା ଜାଣି ମଧ୍ୟ ସବ୍‌ଇନିସ୍ପେକ୍ଟର ବିଲ୍ କରନ୍ତି । ଆମ ରିପୋର୍ଟରେ ସମସ୍ତ କଥା ଜଣାଇ ଦିଆ ଯାଇଛି । ତଥାପି ତା' ଉପରେ କିଛି କାର୍ଯ୍ୟାନୁଷ୍ଠାନ ହେଲାଭଳି ଜଣଯାଉ ନାହିଁ । ବୋଧହୁଏ ଓଡିଶା ସରକାର କେନ୍ଦ୍ର ସରକାରଙ୍କୁ ଏ ପ୍ରକାର ରିପୋର୍ଟ ପଠାଇବାର ପକ୍ଷପାତୀ ନ ଥିଲେ । ସେଥିପାଇଁ କାର୍ଯ୍ୟାନୁଷ୍ଠାନର ପ୍ରଶ୍ନ ଉଠିଲା ନାହିଁ ।

## ୯.୨ କୁଟିଆ କନ୍ଧ ଉନ୍ନୟନ ସଂସ୍ଥା

ଆମର ଦ୍ୱିତୀୟ ଅଭିଯାନ ଫୁଲବାଣୀ ଜିଲ୍ଲା ତୁମୁଡିବନ୍ଧ ବ୍ଲକ୍ ବେଲଘର ଅଞ୍ଚଳକୁ ୨୨/୦୪/୧୯୯୧ ତାରିଖରେ ଆରମ୍ଭ ହେଲା । ସେଦିନ ଭୁବନେଶ୍ୱରରୁ ବାହାରି ବାଲିଗୁଡାଠାରେ ରାତ୍ରିଭୋଜନ କରି ତୁମୁଡିବନ୍ଧ ଡାକବଙ୍ଗଳାରେ ରହିଲୁ । ୨୩/୦୪/୧୯୯୧ ତାରିଖରେ ତୁମୁଡିବନ୍ଧ ବ୍ଲକ୍ ଅଫିସକୁ ଯାଇ ସର୍ଭେଦଳ ସଦସ୍ୟମାନେ ଆବଶ୍ୟକୀୟ ତଥ୍ୟ ସଂଗ୍ରହ କରିବାରେ

ଲାଗିଗଲେ । କୁଟିଆକନ୍ଧ ଉନ୍ନୟନ ସଂସ୍ଥା ତୁମୁଡିବନ୍ଧ ବ୍ଲକ୍ ଅନ୍ତର୍ଗତ ହୋଇଥିବାରୁ ବି.ଡି.ଓଙ୍କୁ ଅନୁରୋଧ କଲୁ ସାଙ୍ଗରେ ଯିବା ପାଇଁ ସେ ପ୍ରଥମେ ଅସହଯୋଗ କଲାଭଳି ଜଣାଯାଉଥିଲେ କିନ୍ତୁ ଯେତେବେଳେ ଜାଣିଲେ ଯେ କୁଟିଆକନ୍ଧ ଉନ୍ନୟନ ସଂସ୍ଥାର କାମ ସହିତ ତାଙ୍କ କାମର ବି ମୂଲ୍ୟାୟନ ହେବ ସେ ସହଯୋଗ କଲେ । ବେଲଘର ହାଇସ୍କୁଲ ହଷ୍ଟେଲରେ ଆମର ରହିବାର ବ୍ୟବସ୍ଥା ହୋଇଥିବାରୁ ୨୩/୦୪/୧୯୯୧ ତାରିଖ ୫ଟା ବେଳେ ପହଞ୍ଚି ଆମେ ଆଖପାଖ ସ୍ଥାନସବୁ ବୁଲି ଦେଖି ଆସିଲୁ ।

୨୪/୦୪/୧୯୯୧ ସକାଳ ପ୍ରାୟ ୮ ବେଳେ ବାହାରି ତୁପି, ପ୍ରାଥମିକ ସ୍କୁଲ, ଗୁମ୍ମା ସେବାଶ୍ରମ, ଧୁତୁସୀ ଉନ୍ନୀତ ମଧ ଇଂରାଜି ସ୍କୁଲ, ଗୋଛିକା ଉଚ୍ଚ ପ୍ରାଥମିକ ସ୍କୁଲ, କଲମ ଗୁଡା ଓ ରାଣ୍ଡାଙ୍ଗ ନିମ୍ନ ପ୍ରାଥମିକ ସ୍କୁଲ ପରିଦର୍ଶନ କଲୁ । ସ୍କୁଲ ଗୁଡିକର ଅବସ୍ଥା ଅତ୍ୟନ୍ତ ଶୋଚନୀୟ । ଶିକ୍ଷା ଦାନ ଉପକରଣ ଆଦୌ ନାହିଁ । ୧୯୮୮ ରୁ ୧୯୯୦ ପର୍ଯ୍ୟନ୍ତ ଓଡିଶାର ସବୁ ପ୍ରାଥମିକ ସ୍କୁଲକୁ କଳାପଟା ଯୋଜନାରେ (Operation Black Board) ପାଠ୍ୟ ପୁସ୍ତକ, ମାନଚିତ୍ର, କଳାପଟା, ପାଠ୍ୟକ୍ରମ, କ୍ରୀଡା ଉପକରଣ ଆଦି ଯୋଗାଇ ଦିଆ ଯାଇଥିବାର ରେକର୍ଡ ଅଛି । ଅଥଚ ଏ ସ୍କୁଲ ଗୁଡିକ ମଧ୍ୟରୁ କୌଣସି ଗୋଟିକର ହେଲେ କିଛି ଉପକରଣ ନାହିଁ । ସ୍କୁଲ ଗୁଡିକର ପକ୍କା ଘର ଅଛି କିନ୍ତୁ ଯତ୍ନ ଓ ରକ୍ଷଣାବେକ୍ଷଣ ଅଭାବରୁ ସେଗୁଡିକ ଅପାଂକ୍ତେୟ ହୋଇ ପଡି ରହିଛି ।

ପ୍ରାଥମିକ ସ୍କୁଲମାନଙ୍କରେ କିଛି ସ୍ଥାନୀୟ ଲୋକଙ୍କୁ ଶିକ୍ଷକ ଭାବରେ ନିଯୁକ୍ତି ଦିଆ ଯାଇଛି । ଗ୍ରାମବାସୀମାନେ ସେମାନଙ୍କ ବିରୁଦ୍ଧରେ ଆପତ୍ତି କଲେ । ଆମର ଧାରଣା ଥିଲା ଯେ ଆଦିବାସୀ ଅଞ୍ଚଳରେ ସ୍କୁଲରେ ସ୍ଥାନୀୟ ଶିକ୍ଷକମାନଙ୍କୁ ନିଯୁକ୍ତ କଲେ ପିଲାମାନଙ୍କର ଅସୁବିଧା ଦୂର ହୋଇଯିବ । ପ୍ରଥମ କଥା ହେଲା - ଶିକ୍ଷକଙ୍କ ଭାଷା ଓ ପିଲାଙ୍କ ଭାଷା ଏକ ହୋଇଥିବାରୁ ବୁଝିବାରେ ଅସୁବିଧା ହେବ ନାହିଁ । ଶିକ୍ଷକ ଓ ଛାତ୍ରଛାତ୍ରୀ ଏକ ସଂସ୍କୃତିର ହୋଇଥିବାରୁ ସଂସ୍କୃତିଗତ ପାର୍ଥକ୍ୟ ରହିବ ନାହିଁ । ବିଦେଶୀ ଶିକ୍ଷକଙ୍କ କ୍ଷେତ୍ରରେ ଭାଷାଗତ ଓ ସଂସ୍କୃତିଗତ ପାର୍ଥକ୍ୟ ପ୍ରତିବନ୍ଧକ ସୃଷ୍ଟି କରେ । ଏଠାରେ କିନ୍ତୁ ଆମ ଧାରଣା ଭୁଲ୍ ପ୍ରମାଣିତ ହୋଇଗଲା । ଯେଉଁ ଯେଉଁ ସ୍କୁଲରେ ସ୍ଥାନୀୟ ଶିକ୍ଷକ ଅଛନ୍ତି ତାଙ୍କ ବିରୁଦ୍ଧରେ ଗ୍ରାମବାସୀମାନେ କହିଲେ ଓ ତାଙ୍କୁ ସେଠାରୁ ବଦଳି କରି ବିଦେଶୀ ଶିକ୍ଷକ

ଦେବା ପାଇଁ ଅନୁରୋଧ କଲେ । ସେମାନେ କହିଲେ ବିଦେଶୀ ଶିକ୍ଷକ ସ୍କୁଲରେ ରହି ପିଲାଙ୍କୁ ପାଠ ପଢାଇବେ । କେବେ କେମିତି ଘରକୁ ଗଲେ ଆଠ ଦଶ ଦିନ ରହିଯିବେ । ଯାଆନ୍ତୁ କିଛି କ୍ଷତି ହେବ ନାହିଁ ।

୨୫/୦୪/୧୯୯୧ ତାରିଖରେ ରଙ୍ଗାପାନୁ ପ୍ରାଥମିକ ସ୍କୁଲକୁ ଯାଇଥିଲୁ । ସ୍କୁଲ ବନ୍ଦ ଥିଲା । ଗ୍ରାମବାସୀମାନେ କହିଲେ, ବର୍ଷେ ହେଲା ସ୍କୁଲ ବନ୍ଦ ଅଛି । ପିଲାଙ୍କ ପାଠପଢା ବନ୍ଦ । ସବ୍‌ଇନିସ୍ପେକ୍ଟର ଆସନ୍ତି ନାହିଁ । ଆପତ୍ତି ଶୁଣିବାକୁ କେହି ନାହିଁ । ସ୍କୁଲ ଚାଲୁଛି କି ନାହିଁ, ତାହା ହାକିମମାନେ ଜାଣି ପାରୁନାହାନ୍ତି । ସ୍କୁଲ ପରିଦର୍ଶନ ନ ହେଲେ ଏଇପରି ଅବସ୍ଥା ହୁଏ । ଶିକ୍ଷା ପ୍ରଶାସନ ଚାଲିଛି ବୋଲି, ରଙ୍ଗାପାନୁ ସ୍କୁଲରେ ଧାରଣା ହେଲା ନାହିଂ ।

ଜାଣିବାକୁ ପାଇଲୁ ଯେ ନକୁଳ ନାୟକ M.P ଙ୍କ ଘର ସେଇ ନିକଟରେ । ସେଠାକୁ ଗଲୁ । ତାଙ୍କ ଗାଁରେ ଗୋଟିଏ ଉନ୍ନୀତ ମଧ୍ୟ ଇଂରାଜି ସ୍କୁଲ ଅଛି । ସେଠାରେ ସାତ ଜଣ ଶିକ୍ଷକ ନିଯୁକ୍ତ । ପ୍ରଧାନ ଶିକ୍ଷକ ନିଯୁକ୍ତି ଦିନଠାରୁ ସ୍କୁଲକୁ ଆସି ନାହାନ୍ତି । ସେ ବ୍ଲକରେ ସବ୍‌ଇନିସ୍ପେକ୍ଟରଙ୍କୁ କାମରେ ସାହାଯ୍ୟ କରିବାକୁ ତୁମୁଡି ବନ୍ଧରେ ରହିଛନ୍ତି । ବାକି ଛ ଜଣ ଶିକ୍ଷକଙ୍କ ମଧ୍ୟରୁ ପ୍ରତିଦିନ ଜଣେ ଲେଖାଁଏ ପାଳିକରି ସ୍କୁଲକୁ ଆସନ୍ତି । ସେ ଦିନ ଯେଉଁ ଶିକ୍ଷକଙ୍କର ପାଳିଥିଲା ସେ ସ୍କୁଲ ଛୁଟି କରି କିଛି ବାଟ ଚାଲି ଯାଇଥିଲେ । ସାଇକେଲ୍‌ରେ ଲୋକ ଯାଇ ତାଙ୍କୁ ଧରି ଆଣିଲେ । ତାଙ୍କଠାରୁ ସବୁ ଖବର ବୁଝିଲୁ । ପିଲାଙ୍କ ପାଠପଢା ବିଷୟରେ ବୁଝିବାର ଆବଶ୍ୟକତା ପଡିଲା ନାହିଁ । ଲୋକଙ୍କ ସହିତ ଆଲୋଚନା କଲୁ । ସେମାନେ କହିଲେ ଶିକ୍ଷକଙ୍କ ବିରୁଦ୍ଧରେ ଦରଖାସ୍ତ କରିଛନ୍ତି । କିନ୍ତୁ କିଛି ଫଳ ହୋଇନାହିଁ କି କିଛି ହେବାର ବି ନାହିଁ । ସ୍କୁଲରେ ପାଠପଢା ହେଉଛି କି ନାହିଁ ତାହା ବୁଝିବା ଦାୟିତ୍ୱ ବାଲିଗୁଡା ଡି.ଆଇଙ୍କର । ସେ ଏ ଅଞ୍ଚଳ ଦେଖିଛନ୍ତି କି ନାହିଁ ସନ୍ଦେହ । ଏଠାରେ ପାଠପଢା ନ ହେଲେ ତାଙ୍କର କ'ଣ କ୍ଷତି ?

କୁଟିଆକନ୍ଧ ଅଞ୍ଚଳରେ ଛୋଟ ଛୋଟ ବସ୍ତି । ପ୍ରତି ବସ୍ତିରେ ଲୋକସଂଖ୍ୟା କମ୍ । କୌଣସି ବସ୍ତିରେ ଗୋଟିଏ ସ୍କୁଲକୁ ଯୋଗାଇବାକୁ ପିଲା ମିଳିବେ ନାହିଁ । ତେଣୁ ପ୍ରତି ପିଲାଙ୍କ ପାଇଁ ଏକ କିଲୋମିଟର ଦୂରତା ମଧ୍ୟରେ ସ୍କୁଲ ଯୋଗାଇ ଦେବା ସମ୍ଭବ ନୁହେଁ । ଗୋଟିଏ ଗୋଟିଏ କେନ୍ଦ୍ରାବସ୍ଥିତ ବସ୍ତିରେ ସ୍କୁଲ ଓ ହଷ୍ଟେଲ ଖୋଲି ସେଠାରେ ପିଲାଙ୍କୁ ରହିବା, ଖାଇବା, ପିଇବା ଇତ୍ୟାଦି

ମାଗଣାରେ ନ ଦେଲେ ସେଠାରେ ସାର୍ବଜନୀନ ପ୍ରାଥମିକ ଶିକ୍ଷା କଥା ଚିନ୍ତା କରାଯାଇ ନ ପାରେ ।

କୁଟିଆକନ୍ଧ ଉନ୍ନୟନ ସଂସ୍ଥାର ସବୁ ଗାଁ ଗୁଡ଼ିକ ବେଲଘର ପାହାଡ ଉପରେ ଅବସ୍ଥିତ । ଗୋଟିଏ ଗାଁରୁ ଆଉ ଗୋଟିଏ ଗାଁକୁ ଦୂରତା ପାଦଚଲା ରାସ୍ତାରେ ବେଶୀ । କାରଣ ଗୋଟିଏ ପାହାଡ କାନ୍ଥିରୁ ଖସି ଆଉ ଗୋଟିଏ ପାହାଡ କାନ୍ଥିକୁ ଯିବାକୁ ବହୁତ ଦୂର । କିନ୍ତୁ ଗୋଟିଏ ଗାଁରୁ ଆଉ ଗୋଟିଏ ଗାଁ ନିକଟରେ ଭଳି ଜଣାଯାଏ । ବେଲଘରରେ ଜଙ୍ଗଲ ବିଭାଗର ଗୋଟିଏ କାଠରେ ତିଆରି ବଙ୍ଗଳା ଅଛି । ସେଠାରେ ଆମେ ଭୋଜି କରିଥିଲୁ । ସେଠାକାର ଲୋକମାନେ ସରଳ ସଚେତନ । ସେଠାକାର ଜଳବାୟୁ ମ୍ୟାଲେରିଆ ପ୍ରବଣ । ଅନୁଗୁଳରେ "ନବଜୀବନ ମଣ୍ଡଳ" ତରଫରୁ ଦୁଇଟି ଝିଅ ସେଠାରେ ରହି ଲୋକମାନଙ୍କୁ ରୋଷେଇ ବାସ ବିଷୟରେ ଶିକ୍ଷା ଦେଉଥିଲେ । ଗୋଟିଏ ଝିଅ ମସ୍ତିଷ୍କ ମ୍ୟାଲେରିଆରେ ଦେହତ୍ୟାଗ କଲା । ତାଙ୍କ ସାଙ୍ଗ ଝିଅ ଓ ଏଇ ଝିଅଟିର ମୃତ ଦେହ ଆମେ ଆଣି ଜିପ୍‌ରେ ତୁମୁଡିବନ୍ଧରେ ଛାଡିଲୁ । ଏହି ଦୁଃଖଦ ଘଟଣା ପରେ ଆମେ ସେଠାରୁ ଚାଲି ଆସିଲୁ ।

କୁଟିଆକନ୍ଧ ଉନ୍ନୟନ ସଂସ୍ଥାରୁ ଫେରି ବାଲିଗୁଡାଠାରେ ଗୋଟିଏ ଆଲୋଚନା ସଭା କରାଗଲା । କୁଟିଆ କନ୍ଧ ଅଞ୍ଚଳର ଅବସ୍ଥା ତଥା ସେ ଅଞ୍ଚଳର ଶିକ୍ଷା, ସ୍ୱାସ୍ଥ୍ୟ, ପରିମଳ, କୃଷି, ଉଦ୍ୟାନ ଓ ଜଙ୍ଗଲ ସଂରକ୍ଷଣ ବିଷୟରେ ଉନ୍ନତିର ସମ୍ଭାବନା ବିଷୟରେ ଆଲୋଚନା ହେଲା । ସେ ସଭାରେ ବାଲିଗୁଡା ଶିକ୍ଷା ବିଭାଗ ମୁଖ୍ୟ ଡି.ଆଇ ଯୋଗ ଦେଲେ ନାହିଁ । ମୁଁ ତାଙ୍କ ଅଫିସକୁ ଯାଇ ବୁଝିଲି ଯେଉଁ ଡି.ଆଇଙ୍କୁ କାର୍ଯ୍ୟରେ ଅବହେଳା ଓ ଦୁର୍ନୀତି ଅଭିଯୋଗରେ ବର୍ଷକ ତଳେ ମୁଁ ବଦଳି କରାଇ ଥିଲି ସେ ପୁଣି ଆସି ତାଙ୍କ ପୁରୁଣା ସ୍ଥାନରେ ଯୋଗ ଦେଇଛନ୍ତି । ତାଙ୍କୁ ପଚାରିଲି ସେ କାହିଁକି ମିଟିଂକୁ ଗଲେ ନାହିଁ । ସେ ମୋତେ କହିଲେ, "ସେ ସଭାକୁ ଯାଇଥିଲେ ସମସ୍ତଙ୍କ ଆଗରେ ଆପଣ ମୋତେ ଗାଳି ଦେଇଥାନ୍ତେ, ସେଠାରେ ଅପମାନିତ ହେବା ଅପେକ୍ଷା ନ ଯିବାହିଁ ଭଲ ବୋଲି ମୁଁ ସ୍ଥିର କଲି ।" ତାଙ୍କ ଉତ୍ତର ଶୁଣି ମୋତେ ହସ ଲାଗିଲା । ତାଙ୍କୁ ପଚାରିଲି, "ବର୍ଷକ ତଳେ ତୁମକୁ ମୁଁ ପ୍ରଧାନ ଶିକ୍ଷକ ଭାବରେ ବଦଳି କରାଇଥିଲି । ତମେ ଏତେ କମ୍ ସମୟ ମଧ୍ୟରେ ପୁଣିଥରେ ଏଠାକୁ ଆସିଲ କେମିତି ?" ମୋ ପ୍ରଶ୍ନ ଶୁଣି ସେ ଉତ୍ତର ନ ଦେଇ ଚୁପ୍ ରହିଲେ । ମୁଁ ବୁଝିଗଲି ସେ କିପରି ଏତେ କମ୍ ସମୟ

ମଧ୍ୟରେ ତାଙ୍କ ପୂର୍ବ ସ୍ଥାନକୁ ଫେରି ଆସି ପାରିଲେ । ନିର୍ମଳ ଶାସନ ଚାଲିଥିବାରୁ ଏହା ସମ୍ଭବ ହେଲା ।

୨୭/୦୪/୧୯୯୧ ରେ ଆମେ ବାଲିଗୁଡାରୁ ଫୁଲବାଣୀ ଆସିଲୁ । ସେଠାରେ କଲେକ୍ଟରଙ୍କ ସହିତ କୁଟିଆକନ୍ଧ ଅଞ୍ଚଳ ଓ ଲୋକମାନଙ୍କର ଅବସ୍ଥା ବିଷୟରେ ଆଲୋଚନା କଲୁ । ବେଲଘର ଅଞ୍ଚଳର ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ପରିମଳ ଓ ସାଧାରଣ ଲୋକଙ୍କର ଅର୍ଥନୈତିକ ଅବସ୍ଥା ସଂପର୍କରେ ଆମ ସହିତ ଆଲୋଚନା ପରେ କଲେକ୍ଟର କହିଲେ, 'ସେ ଅଞ୍ଚଳର ଅବସ୍ଥା ଏତେ ଖରାପ ଅଥଚ ଆମ ଅଫିସରମାନେ କେହି ଏ ବିଷୟରେ ସାମାନ୍ୟ ସୂଚନା ବି ଦେଇ ନାହାଁନ୍ତି' । ମୁଁ କହିଲି, "ସତ୍ୟକୁ ଲୁଚାଇ ରଖି ଉନ୍ନୟନର ଗୋଲାପି ଚିତ୍ର ଦେବା ଅଫିସରମାନଙ୍କର କାମ । ତାଙ୍କ କାମ ସେ ଠିକ୍ ଭାବରେ କରିଛନ୍ତି ।"

ମୋଟ ଦୁଇଟି ଅଣୁ-ଯୋଜନା ଆମେ ମୂଲ୍ୟାୟନ କଲୁ । ବଣ୍ଡା ଉନ୍ନୟନ ସଂସ୍ଥା ଓ କୁଟିଆକନ୍ଧ ଉନ୍ନୟନ ସଂସ୍ଥା । ଯାହା ଦେଖିଲୁ ତାହା ରିପୋର୍ଟରେ ଲେଖି ଦେଲୁ । ଯେତେବେଳେ ଭାରତ ସରକାରଙ୍କ ନିକଟକୁ ରିପୋର୍ଟ ଗଲା, ଆଦିବାସୀ ହରିଜନ ଗବେଷଣା ଓ ତାଲିମ୍ ପ୍ରତିଷ୍ଠାନର (THR।।) ନିର୍ଦ୍ଦେଶକ କୃଷ୍ଣଚନ୍ଦ୍ର ମହାନ୍ତି ସାମାନ୍ୟ ପରିବର୍ତ୍ତନ କରିବାକୁ ଚାହିଁବାରୁ ଆମେ ରାଜି ହେଲୁନାହିଁ । ଗୋଟିଏ ସାଧାରଣ ପ୍ରାରମ୍ଭିକ ଚିତ୍ର ସହିତ ସମସ୍ତ ମୂଳ ରିପୋର୍ଟ ପଠାଇ ଦିଆଗଲା । ଏ ରିପୋର୍ଟକୁ ଭାରତ ସରକାର ଉଚ୍ଚ ପ୍ରଶଂସା କରି ଓଡିଶା ସରକାରଙ୍କୁ ଚିଠି ଲେଖିଲେ ଓ ଖୁବ୍ ଶୀଘ୍ର ତାହା ଛପାଇ, ଛପା ରିପୋର୍ଟ ପଠାଇ ଦେଲେ ।

ପ୍ରତିଥର ଆମେ ପରିଦର୍ଶନରୁ ଫେରିଲା ପରେ ପ୍ରମୁଖ ସଚିବ ରବୀନ୍ଦ୍ର ମୋହନ ସେନାପତିଙ୍କ ସହ ଆଲୋଚନା ହୁଏ । ଆଲୋଚନାରେ ରବୀନ୍ଦ୍ର ବାବୁ ସନ୍ତୋଷ ପ୍ରକାଶ କରନ୍ତି । କିନ୍ତୁ ଦ୍ୱିତୀୟ ଥର ଆମେ ବଣ୍ଡା ଉନ୍ନୟନ ସଂସ୍ଥାରୁ ଫେରିଲା ବେଳକୁ ତାଙ୍କର ବଦଳି ହୋଇ ସାରିଥିଲା । ନୂଆ ପ୍ରମୁଖ ସଚିବ ଡି.ପି.ଭଟ୍ଟାଚାର୍ଯ୍ୟ ଯୋଗ ଦେଇଥିଲେ । THRTI ର କେତେକ ଅଫିସର ଯାଇ ନୂଆ ପ୍ରମୁଖ ସଚିବ ଭଟ୍ଟାଚାର୍ଯ୍ୟଙ୍କୁ କହିଲେ, ଯଦି ୧୬ଟି ଯାକ ଅଣୁ ଯୋଜନା ମୂଲ୍ୟାୟନ କରି ଏହି ଦଳ ରିପୋର୍ଟ ଦିଅନ୍ତି ତା'ହେଲେ ଆଦିବାସୀ-ହରିଜନ ବିକାଶ ବିଭାଗ ଭୀଷଣ ଭାବରେ ବଦନାମ ହୋଇଯିବ । ତେଣୁ ପ୍ରମୁଖ ସଚିବ

ଆଦେଶ ଦେଲେ Techno-Economic Survey Group ଦ୍ୱାରା ଆଉ ମୂଲ୍ୟାୟନ ନ ହୋଇ ବିଭାଗୀୟ ଅଫିସରଙ୍କ ଦ୍ୱାରା କରାଯିବ । ୧୬ଟି ଯାକ ଅଣୁ-ଯୋଜନା ମୂଲ୍ୟାୟନର ପ୍ରତିଶ୍ରୁତି ଦେବାରୁ ଆମ ଦଳର ସଦସ୍ୟମାନେ ଏହି କାର୍ଯ୍ୟ କରିବାକୁ ରାଜି ହୋଇଥିଲେ । ଓଡିଶା ସରକାରଙ୍କ ବିଭାଗୀୟ ସଚିବ ଏପରି ଆଦେଶ ଦେବାରୁ ସମସ୍ତେ ଦୁଃଖ ପ୍ରକାଶ କଲେ, ଦଳ ଭାଙ୍ଗିଗଲା । ଲୋକଙ୍କ ଦୂରବସ୍ଥା ପ୍ରକାଶ କରି ରିପୋର୍ଟ୍ ଦେଲେ ତାହା ଓଡିଶା ସରକାରଙ୍କ ଗ୍ରହଣୀୟ ନୁହେଁ । ମିଥ୍ୟା ହେଲେ ବି ଗୋଲାପି ଚିତ୍ର ଦରକାର ।

ବିଭାଗୀୟ ଅଫିସରମାନେ ମୂଲ୍ୟାୟନ କରି ଆଉ ଦୁଇଟି ଅଣୁ-ଯୋଜନା ସମ୍ବନ୍ଧରେ ରିପୋର୍ଟ କେନ୍ଦ୍ର ସରକାରଙ୍କୁ ପଠାଇଲେ । ଆମ ରିପୋର୍ଟ ଓ ବିଭାଗୀୟ ଅଫିସରଙ୍କ ମୂଲ୍ୟାୟନ ରିପୋର୍ଟ ମଧ୍ୟରେ ଆକାଶ ପାତାଳ ତଫାତ୍ ହେଲା । ଆମେ ଯେଉଁ ରିପୋର୍ଟ୍ ଦେଲୁ ତାହା ସତ୍ୟାଶ୍ରୟୀ - ବିଭାଗୀୟ ଅଫିସରମାନେ ଯେଉଁ ରିପୋର୍ଟ ଦେଲେ ତାହା ମିଥ୍ୟା - ଦୋଷ ଘୋଡାଇବା ପ୍ରଚେଷ୍ଟା । ଭାରତ ସରକାର ଚାହିଁଲେ ଯେ ବଣ୍ଟା ଓ କୁଟିଆକନ୍ଧ ଅଣୁ-ଯୋଜନା ଯେଉଁ ଦଳ ମୂଲ୍ୟାୟନ କରିଥିଲେ ସେମାନଙ୍କୁ ପୁଣି ଥରେ ନିଯୁକ୍ତ କରାଯାଉ ।

THRTI ନିର୍ଦ୍ଦେଶକ କୃଷ୍ଣବାବୁ ମୋତେ ଡାକି ପୁଣିଥରେ କାମ କରିବାକୁ ଅନୁରୋଧ କଲେ । ସେତେବେଳକୁ ଡାକ୍ତର ତ୍ରୈଲୋକ୍ୟ ପାଣିଙ୍କ ସ୍ୱର୍ଗବାସ ହୋଇସାରିଥିଲା । ଅନ୍ୟ ସଦସ୍ୟମାନେ ଅପମାନିତ ହୋଇ ଫେରିଲା ପରେ ଆଉ ଥରେ କାମ କରିବାକୁ ସମ୍ମତ ହେଲେ ନାହିଁ । କିନ୍ତୁ ଏହି ଦଳ ଦେଇଥିବା ରିପୋର୍ଟ୍ ଏ ପର୍ଯ୍ୟନ୍ତ ଅନତିକ୍ରମ୍ୟ ହୋଇ ରହିଅଛି ।



## ଦଶମ ଅଧ୍ୟାୟ

# ସମସ୍ତଙ୍କ ପାଇଁ ଶିକ୍ଷା

## ୧୦.୧ ଦକ୍ଷିଣ ଓଡ଼ିଶା ଶିକ୍ଷା ପ୍ରକଳ୍ପ

ଥାଇଲାଣ୍ଡର ଜୋମ୍‌ଟିଏନ୍ ଠାରେ ୧୯୯୦ ମାର୍ଚ୍ଚ ୫ ତାରିଖରୁ ୯ ତାରିଖ ମଧ୍ୟରେ "ସମସ୍ତଙ୍କ ପାଇଁ ଶିକ୍ଷା" କାର୍ଯ୍ୟକ୍ରମ ଉପରେ ବିଶ୍ୱ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ୧୫୫ ଗୋଟି ଦେଶର ପ୍ରତିନିଧିମାନେ ଏହି ସମ୍ମିଳନୀରେ ମିଳିତ ହୋଇ ଆଲୋଚନା କଲାପରେ "ସମସ୍ତଙ୍କ ପାଇଁ ଶିକ୍ଷା ନିମନ୍ତେ ବିଶ୍ୱ ଘୋଷଣାନାମା ପ୍ରକାଶିତ ହୋଇଥିଲା । ଏଥିରେ କୁହାଯାଇଛି ଯେ, "୨୦୦୦ ମସିହା ସୁଦ୍ଧା ବିଶ୍ୱର ସବୁ ଦେଶରେ ଅନ୍ତତଃ ପକ୍ଷେ ସଂପୂର୍ଣ୍ଣ ସାକ୍ଷରତା ଓ ସମସ୍ତଙ୍କ ପାଇଁ ପ୍ରାରମ୍ଭିକ ଶିକ୍ଷା ବ୍ୟବସ୍ଥା ହେବ । ଏଥିପାଇଁ ଉନ୍ନତ ଓ ବିକଶିତ ଦେଶମାନେ ଅନୁନ୍ନତ ଦେଶମାନଙ୍କୁ ସାହାଯ୍ୟ କରିବେ । ସେହି କାର୍ଯ୍ୟକ୍ରମରେ ଜର୍ମାନୀ ଓଡ଼ିଶାର ଅନୁନ୍ନତ ଅଞ୍ଚଳ ଦକ୍ଷିଣ ଓଡ଼ିଶାରେ ପ୍ରାରମ୍ଭିକ ଶିକ୍ଷା ପାଇଁ ସହାୟତା କରିବାକୁ ଆଗଭର ହୋଇ ଆସିଲେ । ଏହି କାର୍ଯ୍ୟକ୍ରମରେ ଅବିଭକ୍ତ କୋରାପୁଟ, କଳାହାଣ୍ଡି, ଗଞ୍ଜାମ ଓ ଫୁଲବାଣୀ ଜିଲ୍ଲା ଅନ୍ତର୍ଗତ ଥିଲା । ଏହି କାର୍ଯ୍ୟକ୍ରମକୁ UNDP ସଂଯୋଜନା କରୁଥିଲା ।

ଦକ୍ଷିଣ ଓଡ଼ିଶା ଶିକ୍ଷା ପ୍ରକଳ୍ପ ସମ୍ବନ୍ଧରେ ଆଲୋଚନା କରିବା ପୂର୍ବରୁ ସଂପୃକ୍ତ ଚାରିଗୋଟି ଜିଲ୍ଲାରେ ପ୍ରାଥମିକ ଶିକ୍ଷାର ସ୍ଥିତି ବିଷୟରେ ଏକ ରିପୋର୍ଟ ପ୍ରସ୍ତୁତ କରିବାକୁ ଭାରତ ସରକାର ଜାତୀୟ ଶିକ୍ଷା ଯୋଜନା ଓ ପ୍ରଶାସନ ପ୍ରତିଷ୍ଠାନର (NIEPA) ଅଧ୍ୟାପିକା ଅଞ୍ଜନା ମଙ୍ଗଳାଗିରି ଓ ଓଡ଼ିଶାର ଏକ ସ୍ୱେଚ୍ଛାସେବୀ ସଂସ୍ଥାର ସଦସ୍ୟା ଆନ୍ତିଆ ମେରି ଜୋନ୍ସଙ୍କୁ ନିଯୁକ୍ତ କଲେ । ସେମାନେ ଗଞ୍ଜାମ, କୋରାପୁଟ, କଳାହାଣ୍ଡି ଓ ଫୁଲବାଣୀ ଜିଲ୍ଲା ଗସ୍ତ କରି ପ୍ରାଥମିକ ଶିକ୍ଷା ସମ୍ବନ୍ଧରେ ଏକ ରିପୋର୍ଟ ପ୍ରସ୍ତୁତ କରିବା ସହିତ କୋରାପୁଟ

ଜିଲ୍ଲା ସୀମା ଆରପଟ ଆନ୍ଧ୍ର ପ୍ରଦେଶର ପ୍ରାଥମିକ ସ୍କୁଲ ଶିକ୍ଷା ସହିତ ଏକ ତୁଳନାତ୍ମକ ରିପୋର୍ଟ୍ ଦେଲେ । ଏହି ରିପୋର୍ଟ୍‌ରେ ଓଡିଶା ଶିକ୍ଷାର ନ୍ୟୂନତା ବିଷୟରେ ବହୁ ବର୍ଣ୍ଣନା ଥିଲା । ତାହା ପାଠ କରି ଓଡିଶାର ଶିକ୍ଷା ବିଭାଗ ତଥା ଓଡିଶାର ଶିକ୍ଷାବିତ୍‌ମାନେ ଗଭୀର ଅସନ୍ତୋଷ ପ୍ରକାଶ କଲେ । ସରକାର ଏହି ରିପୋର୍ଟକୁ ଏକ ପ୍ରକାର ପ୍ରତ୍ୟାଖ୍ୟାନ କଲେ । ଫଳରେ ଦକ୍ଷିଣ ଓଡିଶା ଶିକ୍ଷା ପ୍ରକଳ୍ପ ବିଷୟରେ ଆଲୋଚନା ସମୟରେ ଏହି ରିପୋର୍ଟ ଆଲୋଚନା ପ୍ରସଙ୍ଗକୁ ଆସିଲା ନାହିଁ । ଏହି ରିପୋର୍ଟର କୌଣସି ତାତ୍ପର୍ଯ୍ୟ କୌଣସି ସ୍ତରରେ ଅନୁଭୂତ ହେଲା ନାହିଁ।

ନୂଆଦିଲ୍ଲୀର ତିନ୍‌ମୂର୍ତ୍ତି ହାଉସରେ ପ୍ରାରମ୍ଭିକ ଆଲୋଚନା ପାଇଁ ୦୪/୦୪/୧୯୯୨ ତାରିଖ ଧାର୍ଯ୍ୟ କରାଯାଇଥିଲା । ସେତେବେଳେ ଅଭୟାନନ୍ଦ ରଥ ଓଡିଶାର ଶିକ୍ଷା ସଚିବ ଥିଲେ । ସେ ଓଡିଶାର ଶିକ୍ଷା ଉପରେ ଏକ ସ୍ଥିତି ଓ ଆଲୋଚନା ପତ୍ର ଉପସ୍ଥାପନ କରିବା ପାଇଁ ସ୍ଥିର କଲେ । ଆଲୋଚନା ପତ୍ର ପ୍ରସ୍ତୁତି ଦାୟିତ୍ୱ ମୋ ଉପରେ ନ୍ୟସ୍ତ କରାଗଲା । ୦୪/୦୪/୧୯୯୨ରେ ଆଲୋଚନାରେ ସାହାଯ୍ୟ କରିବା ପାଇଁ ମୋତେ ତତ୍କାଳୀନ ପ୍ରଫେସର ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର ଓ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଡକ୍ଟର ଗିରୀଶବାଳା ମହାନ୍ତିଙ୍କୁ କୁହାଯାଇଥିଲା । ଆମେ ଦୁଇ ଦିନ ପୂର୍ବରୁ ଅର୍ଥାତ୍ ୦୨/୦୪/୧୯୯୨ ତାରିଖରେ ଯାଇ ପ୍ରମୁଖ ତଥ୍ୟାବଳୀକୁ ୦୩.୦୪.୧୯୯୨ରେ National Literacy Mission ରେ କାମ କରୁଥିବା ଡକ୍ଟର ଭଗବାନ ପ୍ରକାଶଙ୍କ ସାହାଯ୍ୟରେ Transparency ରେ ଛପାଇ ଦେଲୁ ଓ ସେଥିପାଇଁ ଆବଶ୍ୟକ ମାନଚିତ୍ର ମଧ୍ୟ ପ୍ରସ୍ତୁତ କରିଦେଲୁ । ପ୍ରଫୁଲ୍ଲ ବାବୁ ଏ ସବୁ ବିଷୟରେ ଧୁରନ୍ଧର । ପୂର୍ବରୁ ସେ ଦିଲ୍ଲୀରେ କିଛି ବର୍ଷ ଜାତୀୟ ସେବା ସଂସ୍ଥାରେ କାର୍ଯ୍ୟ କରିଥିବାରୁ ତାଙ୍କ ଦିଲ୍ଲୀ ଅଭିଜ୍ଞତା ଆମକୁ ଏ ସବୁ କାମରେ ବହୁତ ସାହାଯ୍ୟ କଲା ।

୦୪/୦୪/୧୯୯୨ ତାରିଖରେ ତିନ୍‌ମୂର୍ତ୍ତି ହାଉସରେ ଯେଉଁ ମିଟିଂ ହେଲା ସେଥିରେ ଓଡିଶାର ମୁଖ୍ୟ ସଚିବ ରମାକାନ୍ତ ରଥ ଅଧ୍ୟକ୍ଷତା କରିଥିଲେ ଓ ସେ ସଭାରେ U.N.D.P, UNICEF ଜର୍ମାନୀର GTZ ର ପ୍ରତିନିଧି ଭାରତ ସରକାରଙ୍କ ଶିକ୍ଷା ବିଭାଗ ପ୍ରତିନିଧି ତଥା ଓଡିଶାର ଶିକ୍ଷା ସଚିବ ଯୋଗ ଦେଇଥିଲେ। ବହୁ ଆଲୋଚନା ପରେ ସ୍ଥିର ହେଲା ଯେ ପ୍ରଥମେ ପ୍ରସ୍ତାବିତ ଚାରିଗୋଟି ଜିଲ୍ଲାର ଚାରିଗୋଟି ଲେଖାଁଏ ଅନୁନ୍ନତ ବ୍ଲକ୍ ବଛାଯାଇ, ସେଠାରେ ସମସ୍ତଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯିବ । ତା ପରେ ସମଗ୍ର ଜିଲ୍ଲାର କାର୍ଯ୍ୟକ୍ରମ ହାତକୁ ନିଆଯିବ ।

ତଦନୁସାରେ ଚାରିଗୋଟି ଜିଲ୍ଲାରେ ୧୬ ଗୋଟି ବ୍ଲକ୍ ବଛାଗଲା । ଏହି ୧୬ ଗୋଟି ବ୍ଲକ୍‌ରେ କାର୍ଯ୍ୟକ୍ରମ ଆରମ୍ଭ ପୂର୍ବରୁ ଜର୍ମାନ୍ ପ୍ରତିନିଧିମାନେ ଚାହିଁଲେ ସେଠାରେ ଅଣୁ ଯୋଜନା (Micro - Planning) କରାଯାଇ ସ୍ଥିତି ନିରୂପଣ କରାଯାଉ ଓ ପ୍ରକୃତରେ କେତେ ଗ୍ରାମ, ଜନସଂଖ୍ୟା, ଓ ପିଲା ଏହି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ହେବେ, କେତେ ସ୍କୁଲ ଖୋଲାଯିବ କେଉଁଠାରେ ଖୋଲାଯିବ, କେତେ ଶିକ୍ଷକ ନିଯୁକ୍ତ ହେବେ ଓ କେତେ ପ୍ରଶାସନିକ ବ୍ୟକ୍ତି ନିୟୋଜିତ ହେବେ ତାହା ନିର୍ଦ୍ଧାରଣ କରାଯାଉ । ଅଣୁ-ଯୋଜନା ପାଇଁ ଗୋଟିଏ ପ୍ରସ୍ତାବ କରିବା ପାଇଁ ଶିକ୍ଷା ସଚିବ ମୋତେ କହିଲେ । ମୁଁ କରିଦେଲି କିନ୍ତୁ ସେ ପ୍ରସ୍ତାବ କାର୍ଯ୍ୟକାରୀ ହେଲା ନାହିଁ । ତାକୁ କାର୍ଯ୍ୟକାରୀ କରିବା ପାଇଁ ସଂପୃକ୍ତ ଜିଲ୍ଲାମାନଙ୍କରେ ବା ରାଜ୍ୟ ସ୍ତରରେ କୌଣସି ବ୍ୟକ୍ତି ନ ଥିଲେ । ତେଣୁ ଶିକ୍ଷା ସଚିବ ମୋତେ ଏହି ୧୬ଟି ବ୍ଲକ୍‌ରେ ଅଣୁ ଯୋଜନା କରିବାକୁ ଅନୁରୋଧ କଲେ । ମୁଁ ଗୋଟିଏ ସର୍ତ୍ତରେ ଅଣୁ ଯୋଜନା କରିବାକୁ ରାଜି ହେଲି ତାହା ହେଲା ସଂପୃକ୍ତ ବ୍ଲକ୍‌ର ସବ୍‌ଇନିସ୍ପେକ୍ଟରମାନେ ଓ ଶିକ୍ଷକମାନେ ସରକାରୀ କର୍ତ୍ତବ୍ୟ ଭାବେ ଅଣୁ ଯୋଜନା କାର୍ଯ୍ୟ ମୋ ନିର୍ଦ୍ଦେଶମତେ କରିବେ । ସେଥିପାଇଁ ଶିକ୍ଷା ସଚିବ ରାଜି ହେଲେ । ସରକାରୀ ଆଦେଶ ଜାରି ହେଲା । ଶିକ୍ଷାମନ୍ତ୍ରୀ ଚୈତନ୍ୟ ପ୍ରସାଦ ମାଝିଙ୍କ ଅନୁମୋଦନ କ୍ରମେ ସବୁ ସରକାରୀ ହୁକୁମ ପ୍ରକାଶ ପାଇଲା । କିନ୍ତୁ ତାହା କାର୍ଯ୍ୟକାରୀ ହୋଇ ପାରିଲା ନାହିଁ ।

ସେ ସମୟରେ ଲକ୍ଷ୍ମୀ ନାରାୟଣ ମହାପାତ୍ର ନାମରେ ଜଣେ ପ୍ରାଥମିକ ଶିକ୍ଷା ଉପ ନିର୍ଦ୍ଦେଶକ ଥିଲେ । ସେ ଜଣେ ଅତ୍ୟନ୍ତ ପାରିବାର ଉପ ନିର୍ଦ୍ଦେଶକ ଥିଲେ । ତାଙ୍କର ମୂଳ ଚାକିରି ଭୂତତ୍ତ୍ୱ ବିଭାଗର ଅଧ୍ୟାପକ ହେଲେ ହେଁ ପ୍ରଶାସନରେ ସେ ଯେଉଁ ଦକ୍ଷତା ଦେଖାଇଲେ ପୂର୍ବରୁ କୌଣସି ଉପନିର୍ଦ୍ଦେଶକ ଦେଖାଇ ପାରି ନ ଥିଲେ । ପ୍ରାଥମିକ ଶିକ୍ଷକ ମାନଙ୍କର ଆନ୍ତଃ ଜିଲ୍ଲା ବଦଳି ସଂପର୍କରେ ତାଙ୍କର ଦୁଃସାହସିକ କାର୍ଯ୍ୟ ଅନ୍ୟ କୌଣସି ଉପନିର୍ଦ୍ଦେଶକ କରି ପାରି ନ ଥିଲେ ।

ସେତେବେଳେ କମଳା ଦାସ ଶିକ୍ଷା ରାଷ୍ଟ୍ରମନ୍ତ୍ରୀ ଥିଲେ । ତାଙ୍କ ଦାୟିତ୍ୱରେ ପ୍ରାଥମିକ ଶିକ୍ଷା ଥିଲା । ପ୍ରାଥମିକ ଶିକ୍ଷା ଉପ ନିର୍ଦ୍ଦେଶକ ଲକ୍ଷ୍ମୀ ନାରାୟଣ ମହାପାତ୍ର କମଳା ଦାସଙ୍କ ନିକଟକୁ ଯାଇ କହିଲେ, "ଶିକ୍ଷା ସଚିବ ଦକ୍ଷିଣ ଓଡିଶା ଶିକ୍ଷା ପ୍ରକଳ୍ପ ନିମନ୍ତେ ଆବଶ୍ୟକ ହେଉଥିବା ଅଣୁ ଯୋଜନା କାର୍ଯ୍ୟ ଅବସର ପ୍ରାପ୍ତ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଡକ୍ଟର ପୂର୍ଣ୍ଣଚନ୍ଦ୍ର ରାଉତଙ୍କ ଦ୍ୱାରା କରାଇବାକୁ ଆଦେଶ

ଦେଇ ସାରିଲେଣି । ଏହି ଶିକ୍ଷା ପ୍ରକଳ୍ପରେ ଶହ ଶହ କୋଟି ଟଙ୍କା ଖର୍ଚ୍ଚ ହେବ । ଆପଣଙ୍କ ସ୍ୱାମୀ ଡକ୍ଟର କାଳି କୁମାର ଦାସ (ସେତେବେଳେ କାଳିବାବୁ ପ୍ରଫେସର ପଦରେ ଥିଲେ) ଦକ୍ଷିଣ ଓଡିଶା ଶିକ୍ଷା ପ୍ରକଳ୍ପ ନିର୍ଦ୍ଦେଶକ ହେଲେ ଆପଣ ଲାଭ ପାଇ ପାରନ୍ତେ ।

ତାପରେ କମଳା ଦାସ ଶିକ୍ଷା ସଚିବଙ୍କୁ ଫାଇଲ ମାଗିଲେ ଓ କହିଲେ, "ମୁଁ ପ୍ରାଥମିକ ଶିକ୍ଷା ଦାୟିତ୍ୱରେ ଅଛି । ମୋତେ ନ ଜଣାଇ ଆପଣ କିପରି ପୂର୍ଣ୍ଣବାବୁଙ୍କୁ ଅଣୁ ଯୋଜନା ପାଇଁ ନିଯୁକ୍ତ କଲେ ?" ଶିକ୍ଷା ସଚିବ କହିଲେ, "ଆପଣ ବୋଧହୁଏ ନିୟମ ଜାଣନ୍ତି ନାହିଁ । ନୀତିଗତ ନିଷ୍ପତ୍ତି କେବଳ କ୍ୟାବିନେଟ୍ ମନ୍ତ୍ରୀ ନେଇ ପାରିବେ। ଶିକ୍ଷାମନ୍ତ୍ରୀଙ୍କ ଅନୁମୋଦନ କ୍ରମେ ପୂର୍ଣ୍ଣବାବୁଙ୍କୁ ନିଯୁକ୍ତି ଦିଆଯାଇଛି । ତା ଛଡା ସେଇ ଜଣେ ମାତ୍ର ବ୍ୟକ୍ତି ଅଛନ୍ତି ଯାହାଙ୍କର ଅଣୁ - ଯୋଜନା ଟ୍ରେନିଂ ଅଛି ।" ଏହା କହି ସେ ଫାଇଲ୍ କମଳା ଦାସଙ୍କୁ ଦେଇ ଦେଲେ । କମଳା ଦାସ ନିଜ ହାତରେ ସେ ଫାଇଲ୍ ନେଇ ଶିକ୍ଷାମନ୍ତ୍ରୀ ଚୈତନ୍ୟ ପ୍ରସାଦ ମାଝିଙ୍କ ପାଖକୁ ଯାଇ ତାଙ୍କର ପୂର୍ବ ନିଷ୍ପତ୍ତି ବାତିଲ କରାଇ ଆଣିଲେ । ସେ ୧୬ଟି ବ୍ଲକ୍‌ରେ ଅଣୁ ଯୋଜନା କାର୍ଯ୍ୟ ହୋଇ ପାରିଲା ନାହିଁ ।

ପ୍ରାଚୀ ହୋଟେଲରେ (ଏବର ହୋଟେଲ ମାରିଅନ୍) ୩୦/୧୧/୧୯୯୨ ରୁ ୦୪/୧୨/୧୯୯୨ ପର୍ଯ୍ୟନ୍ତ ପାଞ୍ଚଦିନ ଧରି ଦକ୍ଷିଣ ଓଡିଶା ଶିକ୍ଷା ପ୍ରକଳ୍ପ ଉପରେ କର୍ମଶାଳା ଅନୁଷ୍ଠିତ ହେଲା । ସେଥିରେ UNDP, UNICEF, UNESCO, ଜର୍ମାନ ପ୍ରତିନିଧି, GTZ (ଜର୍ମାନୀର) ପ୍ରତିନିଧି, ଭାରତ ସରକାରଙ୍କ ପ୍ରତିନିଧି, ଓଡିଶା ସରକାରଙ୍କ ପ୍ରତିନିଧି, ଓଡିଶାରେ କେତେକ ବିଶିଷ୍ଟ ଶିକ୍ଷାବିତ୍ ଓ କେତେକ ସ୍ୱେଚ୍ଛାସେବୀ ସଂସ୍ଥା ଅଂଶ ଗ୍ରହଣ କରିଥିଲେ । ସେତେବେଳେ ଡକ୍ଟର ଜୟ ନାରାୟଣ ପଟ୍ଟନାୟକ ଓଡିଶାର ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଥିଲେ । କର୍ମଶାଳାର ଚତୁର୍ଥ ଦିନରେ ସେ ପ୍ରସ୍ତାବ ଦେଲେ ଯେ ଦକ୍ଷିଣ ଓଡିଶା ଶିକ୍ଷା ପ୍ରକଳ୍ପ ଓଡିଶା ସରକାରଙ୍କ ଦ୍ୱାରା କାର୍ଯ୍ୟକାରୀ କରାଯାଉ । ଉଦ୍ଦେଶ୍ୟ ହେଲା ସରକାର ତାହା କାର୍ଯ୍ୟକାରୀ କଲେ ଡକ୍ଟର କାଳି କୁମାର ଦାସଙ୍କୁ ନିର୍ଦ୍ଦେଶକ ନିଯୁକ୍ତ କରାଯାଇ ପାରିବ ଓ କମଳା ଦାସଙ୍କୁ ଲକ୍ଷ୍ମୀ ନାରାୟଣ ମହାପାତ୍ର ଦେଇଥିବା ପ୍ରସ୍ତାବ କାର୍ଯ୍ୟକାରୀ ହୋଇ ପାରିବ । ଏ ପ୍ରସ୍ତାବ ଶୁଣିଲାକ୍ଷଣି ଜର୍ମାନୀର GTZ ପ୍ରତିନିଧି କହିଲେ, "ତା ହେଲେ ଅନ୍ୟ କେଉଁଠାରୁ ଟଙ୍କା ପାଇବାର ବ୍ୟବସ୍ଥା କରନ୍ତୁ । ଆମେ ଯଦି ଟଙ୍କା ଦେବୁ ତାହେଲେ କେବଳ ରେଜିଷ୍ଟ୍ରିକୃତ ସଂସ୍ଥାକୁ ଅର୍ଥ ଦେବୁ ।

ଅନ୍ୟମାନେ ଏ ପ୍ରସ୍ତାବ ଶୁଣି ହସିଲେ ଓ ହସରେ ସେ ପ୍ରସ୍ତାବ ଉଡିଗଲା । ଆଉ ସେ ପ୍ରସ୍ତାବ କେବେ ଉଠିନାହିଁ ।

କର୍ମଶାଳାର ଚତୁର୍ଥଦିନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ କେଉଁଠୁ ଶୁଣି ପାରିଲେ ଯେ ପ୍ରସ୍ତାବିତ ଦକ୍ଷିଣ ଓଡିଶା ଶିକ୍ଷା ପ୍ରକଳ୍ପରେ କମଳା ଦାସ ତାଙ୍କ ସ୍ୱାମୀ କାଳିବାବୁଙ୍କୁ ନିର୍ଦ୍ଦେଶକ ନିଯୁକ୍ତି ପାଇଁ ଚେଷ୍ଟା କରୁଛନ୍ତି । ତେଣୁ ସେ କର୍ମଶାଳା ଶେଷଦିନ ୧୦ଟା ବେଳକୁ ଗଞ୍ଜାମର ତତ୍‌କାଳୀନ ଜିଲ୍ଲାପାଳ ଜଗଦାନନ୍ଦ ପଣ୍ଡାଙ୍କୁ ସାଙ୍ଗରେ ଧରି ପ୍ରାଚୀ ହୋଟେଲ କର୍ମଶାଳାରେ ପହଞ୍ଚିଲେ ଓ ଚାରି ଦିନ କର୍ମଶାଳାରେ ଆଲୋଚନାର ସାରାଂଶ ଜାଣିବାକୁ ଚାହିଁଲେ । UNDP ପ୍ରତିନିଧି ମୁଖ୍ୟମନ୍ତ୍ରୀଙ୍କୁ ଆଲୋଚନା ସାରାଂଶ ଜଣାଇବା ପରେ ସେ କହିଲେ, "ଜଗଦାନନ୍ଦ ପଣ୍ଡା ଦକ୍ଷିଣ ଓଡିଶା ଶିକ୍ଷା ପ୍ରକଳ୍ପର ନିର୍ଦ୍ଦେଶକ । ସେତିକିରେ କମଳା ଦାସଙ୍କ ସମସ୍ତ ପ୍ରଚେଷ୍ଟାର ଅନ୍ତ ହେଲା । ଦକ୍ଷିଣ ଓଡିଶା ଶିକ୍ଷା ପ୍ରକଳ୍ପର ମୁଖ୍ୟ ଦପ୍ତର ରାୟଗଡାରେ ହେବାକୁ ନିଷ୍ପତ୍ତି କରାଗଲା ।

ଦକ୍ଷିଣ ଓଡିଶା ଶିକ୍ଷା ପ୍ରକଳ୍ପ କାର୍ଯ୍ୟ ରାୟଗଡା ମୁଖ୍ୟ ଦପ୍ତରରୁ ପରିଚାଳିତ ହେଲା । ଜଗଦାନନ୍ଦ ପଣ୍ଡା ନିର୍ଦ୍ଦେଶକ ଭାବରେ କାର୍ଯ୍ୟ କଲେ । ପ୍ରାୟ ୮ ମାସ କାର୍ଯ୍ୟପରେ ଦକ୍ଷିଣ ଓଡିଶା ଶିକ୍ଷା ପ୍ରକଳ୍ପ ବନ୍ଦ ହୋଇଗଲା । ଜର୍ମାନ ପ୍ରତିନିଧିମାନେ କହିଲେ ଯେ ତାଙ୍କର ଆବଶ୍ୟକ ହେଉଥିବା ଅଣୁ-ଯୋଜନା ହୋଇ ନ ପାରିବାରୁ ପ୍ରକଳ୍ପ ପାଇଁ କେତେ ଟଙ୍କା ଆବଶ୍ୟକ ତାହା ଆକଳନ କରି ପାରିଲେ ନାହିଁ । ତେଣୁ ସେମାନେ କାମ ବନ୍ଦ କରିବାକୁ ବାଧ ହେଲେ । ଭାରତ ତଥା ଓଡିଶା ସରକାର କହିଲେ ଯେ ଜର୍ମାନମାନଙ୍କ ପ୍ରତ୍ୟକ୍ଷ ନିରୀକ୍ଷଣ (Direct Supervision) ପ୍ରସ୍ତାବ ଗ୍ରହଣ ଯୋଗ୍ୟ ନ ହେବାରୁ ପ୍ରକଳ୍ପ କାର୍ଯ୍ୟକାରୀ ନ କରିବା ପାଇଁ ସ୍ଥିର କରାଗଲା । ଯାହା ବି କାରଣ ହେଉ, ପ୍ରକଳ୍ପ ବନ୍ଦ ହୋଇଗଲା । ସେତେବେଳକୁ ଭାରତର ବିଭିନ୍ନ ରାଜ୍ୟରେ World Bank ସହାୟତାରେ District Primary Educationa Pragramme (DPEP) କାର୍ଯ୍ୟକାରୀ ହେଉଥାଏ । DPEP ଅନ୍ୟ ରାଜ୍ୟମାନଙ୍କୁ ଦିଆଗଲେ ମଧ୍ୟ ଓଡିଶାକୁ ଦିଆଗଲା ନାହିଁ । ଭାରତ ସରକାର କହିଲେ ଦକ୍ଷିଣ ଓଡିଶା ଶିକ୍ଷା ପ୍ରକଳ୍ପ ଭଳି ବୃହତ ପ୍ରକଳ୍ପ (Mega Project) ଓଡିଶାରେ କାର୍ଯ୍ୟକାରୀ ହେଉଥିବାରୁ ଓଡିଶାକୁ DPEP ଦିଆଯିବ ନାହିଁ । ସେଥିପାଇଁ ଦକ୍ଷିଣ ଓଡିଶା ଶିକ୍ଷା ପ୍ରକଳ୍ପ ବନ୍ଦ ହୋଇଯିବା ପରେ ବିଳମ୍ବରେ ଓଡିଶାରେ ଆଠ ଗୋଟି ଜିଲ୍ଲାରେ DPEP କାର୍ଯ୍ୟକାରୀ ହେଲା । ଦକ୍ଷିଣ ଓଡିଶା ଶିକ୍ଷା ପ୍ରକଳ୍ପ ତ ହେଲା ନାହିଁ । ସେ ପ୍ରସ୍ତାବ କାର୍ଯ୍ୟକାରୀ କରିବାରେ

ବିଭ୍ରାନ୍ତିମୂଳକ ପ୍ରାରମ୍ଭିକ ପଦକ୍ଷେପ ଓଡିଶାର ପ୍ରଭୂତ କ୍ଷତି ସାଧନ କଲା । ଦକ୍ଷିଣ ଓଡିଶା ଶିକ୍ଷା ପ୍ରକଳ୍ପ ଆଦୌ ଆରମ୍ଭ ନ ହୋଇଥିଲେ ବରଂ ଭଲ ହୋଇଥାନ୍ତା । ଆରମ୍ଭ ହୋଇ ଠିକ୍ ଭାବରେ କାର୍ଯ୍ୟକାରୀ ନ ହୋଇ ପାରିବା ଓଡିଶାର ଦୁର୍ଭାଗ୍ୟ। ପଛୁଆ ହୋଇ ରହିବାର ପରଂପରା ଆମର ଶିକ୍ଷାମନ୍ତ୍ରୀ ଓ ଶିକ୍ଷା ବିଭାଗ ଅଫିସରମାନେ ଠିକ୍ ଭାବରେ ରକ୍ଷା କରି ପାରିଛନ୍ତି ।

## ୧୦.୨ ସମସ୍ତଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମ - (ରାଜ୍ୟସ୍ତର)

ଥାଇଲାଣ୍ଡର ଜୋମଟିଏନ୍ ଠାରେ ୧୯୯୦ ମସିହାରେ ଅନୁଷ୍ଠିତ ବିଶ୍ୱ ସମ୍ମିଳନୀର ନିଷ୍ପତ୍ତି କାର୍ଯ୍ୟକାରୀ କରିବା ପାଇଁ ଅନ୍ୟ ଦେଶମାନେ ଶୀଘ୍ର କାର୍ଯ୍ୟ ଆରମ୍ଭ କରିଦେଲେ । ଭାରତରେ ତଥା ଓଡିଶାରେ ଏହା ୧୯୯୨ ମସିହା ବେଳକୁ ଆରମ୍ଭ ହେଲା । UNICEF ଓଡିଶାରେ ପ୍ରଥମେ ସମସ୍ତଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମ ପାଇଁ ଆଲୋଚନା ଆରମ୍ଭ କଲେ । UNICEF ତାଙ୍କର ସହିଦନଗର ଅଫିସକୁ ଅଳ୍ପ କେତେ ଜଣ ଶିକ୍ଷାବିତ୍‌ଙ୍କୁ ୧୨/୧୦/୧୯୯୨ ତାରିଖରେ ଡାକି ପ୍ରାରମ୍ଭିକ ଆଲୋଚନା କଲେ । ସେ ଆଲୋଚନାରେ ଅବସର ପ୍ରାପ୍ତ ଡି.ପି.ଆଇ ପ୍ରଫେସର ବିଧୁଭୂଷଣ ଦାସ, ଡକ୍ଟର ଶରତ ଚନ୍ଦ୍ର ଦାଶ, ମୁଁ ଓ ଆଉ କେତେକ ଶିକ୍ଷାବିତ୍ ଯୋଗ ଦେଇଥିଲେ । ସେତେବେଳକୁ ଭାରତ ସରକାର ଓଡିଶା ସରକାରଙ୍କୁ "ସମସ୍ତଙ୍କ ପାଇଁ ଶିକ୍ଷା" କାର୍ଯ୍ୟକ୍ରମ ତଥା ଅନ୍ୟାନ୍ୟ ଶିକ୍ଷା ସଂପର୍କିତ କାର୍ଯ୍ୟକ୍ରମ ରୂପାୟନ ପାଇଁ ଓ UNICEF ସହିତ ସଂଯୋଜନା ପାଇଁ ଓଡିଶା ସରକାର ଗୋଟିଏ Education Task Force" ଗଠନ କଲେ । ତା'ର ସଭାପତି ରହିଲେ ଡକ୍ଟର ଶରତ ଚନ୍ଦ୍ର ଦାଶ । ସଂପାଦକ ପଦ ପାଇଁ ଜଣେ ଚାକିରିରେ ଥିବା ବ୍ୟକ୍ତିଙ୍କୁ ଖୋଜାଗଲା । ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ରଙ୍କୁ ସଂପାଦକ ଭାବେ ମନୋନୀତ କରାଗଲା । ଏହି Task Force ବିଭିନ୍ନ କାର୍ଯ୍ୟକ୍ରମ ହାତକୁ ନେବାପାଇଁ ସ୍ଥିର କଲେ ।

ଯଥା :- (୧) ରାଜ୍ୟ ସ୍ତରରେ ସଭା ସମିତି କରାଇ ଶିକ୍ଷା ବିଭାଗ କର୍ମଚାରୀ ତଥା ଅନ୍ୟମାନଙ୍କୁ ସମସ୍ତଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମରେ ସାମିଲ କରିବା ।

(୨) ସମସ୍ତଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମ ନିମିତ୍ତ ଗୋଟିଏ ଭିତ୍ତିପତ୍ର ପ୍ରସ୍ତୁତ କରିବା ।

(୩) ପ୍ରାଥମିକ ଶିକ୍ଷକ ସଂଘ ମାଧ୍ୟମରେ ସବୁ ଜିଲ୍ଲାରେ ସମ୍ମିଳନୀ କରାଇ ପ୍ରାଥମିକ ଶିକ୍ଷକମାନଙ୍କୁ ସମସ୍ତଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମ ବିଷୟରେ ଅବହିତ କରାଇବା ।

(୪) ନମୁନା ସ୍ୱରୂପ ଗୋଟିଏ ଜିଲ୍ଲାରେ ସାର୍ବଜନୀନ ଶିକ୍ଷା ପ୍ରବର୍ତ୍ତନ କରିବା ।

ସମସ୍ତଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମର ପ୍ରାରମ୍ଭିକ କାର୍ଯ୍ୟ ସ୍ୱରୂପ ଜୋମଟିଏନ୍ ଠାରେ ପ୍ରକାଶିତ ବିଶ୍ୱ ଘୋଷଣାନାମାର ଓଡିଆ ଅନୁବାଦ ଆବଶ୍ୟକ ହେଲା । ଡକ୍ଟର ନରେନ୍ଦ୍ର ପ୍ରସାଦ ଦାସ ଅନୁବାଦ କାର୍ଯ୍ୟକଲେ ଓ UNICEF ସେହି ପୁସ୍ତିକାଟିକୁ ଛପାଇ ସମସ୍ତ ସଂପୃକ୍ତ ବ୍ୟକ୍ତି ବିଶେଷ ତଥା ଅନୁଷ୍ଠାନ ମାନଙ୍କୁ ଯୋଗାଇ ଦେଲେ ।

ହୋଟେଲ କଳିଙ୍ଗ ଅଶୋକାରେ ସମସ୍ତଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମ ସମ୍ମିଳନୀ ୧୯୯୨ ମସିହା ମଇ ମାସ ୧୪-୧୫ ତାରିଖରେ ଅନୁଷ୍ଠିତ ହେଲା । ଏଠାକୁ UNICEF ର ଭାରତ ପାଇଁ ଥିବା ମୁଖ୍ୟ ଆସିଥିଲେ । ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ, ଶିକ୍ଷା ରାଜ୍ୟମନ୍ତ୍ରୀ କମଳା ଦାସ, ଶିକ୍ଷା ସଚିବ, ଶିକ୍ଷା ନିର୍ଦ୍ଦେଶକ ଆଦି ସମସ୍ତେ ଯୋଗ ଦେଇଥିଲେ । ଯେତେବେଳେ ବିଜୁ ପଟ୍ଟନାୟକ ସମ୍ମିଳନୀ କକ୍ଷରେ ପ୍ରବେଶ କଲେ ତାଙ୍କ ଆଖିରେ ପ୍ରକାଣ୍ଡ Banner "ସମସ୍ତଙ୍କ ପାଇଁ ଶିକ୍ଷା, ୨୦୦୦" ପଡିଗଲା । ସେ ହଠାତ୍ ପ୍ରଶ୍ନ କଲେ, "ଏପରି କିଏ ଲେଖିଛି ?" ଆୟୋଜକମାନେ କହିଲେ, "ବିଶ୍ୱ ଘୋଷଣା ନାମାରେ ଏଇ ନାମରେ କାର୍ଯ୍ୟକ୍ରମ ନାମିତ କରାଯାଇଛି । ତେଣୁ ଆମେ ଲେଖିଲୁ ।" ବିଜୁବାବୁ କହିଲେ, "ଯାକୁ କାଟ, ତା ବଦଳରେ ଲେଖ "ସମସ୍ତଙ୍କ ପାଇଁ ଶିକ୍ଷା, ୨୦୫୦ ।" ବିଜୁବାବୁଙ୍କ ଆକଳନରେ ଅନେକ ବାସ୍ତବିକତା ଥିଲା ପରି ଲାଗିଲା ।"

ଏବେ "ସର୍ବଶିକ୍ଷା ଅଭିଯାନ"ରେ ଭାରତ ସରକାର ହଜାର ହଜାର କୋଟି ଟଙ୍କା ଖର୍ଚ୍ଚ କରୁଛନ୍ତି । ଘୋଷଣା କରୁଛନ୍ତି ଯେ ୨୦୧୦ ସୁଦ୍ଧା ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷା ସାର୍ବଜନୀନ ହୋଇଯିବ । ବର୍ତ୍ତମାନ ୨୦୦୮ ମସିହା ହେଲାଣି । ଶତକଡା ଶହେ ନାମାଙ୍କନ ହୋଇନାହିଁ । ପାଠତ୍ୟାଗୀମାନଙ୍କ ସଂଖ୍ୟା ଶତକଡା ୩୦ ତଳକୁ ଖସି ନାହିଁ । ଶିଶୁ ଶ୍ରମିକମାନଙ୍କ ସଂଖ୍ୟା ନିରୂପିତ ହୋଇପାରି ନାହିଁ । ତାଙ୍କ ସମସ୍ୟା ଅତ୍ୟନ୍ତ ଜଟିଳ । ଦେଶର ଦାରିଦ୍ର୍ୟ ସହିତ ଶିଶୁ ଶ୍ରମିକ ସମସ୍ୟା ଜଡିତ । ୨୦୧୦ ସୁଦ୍ଧା ଦେଶରୁ ଦାରିଦ୍ର୍ୟ ହଟିବାର କୌଣସି ଲକ୍ଷଣ ଦେଖା ଯାଉନାହିଁ । ୨୦୧୦ ସୁଦ୍ଧା ପ୍ରାଥମିକ ଶିକ୍ଷା ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ

ସାର୍ବଜନୀନ ହେବାର ଆଶା ନାହିଁ । ବରଂ ବିଜୁବାବୁଙ୍କ ଆକଳନ ଅଧିକ ବାସ୍ତବ ଜଣା ଯାଉଛି ।

ସମସ୍ତଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମର ପ୍ରସାର ପାଇଁ ଗୋଟିଏ ନୂଆ ଉପାୟ ଚିନ୍ତା କରାଗଲା । ବିଧାନ ସଭା ସଦସ୍ୟମାନଙ୍କୁ ନେଇ ଗୋଟିଏ ମିଟିଂ କରିଦେଲେ ସଦସ୍ୟମାନେ ନିଜନିଜ ନିର୍ବାଚନ ମଣ୍ଡଳୀ ଗସ୍ତ ସମୟରେ ଲୋକଙ୍କୁ 'ସମସ୍ତଙ୍କ ପାଇଁ ଶିକ୍ଷା' କାର୍ଯ୍ୟକ୍ରମ ବିଷୟରେ କହିବେ ଓ ତାହା ଫଳପ୍ରଦ ହେବ । ଏଥିପାଇଁ ସେଇ ହୋଟେଲ କଳିଙ୍ଗ ଅଶୋକା ଠାରେ କେବଳ ବିଧାନସଭା ସଦସ୍ୟମାନଙ୍କ ପାଇଁ ଗୋଟିଏ ସମ୍ମିଳନୀ କରାଗଲା । ଶିକ୍ଷା ବିଭାଗ ଅଧିକାରୀମାନେ, ଶିକ୍ଷା ମନ୍ତ୍ରୀ ଓ ୟୁନିସେଫ କର୍ମକର୍ତ୍ତାମାନେ ପ୍ରାଞ୍ଜଳ ଭାବରେ କାର୍ଯ୍ୟକ୍ରମ ବିଷୟରେ ବୁଝାଇଲେ । ବିଧାନସଭା ସଦସ୍ୟ ୧୪୭ ଜଣଙ୍କ ମଧ୍ୟରୁ ପ୍ରାୟ ୮୦ ଜଣ ଯୋଗ ଦେଇଥିଲେ । ସେମାନଙ୍କ ପାଇଁ ସୁଦୃଶ୍ୟ ଦାମିକା ହ୍ୟାଣ୍ଡବ୍ୟାଗ ତିଆରି ହୋଇଥିଲା । ତାହା ଦିଆଗଲା । ସଭା ଶେଷରେ ଆୟୋଜକମାନେ କହିଲେ, 'ସମସ୍ତଙ୍କ ପାଇଁ ଶିକ୍ଷା' କାର୍ଯ୍ୟକ୍ରମର ବାର୍ତ୍ତା ଏବେ ଗାଁ ଗହଳିରେ ପହୁଞ୍ଚି ଯିବ । କିନ୍ତୁ ଦୁର୍ଭାଗ୍ୟର କଥା ଯେ ବାହାରେ ଗସ୍ତ କରିବାବେଳେ କେବେ କୌଣସି ଅଫିସର ପ୍ରମାଣ ପାଇଲେ ନାହିଁ ଯେ ବିଧାନ ସଭା ସଦସ୍ୟମାନେ କାହା ସହିତ ସମସ୍ତଙ୍କ ପାଇଁ ଶିକ୍ଷା ବିଷୟରେ ଆଲୋଚନା କରିଛନ୍ତି ।

ଏ ଉଭୟ ମିଟିଂ ଭଲ ହୋଇଥିଲା । ସମସ୍ତେ ଭଲ ଭାଷଣ ଦେଲେ । 'ସମସ୍ତଙ୍କ ପାଇଁ ଶିକ୍ଷା' କାର୍ଯ୍ୟକ୍ରମର ସୁନେଲି ଚିତ୍ର ସମସ୍ତେ ଦେଲେ । ଅନ୍ତତଃ ଗୋଟିଏ ଦିନ ସମସ୍ତଙ୍କ ମୁଖ ଉଜ୍ଜ୍ୱଳ ଦେଖାଗଲା । ତା ପରଦିନ ସକାଳକୁ ସବୁ ମଉଳି ଗଲା । ଶିକ୍ଷାର ପ୍ରସାର ବା ଉନ୍ନତି ପାଇଁ କେହି ଚିନ୍ତା କରୁଥିବାର ସାମାନ୍ୟ ସୂଚନା ବି ମିଳିଲା ନାହିଁ । ୟୁନିସେଫ୍‌ର ଓଡିଶା ମୁଖ୍ୟ କହିଲେ, "ଏତେ ଭାଷଣ, ଏତେ ଉତ୍ସାହ ଏତେ ପ୍ରତିଜ୍ଞା କୁଆଡେ ଗଲା । କେହି ଭୁଲରେ ଶିକ୍ଷାର ଉନ୍ନତି ବିଷୟରେ ଟେଲିଫୋନଟିଏ ବି କଲେ ନାହିଁ ।

## ୧୦.୩ ବିଭିନ୍ନ ଜିଲ୍ଲାରେ ସମସ୍ତଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମ

ଓଡିଶାରେ ଶିକ୍ଷା ରୂପାୟନ କମିଟି (Education Task Force) ଓ ୟୁନିସେଫ ଆଲୋଚନା କରି ସ୍ଥିର କଲେ ଯେ ଓଡିଶାର ପ୍ରତ୍ୟେକ ଜିଲ୍ଲାରେ

"ସମସ୍ତଙ୍କ ପାଇଁ ଶିକ୍ଷା" କର୍ମଶାଳା ଅନୁଷ୍ଠିତ ହେବ ଓ ସେଥିପାଇଁ ୟୁନିସେଫ ଆର୍ଥିକ ସହାୟତା ଯୋଗାଇ ଦେବେ । ଏ କାର୍ଯ୍ୟପାଇଁ ପ୍ରାଥମିକ ଶିକ୍ଷକମାନେ ହିଁ ସଫଳ ମାଧ୍ୟମ ହୋଇ ପାରିବେ ବୋଲି ବିବେଚନା କରାଗଲା । ପ୍ରାଥମିକ ଶିକ୍ଷକ ସଂଘକୁ ଏ ଦାୟିତ୍ୱ ଦିଆଯିବା ପାଇଁ ନିଷ୍ପତ୍ତି ହେଲା ।

ଓଡିଶାରେ ଦୁଇଗୋଟି ପ୍ରାଥମିକ ଶିକ୍ଷକ ସଂଘ ଅଛି :- (୧) ନିଖିଳ ଉତ୍କଳ ପ୍ରାଥମିକ ଶିକ୍ଷକ ଫେଡେରେସନ୍, ହରିପୁର ରୋଡ୍, କଟକ ଓ (୨) ନିଖିଳ ଉତ୍କଳ ପ୍ରାଥମିକ ଶିକ୍ଷକ ଫେଡେରେସନ୍, ଭୁବନେଶ୍ୱର । ଦୁଇଟିଯାକ ସଂଘ ଦାବି କରନ୍ତି ଯେ ତାଙ୍କର ପ୍ରଭାବ ସମଗ୍ର ଓଡିଶା ଉପରେ ରହିଛି । କିନ୍ତୁ କାର୍ଯ୍ୟ କ୍ଷେତ୍ରରେ ପ୍ରଥମ ସଂଘଟି ଅଧିକ ସକ୍ରିୟ । ତେଣୁ ପ୍ରଥମ ସଂଘର ମହା ସଚିବ ସଚ୍ଚିଦାନନ୍ଦ ରାଉତଙ୍କ ସହ ଆଲୋଚନା ବେଳେ ସେମାନେ ପ୍ରତିଶ୍ରୁତି ଦେଲେ ଯେ ସବୁ ଜିଲ୍ଲାରେ ସେମାନେ ସମସ୍ତଙ୍କ ପାଇଁ ଶିକ୍ଷା କର୍ମଶାଳା ଆୟୋଜନ କରିବେ । ଏବଂ ତଦନୁଯାୟୀ ଗୋଟିଏ କର୍ମ ଯୋଜନା ପ୍ରସ୍ତୁତ କରିଦେଲେ ।

| ତାରିଖ | ସ୍ଥାନ |
|---|---|
| ୨୪-୨୫ ଡିସେମ୍ବର ୧୯୯୪ | କେଉଁଝରଗଡ । |
| ୩୧-୦୧ ଜାନୁୟାରୀ ୧୯୯୫ | ବେତନଟୀ ହାଇସ୍କୁଲ । |
| ୦୭-୦୮ ଜାନୁୟାରୀ ୧୯୯୫ | ଢେଙ୍କାନାଳ ଟାଉନ୍‌ହଲ୍ । |
| ୧୪-୧୫ ଜାନୁୟାରୀ ୧୯୯୫ | ତାଳଚେର ଟାଉନ୍‌ହଲ୍ । |
| ୨୧-୨୨ ଜାନୁୟାରୀ ୧୯୯୫ | ଖଲ୍ଲିକୋଟ ହାଇସ୍କୁଲ । |
| ୨୮-୨୯ ଜାନୁୟାରୀ ୧୯୯୫ | ପାରଳା ଖେମୁଣ୍ଡି ଟାଉନ୍‌ହଲ୍ । |

ୟୁନିସେଫ ଆର୍ଥିକ ସହାୟତା ଓଡିଶା ଶିକ୍ଷା ରୂପାୟନ କମିଟି (Education Task Force) ମାଧ୍ୟମରେ ଖର୍ଚ୍ଚ ହେବା ପାଇଁ ମଧ୍ୟ ସ୍ଥିର ହେଲା । ଓଡିଶା ଶିକ୍ଷା ରୂପାୟନ କମିଟିର ସଂପାଦକ ଭାବରେ ପ୍ରଫୁଲ୍ଲ ବାବୁ ଖର୍ଚ୍ଚ ହିସାବ ରଖି ୟୁନିସେଫ୍‌କୁ ପଠାଇବା ଓ ଅନ୍ୟାନ୍ୟ ବିଷୟରେ ୟୁନିସେଫ୍ ସହିତ ସଂଯୋଗ ରଖିବା ଦାୟିତ୍ୱରେ ରହିଲେ । କାର୍ଯ୍ୟକ୍ରମ ସଂଚାଳନ ଦାୟିତ୍ୱ Education Task Force ଉପରେ ନ୍ୟସ୍ତ ହେଲା । ସଚ୍ଚିଦାନନ୍ଦ ରାଉତ ଓ ତାଙ୍କ ସଂଘ ଆଗ୍ରହର ସହିତ ଏହି କାର୍ଯ୍ୟକ୍ରମ ପରିଚାଳନା କଲେ ।

"ସମସ୍ତଙ୍କ ପାଇଁ ଶିକ୍ଷା" କାର୍ଯ୍ୟକ୍ରମ ଆରମ୍ଭ ହେବା ପୂର୍ବରୁ ପ୍ରାଥମିକ ଶିକ୍ଷକ ସଂଘ ଗୋଟିଏ ଭିତ୍ତିପତ୍ର ପ୍ରସ୍ତୁତ କରିବାକୁ ଲେଖା ସଂଗ୍ରହ କଲେ । ମୁଖ୍ୟତଃ ପ୍ରଫୁଲ୍ଲ ମହାପାତ୍ରଙ୍କ ଲେଖା ଏଥିରେ ସ୍ଥାନିତ ହେଲା । କେଉଁଝରଗଡରେ ପ୍ରଥମ କର୍ମଶାଳା ଅନୁଷ୍ଠିତ ହେବା ପୂର୍ବରୁ ଏହି ପୁସ୍ତିକା ଛପାଇବା ପାଇଁ ସେମାନେ ବ୍ୟବସ୍ଥା କଲେ । ୨୦/୧୨/୧୯୯୪ ତାରିଖରେ ସେମାନେ ସେହି ପୁସ୍ତିକା ପ୍ରକାଶ କରିବା ପାଇଁ ଗୋଟିଏ ଶୁଭେଚ୍ଛା ବାର୍ତ୍ତା ଦେବା ପାଇଁ ମୋତେ ଅନୁରୋଧ କଲେ । ମୋର ଶୁଭେଚ୍ଛା ବାର୍ତ୍ତାସହ ପ୍ରଥମ ୨୦୦ ଖଣ୍ଡ ପୁସ୍ତିକା ଛପା ହେଲା । ଶୁଭେଚ୍ଛା ବାର୍ତ୍ତା ଦେଖି ସଂପାଦକ ପ୍ରଫୁଲ୍ଲ ବାବୁ ଆପତ୍ତି କରି କହିଲେ, "ଏହା ସରକାର ବିରୋଧୀ ହୋଇଛି । ଏହି ଶୁଭେଚ୍ଛା ବାର୍ତ୍ତାସହ ପୁସ୍ତିକା ପ୍ରକାଶିତ ହେଲେ ସେ ଛପା ଖର୍ଚ୍ଚ ଦେବେ ନାହିଁ । ସେ ବିଷୟରେ ଶିକ୍ଷକମାନଙ୍କ ମଧ୍ୟରେ ଓ ୟୁନିସେଫ ଅଫିସର ମହଲରେ ଆଲୋଚନା ହେଲା । ସେ ଶୁଭେଚ୍ଛା ବାର୍ତ୍ତାରେ କିଛି ସରକାର ବିରୋଧୀ ଆପତ୍ତିଜନକ ବିଷୟ ଥିବା ଭଳି କେହି ଅନୁଭବ କଲେ ନାହିଁ । ଯାହା ଲେଖା ହୋଇଥିଲା ତା'ର ଅବିକଳ ନକଲ ସମସ୍ତଙ୍କ ଅବଗତି ଓ ବିଚାର ନିମିତ୍ତ ଉପସ୍ଥାପିତ କରୁଛି ।

## ଶୁଭେଚ୍ଛା ବାର୍ତ୍ତା

**ପ୍ରଫେସର ଡକ୍ଟର ପୂର୍ଣ୍ଣଚନ୍ଦ୍ର ରାଉତ** ଏ,୧୭/୮, ସୂର୍ଯ୍ୟନଗର
ପୂର୍ବତନ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ, ଓଡ଼ିଶା

ଭୁବନେଶ୍ୱର - ୩
ଓଡ଼ିଶା

ତା - ୨୦ । ୧୨ । ୧୯୯୪

ଓଡ଼ିଶାରେ "ସମସ୍ତଙ୍କ ପାଇଁ ଶିକ୍ଷା" କର୍ମଶାଳା ୧୯୯୨ ମେ ମାସରେ ଆରମ୍ଭ ହୋଇଥିଲା । ଅଢେଇ ବର୍ଷ ପରେ ବହୁ କଷ୍ଟରେ ଆମେ ଏବେ ଜିଲ୍ଲା ସ୍ତରରେ ପହଞ୍ଚିଲେ । ଏହାପରେ ବ୍ଲକ୍ ପଞ୍ଚାୟତ ଓ ଗ୍ରାମ ସ୍ତରରେ କେବେ ଯାଇ ପହଞ୍ଚିବା ? ଏଇ ଗତିରେ ଚାଲିଲେ ଏ ଶତାବ୍ଦୀଶେଷ ସୁଦ୍ଧା ଲକ୍ଷ୍ୟ ଭେଦ ହୋଇ ପାରିବ ତ ?

ପ୍ରାଥମିକ ଶିକ୍ଷାର ସାର୍ବଜନୀନକରଣ ପାଇଁ ଆମେ ବହୁତ ବ୍ୟସ୍ତ - କଥାରେ, କାମରେ ନୁହେଁ । ରାଜ୍ୟର ୧୦,୦୦୦ ଗ୍ରାମକୁ ପ୍ରାଥମିକ ବିଦ୍ୟାଳୟ ଯୋଗାଇ ଦିଆଯାଇ ପାରି ନାହିଁ । କାରଣ ଆମର ଟଙ୍କା ନାହିଁ । ଅନ୍ୟ ରାଜ୍ୟମାନେ ବିଭିନ୍ନ ସୂତ୍ରରୁ ଟଙ୍କା ଆଣୁଥିଲେ ମଧ୍ୟ ଆମର ସେ ଯୋଗ୍ୟତା ନାହିଁ । ଦକ୍ଷିଣ ଓଡିଶା ଶିକ୍ଷା ପ୍ରକଳ୍ପ ଆମେ ଏ ପର୍ଯ୍ୟନ୍ତ ହାତେଇ ପାରିଲେ ନାହିଁ । ଢେଙ୍କାନାଳ ଓ ଅନୁଗୁଳ ଜିଲ୍ଲା ଶିକ୍ଷା ପ୍ରକଳ୍ପ ସରକାରୀ ଶୀତଳ ଭଣ୍ଡାରରେ ରହିଗଲା । ବିଶ୍ୱବ୍ୟାଙ୍କର D.P.E.P ଏବେ ଏକମାତ୍ର ଭରସା । ହେଲେ ଏ ରାଜ୍ୟରେ ତା'ର ସ୍ଥିତି କେଉଁଠି ଜଣାଯାଉ ନାହିଁ ।

ଓଡିଶାରେ ଗବେଷଣା ପାଇଁ ଉର୍ବର ମାଟି ନାହିଁ । ଶିକ୍ଷା ଗବେଷଣାରେ ଡକ୍ଟରେଟ୍ ସିନା ମିଳୁଛି, ଗବେଷଣା ଲବ୍ଧ ଜ୍ଞାନର ପ୍ରୟୋଗ କେଉଁଠି ଦେଖିବାକୁ ମିଳୁନାହିଁ । ଏ ପର୍ଯ୍ୟନ୍ତ ଅନ୍ତତଃ ନମୁନା ଭାବରେ ଗୋଟିଏ ବ୍ଲକ୍‌ରେ କି ଗୋଟିଏ ପଞ୍ଚାୟତରେ ସାର୍ବଜନୀନ ପ୍ରାଥମିକ ଶିକ୍ଷାର ପରୀକ୍ଷଣ ବି ହୋଇ ପାରିଲା ନାହିଁ। ଏଣୁ ସେ ଅଭିଜ୍ଞତାର ଘୋର ଅଭାବ ରହି ଯାଇଛି । ଅନ୍ଧମାନେ ହାତୀ ଦେଖିଲା ଭଳି ଆମେ ସାର୍ବଜନୀନ ପ୍ରାଥମିକ ଶିକ୍ଷାକୁ ଦେଖୁଛନ୍ତି । ତେଣୁ ବହୁ ଆଲୋଚନା ସତ୍ତ୍ୱେ କିଛି ଫଳ ମିଳୁନାହିଁ ।

ଯେଉଁ ଶିକ୍ଷକମାନେ ପ୍ରାଥମିକ ଶିକ୍ଷା ଦାୟିତ୍ୱରେ ଅଛନ୍ତି ସେମାନେ ଜାଣିଲେଣି କି ତାଙ୍କୁ ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବାକୁ ପଡିବ ବୋଲି ? କାମ କରିବା ଲୋକଙ୍କ ପାଖରେ ଏ ଖବର ପହଞ୍ଚିଲାଣି କି ? ସେମାନେ ନ ଜାଣିଥିଲେ କାମ କରିବ କିଏ ?

କେଉଁଝର ଜିଲ୍ଲାର ୪୫୦୦ ପ୍ରାଥମିକ ଶିକ୍ଷକ ମାନଙ୍କ ମଧ୍ୟରୁ ଏ କର୍ମଶାଳାକୁ ପ୍ରାୟ ଶହେ ଜଣ ଆସିବେ । ଅନ୍ୟମାନଙ୍କ ପାଖରେ ଏ ଆଲୋଚନା କେବେ କିପରି ପହଞ୍ଚିବ ? ଗୋଟିଏ କଥା ମନେ ରଖିବାକୁ ହେବ ଯେ ଯଦି କେବେ ପ୍ରାଥମିକ ଶିକ୍ଷା ସାର୍ବଜନୀନ ହୁଏ ତାହା ଜନ ସହଯୋଗରେ ପ୍ରାଥମିକ ଶିକ୍ଷକମାନଙ୍କ ଦ୍ୱାରାହିଁ ହେବ । ସେଇମାନେ ଠିକ୍ ଭାବରେ ପ୍ରୟୋଜିତ ହେଲେ ପ୍ରତି ଗ୍ରାମରେ ଜନ ସହଯୋଗ ଆକର୍ଷଣ କରି ପାରିବେ । ସବୁ ଶିକ୍ଷକଙ୍କୁ ଏ କର୍ମରେ ନିୟୋଜିତ କରିବାକୁ ଅଣୁ-ଯୋଜନା ପ୍ରସ୍ତୁତ କରି ଏକ ପ୍ରକଳ୍ପ ମାଧ୍ୟମରେ ଯୋଜନାବଦ୍ଧ ଭାବେ ଅଗ୍ରସର ହେବାକୁ ପଡିବ । ପ୍ରାଥମିକ

ଶିକ୍ଷକମାନଙ୍କର ତ୍ୟାଗ, କର୍ତ୍ତବ୍ୟ ନିଷ୍ଠା ଓ ଆନ୍ତରିକତା ଉପରେ ଏହାର ସଫଳତା ନିର୍ଭର କରେ ।

ନିଖିଳ ଉତ୍କଳ ପ୍ରାଥମିକ ଶିକ୍ଷକ ଫେଡେରେସନର ଏ ଉଦ୍ୟମ ପ୍ରଶଂସନୀୟ ।

ଅୟମାରମ୍ଭଃ ଶୁଭାୟ ଭବତୁ ।

॥ ଇତି ॥

ପୂର୍ଣ୍ଣଚନ୍ଦ୍ର ରାଉତ

୨୦/୧୨/୯୪

ଏଥିରେ ଯାହା ଲେଖା ଯାଇଛି ତାହା ତଥ୍ୟ ଉପରେ ଆଧାରିତ । ଏଥିରେ ଗୋଟିଏ ଅକ୍ଷର ବି ମିଥ୍ୟା ନାହିଁ । ଏହା ସରକାର ବିରୋଧୀ ମଧ୍ୟ ନୁହେଁ । ତଥାପି କାହିଁକି ପ୍ରଫୁଲ୍ଲ ବାବୁ ଆପତ୍ତି କଲେ ଜଣାଯାଉନାହିଁ । ହୋଇପାରେ ପ୍ରଫୁଲ୍ଲବାବୁଙ୍କର ସରକାଙ୍କ ପ୍ରତି ଅତିଶୟ ଆନୁଗତ୍ୟ ଥିବାରୁ ସେ ଆପତ୍ତି ଉଠାଇଲେ । କିନ୍ତୁ ପୁସ୍ତିକା ଛପା ଖର୍ଚ୍ଚ ଦେବାକୁ ମନା କରିବା ପୂର୍ବରୁ ବିଚାର କରିବାର ଥିଲା, ମନା କରିବାର କ୍ଷମତା ବ୍ୟକ୍ତିଗତ ଭାବରେ ତାଙ୍କର ଥିଲା କି ? ସେ Education Task Force ର ସଂପାଦକ । କମିଟି ଯାହା ନିଷ୍ପତ୍ତି କରିବେ ତାକୁ କାର୍ଯ୍ୟକାରୀ କରିବା ତାଙ୍କର କର୍ତ୍ତବ୍ୟ । ସେ କାହିଁକି ଭାବିଲେ ଯେ ତାଙ୍କର ସର୍ବମୟ କ୍ଷମତା ଥିଲା ? କମିଟି ମିଟିଂ ନ ଡାକି କମିଟିର ମତାମତ ନ ନେଇ ଛପା ଖର୍ଚ୍ଚ ନ ଦେବାକୁ କହିବା ତାଙ୍କର ଉଚିତ୍ ହୋଇନାହିଁ । ସାହାଯ୍ୟ ବନ୍ଦ କରିଦେବା ଧମକକୁ ପ୍ରାଥମିକ ଶିକ୍ଷକ ସଂଘ Challenge କରି ପାରିଲେ ନାହିଁ । କାରଣ ସେମାନେ ଅକଳରେ ପଡିଗଲେ । ତିନିଦିନ ପରେ ତାଙ୍କର କର୍ମଶାଳା । ସେଥିପାଇଁ ଟଙ୍କା ଦରକାର । ଅପେକ୍ଷା କରିବାକୁ ବା ବିବାଦ ଭିତରେ ପ୍ରବେଶ କରିବାକୁ ତାଙ୍କ ହାତରେ ସମୟ ନ ଥିଲା । ତାଛଡା ସେମାନଙ୍କର ଧାରଣା ଥିଲା ଯେ ଟଙ୍କା ଦେବା ନ ଦେବା କ୍ଷମତା ପ୍ରଫୁଲ୍ଲ ବାବୁଙ୍କର ବ୍ୟକ୍ତିଗତ ଭାବେ ଥିଲା । ବାଧ୍ୟ ହୋଇ ପ୍ରାଥମିକ ଶିକ୍ଷକ ସଂଘ ମୋର ଶୁଭେଚ୍ଛା ବାର୍ତ୍ତାଟିକୁ ଉଠାଇ ଦେଇ ବାକି ପୁସ୍ତିକାଟି ଛପାଇଲେ ଓ କର୍ମଶାଳା ପାଇଁ ଅନୁଦାନ ଟଙ୍କା ପାଇଲେ ।

ସେତେବେଳେ ଅଞ୍ଜନା ମଙ୍ଗଳାଗିରି ୟୁନିସେଫରେ ଶିକ୍ଷା ପ୍ରୋଗ୍ରାମ ଅଫିସରେ ଭାବରେ କାର୍ଯ୍ୟ କରୁଥିଲେ । ସେ ଜଣେ ସଚ୍ଚୋଟ, ସୁଯୋଗ୍ୟ ଓ

ସୁଦକ୍ଷ ଅଫିସର । ତାଙ୍କ କାର୍ଯ୍ୟକାଳରେ ୟୁନିସେଫ ଶିକ୍ଷା କାର୍ଯ୍ୟକ୍ରମ ସଫଳ ଭାବରେ ରୂପାୟିତ ହେଉଥିଲା । ତାଙ୍କର ଆନ୍ତରିକତା ଯୋଗୁଁ ୟୁନିସେଫରେ କ୍ଷେତ୍ରୀୟ କାର୍ଯ୍ୟ ବେଶ୍ ସଫଳତାର ସହିତ ସଂପାଦିତ ହେଉଥିଲା । ସମସ୍ତଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମରେ ସେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ ।

ବିଧିର ବିଡମ୍ବନା ସରକାରଙ୍କ ପ୍ରତି ଅତିରିକ୍ତ ଆନୁଗତ୍ୟ ଦେଖାଉଥିବା ପ୍ରଫୁଲ୍ଲ ବାବୁଙ୍କର କିଛି ଆର୍ଥିକ ଅନିୟମିତତା ମଙ୍ଗଳାଗିରିଙ୍କ ଆଖିରେ ପଡିଲା । ତାହା ୧୯୯୫ ଜାନୁୟାରୀ ମାସରେ ବେତନଟୀଠାରେ ଅନୁଷ୍ଠିତ "ସମସ୍ତଙ୍କ ପାଇଁ ଶିକ୍ଷା"କର୍ମଶାଳା ସହିତ ସଂପୃକ୍ତ । ତାପରେ ଅଞ୍ଜନା ମଙ୍ଗଳାଗିରି ୟୁନିସେଫ ମୁଖ୍ୟଙ୍କ ସହ ଆଲୋଚନା କରି ପ୍ରଫୁଲ୍ଲ ବାବୁଙ୍କ ମାଧ୍ୟମରେ ଆର୍ଥିକ ସହାୟତା ଖର୍ଚ୍ଚ ନ କରିବାକୁ ଜିଦ୍ ଧରି ବସିଲେ । ସେତେବେଳକୁ ସମସ୍ତଙ୍କ ପାଇଁ ଶିକ୍ଷା ପ୍ରକୋଷ୍ଠ ଗଠିତ ହୋଇ ସାରିଥାଏ ଓ ଡକ୍ଟର ନରେନ୍ଦ୍ର ପ୍ରସାଦ ଦାସ ତା'ର ନିର୍ଦ୍ଦେଶକ ନିଯୁକ୍ତ ହୋଇ ସାରିଥାନ୍ତି । ତାଙ୍କ ନାମକୁ Account ପରିବର୍ତ୍ତନ କରିବାକୁ ୟୁନିସେଫ୍ ଜିଦ ଧରିବାରୁ ଶେଷରେ ତାହାହିଁ ହେଲା । ନରେନ୍ଦ୍ରବାବୁ ସମସ୍ତଙ୍କ ପାଇଁ ଶିକ୍ଷା ଦାୟିତ୍ୱରେ ରହି କାର୍ଯ୍ୟକ୍ରମ ପରିଚାଳନା କଲେ । ପ୍ରଫୁଲ୍ଲ ବାବୁଙ୍କ ଠାରୁ ଆର୍ଥିକ କ୍ଷମତା ପ୍ରତ୍ୟାହାର କରି ନିଆଗଲା ।

ୟୁନିସେଫର ଆର୍ଥିକ ସହାୟତାରେ ବିଭିନ୍ନ ଜିଲ୍ଲାରେ ସମସ୍ତଙ୍କ ପାଇଁ ଶିକ୍ଷାର ଅନେକ ଗୁଡିଏ କର୍ମଶାଳା ଅନୁଷ୍ଠିତ ହେଲା । ପ୍ରାଥମିକ ଶିକ୍ଷକମାନେ ସହଯୋଗ କଲେ । ଜିଲ୍ଲାରୁ ଜିଲ୍ଲାକୁ ବୁଲି ଆମେ ସବୁ ସମସ୍ତଙ୍କ ପାଇଁ ଶିକ୍ଷାର ବାର୍ତ୍ତା ପ୍ରଚାର କରିବାରେ ଲାଗିଗଲୁ । ବାସ୍ତବ କ୍ଷେତ୍ରରେ ଶିକ୍ଷାର କିଛି ସଂପ୍ରସାରଣ ହେଲା, ଛାତ୍ରଛାତ୍ରୀ ସଂଖ୍ୟା କିଛି ବଢିଲା କିନ୍ତୁ ଶିକ୍ଷାର ଗୁଣାତ୍ମକମାନ ବୃଦ୍ଧି ହେଲା ଭଳି ଜଣାଗଲା ନାହିଁ ।

## ୧୦.୪ ଜ୍ଞାନ ଜ୍ୟୋତି ପରିକ୍ରମା

ଶିକ୍ଷକ ମହାସଂଘ ମହା ସଚିବ ଅବନୀକୁମାର ବରାଳ ଓ ଅନ୍ୟ କେତେକ ଶିକ୍ଷାବିତ୍ ମିଶି ପ୍ରସ୍ତାବ କଲେ ଯେ "ସମସ୍ତଙ୍କ ପାଇଁ ଶିକ୍ଷା" ବାର୍ତ୍ତା ପ୍ରଚାର କରିବା ପାଇଁ ଗୋଟିଏ ଶିକ୍ଷା ମଶାଲ ଓଡିଶା ସାରା ବୁଲାଇବା କାର୍ଯ୍ୟକ୍ରମ ହାତକୁ ନିଆଯିବ । ତତ୍ କାଳୀନ ଓଡିଶା ୟୁନିସେଫ ମୁଖ୍ୟ ରାମକୃଷ୍ଣ ରଥ ଏ ପ୍ରସ୍ତାବରେ ସମ୍ମତି ପ୍ରକାଶ କଲେ ଓ ୟୁନିସେଫର ଆର୍ଥିକ ସହାୟତା ଯୋଗାଇ

ଦେବାପାଇଁ ପ୍ରତିଶ୍ରୁତି ଦେଲେ । ବାରବାଟୀ ଷ୍ଟାଡିୟମରେ ଗୋଟିଏ ସଭା ଡକାଯାଇ ସେଠାକୁ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କୁ ନିମନ୍ତ୍ରଣ କରାଗଲା । ସଭାରେ କାର୍ଯ୍ୟକ୍ରମ ବିଷୟରେ ଆଲୋଚନା ହେଲା । ଶିକ୍ଷା ମଶାଲର ନାମ କରଣ ହେଲା "ଜ୍ଞାନ ଜ୍ୟୋତି" ଯେଉଁ ସ୍ଥାନକୁ ଜ୍ଞାନ ଜ୍ୟୋତି ଯିବ ସେ ସ୍ଥାନୀୟ ଲୋକେ ତଥା ଶିକ୍ଷା ବିଭାଗ ଅଫିସରମାନେ ସହଯୋଗ କରିବେ ବୋଲି ସ୍ଥିର ହେଲା । ସଭା ଶେଷରେ ବିଜୁବାବୁ ଜ୍ଞାନ ଜ୍ୟୋତିକୁ ଶିକ୍ଷକ ମହାସଂଘ ହାତରେ ସମର୍ପଣ କଲେ ।

ଏହି ଶିକ୍ଷା ମଶାଲକୁ ନିଜ ନିଜ ଅଞ୍ଚଳକୁ ନେବା ପାଇଁ ବହୁତ ଲୋକ ଆଗ୍ରହ ପ୍ରକାଶ କଲେ କିନ୍ତୁ ସମସ୍ତଙ୍କ ଅନୁରୋଧ ରକ୍ଷା କରିବା ସମ୍ଭବ ହେଲା ନାହିଁ । ପୂର୍ବରୁ ଜ୍ଞାନ ଜ୍ୟୋତି କେତେକ ମୁଖ୍ୟ ସ୍ଥାନକୁ ଯିବା ପାଇଁ ପ୍ରୋଗ୍ରାମ କରାଯାଇଥିଲା । ଯେଉଁଠାକୁ ଜ୍ଞାନ ଜ୍ୟୋତି ଗଲା ସେଠାରେ ସଭା ସମିତି ହେବା ସହିତ ସ୍ଥାନୀୟ ଲୋକଙ୍କ ସହଯୋଗରେ ଭୋଜିଭାତ ମଧ୍ୟ ବ୍ୟବସ୍ଥା ହେଲା । ଲୋକମାନେ ପ୍ରବଳ ଉତ୍ସାହର ସହିତ ଜ୍ଞାନ ଜ୍ୟୋତି ଉତ୍ସବ ପାଳନ କଲେ । କିନ୍ତୁ ଜ୍ଞାନ ଜ୍ୟୋତିର ବାର୍ତ୍ତା କେତେ ଦୂର ପ୍ରଚାରିତ ହେଲା ତାହା ଜାଣିବା କଷ୍ଟକର ହେଲା । ମୁଁ ଜ୍ଞାନଜ୍ୟୋତି କାର୍ଯ୍ୟକ୍ରମରେ ଯୋଗ ଦେବାପାଇଁ ଭଦ୍ରକ ଯାଇଥିଲି । ସେଠାରେ ଲୋକଙ୍କର ଉତ୍ସାହ ଥିବାର ଅନୁଭବ କଲି । ଖାଇବା ପିଇବାରେ ବିଶେଷ ଜାକ ଜମକ ନ ଥିଲା କିନ୍ତୁ ବହୁତ ଲୋକଙ୍କ ପାଇଁ ସାଧାରଣ ଖାଦ୍ୟ ଭାତ, ଡାଲି, ତରକାରି ବ୍ୟବସ୍ଥା କରା ଯାଇଥିଲା । ଜ୍ଞାନଜ୍ୟୋତି ପରିକ୍ରମା ପାଇଁ କାର ପରିବର୍ତ୍ତେ ମଟର ସାଇକେଲ ବ୍ୟବହାର କରାଯାଉଥିଲା । କାରଣ ମଟର ସାଇକେଲ ରାଲି ଲୋକଙ୍କର ଦୃଷ୍ଟି ଆକର୍ଷଣ କରିବା ପାଇଁ ଭଲ । ପୂର୍ବ ପ୍ରସ୍ତୁତ ପ୍ରୋଗ୍ରାମ ଅନୁସାରେ ଜ୍ଞାନଜ୍ୟୋତି ଦୁଇ ମାସ ସାରା ଓଡିଶାରେ ପରିକ୍ରମା କଲା ।

ସମ୍ବଲପୁର ଅଞ୍ଚଳରେ ଜ୍ଞାନଜ୍ୟୋତି ପରିକ୍ରମା କରୁଥିବା ସମୟରେ ଭିଡିଓ ରେକର୍ଡ କରା ଯାଇଥିଲା । ସମ୍ବଲପୁର, ବରଗଡ, ପଦ୍ମପୁର ପ୍ରଭୃତି ସ୍ଥାନରେ ବିଭିନ୍ନ ଅନୁଷ୍ଠାନ ତଥା ସାଧାରଣ ବର୍ଗର ଲୋକେ ବହୁ ସଂଖ୍ୟାରେ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିଥିଲେ । ଅବସ୍ଥା ଏପରି ହେଲା ଯେ ଜ୍ଞାନଜ୍ୟୋତି କାର୍ଯ୍ୟକ୍ରମ ପାଇଁ ପ୍ରତିଯୋଗିତା ଚାଲିଲା । ଆୟୋଜକ ମାନଙ୍କର ଧାରଣା ହେଲା ଯେ ଜ୍ଞାନଜ୍ୟୋତି ଅତ୍ୟନ୍ତ ପ୍ରଭାବଶାଳୀ ଓ ଲୋକପ୍ରିୟ ହୋଇ ଯାଇଛି । ଜ୍ଞାନଜ୍ୟୋତି

ସାକ୍ଷରତା ତଥା ପ୍ରାରମ୍ଭିକ ଶିକ୍ଷାର ଏକ ସଫଳ ବାର୍ତ୍ତାବହ ରୂପେ ପରିକ୍ରମା କଲା । କିନ୍ତୁ ସ୍ଥାନେ ସ୍ଥାନେ ଏହା କେବଳ ଏକ ଔପଚାରିକତା ଓ ଉତ୍ସବର ପ୍ରତୀକ ରୂପେ କାର୍ଯ୍ୟକଲା । ଯାହାହେଲେ ବି ଶିକ୍ଷା ପାଇଁ ଜନ ସଚେତନତା ସୃଷ୍ଟି ଦିଗରେ ଏହା ଏକ ସଫଳ ପଦକ୍ଷେପ, ଏହା ସ୍ୱୀକାର କରିବାକୁ ହେବ ।

ଜ୍ଞାନଜ୍ୟୋତିର ଉଦ୍‌ଯାପନ ଉତ୍ସବ ୧୪ ନଭେମ୍ବର ଶିଶୁ ଦିବସରେ ଆୟୋଜିତ ହୋଇଥିଲା । ଏହି ଉତ୍ସବକୁ ମହା ସମାରୋହରେ ପାଳନ କରିବାକୁ ଆୟୋଜକ ମାନେ ଚିନ୍ତା କଲେ ଓ ୟୁନିସେଫ ସେଥିରେ ସହଯୋଗ କଲା । ମୁଖ୍ୟମନ୍ତ୍ରୀ ବିଜୁବାବୁଙ୍କୁ ମୁଖ୍ୟ ଅତିଥି କରି ଡାକିବାକୁ ପ୍ରସ୍ତାବ ଦିଆଯିବାରୁ ବିଜୁବାବୁ ଖୁବ୍ ଉତ୍ସାହିତ ହୋଇ କହିଲେ, "ମୋ ଦସ୍ତଖତରେ ସବୁ ମନ୍ତ୍ରୀ ଓ ସବୁ M.L.A ମାନଙ୍କୁ ଚିଠି ଦିଅ । ସେମାନେ ଉଦ୍‌ଯାପନ ଉତ୍ସବକୁ ଆସିବେ ।" ତା ବ୍ୟତୀତ ଶିକ୍ଷାବିଭାଗ କର୍ମଚାରୀମାନେ ସମସ୍ତେ ଆସିବେ । ତାହା ହିଁ କରାଗଲା। ମଞ୍ଚ ଉପରେ ୧୫୦ଟି ଚେୟାର ପକାଗଲା । ସବୁ M.L.A ଓ ଅତିଥିମାନଙ୍କ ପାଇଁ ମଞ୍ଚଟିକୁ ସୁସଜ୍ଜିତ କରାଯାଇ ସୁଦୃଶ୍ୟ କରାଗଲା ।

ଅବନୀବାବୁ ୟୁନିସେଫ ମୁଖ୍ୟ ଡକ୍ଟର ରଥଙ୍କୁ କହିଲେ, "ଆମେ ଚିଠି ଦେଇ ସବୁ ଶିକ୍ଷକଙ୍କୁ ଡକାଇବୁ । ଅନ୍ୟୂନ ୩୦ ହଜାର ଶିକ୍ଷକ ଶିକ୍ଷୟିତ୍ରୀଙ୍କ ପାଇଁ ବସିବାକୁ ବ୍ୟବସ୍ଥା ହେବା ଦରକାର । ତେଣୁ ଏକ ନମ୍ବର ହାଇସ୍କୁଲ ପଡିଆରୁ ଅଧା ଚାନ୍ଦୁଆରେ ଢାଙ୍କି ଦେଲେ ଓ ତଳେ ଦରି ପକାଇଲେ। ମୁଁ ସେ ସମୟରେ ୟୁନିସେଫ ମୁଖ୍ୟଙ୍କୁ କହିଲି, "୧୦ ହଜାର ଶିକ୍ଷକଙ୍କଠାରୁ ଅଧିକ ଆସିବେ ନାହିଁ। ଏତେ ବ୍ୟାପକ ଆୟୋଜନ କରିବା ଦରକାର ନାହିଁ । ମୋ କଥା ଉପରେ କେହି ଗୁରୁତ୍ୱ ଦେଲେ ନାହିଁ । ପ୍ରଫୁଲ୍ଲ ବାବୁ କହିଲେ, "ଅବନୀ ଭାଇ (ଅବନୀବାବୁଙ୍କୁ ପ୍ରଫୁଲ୍ଲବାବୁ ଅବନୀ ଭାଇ ବୋଲି ଡାକନ୍ତି) ଯାହା କହୁଛନ୍ତି ସେହି ଅନୁସାରେ କାମ ହେଉ ।

ଠିକ୍ ସେହି ସମୟରେ "ସମସ୍ତଙ୍କ ପାଇଁ ଶିକ୍ଷା" ସହିତ "ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ" କାର୍ଯ୍ୟକ୍ରମ ମଧ୍ୟ ପରିଚାଳିତ ହେଉଥିଲା । ୟୁନିସେଫ ପ୍ରସ୍ତାବ ଦେଲେ ଯେ ଏକା ସାଥିରେ ଉଭୟ ପାଇଁ ଆୟୋଜନ କରାଯିବ । ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମ ସର୍ବ ଭାରତୀୟ ସେବା ଅଫିସର ଡକ୍ଟର କେ.ଏସ୍. ଗଣେଶନ୍ ପରିଚାଳନା କରୁଥିଲେ । ସେହି କାର୍ଯ୍ୟକ୍ରମରେ ଦୁଇ ହଜାର ଅଙ୍ଗନବାଡି କର୍ମୀ ଯୋଗ ଦେବେ ବୋଲି ଗଣେଶନ୍ କହିଲେ ।

ନଭେମ୍ବର ମାସ ୧୪ ତାରିଖ ଶିଶୁ ଦିବସରେ ଦିବା ୩ ଘଟିକା ସମୟରେ ସଭା ହେବାର ପ୍ରୋଗ୍ରାମ କରା ଯାଇଥିଲା । ସଭାରେ ୟୁନିସେଫର ଭାରତମୁଖ୍ୟ, ଶିକ୍ଷାମନ୍ତ୍ରୀ ଦୁଇଜଣ, ଶିକ୍ଷା ସଚିବ, ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଯୋଗ ଦେଲେ । କୌଣସି M.L.A. ଆସିଲେ ନାହିଁ । ଶିକ୍ଷକ ଓ ଦର୍ଶକ ମିଶି ପ୍ରାୟ ୫୦୦ ଆସିଲେ । ପ୍ରତ୍ୟେକଙ୍କୁ ଖଣ୍ଡେ ଖଣ୍ଡେ ନାଲି ଧଡି ଥିବା ଶାଢୀ ଓ ନାଲି ବ୍ଲାଉଜ ଦିଆ ଯିବାରୁ ଦୁଇ ହଜାର ଅଙ୍ଗନବାଡି କର୍ମୀ ଆସିଥିଲେ । ଏ ଦୃଶ୍ୟ ଦେଖି ବିଜୁବାବୁ ରାଗି ପଞ୍ଚମ । ନାନା ଅଶ୍ରାବ୍ୟ ଭାଷାରେ M.L.A. ତଥା ମନ୍ତ୍ରୀମାନଙ୍କୁ ଓଡିଆରେ ଗାଳି ଦେଲେ । ରକ୍ଷାହେଲା ଓଡିଶା ବାହାରୁ ଆସିଥିବା ଅତିଥିମାନେ ବିଜୁବାବୁ ରାଗିଥିବା କଥା ଜାଣିଲେ ମଧ୍ୟ ଓଡିଆ ଗାଳିକୁ ବୁଝି ପାରିଲେ ନାହିଁ । ଯେତେବେଳେ ଜାତୀୟ ସଂଗୀତ ଗାନ କରାଗଲା ସମସ୍ତେ ଠିଆ ହୋଇଥିଲେ । କିନ୍ତୁ ବିଜୁବାବୁ ରାଗ ସମ୍ଭାଳି ନ ପାରି ଦର୍ଶକମାନଙ୍କୁ ଗାଳି ଦେଲେ, କହିଲେ "ଜାତୀୟ ସଂଗୀତ ଗାନବେଳେ ତୁମେମାନେ ଡେରିରେ ଠିଆ ହେଲ, କିନ୍ତୁ ପ୍ରକୃତରେ ସେମାନେ ଠିକ୍ ସମୟରେ ଠିଆ ହୋଇଥିଲେ । ସମସ୍ତେ ଜାଣିଲେ ଉତ୍ସବର ବିଫଳତାରେ କ୍ଷୁବ୍ଧ ହୋଇ ବିଜୁବାବୁ ଏପରି ପ୍ରତିକ୍ରିୟା ଦେଖାଇଲେ ।

ଉତ୍ସବର ଏ ପ୍ରକାର Anti-Climax ଦେଖି ୟୁନିସେଫ୍ ମୁଖ୍ୟ ଡକ୍ଟର ରଥ ଦୁଃଖିତ ହେଲେ । କାରଣ ଗୁଡାଏ ଟଙ୍କା ପାଣିରେ ପଡିଲା ଓ ଯେଉଁ ସୁନାମ ନେବା ପାଇଁ ସେମାନେ ବ୍ୟାପକ ଆୟୋଜନ କରିଥିଲେ ତାହା ଫସରଫାଟିଗଲା । ଏତେ ବଡ ବିରାଟ ଆୟୋଜନର ବିଫଳତାରେ ସମସ୍ତେ ଅପଦସ୍ତ ହେଲେ ।

## ୧୦.୫ ଢେଙ୍କାନାଳ ଜିଲ୍ଲା ଶିକ୍ଷା ପ୍ରକଳ୍ପ

"ସମସ୍ତଙ୍କ ପାଇଁ ଶିକ୍ଷା" କାର୍ଯ୍ୟକ୍ରମ ମଧ୍ୟରେ ୟୁନିସେଫ୍ ନମୁନା ସ୍ୱରୂପ ଗୋଟିଏ ଜିଲ୍ଲାରେ ସାର୍ବଜନୀନ ଶିକ୍ଷା ପ୍ରବର୍ତ୍ତନ ପାଇଁ ପ୍ରସ୍ତାବ ଦେଲେ । ପ୍ରାରମ୍ଭିକ ଆଲୋଚନା ବେଳେ ମୁଁ ଢେଙ୍କାନାଳ ଜିଲ୍ଲାଟିକୁ ନମୁନା ଭାବରେ ନେବାକୁ ପରାମର୍ଶ ଦେଲି । କାରଣ ଢେଙ୍କାନାଳ ଜିଲ୍ଲା ୟୁନିସେଫ ମୁଖ୍ୟ ଦପ୍ତରଠାରୁ ନିକଟ ହୋଇଥିବାରୁ କାର୍ଯ୍ୟକ୍ରମ ପରିଚାଳନା କରିବାକୁ ସୁବିଧା ହେବ । ଦ୍ୱିତୀୟରେ ଢେଙ୍କାନାଳ ଜିଲ୍ଲାରେ ପ୍ରାଥମିକ ଶିକ୍ଷା ଅବସ୍ଥା ଭଲ । ପରୀକ୍ଷାମୂଳକ କାର୍ଯ୍ୟ କରିବାକୁ ଢେଙ୍କାନାଳ ଜିଲ୍ଲା ଶିକ୍ଷକମାନେ ସହଯୋଗ କରିବେ । ୟୁନିସେଫ୍ ମୁଖ୍ୟ ଓଡିଶାର ଶିକ୍ଷା ସଚିବ ଅଭୟାନନ୍ଦ ରଥଙ୍କୁ ଢେଙ୍କାନାଳ ଜିଲ୍ଲାରେ ପ୍ରାଥମିକ ଶିକ୍ଷା ଯୋଜନା ପ୍ରସ୍ତୁତ କରିବାକୁ ଜଣେ ଶିକ୍ଷାବିତ୍‌ଙ୍କୁ ମନୋନୀତ

କରିବାକୁ ଅନୁରୋଧ କଲେ । ଅଭୟବାବୁ ମୋ ନାମକୁ ମନୋନୀତ କଲେ । ମୋତେ ପଚାରିବାରୁ ମୁଁ ରାଜି ହୋଇଗଲି । କାରଣ ଢେଙ୍କାନାଳରେ ମୁଁ ଇନିସ୍ପେକ୍ଟର ଥିଲି । ସେଠାରେ ମୁଁ ଶିକ୍ଷା ସର୍ଭେ କରିଛି । ସେଠାରେ କାମ କରିବା ମୋ ପକ୍ଷରେ ସହଜ ।

ଓଡିଶାରେ ତଥା ଭାରତରେ ଯେଉଁ ଯୋଜନା ପ୍ରସ୍ତୁତ ହେଉଛି ତାହା Macro -Planning ବା Top Down Planning । ଏ ଯୋଜନା ଜାତୀୟ ସ୍ତରରେ ପ୍ରସ୍ତୁତ ହୋଇ ବିଭିନ୍ନ ରାଜ୍ୟକୁ, ରାଜ୍ୟରୁ ଜିଲ୍ଲାକୁ ଓ ଜିଲ୍ଲାରୁ ବ୍ଲକ୍‌କୁ ଦିଆ ଯାଉଛି । ବ୍ଲକ୍ ସ୍ତରରେ ଯୋଜନା କାର୍ଯ୍ୟକାରୀ ହେଉଛି । ଏ ଯୋଜନାରେ ଲୋକଙ୍କ ସମସ୍ୟା ଓ ଆବଶ୍ୟକତାକୁ ବିଚାରକୁ ନେବା ପାଇଁ ସୁବିଧା ନାହିଁ । ଯଦିଓ ସରକାର କହୁଛନ୍ତି ଯେ ସ୍ଥାନୀୟ ଆବଶ୍ୟକତାକୁ ସେମାନେ ବିଚାରକୁ ନେଉଛନ୍ତି । ତାଛଡା ଯେଉଁ ଭାବରେ ସରକାରୀ ଅଫିସରମାନେ ସ୍ଥାନୀୟ ସମସ୍ୟା ଓ ଆବଶ୍ୟକତା ନିରୂପଣ କରନ୍ତି ତାହା ତାଙ୍କର ନିଜର କଳ୍ପିତ । ବାସ୍ତବ ସ୍ଥିତି ସହିତ ତା'ର ସଂପର୍କ ନ ଥାଏ । ଲୋକଙ୍କୁ ନ ପଚାରି ନିଜେ ଯାହାକୁ ସମସ୍ୟା ବୋଲି ଭାବନ୍ତି ହାକିମମାନେ ତାକୁଇ ରିପୋର୍ଟ କରି ଦିଅନ୍ତି ।

ଲୋକଙ୍କଠାରୁ ସେମାନଙ୍କର ସମସ୍ୟା ଓ ଆବଶ୍ୟକତା ଜାଣିବାପାଇଁ ଯେଉଁ ପଦ୍ଧତି ଅନୁସରଣ କରାଯାଉଛି ତାକୁ ସହଭାଗୀ ଗ୍ରାମ୍ୟ ଆକଳନ ବା Participatory Rural Appraisal କୁହାଯାଏ । ଏହି ପଦ୍ଧତିରେ ଲୋକଙ୍କ ସମସ୍ୟା ଓ ଆବଶ୍ୟକତା ନିରୂପଣ କଲେ ତାହାକୁ ଯୋଜନାରେ ପ୍ରତିଫଳିତ କରିବା ସମ୍ଭବ ନୁହେଁ, ଦୁଇଟି କାରଣରୁ (୧) ଆକଳନ ବେଳେ ଅସଂଖ୍ୟ ସମସ୍ୟା ଉପସ୍ଥାପିତ ହେବ ଓ ସବୁ ସମସ୍ୟାର ସମାଧାନ କରିବା ସମ୍ଭବ ନୁହେଁ । (୨) ଏତେ ସମସ୍ୟାର ସମାଧାନ ପାଇଁ ସମ୍ବଳର ଅଭାବ ହେବ । ତଥାପି ଏହି ପଦ୍ଧତି ପ୍ରୟୋଗ କରାଯିବା ଶ୍ରେୟସ୍କର । କାରଣ ଅନେକ ସମସ୍ୟା ଲୋକମାନେ ନିଜେ ସମାଧାନ କରିପାରିବେ ଓ କରିବେ ମଧ୍ୟ । ଏଥିପାଇଁ କେବଳ ମାର୍ଗ ଦର୍ଶନ ଆବଶ୍ୟକ । ତା ବ୍ୟତୀତ ଅନେକ ଗୁଡିଏ ସ୍ଥାନରେ ଆକଳନ କଲେ କେବଳ ସାଧାରଣ ସମସ୍ୟା ଓ ଆବଶ୍ୟକତାଗୁଡିକୁ ଯୋଜନାରେ ଅନ୍ତର୍ଭୁକ୍ତ କରାଯିବ । ସବୁ ସମସ୍ୟା ଯୋଜନାରେ ପ୍ରତିଫଳିତ କରିବାର ଆବଶ୍ୟକତା ନାହିଁ ।

ୟୁନିସେଫ୍ ଚାହିଁଲେ ଢେଙ୍କାନାଳର ପାଞ୍ଚଗୋଟି ବ୍ଲକ୍‌ରେ ସହଭାଗୀ ଗ୍ରାମ୍ୟ ଆକଳନ (PRA) କରି ତହିଁରୁ ଉପଲବ୍ଧ ସାଧାରଣ ତଥ୍ୟଗୁଡିକ ଯୋଜନା ଅନ୍ତର୍ଗତ କରାଯାଉ ଓ ଶିକ୍ଷା ପାଇଁ ଯୋଜନା ପ୍ରସ୍ତୁତ କରାଯାଉ । ଏଥିପାଇଁ ସହଭାଗୀ ଗ୍ରାମ୍ୟ ଆକଳନ ବା Participatory Rural Appraisal ପଦ୍ଧତିରେ କର୍ମୀମାନେ ତାଲିମ୍ ନେବା ଦରକାର । ତାଲିମ୍ ପାଇଁ ୟୁନିସେଫ ବ୍ୟବସ୍ଥା ମଧ୍ୟ କଲେ । କର୍ଣ୍ଣାଟକ ଓ ତାମିଲନାଡୁର ପ୍ରସିଦ୍ଧ PRA ତାଲିମ୍ ଦାତା ମାଇରାଡା ଦଳକୁ ଡକାଇ PRA ତାଲିମ୍ ବ୍ୟବସ୍ଥା କରାଗଲା । ପୁରୀ ନିକଟସ୍ଥ ତୋଷାଳୀ ସ୍ୟାଣ୍ଡସ୍ ହୋଟେଲରେ ୨୫/୧୦/୧୯୯୨ ତାରିଖରେ ତାଲିମ୍ ବ୍ୟବସ୍ଥା ଆରମ୍ଭ ହେଲା । ଏହି ତାଲିମ୍‌ରେ କେତେକ ସ୍ୱେଚ୍ଛାସେବୀ ଅନୁଷ୍ଠାନର ପ୍ରତିନିଧି, କେତେକ ବ୍ଲକ୍‌ର ଗ୍ରାମ ସେବିକା , କେତେକ ଅବସରପ୍ରାପ୍ତ ଶିକ୍ଷା ବିଭାଗ କର୍ମଚାରୀ ଯୋଗ ଦେଲେ । ମାଇରାଡା ଦଳର ନେତା ଥିଲେ ବର୍ଣ୍ଣାର୍ଡ । ସେ ଜଣେ ବିଚକ୍ଷଣ ତାଲିମ୍ ଦାତା । ତାଲିମ୍‌ରେ ସେ ଗ୍ରାମ ମାନଚିତ୍ର, ଗ୍ରାମ ସମ୍ବଳ ଚିତ୍ର, ଋତୁ ଚିତ୍ର, ଫସଲ ଆମଦାନି, ଚପାଟି ଚିତ୍ର ସହିତ ଗ୍ରାମବାସୀଙ୍କ ସହିତ ମିଶିବା, ଆଲୋଚନା କରିବା ଓ ତାଙ୍କଠାରୁ ତଥ୍ୟ ସଂଗ୍ରହ କରିବା ଆଦି କୌଶଳ ଶିକ୍ଷା ଦେଲେ । ଏହି ତାଲିମ୍‌କୁ ମୋତେ Observer ଭାବରେ ଯୋଗ ଦେବାକୁ ଅନୁରୋଧ କରା ଯାଇଥିଲା । ତାଲିମ୍‌ର ଚତୁର୍ଥଦିନ କୋଣାର୍କ ନିକଟସ୍ଥ ଗୋଟିଏ ଗ୍ରାମରେ ସବୁ ଶିକ୍ଷାର ପ୍ରୟୋଗ ପାଇଁ ତାଲିମ ଶିକ୍ଷାର୍ଥୀ ମାନଙ୍କୁ ନିଆ ଯାଇଥିଲା । ତାଲିମ୍‌ରେ ପ୍ରଦତ୍ତ ସମସ୍ତ କୌଶଳକୁ କିପରି ଶିକ୍ଷା କ୍ଷେତ୍ରରେ ପ୍ରୟୋଗ କରାଯିବ ସେ ବିଷୟରେ ମୁଁ ଆଲୋକପାତ କରୁଥିଲି । କାରଣ ବର୍ଣ୍ଣାଡଙ୍କର ସମସ୍ତ ଉଦାହରଣ କୃଷି ସଂପର୍କିତ । ଶିକ୍ଷା କ୍ଷେତ୍ରରେ ସେ କୌଶଳ କିପରି ପ୍ରୟୋଗ କରାଯିବ ମୁଁ ସେହି ମାର୍ଗକୁ ସୁଗମ କରୁଥିଲି । ପାଞ୍ଚ ଦିନରେ ତାଲିମ୍ ଶେଷ ହେଲା । ଶିକ୍ଷାକର୍ମୀମାନେ ନିଜ ନିଜ ସ୍ଥାନକୁ ଫେରିଗଲେ ।

## ସହଭାଗୀ ଗ୍ରାମ୍ୟ ଆକଳନର ପରୀକ୍ଷାମୂଳକ ପ୍ରୟୋଗ

## (Try Out)

ତାଲିମ୍ ସମୟରେ Practical କରି ସହଭାଗୀ ଗ୍ରାମ୍ୟ ଆକଳନ କୌଶଳ ପ୍ରୟୋଗ କରିବା ଓ ବାସ୍ତବ କ୍ଷେତ୍ରରେ ପ୍ରୟୋଗ କରିବାରେ ପାର୍ଥକ୍ୟ ଅଛି । ତାଲିମ୍ ସମୟରେ ତାଲିମ୍ ଦାତାମାନେ ଉପସ୍ଥିତ ଥାଇ ମାର୍ଗଦର୍ଶନ କରାନ୍ତି ।

ତେଣୁ ମୁଁ ଚାହିଁଲି ସ୍ୱାଧୀନ ଭାବରେ ଗୋଟିଏ ଗ୍ରାମରେ ତାଲିମ୍ ଶିକ୍ଷାର୍ଥୀମାନେ ତାଙ୍କ କୌଶଳ ପ୍ରୟୋଗ କରନ୍ତୁ । ବଇଣ୍ଡା ନିକଟରେ ଝାଡବଇଣ୍ଡା ଗ୍ରାମକୁ ସମସ୍ତଙ୍କୁ ନେଇଗଲି । ସେଠାରେ ଶିକ୍ଷାର୍ଥୀମାନେ ସ୍ୱାଧୀନ ଭାବରେ ସେମାନଙ୍କର କାର୍ଯ୍ୟକ୍ରମ ପ୍ରଦର୍ଶନ କଲେ । ୧୫/୦୧/୧୯୯୩ ତାରିଖରେ Try out କାର୍ଯ୍ୟ କରାଗଲା ।

ଆମ ଶିକ୍ଷାର୍ଥୀମାନେ ସେ ଗାଁରେ ପହୁଞ୍ଚିଲା ବେଳକୁ ଗାଁ ଲୋକେ ହଳ କରିବାକୁ ବିଲକୁ ଯାଇଥିଲେ । କିଛି ଯୁବକ ଓ ପିଲାଙ୍କୁ ନେଇ ଏମାନେ ଗାଁ ଦାଣ୍ଡରେ ଗ୍ରାମ ମାନଚିତ୍ର ପ୍ରସ୍ତୁତ କଲେ । ଗାଁରେ ବୁଲାବୁଲି କରି ଗାଁ ଚାରିପଟରେ ଥିବା କୃଷିକ୍ଷେତ୍ର, ଆମ୍ବ ତୋଟା, ଲୋକମାନଙ୍କ ଘରର ସ୍ଥିତି, ଗାଁ ପୋଖରୀ, କୂଅ, ଟିଉବୱେଲ୍ ଇତ୍ୟାଦି ଦେଖିଲେ । ପିଲାମାନଙ୍କ ସହ ଆଲୋଚନା କରି ଗାଁର ଅର୍ଥନୈତିକ ଅବସ୍ଥା, ଲୋକଙ୍କ ମଧ୍ୟରେ ସମ୍ପର୍କ ଇତ୍ୟାଦି ଆକଳନ କଲେ । ଲୋକମାନଙ୍କର ମୁଖ୍ୟ ପେଷା କ'ଣ ଓ ଜୀବନ ଧାରଣର ଅନ୍ୟ କ'ଣ ସାଧନ ଅଛି ଏ ବିଷୟରେ ତଥ୍ୟ ସଂଗ୍ରହ କଲେ ।

ଅପରାହ୍ଣ ୩ ଘଣ୍ଟା ବେଳକୁ ଲୋକେ ବିଲରୁ ଫେରିଲେ । ପ୍ରାୟ ଘଣ୍ଟାକ ପରେ ସେମାନେ ଆସିଲେ ଆଲୋଚନା ପାଇଁ । ଗାଁର ଅଜସ୍ର ଅଭାବ ଅସୁବିଧା କଥା କହିଲେ । ମୁଖ୍ୟତଃ ସରକାର ତାଙ୍କ ପ୍ରତି ଆଦୌ ଦୃଷ୍ଟି ଦେଉ ନ ଥିବା କଥା କହିଲେ । ସରକାରଙ୍କ ଉପରେ ସେମାନେ ନିଜର ଅସନ୍ତୋଷ ପ୍ରକାଶ କରିବାର କାରଣ ସେମାନେ ଭାବିଲେ ଆମେ ସବୁ ସରକାରୀ ଲୋକ । ଆମେ ତାଙ୍କ ଭ୍ରମ ଧାରଣା ଦୂର କଲାପରେ ସେମାନେ ଆମ ସହିତ ମିଶିଲେ ଓ ଅନ୍ତରଙ୍ଗ ଭାବରେ କଥାବାର୍ତ୍ତା ଆରମ୍ଭ କଲେ ।

ଲୋକମାନେ ଗାଁର ବିଭିନ୍ନ ସମସ୍ୟା କଥା ଉଠାଇଲେ । ସବୁ ସମସ୍ୟା କିପରି ସେମାନେ ନିଜେ ସମାଧାନ କରିପାରିବେ ସେ ବିଷୟରେ ଆମେ ଆଲୋଚନା କଲୁ । ଶେଷରେ ସେମାନେ ଦୁଇଟି ମୁଖ୍ୟ ସମସ୍ୟା କଥା କହିଲେ। ଗୋଟିଏ ହେଲା ଜଳସେଚନ ଓ ଦ୍ୱିତୀୟଟି ଶିକ୍ଷା । ଜଳସେଚନ ବିଷୟରେ ଆଲୋଚନା କରି ଜାଣିଲୁ ଯେ ଗାଁରେ ଗୋଟିଏ ବନ୍ଧ ଅଛି । ସେଇ ଗାଁ ଲୋକମାନେ ବନ୍ଧଟି ତିଆରି କରିଛନ୍ତି । ତାର ଉଚ୍ଚତା ଆଉ ଦେଢ ଫୁଟ୍ ବଢିବା ଦରକାର । ମୁଁ କହିଲି, "ଯେଉଁ ଦୁଇଟି ମୁଖ୍ୟ ସମସ୍ୟା ରହିଛି ସେଥିରୁ ଯଦି ଗୋଟିଏ ଆମେ ସମାଧାନ କରିବାକୁ କହିବୁ ଓ ଆଉ ଗୋଟିଏ ଆପଣ ନିଜେ ସମାଧାନ କରିବେ, ଆପଣ କେଉଁଟି ନିଜେ କରିବେ ଓ କେଉଁଟି ଆମକୁ ଦେବେ ?" ସେମାନେ କହିଲେ "ବନ୍ଧ ଆମେ ନିଜେ ତିଆରି କରିବୁ । ଆଉ

ଦେଢ଼ ଫୁଟ୍ ଉଚ୍ଚ ଆମେ କରିଦେବୁ । ଆପଣ ସ୍କୁଲ ଖୋଲିବା ଦାୟିତ୍ୱ ନିଅନ୍ତୁ । ଏହି Try out ଦ୍ୱାରା ଆମ ସମସ୍ତଙ୍କର ନୂଆ ଅନୁଭୂତି ଓ ଅଭିଜ୍ଞତା ହେଲା । ତା ସହିତ ଆମ କର୍ମୀମାନଙ୍କର ଆତ୍ମବିଶ୍ୱାସ ବଢ଼ିଗଲା । ସେମାନେ ଯେ କୌଣସି ଗ୍ରାମର ସମସ୍ୟାର ସମ୍ମୁଖୀନ ହେବାକୁ ପ୍ରସ୍ତୁତ ହୋଇଗଲେ ।

## ୧୦.୬ ସହଭାଗୀ ଗ୍ରାମ୍ୟ ଆକଳନ ପାଇଁ ପ୍ରସ୍ତୁତି

ଆମର ଝାଡବଇଣ୍ଡା Try Out ଓ ତହିଁର ସଫଳତା ବିଷୟରେ ୟୁନିସେଫ ମୁଖ୍ୟ ଡକ୍ଟର ରଥଙ୍କୁ ଜଣାଇ ଦେଲି । ତୋଷାଳୀ ସ୍ୟାଣ୍ଡସ୍ ହୋଟେଲ୍‌ରେ ଆୟୋଜିତ ସହଭାଗୀ ଗ୍ରାମ୍ୟ ଆକଳନ ତାଲିମ୍‌ରେ ଯେଉଁମାନେ ଯୋଗ ଦେଇଥିଲେ ସେମାନଙ୍କୁ ସାଥିରେ ନେଇ ଢେଙ୍କାନାଳ ଜିଲ୍ଲାର ପାଞ୍ଚଗୋଟି ବ୍ଲକ୍‌ରେ କେତେକ ଗ୍ରାମକୁ ଯାଇ ଲୋକଙ୍କ ସହିତ ଆଲୋଚନା କରି ସେମାନଙ୍କର ସମସ୍ୟା ଚିହ୍ନଟ କରିବା ପାଇଁ ୟୁନିସେଫ ମୋତେ ଦାୟିତ୍ୱ ଦେଲେ । ମୁଁ ଗଭୀର ଆତ୍ମବିଶ୍ୱାସର ସହିତ ସେ କାର୍ଯ୍ୟ ସଂପନ୍ନ କରିବାକୁ ପ୍ରସ୍ତୁତ ହେଲି । ତଥାପି ୟୁନିସେଫ ମୁଖ୍ୟ ଚାହିଁଲେ ୟୁନିସେଫ ତରଫରୁ କେହି ମୋ ସହିତ ସାହାଯ୍ୟ କରିବାକୁ ଯାଆନ୍ତୁ । ସେତେବେଳକୁ ଅଞ୍ଜନା ମଙ୍ଗଳାଗିରି ୟୁନିସେଫର ଶିକ୍ଷା Programme ଅଫିସର ଭାବରେ ଯୋଗ ଦେଇ ନ ଥିଲେ । ରୁଚିତା ତାଲୁକ୍‌ଦାର ଆମ ସହିତ ମିଶି ସବୁ ଆୟୋଜନ କରୁଥିଲେ । କିନ୍ତୁ ତାଙ୍କର ଅନ୍ୟ ଦାୟିତ୍ୱ ଥିବାରୁ ସେ ଆମ ସହିତ ମିଶି ସବୁ ଗ୍ରାମମାନଙ୍କରେ କାମ କରିବା ସମ୍ଭବ ନ ହେବାରୁ CYSD ର ଦୁଇଜଣ ପ୍ରବୋଧ ମହାନ୍ତି ଓ ସୁନନ୍ଦା କାନୁନ୍‌ଗୋ ଙ୍କୁ ନିୟୋଜିତ କରାଗଲା । ୟୁନିସେଫ ମୁଖ୍ୟଙ୍କର ଧାରଣା ଯେ ଜୀବନଯାକ ସରକାରୀ ଚାକିରି କରି ଯେଉଁମାନେ ଆଦେଶ ଦେବାରେ ଅଭ୍ୟସ୍ତ ସେମାନେ ସଫଳ ଭାବରେ ଲୋକଙ୍କ ସହିତ ମିଶି ଏହି ସହଭାଗୀ ଗ୍ରାମ୍ୟ ଆକଳନ କରିବା ସମ୍ଭବ ନୁହେଁ । ତେଣୁ କିଛି ସ୍ୱେଚ୍ଛାସେବୀ ଅନୁଷ୍ଠାନର ଲୋକ ଏମାନଙ୍କ ସହିତ ଯାଆନ୍ତୁ । ସେଥିରେ ମୋର କିଛି ଆପତ୍ତି ନ ଥିଲା । ଅଧିକ ଲୋକ ହେଲେ କାମ ଶୀଘ୍ର ହୋଇଯିବ ।

କ୍ଷେତ୍ରରେ କାମ କରିବାକୁ ଯିବା ପୂର୍ବରୁ CYSD ଲୋକ ୟୁନିସେଫକୁ ପ୍ରସ୍ତାବ ଦେଲେ ଯେ ଢେଙ୍କାନାଳର କୌଣସି ସ୍ଥାନରେ ସହଭାଗୀ ଗ୍ରାମ୍ୟ ଆକଳନ ବିଷୟରେ ତାଲିମ୍‌ର ପୁନରାବୃତ୍ତି କରିବେ । ଅଧିକ ତାଲିମ୍‌ର ଆବଶ୍ୟକତା ନ ଥିଲେ ମଧ୍ୟ ୟୁନିସେଫ ଅର୍ଥ ଯୋଗାଇବାକୁ ରାଜି ହେବାରୁ ତାଲିମ୍ ବ୍ୟବସ୍ଥା କରାଗଲା ।

ଢେଙ୍କାନାଳ ସହରର କୁଞ୍ଜକାନ୍ତ ଉନ୍ନୀତ ମଧ୍ୟ ଇଂରାଜି ବିଦ୍ୟାଳୟରେ ୧୦/୦୧/୧୯୯୩ ତାରିଖରେ ଏ ତାଲିମ୍ ଆରମ୍ଭ ହେଲା । ଟ୍ରେନିଂର ତୃତୀୟ ଦିନ ଦୁଇ ଦଳରେ ବିଭକ୍ତ ହୋଇ ସଂସେଇଲୋ ଓ ନଛିପୁର ଗାଁକୁ Practical ପାଇଁ ତାଲିମ୍ ଶିକ୍ଷାର୍ଥୀମାନେ ଗଲେ । ସେଠାରେ ଶିଖିଥିବା କୌଶଳ କିପରି ପ୍ରୟୋଗ କରିବେ ତାହା ଦେଖାଇଲେ । ଚାରିଦିନରେ ଟ୍ରେନିଂ ଶେଷ ହେଲାପରେ ସହଭାଗୀ ଗ୍ରାମ୍ୟ ଆକଳନ ପାଇଁ ସମସ୍ତେ ପ୍ରସ୍ତୁତ ହୋଇଗଲେ ।

## ୧୦.୭ ସହଭାଗୀ ଗ୍ରାମ୍ୟ ଆକଳନ

## ଓଡାଶିଙ୍ଗା ଶିବିର - ଦଣ୍ଡନାଚର ସମ୍ଭାର

ପ୍ରଥମ ସହଭାଗୀ ଗ୍ରାମ୍ୟ ଆକଳନ (PRA) ଆଠମଲ୍ଲିକ୍ ବ୍ଲକର ଓଡାସିଙ୍ଗା ଓ ଦେଉଳବେଡାରେ ୨୦/୦୨/୧୯୯୩ ତାରିଖରେ ଆରମ୍ଭ ହେଲା । ଆକଳନକାରୀମାନେ ଓଡାସିଙ୍ଗା ସ୍କୁଲରେ ରହିଲେ । ଆଠମଲ୍ଲିକ୍ ବ୍ଲକ୍ କଲୋନିର ଗୋଟିଏ କ୍ୱାଟର ଖାଲି କରାଇ ସେଠାରେ ଝିଅ ମାନଙ୍କୁ ରଖିଲୁ । ବ୍ଲକ୍‌ର ମୁଖ୍ୟ ଦପ୍ତରଠାରୁ ଓଡାସିଙ୍ଗା ଓ ଦେଉଳବେଡା ଗାଁ ଦୁଇଟି ମାତ୍ର ୩ /୪ କିଲୋମିଟର ଦୂର । ଦେଉଳବେଡାରେ ଅନେକ ଗୁଡିଏ ଉଷ୍ଣପ୍ରସବଣ ଅଛି । ସେଥି ମଧ୍ୟରୁ କେବଳ ଗୋଟିଏ ନିକଟସ୍ଥ ମନ୍ଦିର ହତା ମଧ୍ୟରେ ଅବସ୍ଥିତ ଓ ଏହାର ଚାରିପାଖ ପକ୍କା କାନ୍ଥ ଓ ପକ୍କା ପାଉଛ କରା ଯାଇଛି । ଆମ ଆକଳନକାରୀମାନେ ପ୍ରତିଦିନ ଦେଉଳବେଡା ଉଷ୍ଣପ୍ରସବଣରେ ସ୍ନାନ କରି ମନ୍ଦିରରେ ଦେବଦର୍ଶନ କରି କାମକୁ ବାହାରନ୍ତି ।

ଦୁଇଟିଯାକ ଗ୍ରାମରେ ତଫସିଲ୍‌ଭୁକ୍ତ ଜାତି ଓ ଉପଜାତି ଲୋକଙ୍କ ସହିତ ସାଧାରଣ ବର୍ଗର ଲୋକମାନେ ରହନ୍ତି । ଓଡାସିଙ୍ଗା ପ୍ରାଥମିକ ସ୍କୁଲରେ ଓଡାସିଙ୍ଗା, ଦେଉଳବେଡା ଓ ଚିଲଖଣ୍ଡି ତିନିଗୋଟି ଗ୍ରାମର ପିଲାମାନେ ପଢନ୍ତି । ତିନିଜଣ ଶିକ୍ଷକ ମଧ୍ୟରୁ ଜଣେ ଟ୍ରେନିଂ ଯାଇଥିବାରୁ ସେ ସ୍ଥାନଟି ଖାଲି ଅଛି । ସ୍କୁଲଘରର ଅବସ୍ଥା ସେତେ ଭଲ ନୁହେଁ । ଛାତ ଟିଣ, କାନ୍ଥ କାଦୁଅରେ ଯୋଡା ହୋଇଥିବା ଇଟା, ଚଟାଣ ସିମେଣ୍ଟ ଓ କବାଟ ଝରକା ସାଧାରଣ କାଠରେ ତିଆରି । ୧୯୩୪ ମସିହାରେ ସ୍କୁଲଟି ଆରମ୍ଭ ହୋଇଥିଲା । ତତ୍କାଳୀନ ଆଠମଲ୍ଲିକ ରାଜା ସାହେବ ସ୍କୁଲଟି ସ୍ଥାପନ କରିଥିଲେ । ଏବେ ଗ୍ରାମ ଶିକ୍ଷା କମିଟି ଦ୍ୱାରା ପରିଚାଳିତ । ନାନା ଘାତ ପ୍ରତିଘାତ ମଧ୍ୟରେ ସ୍କୁଲଟି ଚାଲିଛି । ସ୍କୁଲର ଶିକ୍ଷକ ଦୁଇଜଣ ବେଶ୍ ସହଯୋଗୀ ଓ କର୍ମଠ ।

ଉଭୟ ଗ୍ରାମର ଲୋକମାନେ ମେଳାପୀ ଓ ସହଯୋଗୀ । ସ୍କୁଲପାଇଁ କାମ କରିବାକୁ ସେମାନେ ତତ୍ପର, ଦେଉଳବେଡା ଓ ଚିଲଖଣ୍ଡିରେ ଗୋଟିଏ Non formal ଶିକ୍ଷାକେନ୍ଦ୍ର ଅଛି । ସେମାନେ ପ୍ରାଇମେରୀ ସ୍କୁଲ ଖୋଲିବାକୁ ଇଚ୍ଛା କରନ୍ତି । ଲୋକସଂଖ୍ୟା ଦୃଷ୍ଟିରୁ ଦେଉଳବେଡାଠାରେ ଏକ ପ୍ରାଥମିକ ସ୍କୁଲ ଖୋଲାଯିବାର କଥା । ଓଡାସିଙ୍ଗା ପ୍ରାଥମିକ ସ୍କୁଲ ଦେଉଳବେଡାଠାରୁ ଦେଢ କିଲୋମିଟର ଦୂର ଓ ଏହାର ଲୋକସଂଖ୍ୟା ୪୨୧ ।

ମାଇନର ସ୍କୁଲ ଓ ହାଇସ୍କୁଲ ଶିକ୍ଷା ପାଇବାକୁ ଉଭୟ ଗ୍ରାମର ପିଲାମାନଙ୍କୁ ଦୁଇ କିଲୋମିଟରରୁ ଅଧିକ ଦୂରତାରେ ଥିବା ପୂର୍ଣ୍ଣମାଣିତ୍ରୀ ଗ୍ରାମକୁ ଯିବାକୁ ପଡେ । ଓଡାସିଙ୍ଗା ଗ୍ରାମର ସାକ୍ଷରତା ହାର ଶତକଡା ୩୯, ପୁରୁଷ ୫୯% ଓ ମହିଳା ୧୮% । ଦେଉଳବେଡା ଶତକଡା ୩୩ ପୁରୁଷ ୪୮% ଓ ମହିଳା ୧୮% ।

ଲୋକେ ଆମମାନଙ୍କ ସମ୍ମାନାର୍ଥେ ଓଡାସିଙ୍ଗା ଗାଁରେ ଦଣ୍ଡନାଚର ଆୟୋଜନ କରିଥିଲେ । ଦଣ୍ଡନାଚ ଏକ କଠିନ କିନ୍ତୁ ଉପଭୋଗ୍ୟ ନାଚ । ଆମେ ଏହି ନାଚକୁ ଉପଭୋଗ କଲୁ । ଲୋକମାନେ ଆମମାନଙ୍କ ପାଇଁ ଏକ ଭୋଜିର ଆୟୋଜନ କରିଥିଲେ । ଲୋକମାନଙ୍କର ସହଯୋଗୀ ମନୋଭାବ ତଥା ଆତିଥେୟତା ପାଇଁ ଆମେ କୃତଜ୍ଞ । ଆମର ତିନିଦିନ କାର୍ଯ୍ୟ ମଧ୍ୟରେ ସେମାନେ ଆମମାନଙ୍କ ସହିତ ଅତ୍ୟନ୍ତ ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର ଦେଖାଇଲେ । ଲୋକମାନଙ୍କ ଅର୍ଥନୈତିକ ଅବସ୍ଥା ସେତେ ସ୍ୱଚ୍ଛଳ ନୁହେଁ । ତଥାପି ତାଙ୍କର ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାରରେ ଆମେ ମୁଗ୍ଧ ହେଲୁ । ତା ସହିତ PRA ର ମୁଖ୍ୟ ଭାବଧାରା ଓ ନୀତି ପ୍ରୟୋଗରେ ଆମେ ସଫଳ ହୋଇଥିବା କଥା ଆମେ ସମସ୍ତେ ଅନୁଭବ କଲୁ । ଦୀର୍ଘଦିନ ଧରି ସରକାରୀ ଚାକିରି କରିଥିବା ଲୋକେ ସାଧାରଣ ଲୋକଙ୍କ ସହିତ ମିଶି ପାରିବେ ନାହିଁ ଓ ତେଣୁ PRA କରିବାରେ ସେମାନେ ସଫଳ ହେବେ କି ନାହିଁ ବୋଲି ଯେଉଁ ଧାରଣା ୟୁନିସେଫ ମୁଖ୍ୟଙ୍କର ଥିଲା ତାହା ଯେ ଅମୂଳକ ତାହା ଓଡାସିଙ୍ଗାରେ ପ୍ରମାଣିତ ହୋଇଗଲା ।

## ତୁଳସୀପଶି ଶିବିର - ନିଃସହାୟ ଜୁଆଙ୍ଗ

କାମାକ୍ଷାନଗରଠାରୁ ୧୪ କିଲୋମିଟର ଦୂରରେ ଅବସ୍ଥିତ ତୁଳସୀପଶିରେ ଆମର ଦ୍ୱିତୀୟ ଶିବିର ଆୟୋଜିତ ହେଲା । ଯେଉଁମାନେ ଓଡାସିଙ୍ଗା ଓ ଦେଉଳବେଡା ଯାଇଥିଲେ ସେମାନେ ଯାଇ କାମାକ୍ଷାନଗରରେ ୨୯/୦୧/

୧୯୯୩ ତାରିଖରେ ପହଞ୍ଚିଲେ । ପ୍ରଥମଦିନ କାମାକ୍ଷାନଗର ନିକଟସ୍ଥ ଜିରଡାମାଳି ବଙ୍ଗଳାରେ ପୁରୁଷମାନେ ଓ ଗୋଟିଏ ସରକାରୀ କ୍ୱାଟର ଖାଲି କରାଇ ସେଠାରେ ଝିଅମାନେ ରହିଲେ । ତା'ପରଦିନ ସକାଳେ ତୁଳସୀପଶିରେ ପହଞ୍ଚି ରୋଷେଇବାସ ବ୍ୟବସ୍ଥା କଲାପରେ ସମସ୍ତେ ଗାଁ ଭିତରକୁ ଯାଇ ଗ୍ରାମ ମାନଚିତ୍ର, ସମ୍ବଳ ଚିତ୍ର, ଋତୁ ଚିତ୍ର ଆଦି ପ୍ରସ୍ତୁତ କଲେ । ଏହି ଅଞ୍ଚଳ ଏକ ଅବହେଳିତ ଅଞ୍ଚଳ । ଲୋକମାନେ ସରକାରଙ୍କୁ ପ୍ରଚୁର ପରିମାଣରେ ଗାଳିଗୁଲଜ କଲେ । ଆମେ ସରକାରୀ ଲୋକ ନ ହୋଇଥିଲେ ବି ଆମ ସହିତ ଅନ୍ତରଙ୍ଗ ଭାବେ ମିଶିଲେ ନାହିଁ ।

ତୁଳସୀପଶି ଓ ଚକାପାଳରେ ସ୍କୁଲ ଅଛି କିନ୍ତୁ ଆବଶ୍ୟକ ସଂଖ୍ୟକ ଶିକ୍ଷକ ନାହାନ୍ତି । ତୁଳସୀପଶି ପ୍ରାଥମିକ ସ୍କୁଲର ଜଣେ ଶିକ୍ଷକ ଟ୍ରେନିଂଯାଇଛନ୍ତି । ତାଙ୍କ ସ୍ଥାନରେ କେହି ଆସି ନାହାଁନ୍ତି । ପିଲାଙ୍କ ପଢାପଢିରେ କ୍ଷତି ହେଉଛି । ଚକାପାଳ ଅବସ୍ଥା ମଧ ସେହିପରି । ତୁଳସୀପଶି ଶିବିରରେ ସବୁଠୁ ଆଲୋଚ୍ୟ ବିଷୟ ହେଲା ଗୋଡିପୋଖରୀ ଜୁଆଙ୍ଗପଲ୍ଲୀ । ସେଠାରେ ଗୋଟିଏ Non-formal କେନ୍ଦ୍ର ଖୋଲିଛି । ଶିକ୍ଷକ ପ୍ରାୟ ଯାଆନ୍ତି ନାହିଁ । କେବେ କେମିତି ମାସକରେ କି ଦି ମାସରେ ଥରେ ଯାଆନ୍ତି । ଜୁଆଙ୍ଗ ମାନଙ୍କ ଭାଷା ଶିକ୍ଷକ ବୁଝନ୍ତି ନାହିଁ କି ଶିକ୍ଷକଙ୍କ ଭାଷା ଜୁଆଙ୍ଗ ପିଲାମାନେ ବୁଝନ୍ତି ନାହିଁ । ଜୁଆଙ୍ଗ ପିଲାମାନେ ଆଦୌ କିଛି ପାଠ ପଢି ନାହାନ୍ତି । ଆମେ ସନ୍ଧ୍ୟାବେଳକୁ ସେଠାକୁ ଗଲୁ । ଦିନରେ ଜୁଆଙ୍ଗମାନେ କାମ କରିବାକୁ ଯାଆନ୍ତି । ସେମାନେ ସନ୍ଧ୍ୟାରେ ଫେରିଲେ କଥାବାର୍ତ୍ତା ହୋଇ ପାରିବ ବୋଲି ଲୋକେ କହିବାରୁ ଆମେ ସନ୍ଧ୍ୟାକୁ ଗଲୁ । ଜୁଆଙ୍ଗ ଲୋକମାନେ କହିଲେ,"ଆମେ ଆଦିବାସୀ ହୋଇଥିବାରୁ ସରକାର ଆମକୁ କିଛି ସାହାଯ୍ୟ ଦିଅନ୍ତି ନାହିଁ କି ଆମ କଥା ବୁଝନ୍ତି ନାହିଁ । ଅଥଚ ସରକାରୀ ଚିତ୍ର ସଂପୂର୍ଣ୍ଣ ଓଲଟା । ଆଦିବାସୀମାନଙ୍କ ଉନ୍ନୟନ ପାଇଁ ସ୍ୱତନ୍ତ୍ର ବିଭାଗ ଅଛି । ଜିଲ୍ଲା ସ୍ତରରେ ବ୍ଲକ୍ ସ୍ତରରେ ଆଦିବାସୀମାନଙ୍କ କଥା ବୁଝିବା ପାଇଁ ସ୍ୱତନ୍ତ୍ର ଅଫିସର ଅଛନ୍ତି । ଏମାନେ ପୁଣି Primitive Tribe (ଆଦିମ ଆଦିବାସୀ) ଏମାନଙ୍କ ପାଇଁ ସ୍ୱତନ୍ତ୍ର ଅଣୁ-ଯୋଜନା କରାଯାଇଛି । କେଉଁଝର ଜିଲ୍ଲାରେ ଏମାନଙ୍କ ସଂଖ୍ୟା ଅଧିକ ହୋଇଥିବାରୁ ଓ ଗୋଟିଏ ଅଞ୍ଚଳରେ ବସବାସ କରୁଥିବାରୁ ସେମାନଙ୍କ ପାଇଁ ଜୁଆଙ୍ଗ ଉନ୍ନୟନ ସଂସ୍ଥା ରହିଛି । ଏମାନେ Dispersed Tribal (ବିକ୍ଷିପ୍ତ ଆଦିବାସୀ) ହୋଇଥିବାରୁ ଓ ଏମାନଙ୍କ ସଂଖ୍ୟା କମ୍

ଥିବାରୁ ଏମାନଙ୍କ ପ୍ରତି କାହାରି ଦୃଷ୍ଟି ପଡିନାହିଁ । ଏ ପ୍ରକାର ଅବହେଳା ଅକ୍ଷମଣୀୟ ।

ଆମେ ତୁଳସୀପଶିରେ ତିନିଦିନ ରହି ଫେରିବାବେଳେ ଜିଲ୍ଲା ଶିକ୍ଷାଧିକାରୀଙ୍କ ସହିତ ଗୋଡିପୋଖରୀ ଜୁଆଙ୍ଗପଲ୍ଲୀ ବିଷୟ ଆଲୋଚନା କଲୁ। ସେ କହିଲେ, "ଗୋଡିପୋଖରୀ ଜୁଆଙ୍ଗ ବସ୍ତି କଥା ସେ ଜାଣନ୍ତି ନାହିଁ" । ମୁଁ ତାଙ୍କୁ କହିଲି, "ଆପଣଙ୍କ ସବ୍‌ଇନିସ୍ପେକ୍ଟର କିପରି ଆପଣଙ୍କୁ ସେମାନଙ୍କ ସମସ୍ୟା ଜଣାଇ ନାହାନ୍ତି ? ଯଦି ସମସ୍ତଙ୍କ ଦୃଷ୍ଟି ଅନ୍ତରାଳରେ ଗୋଡିପୋଖରୀ ରହି ଯାଇଛି, ସେଠାରେ Non-formal ଶିକ୍ଷାକେନ୍ଦ୍ର ଖୋଲିଲା କିପରି ? ନିଶ୍ଚୟ ଅବହେଳିତ ହୋଇ ଏହି ଆଦିବାସୀମାନେ ପଡିଛନ୍ତି । ଜିଲ୍ଲା ଶିକ୍ଷାଧିକାରୀ ବିଶେଷ ଦୃଷ୍ଟି ଦେବେ ବୋଲି ଆମକୁ ପ୍ରତିଶ୍ରୁତି ଦେଲେ ।

## ନିମିନ୍ଧା ଶିବିର - ସୋମରସ ସେବନେ

ତୃତୀୟ ଶିବିର ଓଡାପଡା ବ୍ଲକ୍ ନିମିନ୍ଧାଠାରେ ଆୟୋଜିତ ହେଲା ।୧୩/୦୨/୧୯୯୩ ତାରିଖରେ ସମସ୍ତେ ବାଙ୍ଗୁରସିଂ ଡାକବଙ୍ଗଳାରେ ଏକତ୍ରୀତ ହେଲୁ । ସେଠାକୁ ଯିବାପରେ ଦେଖିଲି ଯେ ବଙ୍ଗଳା ଘରର ଅବସ୍ଥା ଭାରି ଖରାପ। ଚୌକିଦାରକୁ ପଚାରିଲି,"ଘରର ଅବସ୍ଥା ଏତେ ଖରାପ ହୋଇଗଲାଣି, ମରାମତି କାହିଁକି କରା ଯାଉନାହିଁ ?" ଚୌକିଦାର କହିଲା ବଙ୍ଗଳା ବହୁତ ପୁରୁଣା । ଆଲୋଚନା କରି ଜାଣିଲୁ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ଏହି ବଙ୍ଗଳାରେ ଏକ ସପ୍ତାହ ରହିଥିଲେ । ସେ ସ୍ଥାନର ପ୍ରାକୃତିକ ସୌନ୍ଦର୍ଯ୍ୟ ମନୋମୁଗ୍ଧକର । ଗୋଟିଏ ପଟେ ନୀଳ ସୁଉଚ୍ଚ ପର୍ବତ ଶ୍ରେଣୀ ଓ ସବୁଜ ବନାନୀ । ଅପର ପାର୍ଶ୍ୱରେ ବ୍ରାହ୍ମଣୀ ନଦୀ ପ୍ରବାହିତ । ବଙ୍ଗଳାର ପାଦ ଦେଶରେ ବାଙ୍ଗୁରସିଂ ନାଳ । ସେତେବେଳେ ଜଙ୍ଗଲ ଆହୁରି ଘଞ୍ଚ ଓ ସୁଦୃଶ୍ୟ ହୋଇଥିବ । ବିଶ୍ୱକବି ରବୀନ୍ଦ୍ରନାଥ ଯେଉଁ ବଙ୍ଗଳାରେ ରହୁଥିଲେ ସେଠାରେ ଆମେ ଗୋଟିଏ ଦିନ ରହି ନିଜକୁ ଧନ୍ୟ ମନେକଲୁ । ବଙ୍ଗଳା ଘରର ଅବସ୍ଥା ବିଷୟରେ ଆଉ ଧ୍ୟାନ ଗଲା ନାହିଁ ।

ପରଦିନ ଫେବୃୟାରୀ ୧୩ ତାରିଖରେ ନିମିନ୍ଧା ଗ୍ରାମରେ ପହଞ୍ଚିଲୁ । ସେଠାରେ ଗୋଟିଏ ଉନ୍ନୀତ ମଧ୍ୟ ଇଂରାଜି ସ୍କୁଲ ଅଛି । ପ୍ରଧାନ ଶିକ୍ଷକ ସେଇ ସ୍କୁଲରେ ରହୁଥିଲେ । ଆମେ ସେଠାରେ ରହିବାକୁ ସୁବିଧା ହେଲା । ପ୍ରଧାନ ଶିକ୍ଷକ ଆମ ରହିବା ଓ ରୋଷେଇବାସର ସବୁ ବ୍ୟବସ୍ଥା କରିଦେଲେ ।

ନିମିଧା ଏକ ବିରାଟ ବିଚିତ୍ର ଗ୍ରାମ । ଏଠାକାର ଲୋକମାନଙ୍କ ମଧ୍ୟରୁ ଶତକଡା ୭୫ ଭାଗ ଲୋକ ଖଜୁରୀ ତାଡି ନ ହେଲେ ମହୁଲି ମଦ ନିଶାରେ ଅଭ୍ୟସ୍ତ । ବିରାଟ ଗ୍ରାମ ହୋଇଥିବାରୁ ଏହାର ରାଜନୈତିକ ଗୁରୁତ୍ୱ ରହିଛି । ତେଣୁ ଏଠାରେ ପକ୍କା ସ୍କୁଲ ଘର, ଧାଈ କେନ୍ଦ୍ର, ସହଯୋଗ ସମିତି ସବୁ ରହିଛି । ଲୋକଙ୍କର ଶିକ୍ଷା ପ୍ରତି ଅନୁରକ୍ତି ନାହିଁ । ଆମେ ପ୍ରଥମ ଦିନ କାମ ଶେଷ କରି ରାତ୍ରି ଭୋଜନ ପରେ ଶୋଇବାକୁ ଗଲାବେଳେ ଜଣେ ମଦ୍ୟପ ଆସି ଝିଅମାନେ ଶୋଇଥିବା ଘର କବାଟରେ ଧକ୍କା ଦେଲା । ପ୍ରଧାନ ଶିକ୍ଷକଙ୍କ ସ୍ତ୍ରୀ ଓ ଆମ ଝିଅମାନେ ଏକାଠି ଶୋଇଥିଲେ । ସେମାନେ ପାଟି କରିବାରୁ ଆମେସବୁ ଉଠିଲୁ ଓ ସେ ଲୋକକୁ ଗାଳି ଫଜିତ୍ କରି ବିଦା କରିଦେଲୁ । ପରଦିନ ସକାଳେ ଝିଅମାନେ କହିଲେ ଶିବିର ବନ୍ଦ କରିଦେଇ ଚାଲିଯିବାକୁ । ମୁଁ କହିଲି, "ଆଜି ଦିନଟା ଦେଖିବା । ଯଦି କିଛି ଅପ୍ରୀତିକର ଘଟଣା ଘଟେ କାଲି ସକାଳେ ଚାଲିଯିବା । ଭାଗ୍ୟକୁ ସେଦିନ କିଛି ଘଟିଲା ନାହିଁ ।

ନିମିଧା ଉନ୍ନୀତ ମଧ୍ୟ ଇଂରାଜି ସ୍କୁଲର ଷଷ୍ଠ ଓ ସପ୍ତମ ଶ୍ରେଣୀରେ ଝିଅମାନଙ୍କ ସଂଖ୍ୟା ବହୁତ କମ୍ । ପଞ୍ଚମ ଶ୍ରେଣୀ ପରେ ଝିଅମାନେ ପାଠଛାଡି ଘରେ ବସୁଛନ୍ତି । ସେଠାକାର ସ୍ତ୍ରୀ ଲୋକମାନଙ୍କୁ ପଚାରିବାରୁ ସେମାନେ କହିଲେ, "ଏ ଗାଁର ଟୋକାମାନେ ମଦ ଖାଇ ଯେପରି ଉତ୍ପାତ କରୁଛନ୍ତି, କେଉଁଲୋକ ବଡ ଝିଅମାନଙ୍କୁ ସ୍କୁଲକୁ ଛାଡିବ ?" ଏହା ଏକ ସଂପୂର୍ଣ୍ଣ ସାମାଜିକ ସମସ୍ୟା । ଶିକ୍ଷା ସହିତ ଏହାର ସଂପର୍କ ନାହିଁ । ଗାଁ ଲୋକଙ୍କ ସହିତ ଆଲୋଚନାବେଳେ ସେମାନେ କହିଲେ, "ଏ ଗାଁରେ ମଦ ପ୍ରଭାବକୁ କମାଇବା କଷ୍ଟକର ବ୍ୟାପାର । ଏଥିପାଇଁ ବହୁତ ସମୟ ଲାଗିବ । ସାଙ୍ଗେ ସାଙ୍ଗେ କିଛି କରାଯାଇ ପାରିବ ନାହିଁ ।"

ନିମିଧା ଗାଁରେ ବହୁତ ଭଲ ବୟସ୍କ ଲୋକ ଅଛନ୍ତି । ସେମାନଙ୍କ ପ୍ରଭାବ କମ୍ । ସାଧାରଣ ଲୋକଙ୍କର ଶିକ୍ଷା ପ୍ରତି ଆଗ୍ରହ ନାହିଁ । ଗାଁର ବହୁତ ପିଲା ଶିଶୁ ଶ୍ରମିକ ଭାବରେ କାମ କରନ୍ତି । କିଏ କେଉଁ ହୋଟେଲରେ କିଏ କାହା ଘରେ କାମ କରୁଛନ୍ତି । ଗରିବ ଲୋକମାନଙ୍କର ପିଲାମାନେ ପ୍ରଥମ ଦ୍ୱିତୀୟ ଶ୍ରେଣୀ ପରେ ପାଠ ଛାଡି ଦେଉଛନ୍ତି । ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷା ବ୍ୟବସ୍ଥା ଏଠାରେ ଥିଲେ ମଧ୍ୟ ଓ ଗାଁରେ ୧୨ଗୋଟି ସାହିରେ ୨୫୦୦ ରୁ ଅଧିକ ଜନସଂଖ୍ୟା ଥିଲେ ମଧ୍ୟ ସ୍କୁଲର ଛାତ୍ରଛାତ୍ରୀ ସଂଖ୍ୟା ବହୁତ କମ୍ । ଲୋକମାନଙ୍କର ଶିକ୍ଷାପ୍ରତି ଅନାସ୍ଥା ଭାବ ଯୋଗୁଁ ଆମ ଆକଳନକାରୀମାନେ ସେଠାରେ କାମ କରିବାକୁ

ଆଗ୍ରହ ପ୍ରକାଶ କଲେ ନାହିଁ । କୌଣସି ମତେ ସେଠାରେ ତିନିଦିନ ରହି ଗ୍ରାମ ମାନଚିତ୍ର, ସମ୍ବଳ ଚିତ୍ର, ଋତୁ ଚିତ୍ର ଆଦି ପ୍ରସ୍ତୁତ କରି ଚାଲି ଆସିଲୁ । ଫେରିବା ବେଳକୁ ସମସ୍ତେ କିଛି କିଛି ତିକ୍ତ ଅନୁଭୂତି ନେଇ ଫେରିଲେ ।

## କପିଳାସ ଶିବିର - ମୁରଲୀଧରଙ୍କ ମୁରଲୀ ବାଦନ

ଆମର ଚତୁର୍ଥ ଶିବିର ପ୍ରସିଦ୍ଧ କପିଳାସପୀଠ ଠାରେ ୨୫/୦୨/୧୯୯୩ ତାରିଖରେ ଆୟୋଜିତ ହେଲା । ଦେଓଗାଁ ବଙ୍ଗଳାରେ ସମସ୍ତେ ରହିଲେ । ବଙ୍ଗଳା ଚୌକିଦାରକୁ ରୋଷେଇବାସ ଦାୟିତ୍ୱ ଦେଇ ଆମ କର୍ମୀମାନେ ଦୁଇ ଦଳରେ ବିଭକ୍ତ ହୋଇ ଦଳେ ଯାଆନ୍ଦପଣି ଓ ଆଉ ଦଳେ ଲତା ବାଇଁଶିଆ ଗାଁକୁ ଗଲେ। ଉଭୟ ଗାଁରେ ସ୍କୁଲ ଅଛି କିନ୍ତୁ କିଛି ପାଠପଢା ସନ୍ତୋଷଜନକ ନୁହେଁ ।

ଲତାବାଇଁଶିଆ ପ୍ରାଥମିକ ସ୍କୁଲରେ ଦୁଇଜଣ ଶିକ୍ଷକଙ୍କ ମଧ୍ୟରୁ ଜଣେ ଟ୍ରେନିଂ ଯାଇଥିବାରୁ ତାଙ୍କ ସ୍ଥାନ ଖାଲି ଅଛି । ଆଉ ଜଣେ ଶିକ୍ଷକ ନିୟମିତ ନୁହନ୍ତି । ଘରକୁ ପ୍ରତି ସପ୍ତାହରେ ଯାଆନ୍ତି । ଶନିବାର ଦିନ ଶିକ୍ଷକ ଯିବାପାଇଁ ପାଠପଢା ହୁଏ ନାହିଁ । ସୋମବାର ଦିନ ବିଳମ୍ବରେ ଆସନ୍ତି । ସପ୍ତାହକ ଛ ଦିନରୁ ଦୁଇଦିନ ସ୍କୁଲ ପ୍ରାୟ ବନ୍ଦ । ଲୋକମାନେ ଡି.ଆଇଙ୍କ ପାଖରେ ଆପତ୍ତି କରିଛନ୍ତି । କିନ୍ତୁ ଫଳ କିଛି ହୋଇନାହିଁ । ତେଣୁ ଲୋକଙ୍କର ଶିକ୍ଷା ପ୍ରତି ଆଗ୍ରହ କମି ଯାଇଛି । ଆମେ ପହଞ୍ଚିବାରୁ ଗୋଟିଏ ଶିକ୍ଷକ ପଦ ଖାଲି ଥିବା କଥା ଓ ଅନ୍ୟ ଜଣେ ଶିକ୍ଷକଙ୍କର ଅନିୟମିତତା ବିଷୟରେ କହିଲେ । ଆମେ ଜିଲ୍ଲା ଶିକ୍ଷାଧିକାରୀଙ୍କ ସହିତ ଆଲୋଚନା କରି ଶୂନ୍ୟଥିବା ଶିକ୍ଷକ ସ୍ଥାନ ପୂରଣ କରିବାର ବ୍ୟବସ୍ଥା କଲୁ । ଶିକ୍ଷକଙ୍କର ଅନିୟମିତତା ସତ୍ତ୍ୱେ ସେଠାରେ ଛାତ୍ର ଉପସ୍ଥାନ ଭଲ । ପିଲାଙ୍କ ମନରେ ଶିକ୍ଷା ପ୍ରତି ଆଗ୍ରହ ଅଛି । ଲୋକମାନେ ମଧ୍ୟ ଶିକ୍ଷା ବିଷୟରେ ବୁଝାସୁଝା କରନ୍ତି ।

ଯାଆନ୍ଦାପଣି ସ୍କୁଲରେ ବିଚିତ୍ର ଅବସ୍ଥା କଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି । ପ୍ରଥମ ଦିନ ମୁଁ ଲତା ବାଇଁଶିଆରୁ ଫେରି ଯାଆନ୍ଦାପଣି ସ୍କୁଲ କଥା ଶୁଣିଲି । ସ୍କୁଲରେ ଦୁଇଜଣ ଶିକ୍ଷକ । ପ୍ରଧାନ ଶିକ୍ଷୟିତ୍ରୀ Matric C.T ଦ୍ୱିତୀୟ ଶିକ୍ଷକ B.A, B.Ed । ଚାକିରିରେ ନୂଆ ପ୍ରବେଶ କରିଛନ୍ତି । ଦ୍ୱିତୀୟ ଶିକ୍ଷକ ମୁରଲୀଧର କହିଲେ, ସେ ଜଣେ B.A, B.Ed ହୋଇଥିବାରୁ ହାଇସ୍କୁଲ ହେଡ୍ ମାଷ୍ଟର

ହେବା ପାଇଁ ଯୋଗ୍ୟ । କିନ୍ତୁ ତାଙ୍କୁ ପ୍ରାଥମିକ ସ୍କୁଲର ଦ୍ୱିତୀୟ ଶିକ୍ଷକ କରାଯାଇଛି । ପୁଣି ଜଣେ ମହିଳା Matric C.T ଅଧୀନରେ । ତେଣୁ ସେ ପାଠ ପଢାଇବେ ନାହିଁ । ଏହା ଶୁଣି ଦ୍ୱିତୀୟ ଦିନ ମୁଁ ଯାଆନ୍ଦାପଶି ସ୍କୁଲକୁ ସକାଳ ଦଶଟା ବେଳେ ଗଲି ।

ମୁଁ ଯିବାପରେ ଗାଁଲୋକମାନେ ଆସି ରୁଣ୍ଡ ହେଲେ । ତାଙ୍କର ପ୍ରଥମ ଆପତ୍ତି ହେଲା ସେମାନେ ପୁରୁଣା ସ୍କୁଲ ଘରକୁ ଲାଗି ଗୋଟିଏ ନୂଆ ଘର ତିଆରି କରିଛନ୍ତି । ଚତୁର୍ଥ ପଞ୍ଚମ ଶ୍ରେଣୀ ଖୋଲିବା ପାଇଁ ବହୁବାର ଜିଲ୍ଲା ଶିକ୍ଷାଧିକାରୀଙ୍କୁ ଭେଟିଲେଣି । ସ୍କୁଲରେ ଚତୁର୍ଥ ପଞ୍ଚମ ଶ୍ରେଣୀ ଖୋଲିବାକୁ ଅନୁମତି ଦେଉନାହାନ୍ତି । ଅଥଚ ଯେଉଁ ସ୍କୁଲରେ ଦୁଇଜଣ ଶିକ୍ଷକ ଥିବେ ଓ ପିଲାଙ୍କ ବସିବା ପାଇଁ ଘର ଥିବ ସେଠାରେ ଚତୁର୍ଥ ପଞ୍ଚମ ଶ୍ରେଣୀ ଖୋଲା ଯିବାରେ କୌଣସି ବାଧା ନାହିଁ ବୋଲି ଡି.ପି.ଆଇଙ୍କର ସର୍କୁଲାର ଅଛି । ଦ୍ୱିତୀୟତଃ ଦ୍ୱିତୀୟ ଶିକ୍ଷକ ମୁରଲୀଧରଙ୍କ କାମ ନ କରିବା କଥା ।

ଦ୍ୱିତୀୟ ଶିକ୍ଷକ ମୁରଲୀଧରଙ୍କୁ ଭେଟିବାକୁ ଆମେ ଅପେକ୍ଷା କରି ରହିଲୁ । ପ୍ରଧାନ ଶିକ୍ଷୟିତ୍ରୀ ଠିକ୍ ସମୟରେ ସ୍କୁଲକୁ ଆସି ପାଠ ପଢାଇବା କାମ ଆରମ୍ଭ କରିଥିଲେ । ମୁରଲୀଧରଙ୍କୁ ପ୍ରାୟ ଗୋଟାଏ ପର୍ଯ୍ୟନ୍ତ ଆମେ ଅପେକ୍ଷା କଲୁ । ସେ ନ ଆସିବାରୁ ଆମେ ଫେରି ଗଲୁ । ଖାଇପିଇ ଶୋଇଲୁ । ପ୍ରାୟ ୩ଟା ବେଳେ ମୁରଲୀଧର ଗୋଟାଏ ଡାକ୍ତର ସାର୍ଟିଫିକେଟ୍ ଧରି ବଙ୍ଗଳାରେ ପହଞ୍ଚିଲେ । ଡାକ୍ତର ଲେଖି ଦେଇଛନ୍ତି ମୁରଲୀଧରଙ୍କ ପିଚାରେ ବଥ ହୋଇଥିବାରୁ ତାଙ୍କର ଆସିବାରେ ବିଳମ୍ବ ହେଲା । ଆମେ କହିଲୁ, "କେଉଁଠି ବଥ ହୋଇଛି ଦେଖାଅ ।" ବଥ ହୋଇଥିଲେ ସିନା ସେ ଦେଖାଇଥାନ୍ତେ !

ତା'ପର ଦିନ ଆମେ କାମସାରି ଢେଙ୍କାନାଳ ଫେରିଲୁ । ଜିଲ୍ଲା ଶିକ୍ଷାଧିକାରୀଙ୍କୁ ଦେଖା କରି ଯାଆନ୍ଦାପଶି ସ୍କୁଲରେ ଚତୁର୍ଥ ଓ ପଞ୍ଚମ ଶ୍ରେଣୀ ଖୋଲିବା ଓ ମୁରଲୀଧରଙ୍କ କଥା ବୁଝିବା ପାଇଁ ଅନୁରୋଧ କଲୁ । ସେ ତତ୍‌କ୍ଷଣାତ୍ କାର୍ଯ୍ୟାନୁଷ୍ଠାନ କଲେ, ଅର୍ଥାତ୍ ଯାଆନ୍ଦାପଶି ପ୍ରାଥମିକ ସ୍କୁଲରେ ଚତୁର୍ଥ ଓ ପଞ୍ଚମ ଶ୍ରେଣୀ ଖୋଲିବାକୁ ଅନୁମତି ଦେଲେ ଓ ମୁରଲୀଧରଙ୍କୁ କୈଫିୟତ ତଲବ କଲେ । ଲଡାବାଇଁଶିଆ ସ୍କୁଲର ଶୂନ୍ୟସ୍ଥାନ ପୂରଣ କରିବା ପାଇଁ ମଧ କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ ।

## ସପ୍ତଶଯ୍ୟା ଶିବିର - ସୀତାରାମ ଦର୍ଶନେ

ଆମର ପଞ୍ଚମ ଶିବିର ସପ୍ତଶଯ୍ୟା ଠାରେ ୦୩/୦୩/୧୯୯୩ ତାରିଖରେ ଆୟୋଜିତ ହେଲା । ସପ୍ତଶଯ୍ୟାର ଘଞ୍ଚ ଜଙ୍ଗଲ, ପର୍ବତ ଶ୍ରେଣୀ ତଥା ରାମ ମନ୍ଦିର ସମସ୍ତଙ୍କୁ ମୁଗ୍ଧ କଲା । ଆମ କର୍ମୀମାନେ ସେଠାରେ କାମ କରିବା ସହିତ ବେଶ୍ ଉପଭୋଗ କଲେ । ସମସ୍ତେ ସନ୍ଧ୍ୟାବେଳେ କାମ ସାରି ରାମସୀତାଙ୍କୁ ଦର୍ଶନ କରିବାକୁ ଚାଲିଯାନ୍ତି ଓ ପ୍ରାକୃତିକ ଦୃଶ୍ୟ ଦେଖି ବିଭୋର ହୁଅନ୍ତି । ଜଣେ ସ୍ଥାନୀୟ ଲୋକ ଚକ୍ରଧର ବାରିକ ହାତରେ ରୋଷେଇବାସ ଦାୟିତ୍ୱ ଦେଇ ସମସ୍ତେ କାମରେ ଲାଗିଯାନ୍ତି । ସେମାନେ କମନିଙ୍ଗ ଗାଁ ଲୋକଙ୍କ ସହିତ ମିଶି ଗ୍ରାମ ମାନଚିତ୍ର, ସମ୍ବଳ ଚିତ୍ର, ଋତୁ ଚିତ୍ର ପ୍ରସ୍ତୁତ କରିନେଲେ ଓ ବିଦ୍ୟାଳୟ ସ୍ଥିତି ସମ୍ବନ୍ଧରେ ଆଲୋଚନା କରି ବିଭିନ୍ନ ତଥ୍ୟ ସଂଗ୍ରହ କଲେ । ଆମେମାନେ ସପ୍ତଶଯ୍ୟା ଉନ୍ନୀତ ମଧ୍ୟ ଇଂରାଜିସ୍କୁଲରେ ଅବସ୍ଥାନ କରୁଥିଲୁ । ସ୍କୁଲର ସମସ୍ତ କାର୍ଯ୍ୟକ୍ରମ ସହିତ ଆମ ପିଲାମାନେ ଅଂଶ ଗ୍ରହଣ କରନ୍ତି । ସେ ସ୍କୁଲର ଶିକ୍ଷକମାନେ ମଧ୍ୟ ମେଳାପୀ ଓ ସହଯୋଗୀ ।

ସବୁ ଦୃଷ୍ଟିରୁ ସପ୍ତଶଯ୍ୟା ଶିବିର ବେଶ୍ ଉପଭୋଗ୍ୟ ହୋଇଥିଲା । ଲୋକଙ୍କ ସହିତ ମିଳାମିଶା ଓ ଲୋକଙ୍କର ସହଯୋଗ, ଚକ୍ରଧରର ସୁସ୍ୱାଦୁ ଖାଦ୍ୟ ପରିବେଷଣ, ପ୍ରାକୃତିକ ଦୃଶ୍ୟ ଉପଭୋଗ, ପ୍ରତିଦିନ ସନ୍ଧ୍ୟାରେ ଦେବ ଦର୍ଶନ ସମସ୍ତେ ଉପଭୋଗ କଲେ । ଆମ କର୍ମୀମାନେ ଏତେ ଖୁସିରେ ରହିଲେ ଯେ ଶିବିର ଶେଷ କରିବାକୁ ଇଚ୍ଛା କଲେ ନାହିଁ । ଶିବିର ଶେଷଦିନ ସମସ୍ତଙ୍କ ମନ ଦୁଃଖ କାରଣ ଶିବିର ଜୀବନ ଏହିଠାରୁ ଶେଷ ହୋଇଯିବ । ପରସ୍ପର ମଧ୍ୟରେ ଯେଉଁ ସ୍ନେହ, ସୌହାର୍ଦ୍ଦ୍ୟ ଓ ବନ୍ଧୁତା ବିଗତ ଦୁଇମାସ ଧରି ଗଢିଉଠିଥିଲା ତା'ର ସମାପ୍ତି ଘଟିବ । ପରସ୍ପର ବନ୍ଧୁତା ଓ ନିର୍ଭରଶୀଳତା ମଧ୍ୟରେ ସ୍ୱତନ୍ତ୍ର ଜୀବନଧାରା ଗଢିଉଠିଥିଲା । ତାହା ଶେଷ କରିବାପାଇଁ କାହାର ଇଚ୍ଛା ନ ଥିଲା । ଗାଁ ଲୋକଙ୍କ ସହିତ ମିଶିବା, ସେମାନଙ୍କ ସହିତ ଦୁଃଖ ସୁଖ ହେବା, ସେମାନଙ୍କ ସମସ୍ୟା ସହିତ ଜଡିତ ହେବାରେ ଏକ ପ୍ରକାର ନୂଆ ଆନନ୍ଦ ସମସ୍ତେ ଅନୁଭବ କରୁଥିଲେ ଯାହା ଦୀର୍ଘ ସରକାରୀ ଚାକିରି ଜୀବନରେ କେବେହେଲେ ମିଳି ନ ଥିଲା । ଏହି ଶିବିରରେ ଗୋଟିଏ ଦିନ ଅଧିକ ରହି ପରଦିନ ସକାଳେ ସମସ୍ତେ ନିଜ ନିଜ ଘରକୁ ଚାଲିଗଲେ ।

## ସହଭାଗୀ ଗ୍ରାମ୍ୟ ଆକଳନ ଓ ଶିକ୍ଷା ପ୍ରକଳ୍ପ

ଢେଙ୍କାନାଳ ଜିଲ୍ଲା ପାଇଁ ଶିକ୍ଷା ପ୍ରକଳ୍ପ ପ୍ରସ୍ତୁତ କରିବାକୁ ୟୁନିସେଫ ମୋତେ ଯେଉଁ ଚିଠି ଲେଖିଲେ ସେଥିରେ ଆମର ସହଭାଗୀ ଗ୍ରାମ୍ୟ ଆକଳନ (Participatory Rural Appraisal) ଲବ୍ଧ ଅନୁଭୂତିକୁ ପ୍ରକଳ୍ପରେ ପ୍ରତିଫଳିତ କରିବାକୁ ଅନୁରୋଧ କଲେ । ଅବଶ୍ୟ ଶିକ୍ଷାନୁଷ୍ଠାନର ଅଭାବ, ସମସ୍ତ ଜନ ବସତିର ଏକ କିଲୋମିଟର ଦୂରତା ମଧ୍ୟରେ ପ୍ରାଥମିକ ବିଦ୍ୟାଳୟ ଯୋଗାଇ ଦେବା, ଛାତ୍ରଛାତ୍ରୀଙ୍କର ନାମାଙ୍କନ, ପାଠପଢ଼ିବା, ଶିକ୍ଷକ ସମସ୍ୟା ଆଦି ପ୍ରକଳ୍ପରେ ପ୍ରତିଫଳିତ ହେବ । କିନ୍ତୁ କେତେକ ସ୍ଥାନୀୟ ସମସ୍ୟା ଯାହାର ସମସ୍ତଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମ ସହିତ ଗଭୀର ସମ୍ବନ୍ଧ ଅଛି ତାକୁ ପ୍ରତିଫଳିତ କରିବା ସମ୍ଭବ ନୁହେଁ । ଯଥା :- ମଦ୍ୟପ ମାନଙ୍କ ଉତ୍ପାତ ଯୋଗୁଁ ଝିଅମାନଙ୍କ ଉଚ୍ଚ ପ୍ରାଥମିକ ଶ୍ରେଣୀରେ ଯୋଗଦାନକୁ ବ୍ୟାହତ କରିବା, ଶିଶୁ ଶ୍ରମିକ ସମସ୍ୟା, ଲୋକମାନଙ୍କର ଶିକ୍ଷା ପ୍ରତି ଅନାଗ୍ରହ ଇତ୍ୟାଦି । ମଦ୍ୟପମାନଙ୍କର ପ୍ରଭାବ ଏକ ସାମାଜିକ ସମସ୍ୟା, ଶିଶୁ ଶ୍ରମିକ ସମସ୍ୟା ଏକ ଅର୍ଥନୈତିକ ସମସ୍ୟା ଲୋକଙ୍କ ଦାରିଦ୍ର୍ୟ ସହିତ ପ୍ରତ୍ୟକ୍ଷ ଭାବରେ ସଂପର୍କିତ । ଏ ସବୁର ଆଲୋଚନା କରାଯାଇପାରେ କିନ୍ତୁ ଏ ସବୁର ପ୍ରତିକାର କରିବା ଶିକ୍ଷା ପରିସର ବାହାରେ । ଯେଉଁ ଗାଁରେ ସ୍କୁଲ ଅଛି କିନ୍ତୁ ପିଲା ଆସୁ ନାହାନ୍ତି ଏ ପ୍ରକାର ସମସ୍ୟା ପ୍ରଶାସନିକ ସ୍ତରରେ କେବଳ ପରିଚାଳନା କରିହେବ । ଶିକ୍ଷା ପ୍ରକଳ୍ପରେ ଲୋକଙ୍କର ଆଶା ଓ ଆକାଂକ୍ଷାକୁ ଯଥା ସମ୍ଭବ ପ୍ରତିଫଳିତ କରିବାକୁ ଉଦ୍ୟମ କରିବାକୁ ପ୍ରତିଶ୍ରୁତି ଦେଲି ।

## ଅଣୁ ଯୋଜନା

୧୯୯୩ ମସିହା ସେପ୍ଟେମ୍ବର ମାସରେ ମହାରାଷ୍ଟ୍ରର ପୁଣେଠାରେ ଏକ ଅଣୁ ଯୋଜନା ତାଲିମ ବ୍ୟବସ୍ଥା କରାଗଲା । Indian Institute of Education, Pune ଏହି ବ୍ୟବସ୍ଥା କରିଥିଲେ । ୟୁନିସେଫ ମୁଖ୍ୟ ମୋତେ ପଚାରିଲେ ମୁଁ ସେ ତାଲିମ୍ ପାଇଁ ଯାଇ ପାରିବିକି ? ମୁଁ ଦେଖିଲି, ଶିକ୍ଷା ଯୋଜନା ପ୍ରସ୍ତୁତ କରିବାକୁ ହେଲେ ମୋର ଅଣୁ ଯୋଜନା ତାଲିମ୍ ନିହାତି ଦରକାର । ମୁଁ ପ୍ରସ୍ତାବ ଦେଲି PRA କାର୍ଯ୍ୟରେ ମୋ ସହିତ କାମ କରିଥିବା ବାଞ୍ଛାନିଧି ପତି ଓ ମାୟାଧର ମିଶ୍ର ମଧ୍ୟ ଏ ତାଲିମ୍ ଗ୍ରହଣ କରିବା ଆବଶ୍ୟକ । ମୋ ପ୍ରସ୍ତାବ ଗ୍ରହଣ କରି ଆମ ତିନିଜଣଙ୍କୁ ୟୁନିସେଫ ପୁଣେ ପଠାଇଲେ । ଆମେ ୦୪/୦୯/୧୯୯୩

ତାରିଖରୁ ଏଠାରୁ ବାହାରିଲୁ ଓ ତାଲିମ୍ ଶେଷ କରି ୧୧/୦୯/୧୯୯୩ ରେ ଏଠାକୁ ଫେରିଲୁ ।

ଭାରତୀୟ ଶିକ୍ଷା ପ୍ରତିଷ୍ଠାନରେ (Indian Institute of Education) ଯେଉଁ ପାଠ ପଢାଗଲା ତାହା ଢେଙ୍କାନାଳ ଜିଲ୍ଲା ଶିକ୍ଷା ଯୋଜନା ପ୍ରସ୍ତୁତି ବେଳେ ସାହାଯ୍ୟ କଲା । କିନ୍ତୁ ସେଠାର ପାଠ ଅପେକ୍ଷା ଗ୍ରାମ ପରିଦର୍ଶନ ଅଧିକ ଉପଯୋଗୀ ମନେହେଲା । ଗ୍ରାମମାନଙ୍କର ଜନ ସହଯୋଗ ଓ ଗ୍ରାମବାସୀଙ୍କ ଦ୍ୱାରା ଶିକ୍ଷାନୁଷ୍ଠାନ ପରିଚାଳନା ଆମକୁ ବିସ୍ମୟାଭିଭୂତ କରିଦେଲା । ଆମେ ପ୍ରଶ୍ନକଲା କ୍ଷଣି ଶିକ୍ଷକମାନେ ଉତ୍ତର ଦେବା ପୂର୍ବରୁ ଗ୍ରାମବାସୀମାନେ ଉତ୍ତର ଦିଅନ୍ତି । ଗ୍ରାମବାସୀମାନେ ସ୍କୁଲ ପରିଚାଳନାରେ ଏତେ ଦୂର ସଂଶ୍ଳିଷ୍ଟ ଯେ କୌଣସି କାର୍ଯ୍ୟକ୍ରମ ତାଙ୍କ ଆଗୋଚରରେ ହେବା ପ୍ରଶ୍ନ ଉଠି ନ ପାରେ । ବିନା ନୋଟିସରେ ଆମେ ପହଞ୍ଚିଲେ ମଧ ଗ୍ରାମବାସୀମାନେ ଅଧ ଘଣ୍ଟା ମଧରେ ଏକତ୍ରୀତ ହୋଇଯାନ୍ତି । ସେଠାକାର ଅଭିଜ୍ଞତା ଓ ଅନୁଭୂତି ଆମକୁ ଢେଙ୍କାନାଳ ଶିକ୍ଷା ପ୍ରକଳ୍ପ ପ୍ରସ୍ତୁତିରେ ସାହାଯ୍ୟକଲା ।

୧୯୭୮ ମସିହାରେ ମୁଁ ଡି.ପି.ଆଇ ଅଫିସରେ ଯୋଜନା ସହକାରୀ ନିର୍ଦ୍ଦେଶକ ଭାବରେ କାମ କରିଥିବାରୁ ଶିକ୍ଷା ଯୋଜନା ପ୍ରସ୍ତୁତିରେ ମୋର କୌଣସି ଅସୁବିଧା ହେଲାନାହିଁ । ସେହି ବର୍ଷ (National Institute of Educational Planning & Administration) ଜାତୀୟ ଶିକ୍ଷା ଯୋଜନା ଓ ପ୍ରଶାସନିକ ପ୍ରତିଷ୍ଠାନର ୧୫ ଦିନ ପାଇଁ ଶିକ୍ଷା ଯୋଜନା ପ୍ରସ୍ତୁତି ଓ ରୂପାୟନ ବିଷୟରେ ଟ୍ରେନିଂ ନେଇଥିଲି । ତେଣୁ ଢେଙ୍କାନାଳ ଶିକ୍ଷା ପ୍ରକଳ୍ପ ପ୍ରସ୍ତୁତି କାର୍ଯ୍ୟ ସହଜରେ ହୋଇଗଲା । ଖର୍ଚ୍ଚ ଅଟକଳରେ ଦେଖାଗଲା ଯେ ପ୍ରାୟ ୨୦ କୋଟି ଟଙ୍କା ଖର୍ଚ୍ଚହେବ । ଅଟକଳ ଅନୁସାରେ ଆର୍ଥିକ ସହାୟତା ଯୋଗାଇ ଦେବାକୁ ୟୁନିସେଫ ରାଜି ହୋଇଗଲେ ।

ଢେଙ୍କାନାଳ ଶିକ୍ଷା ପ୍ରକଳ୍ପ ପ୍ରସ୍ତୁତି ବେଳକୁ ଜିଲ୍ଲା ପୁନର୍ଗଠନ ହୋଇ ନ ଥିଲା । ପୁନର୍ଗଠନରେ ଅନୁଗୁଳ ଗୋଟିଏ ସ୍ୱତନ୍ତ୍ର ଜିଲ୍ଲା ହୋଇଗଲା । ଏହି ଶିକ୍ଷା ପ୍ରକଳ୍ପ ଢେଙ୍କାନାଳ ଓ ଅନୁଗୁଳ ଉଭୟ ଜିଲ୍ଲାରେ କାର୍ଯ୍ୟକାରୀ ହେବ କି କେବଳ ଢେଙ୍କାନାଳ ଜିଲ୍ଲାରେ କାର୍ଯ୍ୟକାରୀ ହେବ ସେ ନିଷ୍ପତ୍ତି ଆଲୋଚନା ପରେ ନିଆଯିବାର ସ୍ଥିର ହେଲା ।

ଢେଙ୍କାନାଳ ଶିକ୍ଷା ପ୍ରକଳ୍ପ ଜିଲ୍ଲା ସ୍ତରରେ ଦୁଇଥର ଓ ରାଜ୍ୟ ସ୍ତରରେ ଥରେ ଆଲୋଚନା ହୋଇଛି । ଜିଲ୍ଲା ସ୍ତରରେ ଦ୍ୱିତୀୟଥର ଆଲୋଚନା ବେଳେ

ୟୁନିସେଫ NIEPA ରେ ଅଧ୍ୟାପିକା ଥିବା ଅଞ୍ଜନା ମଙ୍ଗଳାଗିରିଙ୍କୁ କେବଳ ଆଲୋଚନାରେ ଅଂଶ ଗ୍ରହଣ କରିବାକୁ ନିମନ୍ତ୍ରିତ କରି ଆଣିଥିଲେ । ତାଙ୍କର ଅନେକଗୁଡିଏ ପ୍ରଶ୍ନର ଉତ୍ତର ମୁଁ ଦେଇ ସାରିବା ପରେ ଜିଲ୍ଲାସ୍ତରରେ ପ୍ରକଳ୍ପଟିକୁ ଗ୍ରହଣ କରାଗଲା । ତାପରେ ରାଜ୍ୟସ୍ତରରେ ଆଲୋଚନା ହେଲା । ଏହି ଆଲୋଚନାରେ ଶିକ୍ଷାବିତ୍ ଶତ୍ରୁଘ୍ନ ନାଥଙ୍କ ସହିତ କିଛି ଶିକ୍ଷା ପ୍ରଶାସକ ଓ କିଛି ସ୍ୱେଚ୍ଛାସେବୀ ଅନୁଷ୍ଠାନର ପ୍ରତିନିଧି ଯୋଗ ଦେଇଥିଲେ । ଆଲୋଚନାବେଳେ ୟୁନିସେଫ ମୁଖ୍ୟ ଜଣାଇଦେଲେ ଯେ ଯୋଜନା ଅଟକଳ ଅନୁସାରେ ୟୁନିସେଫ ଆର୍ଥିକ ସହାୟତା ଯୋଗାଇ ଦେବ । ସେତେବେଳେ ପ୍ରାଥମିକ ଶିକ୍ଷାମନ୍ତ୍ରୀ ଥିଲେ ପ୍ରଫୁଲ୍ଲ ଚନ୍ଦ୍ର ଘଡେଇ । ଆଲୋଚନା ସଭାରେ ସେ ସଭାପତିତ୍ୱ କରୁଥିଲେ । ଆଲୋଚନା ଶେଷ ପରେ ଢେଙ୍କାନାଳ ଶିକ୍ଷା ପ୍ରକଳ୍ପଟିକୁ ସରକାର ଦିଲ୍ଲୀ UNICEF ଅଫିସକୁ ପଠାଇ ଦେଇଥିଲେ ସେମାନେ ଅନୁଦାନ ଟଙ୍କା ପଠାଇ ଦେଇଥାନ୍ତେ କିନ୍ତୁ ମନ୍ତ୍ରୀ ପ୍ରକଳ୍ପଟିକୁ ଦିଲ୍ଲୀ ନ ପଠାଇ ନିଜ ଆଲମିରାରେ ରଖିଦେଲେ । ଫାଇଲରେ ରଖିଲେ କାଳେ କିଏ କେତେବେଳେ ପଠାଇ ଦେବ ସେଥିପାଇଁ ସେ ନିଜ ଆଲମିରାରେ ରଖିଦେଲେ । ଢେଙ୍କାନାଳ ଶିକ୍ଷା ଯୋଜନା କାର୍ଯ୍ୟକାରୀ ହୋଇଥିଲେ ଓଡିଶା ରାଜ୍ୟ ୨୦କୋଟି ଟଙ୍କା ପାଇଥାନ୍ତା । ଏହି ଯୋଜନା କାର୍ଯ୍ୟକାରୀ ନ କରିବାର ମୁଖ୍ୟ କାରଣ ହେଉଛି ମୁଁ ସେ ଶିକ୍ଷା ଯୋଜନା ପ୍ରସ୍ତୁତ କରିଥିଲି । ନିର୍ବାଚନରେ ତାଙ୍କର ପ୍ରତିପକ୍ଷ ଶରତ ରାଉତଙ୍କର ମୁଁ ବାପା । ତେଣୁ ତାଙ୍କର ଏ ପ୍ରକାର ରାଜନୈତିକ ଉଦାରତା । ରାଜ୍ୟର ଉନ୍ନତି ପାଇଁ ଏହି ପ୍ରକାର ଉଦାର ମନ୍ତ୍ରୀଙ୍କର ଆବଶ୍ୟକତା ରହିଛି, ଯେ ନିଜର ବ୍ୟକ୍ତିଗତ ଆକ୍ରୋଶ ପାଇଁ ରାଜ୍ୟର ୨୦ କୋଟି ଟଙ୍କା କ୍ଷତି ଘଟାଇ ପାରନ୍ତି । ସେତେବେଳେ ରାଜ୍ୟର ଆର୍ଥିକ ଅବସ୍ଥା ଦୃଷ୍ଟିରୁ ୨୦ କୋଟି ଟଙ୍କା ଖୁବ୍ ବଡ ସାହାଯ୍ୟ ଭାବରେ ବିବେଚିତ ହେଉଥିଲା । ପ୍ରଫୁଲ୍ଲ ବାବୁଙ୍କର ଶିକ୍ଷା ମନ୍ତ୍ରୀତ୍ୱରେ ଓଡିଶା ଶିକ୍ଷାର କେତେ ଉନ୍ନତି ହୋଇଛି ତାହା ଇତିହାସ କହିବ । ଯଦି କେହି କେବେ ସେ ବିଷୟରେ ଗବେଷଣା କରିବ, ଜଣାଯିବ ପ୍ରଫୁଲ୍ଲ ବାବୁଙ୍କର ଓଡିଶା ଶିକ୍ଷା ବିଭାଗକୁ ଅବଦାନ କେତେ ?

## ୧୦.୮ ସମସ୍ତଙ୍କ ପାଇଁ ଶିକ୍ଷା ପ୍ରକୋଷ୍ଠ / ସମିତି

ପାଞ୍ଚଗୋଟି ମୁଖ୍ୟ ସଂଯୁକ୍ତ ରାଷ୍ଟ୍ର ସଦସ୍ୟ :- UNICEF, UNDP, UNESCO, ILO । UNFPA ଭାରତରେ ଚାଲିଥିବା ପ୍ରାଥମିକ ଶିକ୍ଷା ସାର୍ବଜନୀନକରଣ ପ୍ରକ୍ରିୟାରେ ସହାୟତା କରିବା ପାଇଁ ଭାରତ ସରକାରଙ୍କ ସହିତ ଚୁକ୍ତିବଦ୍ଧ ହେବା ପରେ ଓଡିଶାରେ ଦୁଇଟି ଦଫାରେ ୨୦ ଟି ବ୍ଲକ୍‌ରେ

ସମସ୍ତଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମ କରିବା ପାଇଁ ସ୍ଥିର ହେଲା । ପ୍ରଥମେ ଯେଉଁ ୧୦ ଗୋଟି ବ୍ଲକ୍‌ରେ ଏହି କାର୍ଯ୍ୟକ୍ରମ ହେବାର ସ୍ଥିର ହେଲା ସେଗୁଡିକ ହେଲା :- ଆଠମଲ୍ଲିକ, ବିଶୋଇ, କରଞ୍ଜିଆ, ହେମଗିରି, ଲାଠିକଟା, ଖଜୁରିପଡା, ଫୁଲବାଣୀ, ବ୍ରହ୍ମଗିରି, ଜଗନ୍ନାଥ ପ୍ରସାଦ ଓ ସୁକିନ୍ଦା । ଏହି କାର୍ଯ୍ୟକ୍ରମର ମୁଖ୍ୟ ଲକ୍ଷ୍ୟ ହେଲା (୧)ଗୋଷ୍ଠୀ ସଶକ୍ତିକରଣ ଦ୍ୱାରା ବିଦ୍ୟାଳୟ ପରିଚାଳନାର ଉନ୍ନତି ସାଧନ କରିବା ସହିତ ଶିଶୁମାନଙ୍କ ଅଧିକାରର ସୁରକ୍ଷା କରିବା । (୨) ଶିଶୁ କୈନ୍ଦ୍ରିକ ଶିକ୍ଷା ପ୍ରବର୍ତ୍ତନ ପାଇଁ ଶିକ୍ଷକମାନଙ୍କୁ ପ୍ରସ୍ତୁତ କରିବା ଓ (୩) ପିଲାମାନଙ୍କର, ବିଶେଷତଃ ବାଳିକା ମାନଙ୍କର ଶିକ୍ଷା ପାଇଁ ଥିବା ସାମାଜିକ ପ୍ରତିବନ୍ଧକ ଦୂର କରିବା ।

ଏହି କାର୍ଯ୍ୟକ୍ରମ ପାଇଁ ସରକାର ଗୋଟିଏ "ସମସ୍ତଙ୍କ ପାଇଁ ଶିକ୍ଷା" ପ୍ରକୋଷ୍ଠ (Education For All Cell ) ଗଠନ କଲେ । ପରେ ତାହା ଏକ ରେଜିଷ୍ଟ୍ରୀକୃତ ସଂସ୍ଥାରେ ପରିଣତ ହେଲା । ଏହି ସଂସ୍ଥାରେ ଜଣେ ନିର୍ଦ୍ଦେଶକ, ଜଣେ ପରାମର୍ଶଦାତା, ଜଣେ ସଂଯୋଜକ , ଜଣେ କଂପ୍ୟୁଟର ଚାଳକ ଓ ଜଣେ ହିସାବ ରକ୍ଷକ ନିଯୁକ୍ତ ହେଲେ ।

ଏହି କାର୍ଯ୍ୟକ୍ରମ ପାଇଁ ଗୋଟିଏ ପ୍ରକଳ୍ପ ପ୍ରସ୍ତୁତ ହେଲା - ତାର ନାଁ ଥିଲା "ଆମ ସ୍କୁଲ" ପ୍ରକଳ୍ପ । ଏହି ପ୍ରକଳ୍ପ ଦିଲ୍ଲୀରେ ଭାରତ ସରକାରଙ୍କ ଦ୍ୱାରା ଗଠିତ "ଆକଳନ କମିଟି" ଦ୍ୱାରା ପରୀକ୍ଷିତ ହୋଇଥିଲା । ପାଞ୍ଚବର୍ଷ ପାଇଁ ୧୦କୋଟି ଟଙ୍କା ବ୍ୟୟରେ ଏହି ପ୍ରକଳ୍ପ କାର୍ଯ୍ୟକାରୀ ହେବାପାଇଁ ସ୍ଥିର ହୋଇଥିଲା ।

ଏହି କାର୍ଯ୍ୟକ୍ରମ ମଧ୍ୟରେ ଆନ୍ତଜିଲ୍ଲା ପରିଦର୍ଶନ ପାଇଁ ସମସ୍ତଙ୍କ ପାଇଁ ଶିକ୍ଷା ସଂସ୍ଥାର ନିର୍ଦ୍ଦେଶକ ଓ ଅନ୍ୟ ଗୁରୁତ୍ୱପୂର୍ଣ୍ଣ ଅଫିସରମାନଙ୍କୁ ରାଜସ୍ଥାନ, କର୍ଣ୍ଣାଟକ, ମଧ୍ୟପ୍ରଦେଶ ପ୍ରଭୃତି ବିଭିନ୍ନ ରାଜ୍ୟକୁ ନିଆଯାଇଥିଲା । ଓଡିଶାରୁ ମୁଁ ଓ ନିର୍ଦ୍ଦେଶକ ଡକ୍ଟର ନରେନ୍ଦ୍ର ପ୍ରସାଦ ଦାସ ଯାଇଥିଲୁ । ଭାରତ ସରକାରଙ୍କ ଉପସଚିବ ସୁରେଶ କୁମାର ଆନ୍ତଃ-ଜିଲ୍ଲା ପରିଦର୍ଶନର ସଂଯୋଜନା କରୁଥିଲେ । ଆମେ ରାଜସ୍ଥାନର ଲୋକ ଜୁମ୍ବିସ, ଶିକ୍ଷାକର୍ମୀ ପ୍ରକଳ୍ପ, ନାରୀ ଶିକ୍ଷା କାର୍ଯ୍ୟକ୍ରମ, ଶିକ୍ଷକ ସଶକ୍ତିକରଣ, ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତି, ଅଣୁ-ଯୋଜନା ଆଦିର ସଫଳ ରୂପାୟନ ବିକାନିର ଓ ଜୟପୁରଠାରେ ଦେଖିଲୁ ଓ ଭାରତର ପୂର୍ବତନ ଶିକ୍ଷା ସଚିବ ଅନିଲ୍ ବୋଡିଆ ଓ "ସନ୍ଧାନ" ଗବେଷଣା କେନ୍ଦ୍ର ପରିଚାଳିକା ସାରଦା ଜୈନଙ୍କ ସହ ଆଲୋଚନା କରିବାର ସୁଯୋଗ ପାଇଲୁ । ରାଜସ୍ଥାନରେ ଶିକ୍ଷାର ଅଗ୍ରଗତି ଖୁବ୍ ବେଗରେ ଘଟି ଚାଲିଛି । ଯେଉଁ ସ୍ତରରୁ ରାଜସ୍ଥାନ ଶିକ୍ଷାର

ଉନ୍ନତି କରିଛି ଓ ଯେତେ କମ୍ ସମୟରେ ଯେତିକି ଉପଲବ୍ଧି ହୋଇଛି ତାହା ପ୍ରଣିଧାନ ଯୋଗ୍ୟ। ଦୁଇଟି ବୋର୍ଡ - ଗୋଟିଏ ଲୋକ ଜୁମ୍ବିସ ବୋର୍ଡ ଓ ଆରଟି ଶିକ୍ଷାକର୍ମୀ ବୋର୍ଡ ମାଧ୍ୟମରେ ଶିକ୍ଷାର ଉନ୍ନତି ହୋଇ ଚାଲିଛି । ପରିଦର୍ଶନ ଲବ୍ଧଜ୍ଞାନ ଓଡିଶାରେ ପ୍ରୟୋଗ କରିବା ଲକ୍ଷ୍ୟ ଥିଲା । କିନ୍ତୁ ରାଜସ୍ଥାନରେ ଯେପରି ଦୁଇଟି ବେସରକାରୀ ବୋର୍ଡ କାର୍ଯ୍ୟକରୁଛି, ତାହା ଓଡିଶାରେ ସମ୍ଭବ ନୁହେଁ । କାରଣ ଅନିଲ୍ ବୋଡିଆଙ୍କ ସ୍ତରର କୌଣସି ଶିକ୍ଷାବିତ୍ ଓଡିଶାରେ ନାହାନ୍ତି ଓ ଯେଉଁ "ଶିକ୍ଷାବିତ୍" ଅଛନ୍ତି ତାଙ୍କ ପ୍ରତି ଓଡିଶା ସରକାର ବିମୁଖ । ନ ହେଲେ ପ୍ରଫେସର ବିଧୁଭୂଷଣ ଦାସଙ୍କ ନେତୃତ୍ୱରେ ରାଜସ୍ଥାନ ଶିକ୍ଷା ଭଳି ଓଡିଶାରେ ଶିକ୍ଷାର ଉନ୍ନତି ହୋଇ ପାରିଥାନ୍ତା ।

କର୍ଣ୍ଣାଟକ ରାଜ୍ୟର ବାଙ୍ଗାଲୋର ଓ ମହୀଶୂରର ଶିକ୍ଷକ ତାଲିମ୍ କେନ୍ଦ୍ର ପରିଦର୍ଶନ କଲୁ । କ୍ଷେତ୍ର ପରିଦର୍ଶନ ସମୟରେ ଦେଖିଲୁ ସାଧାରଣ ସ୍ତ୍ରୀ ଲୋକମାନେ ଗ୍ରାମ ମାନଚିତ୍ର କରି ଚମତ୍କାର ଭାବରେ ଆମକୁ ବୁଝାଉଛନ୍ତି । ଗୋଷ୍ଠୀ ସହଯୋଗର ଏହାଠାରୁ ବଡ ଉଦାହରଣ ଥିବାର ଜଣାଗଲା ନାହିଁ । ଶିକ୍ଷା ସଚେତନତା ଗାଁ ଭିତରେ କିପରି ପ୍ରବେଶ କରିଛି ଏହା ତାର ପ୍ରକୃଷ୍ଟ ଉଦାହରଣ । ମଧ୍ୟପ୍ରଦେଶର ଭୋପାଳ ଓ ଗ୍ୱାଲିୟର ଓ ଅନ୍ୟାନ୍ୟ ଗ୍ରାମାଞ୍ଚଳରେ ଗୋଷ୍ଠୀ ସହଯୋଗ ତଥା ଅନୌପଚାରିକ ଶିକ୍ଷାର ସଫଳ ରୂପାୟନ ଦେଖିଲୁ । ଏ ସମସ୍ତ ପରିଦର୍ଶନ ଉପଲବ୍ଧ ଜ୍ଞାନ ପ୍ରୟୋଗ କରିବା ପାଇଁ ଓଡିଶାରେ ଯଥେଷ୍ଟ ସୁଯୋଗ ରହିଲା ନାହିଁ ।

"ସମସ୍ତଙ୍କ ପାଇଁ ଶିକ୍ଷା" କାର୍ଯ୍ୟକ୍ରମ ଗୋଷ୍ଠୀ ସହଯୋଗ ଓ ଗ୍ରାମବାସୀମାନଙ୍କର ବିଦ୍ୟାଳୟ ପରିଚାଳନାରେ ସକ୍ରିୟତା ଉପରେ ପର୍ଯ୍ୟବସିତ ହୋଇଥିବାରୁ ପ୍ରତ୍ୟେକ ସ୍ଥାନରେ ଗୋଷ୍ଠୀ କାର୍ଯ୍ୟକ୍ରମ ଦେଖାଇବା ପାଇଁ ସଂଯୋଜକମାନେ ଉଦ୍ୟମ କରିଥିଲେ । ରାଜସ୍ଥାନର ବିକାନିରଠାରେ ଏକ ଅଧ୍ୟାପିକା ମଞ୍ଚର କାର୍ଯ୍ୟକ୍ରମ ଦେଖିବା ବେଳେ କିପରି ଶିକ୍ଷୟିତ୍ରୀମାନେ ଅଗ୍ନିବର୍ଷୀ ଭାଷଣ ଦେଇ ପାରନ୍ତି ଓ ଶିକ୍ଷକ ସଶକ୍ତିକରଣ କେତେ ବାଟ ଯାଇପାରେ ଦେଖି ଆମେମାନେ ବିସ୍ମୟାଭିଭୂତ ହୋଇଗଲୁ । ମନେହେଲା ଯୁଗ ଯୁଗ ଧରି ମହିଳା ମାନଙ୍କୁ ରୁଦ୍ଧ ଗୃହରେ ରଖିବାର ସ୍ୱାଭାବିକ ବିସ୍ଫୋରଣ ଆମେ ଦେଖୁଥିଲୁ ।

ଓଡିଶାରେ 'ସମସ୍ତଙ୍କ ପାଇଁ ଶିକ୍ଷା' କାର୍ଯ୍ୟକ୍ରମରେ ଦୃଢ ନିଷ୍ପତ୍ତିର ଅଭାବ ଓ ପ୍ରଶାସନିକ ବିଫଳତା ପାଇଁ ଆଶାଜନକ ଉପଲବ୍ଧି ହେଲାନାହିଁ । ବାରମ୍ବାର ବ୍ଲକ୍ ପରିବର୍ତ୍ତନ କରିବା ଓ ପ୍ରଶାସନରେ ଅଯଥା ହସ୍ତକ୍ଷେପ ଫଳରେ ଏହି

କାର୍ଯ୍ୟକ୍ରମ ପଥଭ୍ରଷ୍ଟ ହୋଇଗଲା । ଶେଷବେଳକୁ ସରକାର "ସମସ୍ତଙ୍କ ପାଇଁ ଶିକ୍ଷା" ସଂସ୍ଥାକୁ ଡିପିଇପି ସହିତ ମିଶାଇ ଦେଇ ମସ୍ତବଡ ଭୁଲ୍ କଲେ । ଡିପିଇପି କାର୍ଯ୍ୟକାରୀ କରିବାରେ ଯେଉଁ ତ୍ରୁଟିଗୁଡିକ କରା ଯାଉଥିଲା ସେ ସବୁ ସମସ୍ତଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମ ଉପରେ ଆରୋପ କରାଗଲା । ଡିପିଇପି ସ୍କୁଲଗୁଡିକରୁ ସଂକ୍ରମିତ ହେବା ଫଳରେ ସମସ୍ତଙ୍କ ପାଇଁ ଶିକ୍ଷା ରୁଗ୍ଣ ହୋଇଗଲା । ବିଜୟ ଆରୋରାଙ୍କ ଭଳି ଜଣେ ଏକଛତ୍ରବାଦୀ ପ୍ରଶାସକ ସମସ୍ତଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମର ସମସ୍ତ ସୁଫଳକୁ ଅଳ୍ପ ଦିନ ମଧ୍ୟରେ ନଷ୍ଟ କରି ଦେବାକୁ ସମର୍ଥ ହେଲେ ।

ଆରମ୍ଭରେ ଭାରତ ସରକାର ଓ ପାଞ୍ଚଗୋଟି ଆନ୍ତର୍ଜାତିକ ସଂସ୍ଥାର ମିଳିତ କାର୍ଯ୍ୟକ୍ରମ ବହୁ ଆଶାର ସଞ୍ଚାର କରିଥିଲା । ସମସ୍ତେ ଭାବିଥିଲେ ଯେ ୟୁନେସ୍କୋ ଓ ୟୁନିସେଫ ପ୍ରଭୃତି ଯେଉଁ ସଂସ୍ଥାଗୁଡିକ ପାରଂପରିକ ଭାବେ ଶିକ୍ଷା ସହିତ ସଂପୃକ୍ତ । ସେମାନଙ୍କ ଅବଦାନରେ ଉନ୍ନତ ଧରଣର ଶିକ୍ଷା ବ୍ୟବସ୍ଥା ପ୍ରଚଳିତ ହେବ ଓ ତାହା ଅନ୍ୟ ସମସ୍ତ ଶିକ୍ଷାନୁଷ୍ଠାନ ପାଇଁ ଆଦର୍ଶ ସ୍ଥାନୀୟ ହେବ । ସେମାନଙ୍କ ଅବଦାନ ପ୍ରାରମ୍ଭିକ ସ୍ତରରେ ଉନ୍ନତ ଶିକ୍ଷାର ସ୍ୱାକ୍ଷର ବହନ କରିଥିଲା । ସେମାନଙ୍କ ଆଦର୍ଶ 'ଆମ ସ୍କୁଲ' ପ୍ରକଳ୍ପରେ ପ୍ରତିଫଳିତ ହୋଇଛି । ପରବର୍ତ୍ତୀ କାଳରେ ଡିପିଇପି ସହିତ ମିଶିଯାଇ ଶିକ୍ଷାର ଗୁଣାତ୍ମକ ଅବକ୍ଷୟ ଦେଖାଗଲା । ବିଫଳତାର ବିରାଟ ସମୁଦ୍ର ମଧ୍ୟରେ "ସମସ୍ତଙ୍କ ପାଇଁ ଶିକ୍ଷା" କାର୍ଯ୍ୟକ୍ରମ ଲୀନ ହୋଇଗଲା । ସର୍ବୋପରି ବିଜୟ ଆରୋରାଙ୍କ ପରି ଜଣେ ଅହଂକାରୀ ଆତ୍ମାଭିମାନୀ ନିର୍ଦ୍ଦେଶକଙ୍କ ଅଧୀନରେ କୌଣସି ବ୍ୟକ୍ତି ଆନ୍ତରିକତା ସହ କାର୍ଯ୍ୟ କଲେ ନାହିଁ । କେବଳ ଔପଚାରିକତା ପାଇଁ କାର୍ଯ୍ୟ ହେଲା । ଈପସିତ ଫଳ ପ୍ରାପ୍ତିର ଆଶା ଯେତେବେଳେ ମଉଳିଗଲା ମୁଁ ସମସ୍ତଙ୍କ ପାଇଁ ଶିକ୍ଷା ସଂସ୍ଥା ଛାଡିଦେଲି । ଓଡିଶାର ଦୁର୍ଭାଗ୍ୟ ଭୁଲ୍ ଲୋକଙ୍କୁ ସର୍ବୋଚ୍ଚ ସ୍ଥାନରେ ରଖି ବିଫଳତାକୁ ନିମନ୍ତ୍ରଣ କରି ଆଣନ୍ତି । "ସମସ୍ତଙ୍କ ପାଇଁ ଶିକ୍ଷା" ର ଯେଉଁ ପରିଣତି ହେଲା ତାହା ଅତିଶୟ ଦୁର୍ଭାଗ୍ୟଜନକ । ସରକାର ନିଜ ଭ୍ରମ ସଂଶୋଧନ କଲାବେଳକୁ ଶିକ୍ଷାର ଦୁର୍ଗତି ହୋଇ ସାରିଥିଲା । ଆଜିଯାଏ ଡିପିଇପି କାର୍ଯ୍ୟର ଓ ଖର୍ଚ୍ଚର ତନଖି କୌଣସି ବାହ୍ୟ ସଂସ୍ଥା ଦ୍ୱାରା ହୋଇ ନାହିଁ । ଯଦି କେବେ ହୁଏ ବିଭିନ୍ନ ବ୍ୟକ୍ତିଙ୍କର ସ୍ୱରୂପ ପଦାରେ ପଡିବ ।



## ଏକାଦଶ ଅଧ୍ୟାୟ

# ଓଡିଶାର ପ୍ରାଥମିକ ଶିକ୍ଷାନୀତି

କୋଠାରୀ କମିଶନ ରିପୋର୍ଟ ଆଧାରରେ ୧୯୬୮ ମସିହାରେ ଭାରତର ପ୍ରଥମ ଜାତୀୟ ଶିକ୍ଷାନୀତି ନିର୍ଦ୍ଧାରଣ କରାଗଲା । ନୀତି ନିର୍ଦ୍ଧାରଣ ହେଲା ସିନା ତାକୁ କାର୍ଯ୍ୟକାରୀ କରିବା ପାଇଁ ଅର୍ଥ ବ୍ୟବସ୍ଥା କରାଗଲା ନାହିଁ । ତେବେ ଜାତୀୟ ଶିକ୍ଷାନୀତିର ମୂଳଦୂଆ ପଡିଗଲା । ୧୯୮୫ ମସିହାରେ ଜାତୀୟ ଶିକ୍ଷାନୀତି ନିମିତ୍ତ ବିତର୍କର ସୁବିଧା ପାଇଁ ଭାରତ ସରକାର 'Challenge of Education' ନାମରେ ଦୁଇଖଣ୍ଡି ପୁସ୍ତିକା ପ୍ରକାଶ କରି ଦେଶସାରା ବାଣ୍ଟିଲେ । ଏହି ପୁସ୍ତିକାରେ ଭାରତରେ ଶିକ୍ଷାର ସ୍ଥିତି ବିଷୟ ମୁଖ୍ୟତଃ ଆଲୋଚନା କରାଯାଇଛି । ସେଥିରେ ପ୍ରଦତ୍ତ ତଥ୍ୟ ଆଧାରରେ ବିତର୍କ ପାଇଁ ସୂଚନା ଦିଆଯାଇଛି । ବିଭିନ୍ନ ସ୍ତରର ଲୋକଙ୍କର ମତାମତ ସଂଗ୍ରହ ପାଇଁ ବ୍ୟବସ୍ଥା କରା ଯାଇଥିଲା । ରାଜ୍ୟ, ଜିଲ୍ଲା, ପଞ୍ଚାୟତ ସମିତି ଏପରିକି ଗ୍ରାମ ପଞ୍ଚାୟତ ସ୍ତରରୁ ସଂଗୃହୀତ ମତାମତ ଉପରେ ମଧ୍ୟ ଗୁରୁତ୍ୱ ଆରୋପ କରାଯାଇଥିଲା । ଦେଶର ବିଭିନ୍ନ ଗବେଷଣା ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ମତାମତ ମଧ୍ୟ ବିଚାରକୁ ନିଆ ଯାଇଥିଲା । ଜାତୀୟ ଶିକ୍ଷାନୀତି, ୧୯୮୬ ପ୍ରକାଶିତ ହେଲା । ଏହି ଶିକ୍ଷାନୀତିର ବିଶେଷତ୍ୱ ହେଲା ଏହାକୁ କାର୍ଯ୍ୟକାରୀ କରିବାପାଇଁ ପ୍ରତ୍ୟେକ ଛତ୍ରରେ ଅର୍ଥ ବ୍ୟବସ୍ଥା କରାଗଲା ଯାହା ୧୯୬୮ ଶିକ୍ଷାନୀତି ପାଇଁ ହୋଇ ନ ଥିଲା । ୧୯୮୬ ଶିକ୍ଷାନୀତି କାର୍ଯ୍ୟକାରୀ କରିବା ପାଇଁ ଗୋଟିଏ କାର୍ଯ୍ୟକ୍ରମ ରୂପାୟନ ପୁସ୍ତିକା (Programme of Action) (POA) ପ୍ରକାଶ କରାଗଲା ।

୧୯୯୦ ମସିହାରେ ଆଚାର୍ଯ୍ୟ ରାମମୂର୍ତ୍ତିଙ୍କ ଅଧ୍ୟକ୍ଷତାରେ ଗଠିତ ଏକ କମିଟି ଜାତୀୟ ଶିକ୍ଷାନୀତିର ଏକ ସମାଲୋଚନା ମୂଳକ ସମୀକ୍ଷା କରି ରିପୋର୍ଟ୍ ଦେଇଥିଲେ । ରିପୋର୍ଟ ନାଁ "Towards an Enlightened and Humane

Society" ଏଥିରେ ଜାତୀୟ ଶିକ୍ଷାନୀତିର ଅନେକ ଦୋଷ ଦୁର୍ବଳତା ବିଷୟ ଆଲୋଚନା କରାଯାଇ ବିକଳ୍ପ ପରାମର୍ଶ ଦିଆଯାଇଛି । ୧୯୮୯ ମସିହାରେ V.P.Singh ପ୍ରଧାନମନ୍ତ୍ରୀ ଥିବାବେଳେ ଏହି କମିଟି ଗଠନ କରିଥିଲେ । ୧୯୮୬ ଜାତୀୟ ଶିକ୍ଷାନୀତିରେ ପ୍ରତି ପାଞ୍ଚ ବର୍ଷରେ ଥରେ ଶିକ୍ଷାନୀତି ଓ ତାର କାର୍ଯ୍ୟକାରିତା ସମୀକ୍ଷା କରାଯିବା ପାଇଁ ବ୍ୟବସ୍ଥା ରଖାଯାଇଥିଲା । ତଦନୁଯାୟୀ ୧୯୯୨ ମସିହାରେ ଶିକ୍ଷାନୀତି ଓ ତା'ର କାର୍ଯ୍ୟକାରିତାର ସମୀକ୍ଷା କରାଯାଇ ସାମାନ୍ୟ ପରିବର୍ତ୍ତନ କରାଗଲା ଓ ପରିବର୍ତ୍ତିତ ଶିକ୍ଷାନୀତି ଓ କାର୍ଯ୍ୟକ୍ରମ ରୂପାୟନ ପ୍ରକାଶ କରାଗଲା । ଏଥିରେ ପ୍ରତ୍ୟେକ ରାଜ୍ୟ ନିଜର ଆବଶ୍ୟକତା ଅନୁଯାୟୀ ଶିକ୍ଷାନୀତି ପ୍ରଣୟନ କରି ଶିକ୍ଷା ଯୋଜନା ପ୍ରସ୍ତୁତ କରିବାକୁ ନିର୍ଦ୍ଦେଶ ଦିଆଗଲା ।

ଏହି ନିର୍ଦ୍ଦେଶ ଅନୁଯାୟୀ ୧୯୯୩ ମସିହାରେ Orissa State Plan of Action (Elemenary Education) ନାମରେ ଏକ ରିପୋର୍ଟ ପ୍ରସ୍ତୁତ କରାଗଲା । ମୋତେ ଏହି ରିପୋର୍ଟ ପ୍ରସ୍ତୁତି କାର୍ଯ୍ୟରେ ସଂପୃକ୍ତ କରାଯାଇଥିଲା । ଜାତୀୟ ଶିକ୍ଷା କାର୍ଯ୍ୟକ୍ରମ ରୂପାୟନ ଓ ୧୯୯୨ Programme of Action ୧୯୯୩ ଆଧାରରେ ଏହି ରିପୋର୍ଟ ପ୍ରସ୍ତୁତ ହୋଇଛି । ଏଥିରେ ମହିଳାମାନଙ୍କ ଶିକ୍ଷା , ତଫସିଲ୍ ଭୁକ୍ତ ଜାତି ଓ ଉପଜାତିମାନଙ୍କ ଶିକ୍ଷା, ସଂଖ୍ୟା ନ୍ୟୁନମାନଙ୍କ ଶିକ୍ଷା, ଭିନ୍ନକ୍ଷମମାନଙ୍କ ଶିକ୍ଷା, ଶିଶୁମାନଙ୍କ ଯନ୍ ଓ ଶିକ୍ଷା (Early Childhood Care and Education), ପ୍ରାଥମିକ ଶିକ୍ଷା , ମୁକ୍ତ ଶିକ୍ଷା, ଶାରୀରିକ ଶିକ୍ଷା, ଶିକ୍ଷକ ତାଲିମ୍, ମୂଲ୍ୟାୟନ ପଦ୍ଧତିର ସଂସ୍କାର ଓ ଶିକ୍ଷା ପରିଚାଳନା (Management of Education) ଆଦି ବିଷୟରେ ଆଲୋଚନା କରାଯାଇ ଉନ୍ନୟନ ପାଇଁ ସୂଚନା ଦିଆଯାଇଛି । ଓଡିଶାର ଆବଶ୍ୟକତା ଅନୁଯାୟୀ କାର୍ଯ୍ୟକ୍ରମ ନିର୍ଦ୍ଦେଶ କରାଯାଇଛି । ସର୍ବୋପରି ଶିକ୍ଷା ପରିଚାଳନାରେ ସଂସ୍କାର ଉପରେ ଅଧିକ ଗୁରୁତ୍ୱ ଦିଆଯାଇ ଆମୂଳଚୂଳ ପରିବର୍ତ୍ତନ ପାଇଁ ସୁପାରିଶ କରାଯାଇଛି ।

ବର୍ତ୍ତମାନର ସ୍କୁଲ ଇନିସ୍ପେକ୍ଟରମାନଙ୍କୁ Dirstrict Education Officer (DEO) ଜିଲ୍ଲା ଶିକ୍ଷାଧିକାରୀ, ଡି.ଆଇମାନଙ୍କୁ Additional DEO ଅତିରିକ୍ତ ଜିଲ୍ଲା ଶିକ୍ଷାଧିକାରୀ, ନାମରେ ନାମିତ କରି ସେମାନଙ୍କ ଅଫିସକୁ ଅଧିକ ଲୋକଶକ୍ତି ଯୋଗାଇ ଅଧିକ କ୍ରିୟାଶୀଳ କରିବାକୁ ସୂଚନା ଦିଆଯାଇଛି । ପ୍ରାଥମିକ ବିଦ୍ୟାଳୟ ପରିଦର୍ଶନକୁ ଅଧିକ ସଫଳ କରିବା ପାଇଁ ସ୍କୁଲ ସବ୍ଇନିସ୍ପେକ୍ଟରମାନଙ୍କୁ ଗୋଷ୍ଠୀ

ଉନ୍ନୟନ ବ୍ଲକ୍‌ରୁ ପ୍ରତ୍ୟାହାର କରି ଶିକ୍ଷା ବିଭାଗ ଅଧୀନରେ ଅବସ୍ଥାପିତ କରିବାକୁ ଓ ପ୍ରତ୍ୟେକ ସବ୍‌ଇନିସ୍ପେକ୍ଟରଙ୍କୁ ୩ ଗୋଟି ଗ୍ରାମ ପଞ୍ଚାୟତ ଦାୟିତ୍ୱରେ ରଖାଯିବାକୁ ବ୍ୟବସ୍ଥା କରାଯାଇଛି । ପ୍ରାଥମିକ ଶିକ୍ଷାର ଗୁଣାତ୍ମକ ଉନ୍ନତି ପାଇଁ ପ୍ରାଥମିକ ଶିକ୍ଷା ପରିଷଦ (Primary Education Council) ଗଠନ କରିବାକୁ ସୂଚନା ଦିଆ ଯାଇଛି ।

ପ୍ରାଥମିକ ଶିକ୍ଷାର ବିକାଶ ନିମିତ୍ତ ଅନେକଗୁଡ଼ିଏ ବ୍ୟବସ୍ଥା ଏଥିରେ ସ୍ଥାନିତ ହୋଇଥିଲେ ମଧ୍ୟ ଏ ରିପୋର୍ଟକୁ କେହି ଗୁରୁତ୍ୱର ସହିତ ଅଧ୍ୟୟନ କରିଥିବାପରି ମନେ ହୁଏ ନାହିଁ । ୧୯୯୩ ମସିହା ମଧ୍ୟ ଭାଗରେ ଏ ରିପୋର୍ଟ ପ୍ରକାଶିତ ହେଲା । ସେତେବେଳେ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଡକ୍ଟର ଗିରୀଶବାଳା ମହାନ୍ତି ଓ ସ୍କୁଲ ଓ ଗଣଶିକ୍ଷାମନ୍ତ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡେଇ ଯାହାଙ୍କର ଶିକ୍ଷା ବିକାଶ ପ୍ରତି ଆନ୍ତରିକତା ନ ଥିଲା । ପ୍ରାଥମିକ ଶିକ୍ଷା ପରିଚାଳନା କାର୍ଯ୍ୟ ପାଇଁ ସେମାନେ ଚିନ୍ତା କରିନାହାନ୍ତି । ଯଦି ପ୍ରାଥମିକ ଶିକ୍ଷା ବିଭାଗର ସର୍ବୋଚ୍ଚ ସ୍ଥାନରେ ଅବସ୍ଥାପିତ ହାକିମଙ୍କର ଶିକ୍ଷା ପରିଚାଳନାକୁ ସଫଳ କରିବାରେ ଆନ୍ତରିକତା ନାହିଁ ତା'ହେଲେ ଶିକ୍ଷାର ବିକାଶ ହେବ କିପରି ? ସେମାନେ ଏ ରିପୋର୍ଟ ପଢ଼ିଛନ୍ତି କି ନାହିଁ କେଜାଣି ।

## ୧୧.୨ ପ୍ରାଥମିକ ଶିକ୍ଷା ନୀତି ନିର୍ଦ୍ଧାରଣ

ଓଡିଶା ରାଜ୍ୟର ପ୍ରାଥମିକ ଶିକ୍ଷାନୀତି କ'ଣ ? କେଉଁଠାରେ ଲିପିବଦ୍ଧ ଦଲିଲ ନାହିଁ । ୧୯୯୧ ମସିହାରେ ବିଦ୍ୟାଳୟ ମାନଚିତ୍ର ପ୍ରସ୍ତୁତିବେଳେ ପ୍ରାଥମିକ ଶିକ୍ଷାନୀତି ଦରକାର ହେଲା । ସେତେବେଳେ କେତେକ ସାଧାରଣ ନିୟମ ଓ ନୀତି ଯଥା ଗୋଟିଏ ପ୍ରାଥମିକ ସ୍କୁଲକୁ ଆଉ ଗୋଟିଏ ପ୍ରାଥମିକ ସ୍କୁଲର ଦୂରତା କେତେ ହେବ ଓ କେତେ ଜନସଂଖ୍ୟା ଥିଲେ ସ୍କୁଲ ଖୋଲାଯିବ ଇତ୍ୟାଦି । ଏହା ବ୍ୟତୀତ Orissa Education Code ରେ ଯେତିକି ନିୟମ ଓ ଆଇନ୍ ଲିପିବଦ୍ଧ ହୋଇଛି ସେତିକି ସହିତ ପରଂପରାକୁ ଅନୁସରଣ କରି ଶିକ୍ଷାନୁଷ୍ଠାନ ଗୁଡିକ ପରିଚାଳିତ ହେଉଛି । ଓଡିଶାର ସ୍ୱଷ୍ଟ ପ୍ରାଥମିକ ଶିକ୍ଷାନୀତି ନିର୍ଦ୍ଧାରଣ ପାଇଁ ଏକ କମିଟି ଗଠନ କରାଯାଇଥିଲା । ଏହି କମିଟିର ଅଧକ୍ଷ ଥିଲେ ପ୍ରଫେସର ବିଧୁ ଭୂଷଣ ଦାସ ଓ ସଦସ୍ୟ ଥିଲେ ଡକ୍ଟର ଶରତ ଚନ୍ଦ୍ର ଦାଶ । ମୁଁ ଓ ଡକ୍ଟର ଦେବକାନ୍ତ ମିଶ୍ର । ଡକ୍ଟର ନରେନ୍ଦ୍ର ପ୍ରସାଦ ଦାସ ଓ ଡକ୍ଟର ଶ୍ରୀବତ୍ସଲାଞ୍ଛନ ଜେନାଙ୍କୁ ସହଯୋଗୀ ସଭ୍ୟ (Coopted member) ଭାବରେ

ନିଆ ଯାଇଥିଲା । ଏହି କମିଟିରେ ଆବାହକ ରହିଲେ ତତ୍କାଳୀନ SCERT ନିର୍ଦ୍ଦେଶକ ଡକ୍ଟର କାଳିକୁମାର ଦାସ । ଡକ୍ଟର ଦେବକାନ୍ତ ମିଶ୍ର ସରକାରୀ କାର୍ଯ୍ୟରୁ ଅବ୍ୟାହତି ନ ମିଳିବାରୁ ସେ କମିଟିରୁ ଅପସରି ଗଲେ ।

କମିଟି ପ୍ରଶ୍ନାବଳୀ (Questionnaire) ମାଧ୍ୟମରେ ଜନମତ ଓ ଶିକ୍ଷକମାନଙ୍କ ମତ ସଂଗ୍ରହ କରିଥିଲେ । ଶିକ୍ଷକ ସଂଘମାନଙ୍କର ମତ ମଧ୍ୟ ସଂଗ୍ରହ କରାଯାଇଥଲା । ଶିକ୍ଷକ ମହାସଂଘ ମହାସଚିବ ଅବନୀ କୁମାର ବରାଳ ସକ୍ରିୟ ଭାବରେ ସହଯୋଗ କରିଥିଲେ । ପ୍ରଶ୍ନାବଳୀ ଛପାଇବା ଓ୍ ଶିକ୍ଷା ବିଭାଗର କ୍ଷେତ୍ରିୟ କର୍ମଚାରୀଙ୍କ ମାଧ୍ୟମରେ ପ୍ରଶ୍ନାବଳୀ ବଣ୍ଟନ, ଶିକ୍ଷକ ତଥା ସାଧାରଣ ଲୋକଙ୍କର ମତ ସଂଗ୍ରହ କାର୍ଯ୍ୟ ମୁଖ୍ୟତଃ ମୁଁ ଓ ଡକ୍ଟର କାଳିକୁମାର ଦାସ କରୁଥିଲୁ । ମତାମତ ମିଳିବା ପରେ ତା'ର ସଜ୍ଜିକରଣ ଓ ବିଶ୍ଳେଷଣ ମଧ୍ୟ ଆମେ ଦୁଇଜଣ କରୁଥିଲୁ ।

ପ୍ରାଥମିକ ଶିକ୍ଷାନୀତି ନିର୍ଦ୍ଧାରଣ କମିଟି ଏକ ଗୋଷ୍ଠୀ ବିଦ୍ୟାଳୟ (Community School) ପରିକଳ୍ପନା କରିଛନ୍ତି । ଗ୍ରାମୀଣ ଅର୍ଥନୈତିକ ବିକାଶ ପ୍ରକ୍ରିୟା ସହିତ ପ୍ରାଥମିକ ଶିକ୍ଷାକୁ କିପରି ଗ୍ରାମ ସ୍ତରରେ ସମନ୍ୱିତ କରାଯିବ ସେ ବିଷୟରେ ଚିନ୍ତା କରାଯାଇଛି । ଗ୍ରାମ ବିକାଶ ପାଇଁ ବହୁ ସରକାରୀ କାର୍ଯ୍ୟକ୍ରମ ରହିଛି । ବିକାଶର ବାର୍ତ୍ତା ଲୋକଙ୍କ ପାଖରେ ପହଞ୍ଚାଇବା ପାଇଁ ଗ୍ରାମ ସେବକ, କୃଷି ସେବକ, ଧାଈ ପ୍ରଭୃତି ନିଯୁକ୍ତ ହୋଇଛନ୍ତି ସତ କିନ୍ତୁ ସେମାନେ ଲୋକମାନଙ୍କ ଆବଶ୍ୟକତା ମତେ ସେମାନଙ୍କୁ ପରାମର୍ଶ ଦେବାକୁ ମିଳନ୍ତି ନାହିଁ ।

ଆମର ସାଂପ୍ରତିକ ବିଦ୍ୟାଳୟଗୁଡିକ ସମାଜ ଓ ଗୋଷ୍ଠୀଠାରୁ ଏକ ପ୍ରକାର ବିଛିନ୍ନ ହୋଇ କାର୍ଯ୍ୟ କରୁଛନ୍ତି । ଆମର ପାଠ୍ୟକ୍ରମ ଜୀବନ ସହିତ, ସମାଜ ସହିତ ଗୋଷ୍ଠୀ ସହିତ ସଂପୃକ୍ତ ନୁହେଁ । ଆମ ପାଠ୍ୟକ୍ରମରେ ଗୋଷ୍ଠୀ ଜୀବନ ପ୍ରତିଫଳିତ ହୋଇନାହିଁ । ଓଡିଶାର ଜନସଂଖ୍ୟାର ଶତକଡା ୮୫ ଭାଗ ଗ୍ରାମାଞ୍ଚଳରେ ବାସ କରନ୍ତି । ସେମାନେ କୃଷି, ପଶୁପାଳନ, ମତ୍ସ୍ୟପାଳନ ଓ ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ ଉପରେ ନିର୍ଭର କରନ୍ତି । ଏବେ ଉନ୍ନତ ଧରଣର କୃଷି ଉତ୍ପାଦନ, ପଶୁପାଳନ, ମତ୍ସ୍ୟପାଳନ କରାଗଲାଣି । ସେ ବିଷୟରେ ଆମ ଲୋକମାନେ କିଛି ଜାଣୁଛନ୍ତି ? ତାଙ୍କୁ ଜଣାଇବାର ବ୍ୟବସ୍ଥା ଆମ ପାଠ୍ୟକ୍ରମରେ ନାହିଁ । ଲୋକଙ୍କର ଆଶା, ଆକାଂକ୍ଷା ଆମ ଶିକ୍ଷାରେ ପ୍ରତିଫଳିତ ହୋଇନାହିଁ । ଜୀବନ ଧାରଣ ମାନବୃଦ୍ଧି ପାଇଁ ଆବଶ୍ୟକ ଉତ୍ପାଦିକତା ବଢାଇବାର ଜ୍ଞାନ ଓ

କୌଶଳ ଆମ ସ୍କୁଲରେ ଶିକ୍ଷା ଦିଆ ଯାଏ ନାହିଁ । ଶିକ୍ଷା ପାଉଥିବା ପିଲା ତାଙ୍କର ସଂସ୍କୃତିଠାରୁ ଦୂରେଇ ଯାଉଛନ୍ତି । ବିଦ୍ୟାଳୟରେ ଆହୃତ ଜ୍ଞାନ କେବଳ ସାକ୍ଷରତା ଓ ସଂଖ୍ୟା ଗଣନାରେ ସୀମିତ । ଆମ ପ୍ରବର୍ତ୍ତିତ ସାର୍ବଜନୀନ ପ୍ରାଥମିକ ଶିକ୍ଷା ବଞ୍ଚିତ ଓ ଦୁର୍ବଳ ଶ୍ରେଣୀ ଲୋକଙ୍କର ଜୀବନ ଧାରଣ ପ୍ରକ୍ରିୟାକୁ ଉନ୍ନତ କରିବାକୁ ଉଦ୍ଦିଷ୍ଟ ନୁହେଁ । ଏଇଥିପାଇଁ ଏ ଶିକ୍ଷା ପ୍ରତି ସାଧାରଣ ଲୋକେ ଆକୃଷ୍ଟ ହେଉନାହାନ୍ତି । .

ସେଥିପାଇଁ ଏକ ବିକଳ୍ପ ନମୁନା ବିଦ୍ୟାଳୟର ପରିକଳ୍ପନା କରାଯାଇଛି । ଏହି ନମୁନା ମହାତ୍ମାଗାନ୍ଧୀ ଓ ଜୟପ୍ରକାଶ ନାରାୟଣଙ୍କ ପରିକଳ୍ପିତ ଗୋଷ୍ଠୀ - କୈନ୍ଦ୍ରିକ ବିଦ୍ୟାଳୟଠାରୁ ଭିନ୍ନ ନୁହେଁ । ପରିବେଶ ସହିତ ଖାପଖୁଆଇ ଲୋକଙ୍କ ଜୀବନ ଧାରଣ ପ୍ରକ୍ରିୟାକୁ ବିଚାରକୁ ନେଇ ଏହି ବିଦ୍ୟାଳୟର ରୂପରେଖ ନିର୍ଣ୍ଣିତ ହେବ । ଗୋଷ୍ଠୀ ବିଦ୍ୟାଳୟରେ ଭାଷା ଓ ଗଣିତ ଶିକ୍ଷା ସହିତ ସାମାଜିକ ଶିକ୍ଷା, ସାଧାରଣ ବିଜ୍ଞାନ ଶିକ୍ଷା ଦିଆଯିବ । ତା ସହିତ ପ୍ରାକ୍ ଧନ୍ଦାମୂଳକ ବିଷୟର କୌଶଳ ଶିକ୍ଷା ଦିଆଯାଇ ପିଲାଙ୍କୁ ଭବିଷ୍ୟତରେ ରୋଜଗାରକ୍ଷମ କରିବାକୁ ଉଦ୍ୟମ କରାଯିବ । କୃଷି, ଉଦ୍ୟାନ ବିଦ୍ୟା, ସାମାଜିକ ବନୀକରଣ, ଗୋପାଳନ, ମତ୍ସ୍ୟପାଳନ, କୁକୁଡା ପାଳନ, ବତକ ପାଳନ, ଫୁଲ ଚାଷ, ମଠା ଓ ସିଲ୍କ ଚାଷ (Seri Culture), ଛତୁଚାଷ, ମହୁଚାଷ ଇତ୍ୟାଦି ବିଷୟରେ ପ୍ରାରମ୍ଭିକ ଜ୍ଞାନ ପିଲାମାନଙ୍କୁ ଦିଆଯିବ । ଇଟା କାମ, ପଥର କାମ, ବଢେଇକାମ ସହିତ ସାଇକେଲ ମରାମତି, ରେଡିଓ ଓ ଟେଲିଭିଜନ୍ ମରାମତି, ସିଲେଇ ମେସିନ୍ ଚଳାଇବା ଓ ମରାମତି କରିବା ଆଦି ଶିକ୍ଷା ଦେବା ପାଇଁ ମଧ ବ୍ୟବସ୍ଥା କରାଯାଇ ପାରିବ । ସ୍ଥାନୀୟ ଲୋକଙ୍କର ଚାହିଦା ମୁତାବକ ପିଲାମାନଙ୍କୁ ପାଠ ସହିତ ଯେ କୌଣସି କାମ ଶିଖାଇବାର ବନ୍ଦୋବସ୍ତ କରାଯିବ । ସ୍ଥାନୀୟ ଚାଷୀ , ବଢେଇ, ରାଜମିସ୍ତ୍ରୀ ମାନଙ୍କୁ ସ୍କୁଲକୁ ଡକାଇ ତାଙ୍କ ଠାରୁ ବିଦ୍ୟା ଶିକ୍ଷା କରାଯାଇ ପାରିବ ।

ପ୍ରତି ସ୍କୁଲରେ ଗୋଟିଏ ଗୋଷ୍ଠୀ କେନ୍ଦ୍ର ରହିବ ଓ ସେଥିରେ ଜଣେ ଗୋଷ୍ଠୀ କେନ୍ଦ୍ର ପରିଚାଳକ ରହିବେ । ଗ୍ରାମବାସୀମାନଙ୍କର ଯାହା ସେବା ଦରକାର ପରିଚାଳକ ସେ ସେବାର ବ୍ୟବସ୍ଥା କରିବେ । ସରକାରଙ୍କର ଓ ବେସରକାରୀ ସଂସ୍ଥାମାନଙ୍କର ସମାଜ ସେବୀମାନେ ଏହି ଗୋଷ୍ଠୀକେନ୍ଦ୍ର ସହିତ ସଂପର୍କ ରଖିବେ । ସରକାରଙ୍କର ଗ୍ରାମ ସେବକ, କୃଷି ସେବକ, ଧାଈ ଅଙ୍ଗନବାଡି କର୍ମୀ ସମସ୍ତଙ୍କ ସହିତ ଗୋଷ୍ଠୀ କେନ୍ଦ୍ର ସଂପର୍କ ରଖିବ ଓ ଯଥା ସମୟରେ ସେମାନଙ୍କର ସେବା

ଗ୍ରାମବାସୀମାନଙ୍କୁ ଉପଲବ୍ଧ କରାଇବ । ଲୋକମାନେ ନିଜ ଗାଁ ସ୍କୁଲ ଓ ଗୋଷ୍ଠୀ କେନ୍ଦ୍ରର ସେବା ପାଇଲେ ବୁଝିପାରିବେ ଯେ ସ୍କୁଲର ଆବଶ୍ୟକତା କେତେ ଓ ନିଜ ପିଲାଙ୍କୁ ସ୍କୁଲକୁ ପଠାଇବାରେ କଦାପି ଅବହେଳା କରିବେ ନାହିଁ ।

ଭଲ ମଣିଷ ସୃଷ୍ଟି କରିବାପାଇଁ ପିଲାମାନଙ୍କୁ ଆତ୍ମ-ସଂଯମ, ତ୍ୟାଗ, ଦୟା, କ୍ଷମା, ସହାନୁଭୂତି ଆଦି ଗୁଣର ଅଭିବୃଦ୍ଧି ପାଇଁ ସ୍ୱତନ୍ତ୍ର ଦୃଷ୍ଟି ଦିଆଯିବ । ସ୍ଥାନୀୟ ଚଳଣି ଓ ସଂସ୍କୃତି ବିଷୟରେ ପିଲାମାନଙ୍କୁ ଅବହିତ କରାଯିବ । ସଂଗୀତ, ନୃତ୍ୟ, ନାଟକାଭିନୟ ଆଦି ସାଂସ୍କୃତିକ କାର୍ଯ୍ୟକ୍ରମରେ ପ୍ରତ୍ୟେକ ପିଲା ଅଂଶ ଗ୍ରହଣ କରିବେ । ସାମାଜିକ ଓ ଅର୍ଥନୈତିକ କାର୍ଯ୍ୟକ୍ରମରେ ପିଲାମାନେ ସକ୍ରିୟ ଅଂଶ ଗ୍ରହଣ କରିବେ । ସମାଜରେ ଉନ୍ନତ ମାନର ଜୀବନଯାପନ କରିବାକୁ ହେଲେ ପ୍ରତ୍ୟେକ ପିଲା ନିଜକୁ ଆରମ୍ଭରୁ ହିଁ ପ୍ରସ୍ତୁତ କରିବେ ।

ଏପରି ଏକ ସ୍କୁଲରେ ଶିକ୍ଷକ ହେବାପାଇଁ ଯେଉଁ ତାଲିମ ଆବଶ୍ୟକ ଆମ ରାଜ୍ୟରେ ସେ ପ୍ରକାର ତାଲିମ ବ୍ୟବସ୍ଥା ନାହିଁ । ଶିକ୍ଷକମାନଙ୍କର ସର୍ବନିମ୍ନ ଯୋଗ୍ୟତା ତାଲିମ୍ ପ୍ରାପ୍ତ ସ୍ନାତକ ହେବା ସେମାନଙ୍କ ପାଇଁ ଦୁଇ ବର୍ଷିଆ ବି.ଏଡ୍ (ଏଲିମେଣ୍ଟାରୀ) ତାଲିମ୍ ବ୍ୟବସ୍ଥା କରାଯିବ । ସେ ତାଲିମ୍‌ରେ ଗୋଷ୍ଠୀ ବିଦ୍ୟାଳୟ ପରିଚାଳନା ସମ୍ବନ୍ଧରେ ସ୍ୱତନ୍ତ୍ର ତାଲିମ ଦିଆଯିବ । ଗୋଷ୍ଠୀର ନେତୃତ୍ୱ ନେବା ପାଇଁ ଯାହା ଦରକାର ତାଲିମରେ ସେ ସବୁ ଶିକ୍ଷା ଦିଆଯିବ ।

ଗୋଷ୍ଠୀ କୈନ୍ଦ୍ରିକ ପ୍ରାଥମିକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଚବିଶ ଘଣ୍ଟା ବିଦ୍ୟାଳୟ ହତା ମଧ୍ୟରେ ଉପଲବ୍ଧ ହେବା ଦରକାର । କେତେବେଳେ କାହାର କ'ଣ ଦରକାର ହେବ, ତାକୁ ସାହାଯ୍ୟ କରିବା ପାଇଁ ଶିକ୍ଷକ ଥିବା ଦରକାର । ତେଣୁ ତାଙ୍କୁ ପରିବାର ସହ ରହିବାପାଇଁ ଘର ଯୋଗାଇ ଦିଆଯିବ । କୃଷି, ସ୍ୱାସ୍ଥ୍ୟ, କୁଟୀର ଶିଳ୍ପ ବା ଗୋରୁଗାଈଙ୍କ ସମ୍ବନ୍ଧୀୟ ଅସୁବିଧା ଦୂର କରିବା ପାଇଁ ପ୍ରଧାନ ଶିକ୍ଷକ ଆଶୁ କାର୍ଯ୍ୟାନୁଷ୍ଠାନ କରିବେ । ସେ ହୋମିଓପାଥି ଓ ଅନ୍ୟ ଟୁଟୁକା ଔଷଧ ବିଷୟରେ ଶିକ୍ଷା କରିବା ନିହାତି ଦରକାର । ହଠାତ୍ କାହାର କ'ଣ ଦେହ ଖରାପହେଲେ ସାହାଯ୍ୟ କରିପାରିବେ ।

ପ୍ରଧାନଶିକ୍ଷକଙ୍କର ପ୍ରଧାନ କାମ ହେଲା ସାମାଜିକ, ଅର୍ଥନୈତିକ, ସାଂସ୍କୃତିକ ବିକାଶ ମୂଳକ ଓ ଶୈକ୍ଷିକ କାର୍ଯ୍ୟର ସମୀକରଣ ଓ ନିୟନ୍ତ୍ରଣ । ଗୋଷ୍ଠୀ ଓ ବିଦ୍ୟାଳୟ ପରସ୍ପରକୁ ସାହାଯ୍ୟ କରିବେ । ସେଥିପାଇଁ ସାମାଜିକ ଉତ୍ସବରେ ସ୍କୁଲର ଶିକ୍ଷକ ଓ ପିଲାମାନେ ଭାଗ ନେବେ ଓ ସ୍କୁଲର ଗଣେଶ ପୂଜା, ସରସ୍ୱତୀ

ପୂଜା, ବିଶ୍ୱକର୍ମା ପୂଜା ଓ ଅନ୍ୟାନ୍ୟ କାର୍ଯ୍ୟକ୍ରମରେ ଗୋଷ୍ଠୀର ନେତାମାନେ ଭାଗ ନେବେ ।

ବର୍ତ୍ତମାନ ଯେପରି ସରକାର ଛୁଟି ତାଲିକା ସବୁ ସ୍କୁଲ ପାଇଁ ଘୋଷଣା କରି ଦେଉଛନ୍ତି । ଗୋଷ୍ଠୀ-କୈନ୍ଦ୍ରିକ ବିଦ୍ୟାଳୟରେ ସେପରି ହେବ ନାହିଁ । ଗୋଷ୍ଠୀର ଆବଶ୍ୟକତା ଅନୁଯାୟୀ ଛୁଟି ହେବ । ଗୋଷ୍ଠୀର ବିଭିନ୍ନ ପର୍ବ ପର୍ବାଣୀ, ଉତ୍ସବ ଦିବସ ଗୁଡିକ ଛୁଟି କରାଯାଇପାରେ । କିନ୍ତୁ ଗୋଷ୍ଠୀ କାର୍ଯ୍ୟକ୍ରମରେ ବିଦ୍ୟାଳୟ ଅଂଶ ଗ୍ରହଣ କରିବ । ଶିକ୍ଷାବର୍ଷ ଏପ୍ରିଲ ମାସରୁ ଆରମ୍ଭ ହୋଇ ମାର୍ଚ୍ଚ ମାସରେ ଶେଷ ହେବ । ଜୁଲାଇ ମାସରେ ଶିକ୍ଷାବର୍ଷ ଆରମ୍ଭ ହେବାର କୌଣସି କାରଣ ନାହିଁ ।

ଶିକ୍ଷାର ଗୁଣାତ୍ମକ ଉନ୍ନତି ପାଇଁ ଏକ ପ୍ରାଇମେରୀ ଶିକ୍ଷାବୋର୍ଡ ଗଠନ କରିବା ପ୍ରସ୍ତବ କମିଟି ଦେଇଛନ୍ତି । ତା ସହିତ ନୂଆ ପାଠ୍ୟକ୍ରମ ପ୍ରସ୍ତୁତି, ମୂଲ୍ୟାୟନ ପଦ୍ଧତିରେ ପରିବର୍ତ୍ତନ, ଅନୁଷ୍ଠାନ ପରିଚାଳନା ଆଦି ବିଷୟରେ ମଧ୍ୟ ସୁପାରିଶ କରାଯାଇଛି ।

ମୁଖ୍ୟମନ୍ତ୍ରୀଙ୍କୁ ରିପୋର୍ଟ ପ୍ରଦାନ ବେଳେ ସେ ମୁଖ୍ୟ ସଚିବଙ୍କ ଅଧକ୍ଷତାରେ ଏକ କମିଟି ଗଠନ କରି ଏହି ଶିକ୍ଷାନୀତି କାର୍ଯ୍ୟକାରୀ କରିବାରେ କେତେ ଖର୍ଚ୍ଚ ହେବ ଓ କେଉଁ କେଉଁ ସୁପାରିଶ କାର୍ଯ୍ୟକାରୀ କରାଯାଇ ପାରିବ ତାହା ପରୀକ୍ଷା କରି ସରକାରଙ୍କୁ ରିପୋର୍ଟ ଦେବାପାଇଁ ଆଦେଶ ଦେଲେ । ଏହି କମିଟିର ଆବାହାକ SCERT ନିର୍ଦ୍ଦେଶକ ରହିଲେ । ଡକ୍ଟର କାଳିକୁମାର ଦାସ ନିର୍ଦ୍ଦେଶକ ଥିବା ପର୍ଯ୍ୟନ୍ତ ସେ କମିଟି ଡାକି ଆଲୋଚନା ଆରମ୍ଭ କରିଥିଲେ । ସେ ଅବସର ନେବାପରେ ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର ନିର୍ଦ୍ଦେଶକ ଥିଲେ । ସେ କମିଟି ଡାକିବାରେ ମନ ଦେଲେ ନାହିଁ । କାଳିବାବୁ ପ୍ରାଥମିକ ଶିକ୍ଷାନୀତି ନିର୍ଦ୍ଧାରଣ କମିଟିର ଆବାହକ ଥିଲେ । ତେଣୁ ସେ କମିଟି ଡାକି ନିର୍ଦ୍ଧାରିତ ନୀତି କାର୍ଯ୍ୟକାରୀ କରିବାରେ ମନ ଦେଇଥିଲେ । ପ୍ରଫୁଲ୍ଲ ବାବୁ ନୀତି ନିର୍ଦ୍ଧାରଣ କମିଟିର ସଦସ୍ୟ ନ ଥିଲେ । କମିଟିର ସୁପାରିଶ୍ କାର୍ଯ୍ୟକାରୀ ହେଲେ ତାଙ୍କର ଲାଭ କ'ଣ ? ବିଧୁ ଭୂଷଣ ଦାସ କମିଟିର ସଦସ୍ୟମାନେ ସୁନାମ ନେବେ ଯଦି ଶିକ୍ଷାନୀତି କାର୍ଯ୍ୟକାରୀ ହୁଏ । ତେଣୁ ସେ ମନ ନ ଦେବା ସ୍ୱାଭାବିକ୍ । ରାଜ୍ୟର ଲାଭ କଥା ପଚାରେ କିଏ ?

ପ୍ରାଥମିକ ଶିକ୍ଷା ନୀତି ରିପୋର୍ଟ ଛପାଇବା ପାଇଁ ୟୁନିସେଫକୁ SCERT ନିର୍ଦ୍ଦେଶକ ଗୋଟିଏ ପ୍ରସ୍ତାବ ଦେଲେ ସେମାନେ ଛପାଇବା ପାଇଁ ରାଜି ହେଲେ। ମୁଁ ପ୍ରଫୁଲ୍ଲବାବୁଙ୍କୁ ବହୁବାର କହିଲି ପ୍ରସ୍ତାବ ଦେବା ପାଇଁ କିନ୍ତୁ ସେ ଦେଲେ ନାହିଁ। ତାଙ୍କ ପରେ SCERT ନିର୍ଦ୍ଦେଶକ ହେଲେ ଶ୍ରୀବସ୍ତ୍ର ଲାଞ୍ଛନ ଜେନା । ତାଙ୍କୁ ମଧ୍ୟ କେତେଥର କହିଲି ୟୁନିସେଫଙ୍କୁ ପ୍ରସ୍ତାବ ଦେବାପାଇଁ ତେବେ ଶ୍ରୀବସ୍ତ୍ର ବାବୁ ଅବସର ନେବାର ୧୫ ଦିନ ପୂର୍ବରୁ ପ୍ରସ୍ତାବ ଦେଲେ ଓ ସରକାରଙ୍କୁ ରିପୋର୍ଟ ଦେବାର ୭ ବର୍ଷ ପରେ ଛପା ହେଲା ।

ଓଡିଶାର ପ୍ରାଥମିକ ଶିକ୍ଷାନୀତି ବିଷୟରେ ଇଂରାଜି ଖବରକାଗଜରେ ବାହାରିଲା । ସୁପାରିଶ ଗୁଡିକର ମୁଖ୍ୟ ଅଂଶ ଖବରକାଗଜରୁ ଦେଖି ପଶ୍ଚିମବଙ୍ଗ ଶିକ୍ଷାମନ୍ତ୍ରୀ ରିପୋର୍ଟର ଗୋଟିଏ Copy ପଠାଇବା ପାଇଁ ଅନୁରୋଧ କଲେ । ଆମଠାରୁ ରିପୋର୍ଟ ନେଇ ସେମାନେ କାର୍ଯ୍ୟକାରୀ କଲେ । ଓଡିଶାରେ ତାହା କାର୍ଯ୍ୟକାରୀ ହେଲା ନାହିଁ । ମଝିରେ ଥରେ SCERT ନିର୍ଦ୍ଦେଶକ ପ୍ରଫୁଲ୍ଲବାବୁଙ୍କୁ ସରକାର କଲିକତା ପଠାଇଥିଲେ ତାଙ୍କ ପ୍ରାଥମିକ ଶିକ୍ଷା ବୋର୍ଡ ଗଠନ ଓ ତାର କାର୍ଯ୍ୟ ପରିସର ଓ ଧାରା ବିଷୟରେ ତଥ୍ୟ ଆଣିବାକୁ । ସେ ଆଣିଥିଲେ । ତା ପରେ କ'ଣ ହେଲା କିଛି ଜଣା ନାହିଁ । ଏତିକି ଜଣା ଅଛି ଯେ ଆମ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ କିଛି ପ୍ରୟୋଗ ହୋଇନାହିଁ । ଏହାହିଁ ଓଡିଶାର ଭାଗ୍ୟ ।



## ଦ୍ୱାଦଶ ଅଧ୍ୟାୟ

# ଜନ ବିଜ୍ଞାନ ଆନ୍ଦୋଳନ

## (People's Science Movements)

୧୯୮୭ ମସିହା ଭୋପାଳ ଗ୍ୟାସ ଦୁର୍ଘଟଣାରେ ପ୍ରାୟ ୩୦୦୦ ଲୋକ ପ୍ରାଣ ହରାଇଲେ ଓ ପ୍ରାୟ ଏକ ଲକ୍ଷ ଲୋକ ନାନା ପ୍ରକାର ରୋଗର ଶିକାର ହେଲେ । ଆମେରିକାର ୟୁନିୟନ କାର୍ବାଇଡ୍ (Union Carbide) କମ୍ପାନୀ ଦୁର୍ଘଟଣା ପରେ ନିଜ ଦେଶକୁ ଚାଲିଗଲା । ଗ୍ୟାସ ଦୁର୍ଘଟଣାର ଲୋମ ହର୍ଷଣକାରୀ ଦୃଶ୍ୟ ବହୁ ଲୋକଙ୍କୁ ବ୍ୟଥିତ କଲା । ଏ ଦେଶର ବୁଦ୍ଧିଜୀବୀ ଓ ବୈଜ୍ଞାନିକମାନେ ତଥା ସରକାର ଚିନ୍ତାକଲେ ଯେ ସାଧାରଣ ଲୋକଙ୍କୁ ବିଜ୍ଞାନ ବିଷୟରେ ସଚେତନ ନ କଲେ ବାରମ୍ବାର ଏହିଭଳି ଦୁର୍ଘଟଣା ଘଟିବ ଓ ଅସଂଖ୍ୟ ଜନକ୍ଷୟ ହେବ । ସେଇ ବର୍ଷ ଭାରତର ପାଞ୍ଚଗୋଟି ପ୍ରାନ୍ତରୁ ଯାଥା ବାହାରି ଭୋପାଳରେ ମିଳିତ ହୋଇଥିଲେ । ସ୍ୱେଚ୍ଛାକୃତ ଭାବେ ଲୋକମାନେ ଏ ଯାଥାରେ ସାମିଲ ହୋଇ ହଜାର ହଜାର ସଂଖ୍ୟାରେ ଯାଇ ଭୋପାଳରେ ପହଞ୍ଚିଲେ । ଏ ଦୁର୍ଘଟଣା ସରକାରଙ୍କର ଆଖି ଖୋଲିଦେଲା । ଭାରତ ସରକାରଙ୍କର ବିଜ୍ଞାନ ଓ କାରିଗରି ବିଭାଗ ପ୍ରତି ଏହା ଏକ ଆହ୍ୱାନ ହେଲା ।

୧୯୯୧ ମସିହା ସେପ୍ଟେମ୍ବର ମାସ ୨୪-୨୬ ତାରିଖ ତିନିଦିନ ଧରି ଭାରତ ସରକାରଙ୍କ ବିଜ୍ଞାନ ଓ କାରିଗରି ବିଭାଗ ସମ୍ମିଳନୀ କକ୍ଷରେ ପ୍ରତ୍ୟେକ ରାଜ୍ୟର କେତେକ ସ୍ୱେଚ୍ଛାସେବୀ ଅନୁଷ୍ଠାନର ପ୍ରତିନିଧିମାନଙ୍କୁ ନେଇ ଗୋଟିଏ ପରାମର୍ଶଦାତା ସଭା ଅନୁଷ୍ଠିତ ହୋଇଥିଲା । ସେଥିରେ ଜାତୀୟ ସ୍ତରରେ ଦ୍ୱିତୀୟ ଭାରତ ଜନବିଜ୍ଞାନ ଯାଥା ପାଇଁ ନିମ୍ନଲିଖିତ ଐତିହାସିକ ନିଷ୍ପତ୍ତି ନିଆଯାଇଥିଲା ।:-

(୧) ୧୯୯୨ ଭାରତ ଜନ ବିଜ୍ଞାନ ଯାଥା-୨ ଅକ୍ଟୋବର ୦୨ତାରିଖ (ଗାନ୍ଧୀ ଜୟନ୍ତୀ) ଠାରୁ ଆରମ୍ଭ ହୋଇ ୦୭ ନଭେମ୍ବର ୧୯୯୨

(ସାର୍ ସି.ଭି.ରମଣ ଜୟନ୍ତୀ)ଦିନ ଶେଷ ହେବ । ପ୍ରାକ୍ ଯାଥା କାର୍ଯ୍ୟକ୍ରମ ୧୫ ଅଗଷ୍ଟ (ସ୍ୱାଧୀନତା ଦିବସ) ଠାରୁ ଆରମ୍ଭ ହେବ ଓ ଯାଥା ପର କାର୍ଯ୍ୟକ୍ରମ ୨୮ ଫେବୃୟାରୀ, ୧୯୯୩ରେ ଶେଷ ହେବ । କିନ୍ତୁ ବିଜ୍ଞାନବାର୍ତ୍ତା ପ୍ରଚାର କାର୍ଯ୍ୟ ଚାଲୁ ରହିବ ।

(୨) ମୁଖ୍ୟ ଯାଥା କାର୍ଯ୍ୟକ୍ରମ ୫୦,୦୦୦ ଗୋଟି ସ୍ଥାନରେ ଅନୁଷ୍ଠିତ ହେବ, ପ୍ରତ୍ୟେକ ରାଜ୍ୟରେ ପ୍ରାୟ ୧୦୦୦ ଗୋଟି ସ୍ଥାନରେ କାର୍ଯ୍ୟକ୍ରମ ଅନୁଷ୍ଠିତ ହେବ ।

(୩) ଯେଉଁ ସଂଗଠନମାନେ ଯାଥା କାର୍ଯ୍ୟକ୍ରମରେ ନିୟୋଜିତ ହେବେ, ସେ ଗୁଡିକ

(କ) ଜାତୀୟ ସ୍ତରରେ ଜାତୀୟ ସଂଗଠନ କମିଟି
(ଖ) ରଜ୍ୟ ସ୍ତରରେ ରାଜ୍ୟ ସଂଗଠନ କମିଟି
(ଗ) ଜିଲ୍ଲା ସ୍ତରରେ ଜିଲ୍ଲା ସଂଗଠନ କମିଟି
(ଘ) ଆବଶ୍ୟକ ସ୍ଥଳେ ଆଞ୍ଚଳିକ ସଂଗଠନମାନ ଗଢାଯିବ
(ଡ) ପ୍ରତ୍ୟେକ ଜିଲ୍ଲା କମିଟି ଅନ୍ୟୁନ ୧୦୦ ଗୋଟି ସ୍ଥାନରେ ଯାଥା କାର୍ଯ୍ୟକ୍ରମ ଆୟୋଜନ କରିବେ ।

(୪) ସର୍ବସମ୍ମତି କ୍ରମେ ପ୍ରଫେସର ଯଶପାଲଙ୍କୁ ଜାତୀୟ ସଂଗଠନ କମିଟିର ସଭାପତି ଭାବେ ନିର୍ବାଚିତ କରାଗଲା ।

(୫) କେନ୍ଦ୍ରୀୟ କାର୍ଯ୍ୟକାରୀଣୀ କମିଟିକୁ ନିମ୍ନଲିଖିତ ସଦସ୍ୟାମାନେ ନିର୍ବାଚିତ ହେଲେ ।

ଶ୍ରୀ ଆର.ଏସ. ରଘୁବଂଶୀ — ଶ୍ରୀ ଦୀପକ ଦାନ
ଶ୍ରୀ ଏସ୍. ଗୋପାଳକ୍ରିଷ୍ଣା — ଶ୍ରୀ ସୁରେନ୍ଦ୍ର ଜୈନ
ଡକ୍ଟର କି. ଶ୍ରୀବାସ୍ତବା — ଡକ୍ଟର ପୂର୍ଣ୍ଣଚନ୍ଦ୍ର ରାଉତ
ଡକ୍ଟର ମନମୋହନ ସିଂ — ଶ୍ରୀ ସୌମ୍ୟ ଦତ୍ତ
ଶ୍ରୀ କେ. ଏମ୍. ଏସ୍. ରାଓ

ଅନୁରୂପ ଭାବେ ରାଜ୍ୟ ସ୍ତରରେ ପରାମର୍ଶଦାତା କମିଟି ଡକାଯାଇ ରାଜ୍ୟ ସଂଗଠନ କମିଟି ଗଠନ କରାଯିବାକୁ ସ୍ଥିର ହେଲା । ଜିଲ୍ଲା ସ୍ତରରେ ମଧ୍ୟ ଜିଲ୍ଲା କମିଟି ଗଠନ କରିବା ପାଇଁ ନିଷ୍ପତ୍ତି ନିଆଗଲା ।

ରାଜ୍ୟସ୍ତରରେ ମୁଁ ୨୨/୧୧/୧୯୯୧ ତାରିଖରେ ପରାମର୍ଶଦାତା କମିଟି ଆହ୍ୱାନ କଲି । ଏହି କମିଟି ସୂଚନା ଭବନ (ବର୍ତ୍ତମାନର ଜୟଦେବ ଭବନ) ରେ ଅନୁଷ୍ଠିତ ହେଲା । ଏଥିରେ ରାଜ୍ୟର ପ୍ରମୁଖ ବୈଜ୍ଞାନିକ, ଶିକ୍ଷାବିତ୍, ବିଶ୍ୱବିଦ୍ୟାଳୟ ପ୍ରତିନିଧି, ଗବେଷଣା ଅନୁଷ୍ଠାନର ପ୍ରତିନିଧି, ରାଜ୍ୟ ସରକାରଙ୍କ ବିଜ୍ଞାନ ଓ ପ୍ରଦ୍ୟୋଗିକୀ ବିଭାଗ ଓ ଶିକ୍ଷା ବିଭାଗର ଉଚ୍ଚ ସ୍ତରୀୟ ଅଫିସର ଓ ଅନେକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଯୋଗ ଦେଇଥିଲେ । ଯାଥା ପାଇଁ ନିର୍ଦ୍ଧାରିତ ପାଞ୍ଚଗୋଟି ବିଷୟ ଯଥା :-

(୧) ସ୍ୱାସ୍ଥ୍ୟ,ପୁଷ୍ଟି, ପରିମଳ ଓ ସ୍ୱାସ୍ଥ୍ୟରକ୍ଷା
(୨) ଜଳ - ପାନୀୟ ଜଳ, କୃଷି ପାଇଁ ଜଳସେଚନ ବ୍ୟବସ୍ଥା
(୩) ପରିବେଶ,
(୪) ଅନ୍ଧ ବିଶ୍ୱାସ ଦୂରୀକରଣ ଓ ବୈଜ୍ଞାନିକ ଚିନ୍ତାଧାରର ବିକାଶ
(୫) କୃଷିର ଉନ୍ନତି ଓ ସ୍ଥାନୀୟ ବାଣିଜ୍ୟର ପ୍ରସାର ।

ପ୍ରତ୍ୟେକ କ୍ଷେତ୍ରରେ ଲୋକପ୍ରିୟ କୌଶଳର ପ୍ରୟୋଗ ଉପରେ ଗୁରୁତ୍ୱ ଆରୋପ କରାଗଲା । ପ୍ରତ୍ୟେକ ସ୍ତରରେ ଜନ ସହଯୋଗ ଓ ଲୋକମାନଙ୍କ ଅଂଶ ଗ୍ରହଣ ଉପରେ ଗୁରୁତ୍ୱ ଦିଆଗଲା । ଏହି ଆନ୍ଦୋଳନ ମୁଖ୍ୟତଃ ଲୋକ ବିଜ୍ଞାନ ଆନ୍ଦୋଳନ ହୋଇଥିବାରୁ ଲୋକମାନଙ୍କ ଅଂଶ ଗ୍ରହଣ ଉପରେ ସର୍ବାଧିକ ଗୁରୁତ୍ୱ ଆରୋପ କରାଗଲା ।

ସର୍ବସମ୍ମତିକ୍ରମେ ଅବସର ପ୍ରାପ୍ତ ଡି.ପି.ଆଇ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ କୁଳପତି ଡକ୍ଟର ତାପସ କବିଙ୍କୁ ସଭାପତି ଭାବେ ଓ ଶ୍ରୀ କରୁଣାକର ପରିଡାଙ୍କୁ ଆବାହକ ଭାବରେ ନିର୍ବାଚିତ କରାଗଲା । ତାସହିତ ରାଜ୍ୟ କାର୍ଯ୍ୟକାରିଣୀ କମିଟି ମଧ୍ୟ ଗଠିତ ହେଲା ।

୧୯/୦୧/୧୯୯୨ ତାରିଖରୁ ୧୧/୦୫/୧୯୯୨ତାରିଖ ମଧ୍ୟରେ ଫୁଲବାଣୀ ଓ ସୁନ୍ଦରଗଡ ଜିଲ୍ଲାକୁ ଛାଡି ଅନ୍ୟ ଏଗାରଟି ଜିଲ୍ଲା ପରାମର୍ଶଦାତା କମିଟି ଗଠିତ ହୋଇଗଲା । ୩୧/୦୫/୧୯୯୨ ତାରିଖରେ ଫୁଲବାଣୀ ଓ ସୁନ୍ଦରଗଡ ଜିଲ୍ଲା ସ୍ତରୀୟ କମିଟି ଗଠିତ ହୋଇଗଲା ଓ ପ୍ରତି ଜିଲ୍ଲାରେ କଳା ଯାଥା ପାଇଁ ତାଲିମ୍‌ଦାତା ଚିହ୍ନଟ କରିବାପାଇଁ ଜିଲ୍ଲା ପ୍ରତିନିଧିମାନଙ୍କୁ ଅନୁରୋଧ କରାଗଲା ।

## ୧୨.୨ ଭାରତ ଜ୍ଞାନ ବିଜ୍ଞାନ ସମିତି ସହ ସଂଯୋଗ

ଭାରତ ଜ୍ଞାନ ବିଜ୍ଞାନ ସମିତି ମୁଖ୍ୟତଃ ସାକ୍ଷରତା କାର୍ଯ୍ୟକ୍ରମ କରନ୍ତି । ତାଙ୍କର ନାଁରେ ବିଜ୍ଞାନ ଥିଲେ ମଧ୍ୟ ସେମାନେ ବିଜ୍ଞାନ କାର୍ଯ୍ୟକ୍ରମରେ ଅଭ୍ୟସ୍ତ ନୁହନ୍ତି । ଯେତେବେଳେ ଭାରତ ସରକାରଙ୍କ ନିଷ୍ପତ୍ତି ଅନୁଯାୟୀ ଭାରତ ଜନ ବିଜ୍ଞାନ ଆନ୍ଦୋଳନ ଆରମ୍ଭ ହୋଇଗଲା ସେତେବେଳେ ଭାରତ ଜ୍ଞାନବିଜ୍ଞାନ ସମିତି ଭାରତ ସରକାରଙ୍କୁ ସେମାନଙ୍କର ଗୋଟିଏ ଅନୁରୂପ ଆନ୍ଦୋଳନ ପାଇଁ ପ୍ରସ୍ତାବ ଦେଲେ । ଦୈବକ୍ରମେ ମଞ୍ଜୁରୀ ପାଇଁ ଦୁଇଟିଯାକ ପ୍ରସ୍ତାବ ଏକା ସାଥିରେ ପ୍ରଧାନମନ୍ତ୍ରୀଙ୍କ ପାଖରେ ଉପସ୍ଥାପନ ପାଇଁ ବ୍ୟବସ୍ଥା କରାଗଲା । ତେବେ ପ୍ରଧାନମନ୍ତ୍ରୀ ଆଦେଶ ଦେଲେ ଯେ ଦୁଇଟିଯାକ ଆନ୍ଦୋଳନ ଏକତ୍ର କରାଯାଉ । ନୂଆ ଦିଲ୍ଲୀର ସର୍ବପ୍ରିୟ ବିହାରରେ ଭାରତ ଜନବିଜ୍ଞାନ ଯାଥା ଅଫିସ ଥିଲା । ସେଠାରେ ବିଜ୍ଞାନ ଓ କାରିଗରୀ ବିଭାଗ ଓ ଶିକ୍ଷା ବିଭାଗ ସଚିବ ଦୁଇଜଣ ଯାଇ ପହୁଞ୍ଚିଲେ । ସାଥିରେ ଭାରତ ଜ୍ଞାନ ବିଜ୍ଞାନ ସମିତିର କାର୍ଯ୍ୟକର୍ତ୍ତା ମଧ୍ୟ ଆସିଥିଲେ । ସେମାନେ ଭାରତ ଜନ ଜ୍ଞାନବିଜ୍ଞାନ ଯାଥା, ୧୯୯୨ ନାମକରଣ ପାଇଁ ପ୍ରସ୍ତାବ ଦେଲେ ଓ ଉଭୟ ଏକତ୍ର ତାଙ୍କର ଆନ୍ଦୋଳନ କାର୍ଯ୍ୟକ୍ରମ କରିବାପାଇଁ ମଧ୍ୟ ଅନୁରୋଧ କଲେ । ଆମେ ସେଥିରେ ରାଜି ହୋଇ କାର୍ଯ୍ୟ କଲୁ । କିନ୍ତୁ ଓଡିଶାରେ ଭାରତ ଜ୍ଞାନ ବିଜ୍ଞାନ ସମିତିର ଏକ ଅନ୍ତଃସ୍ରୋତ ଚାଲିଲା । କୋରାପୁଟ ଜିଲ୍ଲାରେ ସେମାନେ ପୃଥକ କାର୍ଯ୍ୟକ୍ରମ କଲେ । ମୟୁରଭଞ୍ଜ ଜିଲ୍ଲାକୁ ତାଙ୍କ ଅନୁଷ୍ଠାନରୁ କେହି ଚିଠି ଲେଖିଲେ ଯେ ସେମାନେ ଅଲଗା କାର୍ଯ୍ୟକ୍ରମ କରିବେ । ଆମେ ଏକତ୍ରୀକରଣ ପାଇଁ ଯେତେ ଚେଷ୍ଟା କଲେ ମଧ୍ୟ ତାହା କାର୍ଯ୍ୟକାରୀ ହୋଇ ପାରିଲା ନାହିଁ । ଭାରତ ଜ୍ଞାନବିଜ୍ଞାନ ସମିତିର ଓଡିଶା ଶାଖାରେ ଅନେକ ଭଲ ଲୋକ ଥିଲେ । କିନ୍ତୁ ଦୁଇ ଚାରିଜଣ ଅସାଧୁ ପୃଥକବାଦୀ ଲୋକଙ୍କ ପାଇଁ ମିଳିତ କାର୍ଯ୍ୟକ୍ରମ ଠିକ୍ ଚାଲିଲା ନାହିଁ ।

ଭାରତ ଜ୍ଞାନବିଜ୍ଞାନ ସମିତି ସହ ସଂଯୋଗ ପାଇଁ ଭାରତ ଜନବିଜ୍ଞାନ ଯାଥାର କେନ୍ଦ୍ରୀୟ ସଂଗଠନର ନିର୍ଦ୍ଦେଶ ପାଇଲା ପରେ ୨୦/୦୬/୧୯୯୨ ତାରିଖରେ ଭାରତ ଜ୍ଞାନବିଜ୍ଞାନ ସମିତିର ଡକ୍ଟର କୃଷ୍ଣକୁମାର ଓ ଭାରତ ଜନ ବିଜ୍ଞାନ ଯାଥାର ଡକ୍ଟର ପୂର୍ଣ୍ଣଚନ୍ଦ୍ର ରାଉତଙ୍କ ଯୁଗ୍ମ ଆବାହକତ୍ୱରେ ଭୁବନେଶ୍ୱରରେ ଗୋଟିଏ ସଭା ଡକାଗଲା । ଏଥିରେ ନିଷ୍ପତ୍ତି ନିଆଗଲା ଯେ:-

(୧) ଭାରତ ଜନ ବିଜ୍ଞାନ ଯାଥାର ଡକ୍ଟର ତାପସ କବି, ଡକ୍ଟର ପୂର୍ଣ୍ଣଚନ୍ଦ୍ର ରାଉତ ଓ କରୁଣାକର ପରିଡା ଓ ଭାରତ ଜ୍ଞାନ ବିଜ୍ଞାନ ସମିତିର

ଡକ୍ଟର ମଦନ ମୋହନ ପ୍ରଧାନ, ସୁଧୀର ପଟ୍ଟନାୟକ ଓ ଡକ୍ଟର ଆର୍.ଏନ. ରାୟଙ୍କୁ ନେଇ ଏକ ସଂଯୋଗ କମିଟି କାର୍ଯ୍ୟକରିବ। ସୃଜନିକାର ନିଖିଳ ମୋହନ ପଟ୍ଟନାୟକ ସଂଯୋଗକାରୀ ରହିବେ ।

(୨) ଭାରତ ଜନ ବିଜ୍ଞାନ ଯାଥା ପାଇଁ ଜିଲ୍ଲା ସ୍ତରୀୟ କମିଟି ଗଢାଯାଇ ସାରି ଥିବାରୁ ସେ କମିଟିଗୁଡିକ ଭାରତ ଜ୍ଞାନ ବିଜ୍ଞାନ ସମିତିର ସଦସ୍ୟଙ୍କୁ ନେଇ ସଂପ୍ରସାରିତ ହେବ । ଏହି କାର୍ଯ୍ୟ ଡକ୍ଟର ପୂର୍ଣ୍ଣଚନ୍ଦ୍ର ରାଉତ ଓ ଡକ୍ଟର ଆର୍.ଏନ୍.ରାୟ କରିବେ ।

(୩) ଭାରତ ଜନ ବିଜ୍ଞାନ ଯାଥାର କରୁଣାକର ପରିଡା ଓ ଭାରତ ଜ୍ଞାନ ବିଜ୍ଞାନ ସମିତିର ଭାସ୍କର ପରିଛା କାର୍ଯ୍ୟାଳୟ ଦାୟିତ୍ୱରେ ରହିବେ ଓ ସୁଧୀର ପଟ୍ଟନାୟକ ଓ ରାଧାମୋହନ ନନ୍ଦ କଳା ଯାଥା ଦାୟିତ୍ୱରେ ରହିବେ ।

(୪) ଡକ୍ଟର ତାପସ କବି ସଂଯୋଗ କମିଟିର ସଭାପତି ରହିବେ ।

ସଂଯୋଗ କାର୍ଯ୍ୟ ବିଳମ୍ବରେ ହୋଇଥିବାରୁ କାର୍ଯ୍ୟକ୍ରମ ତ୍ୱରାନ୍ୱିତ କରିବା ଆବଶ୍ୟକ । କଳା ଯାଥା ଓ ବିଜ୍ଞାନ କାର୍ଯ୍ୟକ୍ରମ ପାଇଁ କର୍ମଶାଳା ଓ ତାଲିମ୍ କାର୍ଯ୍ୟକ୍ରମ ରାଜ୍ୟ ସ୍ତରରେ ଓ ଜିଲ୍ଲା ସ୍ତରରେ ଆରମ୍ଭ କରାଗଲା । ମଧ୍ୟ ପ୍ରଦେଶ ଓ ପଶ୍ଚିମବଙ୍ଗରେ ଆୟୋଜିତ କାର୍ଯ୍ୟକ୍ରମ ଯଥାକ୍ରମେ କଳା ଯାଥା ଓ ବିଜ୍ଞାନ ସମ୍ବନ୍ଧୀୟ ଟ୍ରେନିଂରେ ଓଡିଶାର ପ୍ରତିନିଧିମାନେ ଯୋଗ ଦେଇ ଫେରିଲା ପରେ ଓଡିଶାରେ ରାଜ୍ୟ ସ୍ତରରେ ଓ ଜିଲ୍ଲା ସ୍ତରରେ ତାଲିମ୍ ଦିଆଗଲା ଓ କାର୍ଯ୍ୟକ୍ରମ ଆରମ୍ଭ ହେଲା । ଓଡିଶାର ସଂଯୋଗ କମିଟି "ଭାରତ ଜନ ଜ୍ଞାନ ବିଜ୍ଞାନ ସମିତି ନାମରେ ୧୭/୦୮/୧୯୯୨ ତାରିଖରେ Society's Registration Act 1960 ଅନୁସାରେ ରେଜିଷ୍ଟ୍ରିକୃତ ହେଲା ।

## ୧୨.୩ ଯାଥା କାର୍ଯ୍ୟକ୍ରମ

ଓଡିଶାର ୯୨୩ ଗୋଟି ସ୍ଥାନରେ ଯାଥା କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା । କେଉଁଝର, ଫୁଲବାଣୀ, ସମ୍ବଲପୁର ଓ ଢେଙ୍କାନାଳ ଜିଲ୍ଲାରେ ଏକାଧିକ ଯାଥା ଦଳ କାର୍ଯ୍ୟ କରୁଥିଲେ । ଫୁଲବାଣୀ ଜିଲ୍ଲାର ମହିଳା ଯାଥା ଦଳର କାର୍ଯ୍ୟକ୍ରମ ବହୁ ଲୋକଙ୍କୁ ଆକର୍ଷଣ କରୁଥିଲା ଓ ସେମାନଙ୍କର କାର୍ଯ୍ୟ ବେଶ୍ ଉଚ୍ଚକୋଟୀର ହୋଇଥିଲା ।

ଓଡିଶାର ଜିଲ୍ଲା ପୁନର୍ଗଠନ ଦ୍ୱାରା ୧୩ ଗୋଟି ଜିଲ୍ଲା ୩୦ଟି ଜିଲ୍ଲାରେ ପରିଣତ ହେଲା । ମାତ୍ର ୧୩ ଗୋଟି ଜିଲ୍ଲାରେ ସଂଗଠନ ପାଇଁ ଆମେ ସାହାଯ୍ୟ ପାଇଲୁ । ବାକି ୧୭ ଗୋଟି ଜିଲ୍ଲାରେ ସଂଗଠନ କାର୍ଯ୍ୟ କରିବାକୁ ଆମେ ଅର୍ଥାଭାବର ସମ୍ମୁଖୀନ ହେଲୁ ।

ଓଡିଶାର ଜିଲ୍ଲା ସ୍ତରୀୟ କମିଟିଗୁଡିକ ଦୁଇଥର ସଂଗଠିତ କରିବାକୁ ପଡିଲା । ଭାରତ ଜ୍ଞାନବିଜ୍ଞାନ ସମିତି ସହ ମିଶି କାର୍ଯ୍ୟକ୍ରମ କରିବାକୁ ପ୍ରଧାନମନ୍ତ୍ରୀ ମତ ଦେବା ପୂର୍ବରୁ ଆମର ଜିଲ୍ଲା ସ୍ତରୀୟ କମିଟିଗୁଡିକ ଗଠିତ ହୋଇ ସାରିଥିଲା । ଜ୍ଞାନବିଜ୍ଞାନ ସମିତିକୁ ମିଶାଇ ଆଉଥରେ ସଂଗଠନ କରିବାକୁ ପଡିଲା । ଏଥିରେ ଖର୍ଚ୍ଚ ତ ଅଧିକ ହେଲା । ତା ବ୍ୟତୀତ କାର୍ଯ୍ୟଧାରା ମଧ୍ୟ ବ୍ୟାହତ ହେଲା । ଅଧିକ ସମୟ ବି ଲାଗିଲା ।

ଅନିୟମିତ ଭାବରେ ଆବଶ୍ୟକ ପରିମାଣ ଅର୍ଥଠାରୁ କମ୍ ଅର୍ଥ ଦିଆଯିବା ଦ୍ୱାରା କାର୍ଯ୍ୟକ୍ରମ ଠିକ୍ ଭାବରେ ଠିକ୍ ସମୟରେ କାର୍ଯ୍ୟକାରୀ ହୋଇ ପାରିଲା ନାହିଁ । ଭାରତ ଜ୍ଞାନବିଜ୍ଞାନ ସମିତି କେତେକ ଜିଲ୍ଲାରେ ସେମାନଙ୍କ ଅଂଶ ଅର୍ଥ ଦେଲେ ନାହିଁ କି ସହଯୋଗ ବି କଲେ ନାହିଁ ।

ସବୁ ଅସୁବିଧା ସତ୍ତ୍ୱେ ଯାଥା ଦଳଗୁଡିକର ଚମତ୍କାର ପ୍ରଦର୍ଶନ ଲୋକମାନଙ୍କ ମନରେ ଗଭୀର ପ୍ରଭାବ ପକାଇ ପାରିଥିଲା । ବିଶେଷତଃ ଆଦିବାସୀ ଅଞ୍ଚଳରେ କଳା ଯାଥା ତଥା ଅନ୍ଧ ବିଶ୍ୱାସ ଦୂରୀକରଣ ପ୍ରଦର୍ଶନର ପ୍ରଭାବ ଦୀର୍ଘକାଳ ଧରି ଅନୁଭୂତ ହେଲା । କୋରାପୁଟ, ଫୁଲବାଣୀ, କଳାହାଣ୍ଡି ଓ ନୟାଗଡ ଜିଲ୍ଲାର ଲୋକମାନଙ୍କର ସହଯୋଗ ଓ ଅଂଶଗ୍ରହଣ ସନ୍ତୋଷଜନକ ହୋଇଥିଲା । ଫୁଲବାଣୀ କଲେକ୍ଟର ପତିତପାବନ ମହାପାତ୍ର, କୋରାପୁଟ କଲେକ୍ଟର ପ୍ରଶାନ୍ତ ନାୟକ ଓ ଗଞ୍ଜାମ କଲେକ୍ଟର ଜଗଦାନନ୍ଦ ପଣ୍ଡା ଓ ଦୀନାନାଥ ପଣ୍ଡା, ନୟାଗଡ କଲେକ୍ଟର ଫକୀରମୋହନ ପଟ୍ଟନାୟକଙ୍କ ଯୋଗୁଁ ସଂପୃକ୍ତ ଜିଲ୍ଲାମାନଙ୍କର ଯାଥା କାର୍ଯ୍ୟକ୍ରମ ଉଚ୍ଚୋକୋଟୀର ହୋଇଥିଲା । ଅନେକଗୁଡିଏ ବିଜ୍ଞାନ କ୍ଲବ୍, ମହିଳା ସମିତି, ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନଙ୍କ ସାହାଯ୍ୟ ଯାଥା କାର୍ଯ୍ୟକ୍ରମକୁ ବେଶ୍ ପ୍ରଭାବୀ କରି ପାରିଥିଲା । ଯାଥା କାର୍ଯ୍ୟକ୍ରମ ସମୟରେ ଯାଥା ଦଳଗୁଡିକ ସ୍ଥାନୀୟ ସ୍କୁଲମାନଙ୍କରେ ଅବସ୍ଥାନ କରୁଥିଲେ । ଗ୍ରାମବାସୀମାନେ ସ୍ୱେଚ୍ଛାକୃତ ଭାବେ ଯାଥା ଦଳର ଖାଇବା ପିଇବା ବ୍ୟବସ୍ଥା କରୁଥିଲେ । ଶିକ୍ଷକ ତଥା ଗ୍ରାମବାସୀମାନଙ୍କର ସହଯୋଗ ଯାଥା କାର୍ଯ୍ୟକ୍ରମକୁ ସହଜ କରି ଦେଉଥିଲା ଛାତ୍ରଛାତ୍ରୀମାନେ ଯାଥା କାର୍ଯ୍ୟାନୁଷ୍ଠାନରେ ସକ୍ରିୟ ଅଂଶ ଗ୍ରହଣ କରି ଯାଥାର ପ୍ରଭାବକୁ ବହୁଗୁଣିତ କରୁଥିଲେ ।




ମୟୂରଝାଲିଆଠାରେ ଅନୁଷ୍ଠିତ ନୟାଗଡ ଜିଲ୍ଲା ସଂପୂର୍ଣ୍ଣ ସାକ୍ଷରତା ଅଭିଯାନ ସଭାରେ ବାମରୁ - ଲେଖକ, ନୟାଗଡ କଲେକ୍ଟର ଫକୀର ଚରଣ ପଟ୍ଟନାୟକ ଓ ସଂଗଠକ ଦ୍ୱୟ ( ୧୯୯୩)।

୧୯୯୩ରେ ଯାଥା କାର୍ଯ୍ୟକ୍ରମ ସମାପ୍ତ ହେଲା । ଅନେକଗୁଡିଏ ଯାଥା ପର କାର୍ଯ୍ୟାନୁଷ୍ଠାନ ହାତକୁ ନିଆଗଲା । ରାଜ୍ୟସ୍ତରରେ ତଥା ଜିଲ୍ଲାସ୍ତରରେ ଖାଦ୍ୟ ଅପମିଶ୍ରଣ ସମ୍ବନ୍ଧରେ ଅନେକଗୁଡିଏ କର୍ମଶାଳା ଅନୁଷ୍ଠିତ ହେଲା । ବିଭିନ୍ନ ସ୍ଥାନରେ ୧୫ ଦିନ ପାଇଁ ଜନସଂପର୍କ ସ୍ଥାପନ କରି ଯାଥା ପ୍ରଭାବ ସଂପର୍କରେ ଆଲୋଚନା କରାଗଲା ।

## ୧୨.୪ ମନ୍ଥନ ସମ୍ମିଳନୀ

ଭାରତ ଜନ ବିଜ୍ଞାନ ଯାଥା, ୧୯୯୨ ସ୍ୱେଚ୍ଛାସେବୀମାନେ ହଜାର ହଜାର ସଂଖ୍ୟାରେ ପ୍ରାୟ ୫୦,୦୦୦ ଗ୍ରାମରେ ଓ ଶହ ଶହ ସହରରେ ଲକ୍ଷ ଲକ୍ଷ ଲୋକଙ୍କ ସମ୍ମୁଖରେ ପୋଷ୍ଟର, ସଂଗୀତ, ପଥପ୍ରାନ୍ତ ନାଟକ, ବୈଜ୍ଞାନିକ ପ୍ରଦର୍ଶନ ଆଦି ମାଧ୍ୟମରେ ଲୋକଙ୍କ ସହ ଆଲୋଚନା କରି ଲୋକ ବିଜ୍ଞାନ ଆନ୍ଦୋଳନର ବାର୍ତ୍ତା ପରିବେଷଣ କଲେ । ଏହି ବାର୍ତ୍ତା ମୁଖ୍ୟତଃ ଛଅ ଗୋଟି ବିଷୟ ଉପରେ ଆଧାରିତ : ଯଥା :-

(୧) ସ୍ୱାସ୍ଥ୍ୟ, ପୁଷ୍ଟି, ପରିମଳ ଓ ସ୍ୱାସ୍ଥ୍ୟରକ୍ଷା

(୨) ଜଳ - ପାନୀୟ ଜଳ ଓ କୃଷି ପାଇଁ ଜଳ ସେଚନ

(୩) ପରିବେଶ - ପ୍ରଦୂଷଣ ଓ ପରିଷ୍କରଣ

(୪) ଅନ୍ଧ ବିଶ୍ୱାସ - ତା'ର ବୈଜ୍ଞାନିକ ବିଶ୍ଳେଷଣ

(୫) କୃଷି ଓ ସ୍ଥାନୀୟ ବାଣିଜ୍ୟ ଓ

(୬) ବୈଜ୍ଞାନିକ ଚିନ୍ତାଧାରା ଓ ଲୋକପ୍ରିୟ କୌଶଳର ପ୍ରୟୋଗ (Technology)

ଯାଥା କାର୍ଯ୍ୟକ୍ରମ ଦ୍ୱାରା ନୈରାଶ୍ୟ ଜର୍ଜରିତ ପରିବେଶରେ ଆଶାର ସଞ୍ଚାର ହେଲା । ବ୍ୟକ୍ତିତନ୍ତ୍ର ବଦଳରେ ସହଯୋଗ ଓ ଅନୁଷ୍ଠାନର ପ୍ରାଧାନ୍ୟ ପ୍ରତିଷ୍ଠିତ ହେଲା । କୃଷି, ଜଙ୍ଗଲ ପରିଚାଳନା, ଗୃହ ନିର୍ମାଣ, ଜଳ ପରିଚାଳନା, ଆଦି କ୍ଷେତ୍ରରେ ବୈଜ୍ଞାନିକ ପଦ୍ଧତିର ପ୍ରୟୋଗ ଆଦି ବିଷୟରେ ଯାଥା କର୍ମୀମାନେ ଆଲୋକପାତ କଲେ । ସ୍ଥୂଳତଃ ନିସ୍ତରଙ୍ଗ ଭାରତୀୟ ସମାଜରେ ଏକ ବୈଜ୍ଞାନିକ ତରଙ୍ଗ ଖେଳିଗଲା ଓ ଲୋକମାନେ ସେଥିରେ ଓତଃପ୍ରୋତଃ ଭାବରେ ଜଡିତ ହୋଇଗଲେ ।

ଅନୁଭୂତି ଲବ୍ଧ ସମସ୍ତ ଜ୍ଞାନ ଓ କୌଶଳ ବିଷୟରେ ଆଲୋଚନା ଓ ଭାବ ବିନିମୟ ପାଇଁ ନୂଆଦିଲ୍ଲୀରେ ୧୯୯୪ ମଇ ମାସ ୨୪ ତାରିଖରୁ ୨୮ ତାରିଖ ପର୍ଯ୍ୟନ୍ତ ପାଞ୍ଚଦିନ ଧରି ଏକ ମନ୍ଥନ ସମ୍ମିଳନୀ ଆୟୋଜିତ ହୋଇଥିଲା । ଯାଥାରେ ଅଂଶ ଗ୍ରହଣ କରିଥିବା ୨୯ଟି ରାଜ୍ୟସ୍ତରୀୟ ସଂଗଠନ, ୩୫୦ ଗୋଟି ଜିଲ୍ଲା ସ୍ତରୀୟ ସଂଗଠନର ୮୦୦ ପ୍ରତିନିଧି ନିଜ ନିଜର ଅନୁଭୂତି ଉପସ୍ଥାପନ କରିଥିଲେ । ଏଥିରେ ଦେଶର ବହୁ ବୈଜ୍ଞାନିକ, ଐତିହାସିକ, ଧର୍ମୀୟ ନେତା ଓ ସାମାଜିକ ନେତା ଅଂଶ ଗ୍ରହଣ କରିଥିଲେ ।

ଲୋକ ବିଜ୍ଞାନ ଆନ୍ଦୋଳନର ଶେଷ ନାହିଁ । ଔପଚାରିକ ଭାବରେ ଯାଥା ପର୍ଯ୍ୟାୟପରେ ପୁନରୁ□ାନ ପାଇଁ ରାଷ୍ଟ୍ରୀୟ ଆନ୍ଦୋଳନ (Mass Action For National Regeneration) (MANAR) ପର୍ଯ୍ୟାୟ ଆରମ୍ଭ ହେଲା । ମନ୍ଥନ ସମ୍ମିଳନୀରେ ମୁଖ୍ୟତଃ ଏହି ପରିବର୍ତ୍ତନ ବିଷୟରେ (ପରିବର୍ତ୍ତନ ନୁହେଁ ବରଂ ରୂପାନ୍ତର) ଆଲୋଚନା କରାଗଲା । ଯାଥା କର୍ମୀମାନେ ରାଷ୍ଟ୍ରୀୟ ଜନଆନ୍ଦୋଳନରେ ଯୋଗ ଦେଲେ । ସେଥିପାଇଁ ଆବଶ୍ୟକୀୟ ମଞ୍ଚ ଭାରତ ଜନ ବିଜ୍ଞାନ ଯାଥା ଯୋଗାଇ ଦେଲା ।

ବିକାଶ ମୂଳକ କାର୍ଯ୍ୟକ୍ରମ ଯେପରି ସରକାରୀ ସ୍ତରରେ କାର୍ଯ୍ୟକାରୀ ହେଉଛି, ତାହା ଲୋକମାନଙ୍କର ଆବଶ୍ୟକ କି ନୁହେଁ ତାହା ଜାଣିବା ପାଇଁ କିଛି ବ୍ୟବସ୍ଥା ନାହିଁ । କିନ୍ତୁ ପୁନରୁ□ାନ ପାଇଁ ଯେଉଁ କାର୍ଯ୍ୟକ୍ରମ ହାତକୁ ନିଆଯିବ ତାହା ଲୋକଙ୍କର ଆବଶ୍ୟକ କି ନୁହେଁ ପ୍ରଥମେ ନିରୂପଣ କରାଯିବ । ବିକାଶ

ମୂଳକ କାର୍ଯ୍ୟକ୍ରମ ପରିଚାଳନା ଦାୟିତ୍ୱ ଲୋକଙ୍କୁ ଦିଆଯିବ । ଯାଥା କର୍ମୀମାନେ କେବଳ ତାଙ୍କୁ ବୈଜ୍ଞାନିକ ବିଶ୍ଳେଷଣରେ ସାହାଯ୍ୟ କରିବେ । କାର୍ଯ୍ୟକ୍ରମ ପରିଚାଳନାରେ ଲୋକମାନେ ଓ ଯାଥା କର୍ମୀମାନେ ପରସ୍ପର ଠାରୁ ଶିକ୍ଷା କରିବେ ।

ସାମାଜିକ ପରିବର୍ତ୍ତନ କ୍ଷେତ୍ରରେ ଲୋକମାନଙ୍କ ଇଚ୍ଛାକୁ ସମ୍ମାନ ଦିଆଯିବ । ଅଞ୍ଚଳ-ଭିତ୍ତିକ କାର୍ଯ୍ୟକ୍ରମ ହାତକୁ ନିଆଯାଇ ଲୋକମାନଙ୍କର ଗଣତାନ୍ତ୍ରିକ ସାମୂହିକ ପରାମର୍ଶ ଅନୁସାରେ କାର୍ଯ୍ୟ କରାଯିବ । ମହିଳାମାନଙ୍କ ମତାମତ ପ୍ରତି କାର୍ଯ୍ୟରେ ଗୁରୁତ୍ୱପୂର୍ଣ୍ଣ ବିଚାର କରାଯିବ । ଆଦିବାସୀ, ହରିଜନ, ପ୍ରଭୃତି ଦଳିତମାନେ ଯେଉଁମାନେ ସମାଜରେ କିଛି ଅଂଶ ଗ୍ରହଣ କରିପାରୁ ନ ଥିଲେ ସେମାନଙ୍କୁ ପ୍ରାଧାନ୍ୟ ଦିଆଯିବାର ବ୍ୟବସ୍ଥା ରହିଲା ।

ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ଲୋକ ସହାୟକ ହୋଇ କାର୍ଯ୍ୟ କରିବାର ଅଭ୍ୟାସ ବଢାଇବେ । ଲୋକମାନଙ୍କ ସହିତ କାର୍ଯ୍ୟ କରିବାର ଆନନ୍ଦ ପାଇବାକୁ ପ୍ରତ୍ୟେକ ବ୍ୟକ୍ତି ଉଦ୍ୟମ କରିବେ । ଲୋକମାନେ ନିଜର ଆବଶ୍ୟକତାକୁ ଦୃଷ୍ଟିରେ ରଖି କାମ କରିବାର ଅଭ୍ୟାସ କଲେ ଦେଶର ଅବସ୍ଥା ବଦଳିଯିବ । ଏହି ଆଦର୍ଶର ଅନୁବର୍ତ୍ତନ କରିବାକୁ ପ୍ରତ୍ୟେକ ଯାଥା କର୍ମୀ ଉଦ୍ୟମ କରିବାକୁ ପରାମର୍ଶ ଦିଆଗଲା ।

ପୁନରୁ□ାନ ପାଇଁ ରାଷ୍ଟ୍ରୀୟ ଆନ୍ଦୋଳନ ବିଷୟରେ ବହୁ ବିଜ୍ଞ ଓ ବିଦ୍ୱାନ ବ୍ୟକ୍ତି ନିଜ ନିଜର ମତାମତ ଦେଇଥିଲେ । ପାଞ୍ଚଦିନ ପରେ ମନ୍ଥନ ସମ୍ମିଳନୀ ଶେଷ ହୋଇ ଲୋକ ବିଜ୍ଞାନ ଆନ୍ଦୋଳନର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହେଲା ।

## ୧୨.୫ ପୁନରୁ□ାନ ପାଇଁ ରାଷ୍ଟ୍ରୀୟ ଆନ୍ଦୋଳନ

ଯାଥା ଓ ଯାଥାପର କାର୍ଯ୍ୟକ୍ରମ ଶେଷ ହେଲା ବେଳକୁ ୧୯୯୩ ମସିହା ଶେଷ ହୋଇ ଯାଇଥିଲା । ୧୯୯୪ ମସିହା ଆରମ୍ଭ ବେଳକୁ ଭାରତ ଜନ ବିଜ୍ଞାନ ଯାଥା କେତେଦୂର ସଫଳ ହୋଇଛି ବିଚାର କରିବା ଆବଶ୍ୟକ ହେଲା । ଯେଉଁ ସ୍ୱପ୍ନ ନେଇ ଯାଥା ଆରମ୍ଭ ହୋଇଥିଲା ତାହା କେତେ ଦୂର ସାକାର ହେଲା, ପରବର୍ତ୍ତୀ ଆବଶ୍ୟକତା କ'ଣ ତାହା ବିଚାର କରିବା ପାଇଁ ଓ ଜାତୀୟ ପୁନରୁ□ାନ ପାଇଁ ରାଷ୍ଟ୍ରୀୟ ଜନ ଆନ୍ଦୋଳନ ଆରମ୍ଭ କରିବା ନିମିତ୍ତ ହାଇଦ୍ରାବାଦ ଠାରେ ୧୯୯୪ ଅପ୍ରେଲ ୩ ତାରିଖରୁ ୫ ତାରିଖ ପର୍ଯ୍ୟନ୍ତ ଏକ ସମ୍ମିଳନୀ ଅନୁଷ୍ଠିତ ହେଲା ।

ଯାଥା କାର୍ଯ୍ୟକ୍ରମର ଗୋଟିଏ ବଡ ଉପଲବ୍ଧି ହେଲା ବିଜ୍ଞାନରେ ଉନ୍ନତି ସହିତ ଶିକ୍ଷା, ସ୍ୱାସ୍ଥ୍ୟ, କୃଷି ଆଦିର ଉନ୍ନତି ହେଲେ ସର୍ବାଙ୍ଗୀନ ଉନ୍ନତି ସାଧିତ




ଭାରତ ଜନ ଜାଗରଣ ଅଭିଯାନର ରାଜ୍ୟସ୍ତରୀୟ ପ୍ରସ୍ତୁତି ପାଇଁ ଆଲୋଚନା - ବାମରୁ - ଲେଖକ, ଭାରତ ଜନ ଜ୍ଞାନ ବିଜ୍ଞାନ ଯାଥାର ଜାତୀୟ ଆବାହକ ଡକ୍ଟର ଅନିଲ୍ ସଦ୍‌ଗୋପାଲ୍ ଭାରତ ଜନ ଜ୍ଞାନ ବିଜ୍ଞାନ ଯାଥାର ରାଜ୍ୟ ସଭାପତି ଡକ୍ଟର ତାପସ କବି ଓ ଆବାହକ କରୁଣା କର ପରିଡା (୧୯୯୩)।

ହୋଇ ପାରିବ । ପୁନରୁ□ାନ ପାଇଁ ରାଷ୍ଟ୍ରୀୟ ଜନ ଆନ୍ଦୋଳନ ଆବଶ୍ୟକ। ଯାଥା କାର୍ଯ୍ୟକ୍ରମରୁ ନୂତନ କାର୍ଯ୍ୟକ୍ରମ ରାଷ୍ଟ୍ରୀୟ ଜନ ଆନ୍ଦୋଳନକୁ ପରିବର୍ତ୍ତନ ପାଇଁ ବିଚାର ବିମର୍ଷ ଆରମ୍ଭ ହେଲା।

ଏଥିରେ ନିମ୍ନଲିଖିତ ବିଷୟ ଗୁଡିକ ଆଲୋଚିତ ହେଲା:-

୧) (କ) ବିକାଶ ଯୋଜନା ତୃଣମୂଳ ସ୍ତରରୁ ଆରମ୍ଭ କରିବା ପାଇଁ ଯୋଜନା ଗ୍ରାମ ସ୍ତରରୁ ଆରମ୍ଭ ହେବ।

(ଖ) ସ୍ଥାନୀୟ ସମ୍ବଳ କେବଳ ସ୍ଥାନୀୟ ସ୍ତରରେ ପରିଚାଳିତ ହେବ।

(ଗ) ପ୍ରାଥମିକ ଶିକ୍ଷା ଓ ପ୍ରାଥମିକ ସ୍ୱାସ୍ଥ୍ୟ ସେବା ସ୍ଥାନୀୟ ଲୋକଙ୍କ ଦ୍ୱାରା ପରିଚାଳିତ ହେବ।

(ଘ) ଅଣୁ ଯୋଜନା ଭୌଗୋଳିକ ସାଂସ୍କୃତିକ ବିଚାରରେ ପ୍ରସ୍ତୁତ ହେବ।

(ଡ) ଆବଶ୍ୟକତା ଭିତ୍ତିକ ସହଭାଗୀ ପରିଚ୍ଛଳନାରେ ବିକାଶ ଯୋଜନା କାର୍ଯ୍ୟକ୍ରମ ପ୍ରସ୍ତୁତ ହେବ।

(୨) ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡିକ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ କାମ କରିବେ ନାହିଁ। ସେମାନଙ୍କ ମଧ୍ୟରେ ସହଯୋଗ ପାଇଁ ଉଦ୍ୟମ କରାଗଲେ ସର୍ବାଙ୍ଗୀନ ଉନ୍ନତି ସମ୍ଭବ ।

(୩) ସରକାର, ଅନୁଷ୍ଠାନ ସମୂହ ଓ ଲୋକମାନେ ମିଳିତ ହୋଇ କାର୍ଯ୍ୟ କରିବେ।

(୪) ବିକାଶ ପାଇଁ ଆବଶ୍ୟକ ଅର୍ଥ ସ୍ଥାନୀୟ ସ୍ତରରେ ବ୍ୟବସ୍ଥା କରାଯିବ। କେବଳ ସରକାରୀ ସାହାଯ୍ୟ ଉପରେ ନିର୍ଭରଶୀଳ ନହୋଇ ସ୍ଥାନୀୟ ସମ୍ବଳ ଓ କୌଶଳ ଉପରେ ନିର୍ଭର କରାଯିବ।

(୫) ସାମାଜିକ ଉନ୍ନତି ପାଇଁ ପ୍ରତ୍ୟେକ ପୁରୁଷ ଓ ମହିଳାଙ୍କର ସହଭାଗିତା ନିଶ୍ଚିତ କରାଯିବ।

ହାଇଦ୍ରାବାଦ ସମ୍ମିଳନୀ ପରେ " The Hyderabad statement on transition ". ଘୋଷିତ ହୋଇଥିଲା । ଭାରତ ଜନ ଜ୍ଞାନ ବିଜ୍ଞାନ ଯାଥାର କର୍ମୀମାନେ ଏହି କାର୍ଯ୍ୟକ୍ରମରେ ସକ୍ରିୟ ଅଂଶ ଗ୍ରହଣ କରିବା ପାଇଁ ପ୍ରତିଜ୍ଞାବଦ୍ଧ ହେଲେ।

ରାଷ୍ଟ୍ରୀୟ ଜନ ଅଭିଯାନ କାର୍ଯ୍ୟକ୍ରମରେ କେତେଗୁଡିଏ ଐତିହାସିକ ପଦକ୍ଷେପ ନିଆଗଲା ଯଥା:-

(୧) ଜାତୀୟ ସ୍ତରରେ ସାର୍ବଜନୀନ ପ୍ରାଥମିକ ଶିକ୍ଷା କର୍ମଶାଳା ଆୟୋଜନ।

(୨) ମନ୍ଥନ ସମ୍ମଳନୀ ଆୟୋଜନ।

(୩) ଜିଲ୍ଲା ଓ ସ୍ଥାନୀୟ ସ୍ତରରେ ସମସ୍ୟା ଚିହ୍ନଟ ଓ ତାର ସମାଧାନ ।

ହାଇଦ୍ରାବାଦ ସମ୍ମିଳନୀ ପରେ ରାଜ୍ୟ ଏବଂ ଜିଲ୍ଲା ସ୍ତରରେ ସଂଗଠନ କମିଟି ଗୁଡିକର ପୁର୍ନଗଠନ କରାଗଲା। ନୂଆ ନୂଆ ସଦସ୍ୟମାନଙ୍କୁ ଗ୍ରହଣ କରି ଜିଲ୍ଲା ସ୍ତରୀୟ ସଂଗଠନ କମିଟି ଗୁଡିକର ଦୃଢୀକରଣ କରାଗଲା । ପ୍ରତ୍ୟେକ ଜିଲ୍ଲାରେ ଯେଉଁ କେତେକ ସାଧାରଣ କାର୍ଯ୍ୟକ୍ରମ ଗ୍ରହଣ କରାଗଲା। ତା ମଧ୍ୟରୁ

(କ) ମଦ ବିରୋଧୀ ଆନ୍ଦୋଳନ

(ଖ) ଯୌତୁକ ବିରୋଧୀ ଆନ୍ଦୋଳନ

(ଗ) ମହିଳାମାନଙ୍କ ଉପରେ ଅତ୍ୟାଚାର ବିରୋଧୀ ଆନ୍ଦୋଳନ

(ଘ) ଜନସଂଖ୍ୟା ନିୟନ୍ତ୍ରଣ

(ଙ) ଜାତୀୟ ଏକତା ଆନୟନ ଆଦି ପ୍ରଧାନ ।

ପ୍ରଥମେ ସମସ୍ତଙ୍କ ଦୃଷ୍ଟି ଶିକ୍ଷା ପ୍ରତି ଆକୃଷ୍ଟ ହେଲା । ପ୍ରାଥମିକ ଶିକ୍ଷାର ପ୍ରତି ଜିଲ୍ଲାରେ ସ୍ଥିତି ସମ୍ବନ୍ଧରେ ଆଲୋଚନା କରାଗଲା । ପ୍ରାଥମିକ ଶିକ୍ଷାର ବିକାଶ ଉପରେ ପ୍ରାଧାନ୍ୟ ଦିଆଗଲା । ସେତେବେଳକୁ World bank ସହାୟତାରେ DPEP କାର୍ଯ୍ୟକାରୀ ହେବାକୁ ଆରମ୍ଭ କଲାଣି । କିନ୍ତୁ DPEP କାର୍ଯ୍ୟକ୍ରମରେ ସ୍ଥାନୀୟ ସମସ୍ୟା ଉପରେ ଗୁରୁତ୍ୱ ଦିଆଗଲା ନାହିଁ । World Bank ତରଫରୁ ଯେଉଁ ଯୋଜନା ପୁସ୍ତକ ଦିଆଗଲା ସେଥିରେ ସ୍ଥାନୀୟ ସମସ୍ୟା ଓ ସ୍ଥାନୀୟ ବ୍ୟକ୍ତିଙ୍କର ଅଂଶ ଗ୍ରହଣ ସଂପର୍କରେ ସୂଚନା ଦିଆଯାଇଥିଲେ ମଧ ସରକାରୀ କର୍ମଚାରୀମାନେ ଯେଉଁମାନେ DPEP ଦାୟିତ୍ୱରେ ରହିଲେ ସେମାନେ ସେ ସୁଯୋଗ ଦେଲେ ନାହିଁ । ସେମାନେ ସରକାରୀ ଢାଞ୍ଚାରେ ସବୁ କାମ ଆରମ୍ଭ କଲେ । ଫଳରେ DPEP କାର୍ଯ୍ୟକ୍ରମ ବାସ୍ତବ ସ୍ଥିତି ଠାରୁ ଦୂରେଇ ଗଲା । ଏହା ଏକ ସଂପୂର୍ଣ୍ଣ ସରକାରୀ କାର୍ଯ୍ୟକ୍ରମ ହୋଇ ରହିଗଲା । ଏହି କାର୍ଯ୍ୟକ୍ରମର ନାମ ଜିଲ୍ଲା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ ହୋଇଥିଲେ ମଧ୍ୟ ଜିଲ୍ଲାର କୌଣସି ବିଶେଷତ୍ୱ ଏଥିରେ ପ୍ରତିଫଳିତ ହେଲା ନାହିଁ । ଜିଲ୍ଲା ପାଇଁ ସ୍ୱତନ୍ତ୍ର ଯୋଜନା ପ୍ରସ୍ତୁତ ହେଲା ନାହିଁ କି କାର୍ଯ୍ୟକ୍ରମ ରୂପାୟନରେ ଜିଲ୍ଲାର କୌଣସି ବ୍ୟକ୍ତି ଅଂଶ ଗ୍ରହଣ କଲେ ନାହିଁ ବରଂ ଏହା କଲେକ୍ଟର କେନ୍ଦ୍ରିକ ଯୋଜନା ହୋଇ ରହିଗଲା ।

## ୧୨.୬ ସାର୍ବଜନୀନ ପ୍ରାଥମିକ ଶିକ୍ଷା କର୍ମଶାଳା

ଭାରତ ଜନ ବିଜ୍ଞାନ ଯାଥା ମୁଖ୍ୟତଃ ଲୋକମାନଙ୍କ ମଧରେ ବିଜ୍ଞାନ ସଚେତନତା ସୃଷ୍ଟି ଉପରେ କେନ୍ଦ୍ରୀଭୂତ ହୋଇଥିଲା । ଏଥିରେ ଅନ୍ଧବିଶ୍ୱାସ ଦୂରୀକରଣ ଓ ଅନ୍ଧବିଶ୍ୱାସର ବୈଜ୍ଞାନିକ ବିଶ୍ଳେଷଣ ସହିତ ଲୋକମାନଙ୍କର ବୈଜ୍ଞାନିକ ମନୋଭାବର ବିକାଶ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଥିଲା । ବହୁ ଅନୁଷ୍ଠାନ ଓ ବ୍ୟକ୍ତି ବୈଜ୍ଞାନିକ ମନୋବୃତ୍ତି ସଂପନ୍ନ ହୋଇ ବାହାରିଲେ, କିନ୍ତୁ ମୁଖ୍ୟ କଥା ହେଲା ଶିକ୍ଷା ଅଭାବରେ ବୈଜ୍ଞାନିକ ମନୋବୃତ୍ତି ଅଭିବୃଦ୍ଧି ସମ୍ଭବ

ନୁହେଁ। ଯଦି ବା ସମ୍ଭବ ହୁଏ ତାହା ଦୀର୍ଘ ସ୍ଥାୟୀ ହେବ ନାହିଁ। ଏହି ସତ୍ୟ ସମସ୍ତଙ୍କ ମନକୁ ଆନ୍ଦୋଳିତ କଲା। ତେଣୁ ସାର୍ବଜନୀନ ପ୍ରାଥମିକ ଶିକ୍ଷା ପ୍ରସାର ସମସ୍ୟାକୁ ଅଗ୍ରାଧିକାର ଭିତ୍ତିରେ ଗ୍ରହଣ କରିବାକୁ ନିଷ୍ପତ୍ତି ନିଆଗଲା।

ସାର୍ବଜନୀନ ପ୍ରାଥମିକ ଶିକ୍ଷା ଏକ ସରକାରୀ କାର୍ଯ୍ୟକ୍ରମ। ଭାରତ ସମ୍ବିଧାନର ୪୫ ଧାରା ଅନୁସାରେ ୧୯୬୦ ମସିହାରେ ଭାରତରେ ସାର୍ବଜନୀନ ପ୍ରାଥମିକ ଶିକ୍ଷା ଅନ୍ଦୋଳନ ସଫଳ ହେବାର କଥା। କିନ୍ତୁ ଏ ପର୍ଯ୍ୟନ୍ତ ତାହା ସଫଳ ହୋଇପାରିନାହିଁ। ଏଥିପାଇଁ ବେସରକାରୀ ସ୍ତରରେ ଉଦ୍ୟମ ନହେଲେ ହୁଏତ ସଫଳତା ଆହୁରି ଘୁଞ୍ଚିଯିବ। ଏଣୁ ଭାରତ ଜନ ଜ୍ଞାନ ବିଜ୍ଞାନ ଯାଥା ଏହି ସମସ୍ୟା ସମାଧାନ ଦିଗରେ କାମ କରିବାକୁ ନିଷ୍ପତ୍ତି କଲେ।

ସାର୍ବଜନୀନ ପ୍ରାଥମିକ ଶିକ୍ଷା ବିଷୟରେ ପୁଣେର ଭାରତୀୟ ଶିକ୍ଷା ପ୍ରତିଷ୍ଠାନ (Indian Institute of Education) ଓ ଭାରତ ଜନ ଜ୍ଞାନବିଜ୍ଞାନ ଯାଥାର ମିଳିତ ଉଦ୍ୟମରେ ୨୧। ୩ । ୧୯୯୪ ଠାରୁ ୨୫ । ୩ । ୧୯୯୪ ପର୍ଯ୍ୟନ୍ତ ପାଞ୍ଚଦିନ ଧରି ଗୋଟିଏ କର୍ମଶାଳା ପୁଣେଠାରେ ଆୟୋଜିତ ହେଲା । ଭାରତୀୟ ଶିକ୍ଷା ପ୍ରତିଷ୍ଠାନରେ ସୁମନ କରାଣ୍ଡିକର ଓ ଭାରତ ଜନ ଜ୍ଞାନ ବିଜ୍ଞାନ ଯାଥା ତରଫରୁ ମୁଁ ଓ ଡକ୍ଟର ଅନିଲ୍ ସଦ୍‌ଗୋପାଳ କର୍ମଶାଳା ପରିଚାଳନା ଦାୟିତ୍ୱରେ ରହିଲୁ। ବିଭିନ୍ନ ରାଜ୍ୟର ପ୍ରତିନିଧିମାନେ ସେମାନଙ୍କ ରାଜ୍ୟର ସାର୍ବଜନୀନ ପ୍ରାଥମିକ ଶିକ୍ଷାର ସ୍ଥିତି ସମ୍ବନ୍ଧରେ ବିସ୍ତୃତ ବିବରଣୀ ଦେଲେ । ଭାରତୀୟ ଶିକ୍ଷା ପ୍ରତିଷ୍ଠାନର (IIE) ଅଣୁଯୋଜନା ଓ ଅନୌପଚାରିକ ଶିକ୍ଷା ତଥା ଜନ ସହଯୋଗ ଉପରେ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ବିଷୟରେ ସୁମନ କରାଣ୍ଡିକର ଆଲୋକପାତ କରିଥିଲେ। ବିଭିନ୍ନ ରାଜ୍ୟର ସାର୍ବଜନୀନ ପ୍ରାଥମିକ ଶିକ୍ଷା ସହିତ ସଂପୃକ୍ତ କର୍ମୀମାନେ ଏତେ ପ୍ରକାର ସମସ୍ୟା ଉପସ୍ଥାପିତ କଲେ ଯେ ସେସବୁ ଆଲୋଚନା କରି ସମାଧାନ ବାହାର କରିବା ପାଇଁ ସମୟ ଅଭାବ ହେଲା। ତେବେ ସାର୍ବଜନୀନ ପ୍ରାଥମିକ ଶିକ୍ଷା ଉପରେ ପ୍ରଥମ ବେସରକାରୀ କର୍ମଶାଳା ହୋଇଥିବାରୁ ଏହାର ଉପଲବ୍ଧି ସନ୍ତୋଷଜନକ ହୋଇଥିଲା।

ସାର୍ବଜନୀନ ପ୍ରାଥମିକ ଶିକ୍ଷା ଉପରେ ଦ୍ୱିତୀୟ ଜାତୀୟ ସ୍ତରର କର୍ମଶାଳା ହିମାଚଳ ପ୍ରଦେଶର ସୋଲନ୍‌ଠାରେ ୨୩ । ୫ । ୧୯୯୫ ରୁ ୩୧ । ୫।୧୯୯୫ ତାରିଖରେ ଅନୁଷ୍ଠିତ ହୋଇଥିଲା। ସେଠାକୁ ଭାରତର ବିଶିଷ୍ଟ

ଶିକ୍ଷାବିତ୍ ଓ ଐତିହାସିକମାନେ ନିମନ୍ତ୍ରିତ ହୋଇ ଯାଇଥିଲେ । ଦଶଦିନ ଧରି ସେଠାରେ ବିଶଦ ଆଲୋଚନା ପରେ ନଉନି ଘୋଷଣା ପତ୍ର ପ୍ରକାଶ କରାଗଲା । ଏଥିରେ ଭାରତ ସରକାରଙ୍କ ପ୍ରାଥମିକ ଶିକ୍ଷା ନୀତିର ସମାଲୋଚନା କରାଗଲା । ଭାରତ ସମ୍ବିଧାନ ୪୫ ଧାରାରେ ଉଲ୍ଲେଖ ଥିଲା ଯେ ସବୁ ପିଲାଙ୍କ ପାଇଁ ନିୟମିତ ଔପଚାରିକ ପ୍ରାଥମିକ ଶିକ୍ଷାନୁଷ୍ଠାନ ଯୋଗାଇ ଦିଆଯିବ, କିନ୍ତୁ ୧୯୯୨ ମସିହାରେ ଜାତୀୟ ଶିକ୍ଷା ନୀତିର ସମୀକ୍ଷା କରାଯାଇ ସଂଶୋଧନ କରାଗଲା ଓ ସଂଶୋଧିତ ନୀତିରେ କୁହାଗଲା ଯେ ପିଲାଙ୍କ ପାଇଁ ଔପଚାରିକ ବା ଅନୌପଚାରିକ ପ୍ରାଥମିକ ଶିକ୍ଷାନୁଷ୍ଠାନ ଯୋଗାଇ ଦିଆଯିବ। ଏହା ଦ୍ୱାରା ଭାରତ ସରକାରଙ୍କ ଶିକ୍ଷାନୀତି Diluted ହୋଇଗଲା ଓ ସରକାର ନିଜର ମୂଳ ନୀତିରୁ ବିଚ୍ୟୁତ ହୋଇଗଲେ । ପ୍ରତିକ୍ରିୟା ସ୍ୱରୂପ ଭାରତ ଜନ ଜ୍ଞାନ ବିଜ୍ଞାନ ଯାଥା ତରଫରୁ "ଲୋକଶାଳା" ପ୍ରକଳ୍ପର ପରିକଳ୍ପନା କରାଗଲା । ଏଥିରେ ଜନ ସହଯୋଗରେ ସାର୍ବଜନୀନ ପ୍ରାଥମିକ ଶିକ୍ଷା ଲକ୍ଷ୍ୟ ପୂରଣ କରିବାର ପ୍ରୟାସ କରାଗଲା । ଏହି "ଲୋକଶାଳା" ପ୍ରକଳ୍ପରେ ବର୍ଣ୍ଣିତ ଶିକ୍ଷାନୀତି ଓ ତା'ର ରୂପାୟନ ଶୈଳୀରେ ୟୁନେସ୍କୋ ପ୍ରଭାବିତ ହୋଇ ଏହାକୁ ନିଜର ନୀତି ଭାବେ ଘୋଷଣା କଲେ ।

୧୯୯୫ ମଇ ମାସ ୩୧ ତାରିଖ ଘୋଘଣା ପତ୍ରରେ ସାର୍ବଜନୀନ ପ୍ରାଥମିକ ଶିକ୍ଷା ମହାତ୍ମା ଗାନ୍ଧୀଙ୍କ ନୟିତାଲିମ୍ ଆଦର୍ଶରେ କାର୍ଯ୍ୟକାରୀ କରିବାକୁ ସ୍ଥିର କରାଗଲା । ଏଥିରେ ପ୍ରାଥମିକ ଶିକ୍ଷା ସହିତ ୩ ବର୍ଷରୁ ୬ ବର୍ଷ ପିଲାଙ୍କ ପାଇଁ ପ୍ରାକ୍-ପ୍ରାଥମିକ ଶିକ୍ଷା ଉପରେ ମଧ ଗୁରୁତ୍ୱ ଆରୋପ କରାଗଲା । ବାଳିକାମାନଙ୍କ ଶିକ୍ଷାର ଦୁରବସ୍ଥା ଦୃଷ୍ଟିରୁ ସେମାନଙ୍କ ଶିକ୍ଷାରେ ଥିବା ପ୍ରତିବନ୍ଧକ ଦୂର କରିବା ପାଇଁ ସମାଜ ସଂସ୍କାର ଉପରେ ଗୁରୁତ୍ୱ ଦିଆଗଲା । ପ୍ରାଥମିକ ଶିକ୍ଷାକୁ କେବଳ ସାକ୍ଷରତା କୌଶଳ ଶିକ୍ଷାରେ ସୀମିତ ନକରି ଜୀବନ ଧାରଣର କୌଶଳ ସହିତ ସଂଯୁକ୍ତ କରିବା ଦରକାର ବୋଲି ଉପଲବ୍ଧି କରାଗଲା । ଶିକ୍ଷା ସହିତ ଉତ୍ପାଦିକା କାର୍ଯ୍ୟ ଓ ସାମାଜିକ ବିଧିବ୍ୟବସ୍ଥା ସଂପୃକ୍ତ କରିବାକୁ ନିଷ୍ପତ୍ତି ନିଆଗଲା । ସାମାଜିକ ବ୍ୟବସ୍ଥା ଓ ଆବଶ୍ୟକତା ସହିତ ଯେଉଁ ଶିକ୍ଷା ସଂପୃକ୍ତ ନୁହେଁ, ତାହା ସାର୍ବଜନୀନ ହେବା ଉଚିତ୍ ନୁହେଁ। ଦେଶର ସବୁ ଶ୍ରେଣୀର ପିଲାଙ୍କ ପାଇଁ ଗୋଟିଏ ସାଧାରଣ ବିଦ୍ୟାଳୟ ରହିବ। ଧନୀକମାନଙ୍କ ପାଇଁ ସ୍ୱତନ୍ତ୍ର ସ୍କୁଲ ପରିକଳ୍ପନା କରିବା ଉଚିତ୍ ନୁହେଁ। କୋଠାରୀ କମିଶନ ଯେଉଁ Neighbourhood

ବା Common School ସ୍କୁଲ ପାଇଁ ସୁପାରିଶ୍ କରିଛନ୍ତି ତାହାକୁ କାର୍ଯ୍ୟକାରୀ କରିବା ପାଇଁ ନିଷ୍ପତ୍ତି ନିଆଗଲା।

ଶିଶୁ କେନ୍ଦ୍ରିକ ଆନନ୍ଦଦାୟକ ଶିକ୍ଷା ଦିଆଯାଇ ପିଲାଙ୍କ ଉପରେ ସୃଷ୍ଟି ହେଉଥିବା ପାଠର ଚାପରୁ ସେମାନଙ୍କୁ ମୁକ୍ତ କରିବାକୁ ଉଦ୍ୟମ କରାଯିବ। ପ୍ରତ୍ୟେକ ପିଲା ତା'ର ମାତୃଭାଷା ମାଧ୍ୟମରେ ପ୍ରାଥମିକ ଶିକ୍ଷା ପାଇବ । ରାଜ୍ୟର ସବୁ ଅଞ୍ଚଳ ପାଇଁ ଗୋଟିଏ ପାଠ୍ୟକ୍ରମ ବ୍ୟବସ୍ଥା ବଦଳରେ ସ୍ଥାନୀୟ ଆବଶ୍ୟକତାକୁ ଦୃଷ୍ଟିରେ ରଖି ପାଠ୍ୟକ୍ରମ ପ୍ରସ୍ତୁତ କରାଯିବ ଓ ତଦନୁଯାୟୀ ପାଠ୍ୟ ପୁସ୍ତକ ପ୍ରସ୍ତୁତ କରାଯିବ।

ସର୍ବୋପରି ସରକାରୀ ପରିଚାଳନାରୁ ପ୍ରାଥମିକ ଶିକ୍ଷାକୁ ମୁକ୍ତ କରି ସ୍ଥାନୀୟ ସଂଗଠନ ଉପରେ ପ୍ରାଥମିକ ଶିକ୍ଷା ପରିଚାଳନା ଦାୟିତ୍ୱ ଦିଆଯିବ। "Elementary Education By the state is altogether objectionable" Karl Marx ଙ୍କ ମତକୁ ଗ୍ରହଣ କରି ସ୍ଥାନୀୟ ଲୋକଙ୍କ ଉପରେ ତାଙ୍କ ସାମାଜିକ, ଅର୍ଥନୈତିକ, ସାଂସ୍କୃତିକ ଅବସ୍ଥା ଦୃଷ୍ଟିରୁ ପ୍ରାଥମିକ ଶିକ୍ଷାକୁ ରୂପାୟିତ କରାଯିବାକୁ ଛାଡି ଦିଆଯିବା ଉଚିତ୍ ବୋଲି ପ୍ରସ୍ତାବ ଗୃହୀତ ହେଲା । ଗ୍ରାମର ସମସ୍ତ ବିକାଶମୂଳକ କାର୍ଯ୍ୟକ୍ରମ ପ୍ରାଥମିକ ବିଦ୍ୟାଳୟ ମାଧମରେ କରାଯିବାକୁ ମତପ୍ରକାଶ ପାଇଲା।

ଯେଉଁ ପ୍ରାଥମିକ ଶିକ୍ଷାର ପରିକଳ୍ପନା କରାଗଲା ତା'ର ନାମ ରଖାଗଲା, "ସାର୍ବଜନୀନ ପ୍ରାଥମିକ ଶିକ୍ଷା ପାଇଁ ଲୋକଶାଳା" କାର୍ଯ୍ୟକ୍ରମ । ସରକାରୀ ନିୟନ୍ତ୍ରଣ ବଦଳରେ (Community Control of Primary education) ଗୋଷ୍ଠୀ ନିୟନ୍ତ୍ରିତ ପ୍ରାଥମିକ ଶିକ୍ଷା ଉପରେ ଅଧିକ ଗୁରୁତ୍ୱ ଦିଆଗଲା। ଏ ପ୍ରକାର ପରିକଳ୍ପନା ସଂପୂର୍ଣ୍ଣ ନୂଆ ନ ହେଲେ ମଧ୍ୟ ଏ ପର୍ଯ୍ୟନ୍ତ କୌଣସି ସଂଗଠନ ସରକାରୀ ନୀତି ଓ କାର୍ଯ୍ୟକାରିତାର କଠୋର ସମାଲୋଚନା କରି ନୂଆ ପ୍ରକାର ପ୍ରାଥମିକ ଶିକ୍ଷା କଥା ଚିନ୍ତା କରିନଥିଲେ।

ଆନ୍ତର୍ଜାତୀୟ ଅନୁଷ୍ଠାନମାନେ "ଲୋକଶାଳା" କାର୍ଯ୍ୟକ୍ରମକୁ ଗ୍ରହଣ କରି ତାଙ୍କର ଶିକ୍ଷା କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରିଥିଲେ। କିନ୍ତୁ ଭାରତ ଜନ ଜ୍ଞାନ ବିଜ୍ଞାନ ସମିତି ସହିତ ତାଙ୍କର ମତଭେଦ ହେବାରୁ ସେମାନେ ତାଙ୍କ କାର୍ଯ୍ୟକ୍ରମର ନାମ "ଲୋକଶାଳା" ବଦଳରେ "ଜନଶାଳା" ରଖିଲେ କିନ୍ତୁ ମୁଖ୍ୟତଃ ତାହା "ଲୋକଶାଳା" କାର୍ଯ୍ୟକ୍ରମର ଅନୁରୂପ ହେଲା।

## ୧୨.୭ ପୁନରୁ□ାନ ପାଇଁ ରାଷ୍ଟ୍ରୀୟ ଜନ ଅଭିଯାନ

ଭାରତ ଜନ ବିଜ୍ଞାନ ଯାଥା ପର୍ଯ୍ୟାୟ ମୁଖ୍ୟତଃ ବୈଜ୍ଞାନିକ ସଚେତନତା ଜାଗ୍ରତ କରିବା ପାଇଁ ଉଦ୍ଦିଷ୍ଟ ଥିଲା । ଦୁଇବର୍ଷର ଯାଥା କାର୍ଯ୍ୟକ୍ରମ ଦ୍ୱାରା ଲୋକଙ୍କର ସଚେତନତା ବୃଦ୍ଧି ପାଇଲା ।

କିନ୍ତୁ ଯାଥାର ମୁଖ୍ୟ ଉଦ୍ଦେଶ୍ୟ ସାମାଜିକ ଉନ୍ନତି ସାଧିତ ହେବା ପାଇଁ ଆହୁରି ଅଧିକ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବାକୁ ପଡିଲା । ରାଷ୍ଟ୍ରୀୟ ଜନ ଅଭିଯାନ କାର୍ଯ୍ୟକ୍ରମ ଏକ ଦୀର୍ଘକାଳ ସ୍ଥାୟୀ କାର୍ଯ୍ୟକ୍ରମ ହୋଇଥିବାରୁ ଓଡିଶାର ବିଶେଷତ୍ୱ ବିଷୟକୁ ନେଇ କାର୍ଯ୍ୟକ୍ରମ ପ୍ରସ୍ତୁତ କିରବାକୁ ପଡିଲା । ଓଡିଶାର ବିଶେଷତ୍ୱଗୁଡିକ ହେଲା:-



ଲେଖକ, ଖୋର୍ଦ୍ଧା ଜିଲ୍ଲା ରଷ୍ଟ୍ରୀୟ ଜନ ଅଭିଯାନ କର୍ମଶାଳାରେ ଭାଷଣ ଦେଉଛନ୍ତି । ଡାହାଣ ପାଖରେ ଡକ୍ଟର ତାପସ କବି ଓ ଡକ୍ଟର ଆର୍. ଏନ୍ ରାୟ ଓ ବାମ ପାଖରେ ଖୋର୍ଦ୍ଧା ଜିଲ୍ଲା ସଂଗଠକ (୧୯୯୫) ।

(୧) ଓଡିଶା ଜନସଂଖ୍ୟାର ଏକ ଚତୁର୍ଥାଂଶ ତଫସିଲଭୁକ୍ତ ଜନଜାତି ଓ ୧୬ ପ୍ରତିଶତ ତଫସିଲଭୁକ୍ତ ଜାତି । ଏମାନଙ୍କ ଉନ୍ନତି ପାଇଁ ସ୍ୱତନ୍ତ୍ର ଯୋଜନା ଆବଶ୍ୟକ ।

(୨) ଓଡିଶାରେ ପାଞ୍ଚଗୋଟି ଭୌଗୋଳିକ ସାଂସ୍କୃତିକ ମଣ୍ଡଳ ରହିଛି । ଯଥା :

(କ) ପାର୍ବତ୍ୟ ଓ ଆରଣ୍ୟ ଦକ୍ଷିଣ ଓଡିଶା, କୋରାପୁଟ, ମାଲକାନଗିରି, ନବରଙ୍ଗପୁର, ରାୟଗଡା, ଫୁଲବାଣୀ ଓ କଳାହାଣ୍ଡି ।

(ଖ)ପାର୍ବତ୍ୟ ଓ ଆରଣ୍ୟ ଉତ୍ତର ଓଡିଶା, ମୟୂରଭଞ୍ଜ, କେଉଁଝର ଓ ସୁନ୍ଦରଗଡ ।

(ଗ)ଉପକୂଳ ସମତଳ ଭୂମି, ପୁରୀ, ଖୋର୍ଦ୍ଧା, ନୟାଗଡ, ଜଗତ୍‌ସିଂପୁର , କେନ୍ଦ୍ରାପଡା, କଟକ, ଯାଜପୁର, ଭଦ୍ରକ,

ବାଲେଶ୍ୱର ଓ ଢେଙ୍କାନାଳର ଦକ୍ଷିଣାଂଶ ସହିତ ଚିଲିକା ହ୍ରଦ ଓ ଭିତରକନିକା।

(ଘ)ତାଳଚେରର କୋଇଲା ଖଣି ଅଞ୍ଚଳ, ଢେଙ୍କାନାଳ, ଯାଜପୁର, କୋରାପୁଟ, ସମ୍ବଲପୁର ଖଣି ଅଞ୍ଚଳ।

(ଙ) ପଶ୍ଚିମ ଓଡିଶାର ଅଣଆଦିବାସୀ ଅଞ୍ଚଳ ସମ୍ବଲପୁର, ଝାରସୁଗୁଡା, ଦେଓଗଡ, ବରଗଡ, ବଲାଙ୍ଗୀର ଓ ନୂଆପଡା ଜିଲ୍ଲା।

ପ୍ରତ୍ୟେକ ଅଞ୍ଚଳର ସ୍ୱତନ୍ତ୍ର ସମସ୍ୟା , ପରିବେଶ ଓ ସାଂସ୍କୃତିକ ବୈଚିତ୍ର୍ୟ ପରିଲକ୍ଷିତ ହୁଏ। ପ୍ରତ୍ୟେକ ଅଞ୍ଚଳର ଜୀବନଧାରା ସ୍ୱତନ୍ତ୍ର। ଲୋକଙ୍କ ଜୀବନଧାରା ଓ ସାଂସ୍କୃତିକ ପରିବେଶ ପାଇଁ ସ୍ୱତନ୍ତ୍ର ଯୋଜନା କରିବାକୁ ହେବ।

## ଓଡିଶାର ଭାଷା ସମସ୍ୟା

ସାଧାରଣ ଭାବରେ ଦେଖିଲେ ଓଡିଶାର ଭାଷା ଓଡିଆ। ଏହା ଓଡିଶାର ଲୋକଙ୍କ ଭାଷା ଓ ଓଡିଶାର ଅଫିସୀୟ ଭାଷା। ତଥାପି ସ୍ଥାନୀୟ ଉପଭାଷା ପଶ୍ଚିମ ଓଡିଶାରେ, ଦକ୍ଷିଣ ଓଡିଶାରେ, ଉତ୍ତର ଓଡିଶାରେ ଲୋକଭାଷା ରୂପେ ପ୍ରଚଳିତ । ଓଡିଶାର ୬୨ ଗୋଟି ଆଦିବାସୀଙ୍କର ୬୨ ଟି ଭାଷା ରହିଛି। ସେଥିମଧ୍ୟରୁ କେତେକ ଭାଷାର ଲିପି ଅଛି। ଆଉ ଅନେକଗୁଡିଏ ଆଦିବାସୀ ଭାଷାର ଲିପି ନାହିଁ।

## ଓଡିଶାର ସମସ୍ୟା

(୧) ପ୍ରାଥମିକ ଶିକ୍ଷା ପରିଚାଳନାରେ ଭାଷା ସମସ୍ୟା ସମାଧାନ କରିବା କଷ୍ଟକର।

(୨) ଗଞ୍ଜାମ ଓ ଗଜପତି ଜିଲ୍ଲାର ପରିମଳ ସମସ୍ୟା ପ୍ରଶାସନ ପାଇଁ ମୁଣ୍ଡବଥାର କାରଣ ହୋଇଛି।

(୩) କଳାହାଣ୍ଡି, ନୂଆପଡା, ଫୁଲବାଣୀ ଜିଲ୍ଲାରେ ଜଳସେଚନ ସମସ୍ୟା ଉତ୍କଟ।

(୪) ଶିଶୁ ମୃତ୍ୟୁହାର ଓ ମାତୃମୃତ୍ୟୁହାର ସର୍ବାଧିକ ।

(୫) ସର୍ବୋପରି ଓଡିଶା ଲୋକଙ୍କର ଦାରିଦ୍ର୍ୟ ସବୁ ଉନ୍ନତିକୁ ବ୍ୟାହତ କରୁଛି। ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଲୋକଙ୍କ ପରିମାଣ ଶତକଡା ୪୦ ରୁ ଅଧିକ।

(୬) ଯାହା ବି ରାଜସ୍ୱହାନି ହେଉ ସବୁ ପ୍ରକାର ମଦ ତିଆରି ଓ ମଦ ବିକ୍ରି ବନ୍ଦ ହେବା ଉଚିତ୍। ମଦ ବିକ୍ରି ଫଳରେ ସମାଜର ଯଥେଷ୍ଟ କ୍ଷତି ହୋଇସାରିଲାଣି। ଦେଶୀ ଓ ବିଦେଶୀ ଉଭୟ ପ୍ରକାର ମଦ ସଂପୂର୍ଣ୍ଣ ନିଷିଦ୍ଧ ହେବା ଦରକାର।

(୭) ମହିଳାମାନଙ୍କ ଉପରେ ଅତ୍ୟାଚାର କ୍ରମେ ବଢି ଚାଲିଛି। ଯୌତୁକ ଜୁଇରେ ବହୁ ମହିଳାଙ୍କର ପ୍ରାଣ ଗଲାଣି। ଯୌତୁକ ଧନୀକ ଶ୍ରେଣୀର ଏକ ଫେସନରେ ପରିଣତ ହେଲାଣି। ଯୌତୁକ ବିରୁଦ୍ଧରେ ସାମାଜିକ ଆନ୍ଦୋଳନ ହେବା ଉଚିତ୍। ଉପହାର ଆକାରରେ ହେଉ ବା ଦାବି ପୂରଣ ଆକାରରେ ହେଉ ସବୁ ପ୍ରକାର ଯୌତୁକ ବିରୋଧ କରିବାକୁ ଏହି ଆନ୍ଦୋଳନର କର୍ମୀମାନେ ଉଦ୍ୟମ କରିବେ।

(୮) ଜନସଂଖ୍ୟା ନିୟନ୍ତ୍ରଣ ସବୁଠାରୁ ଜରୁରୀ କାର୍ଯ୍ୟକ୍ରମ ହୋଇପଡିଛି। ବିକାଶର ସମସ୍ତ ଲାଭ ଜନସଂଖ୍ୟା ବୃଦ୍ଧି ଦ୍ୱାରା ପ୍ରତିହତ ହେଉଛି। ସରକାରୀ ଆଦେଶ ନାମା ବଳରେ ଜନ୍ମ ନିୟନ୍ତ୍ରଣ ହୋଇ ପାରିନାହିଁ। ବର୍ତ୍ତମାନ ସାମାଜିକ ଆନ୍ଦୋଳନ ଦ୍ୱାରା ଜନ୍ମ ନିୟନ୍ତ୍ରଣ ନକଲେ ଦେଶର ଭବିଷ୍ୟତ ଅନ୍ଧକାରମୟ।

(୯) ଭାରତୀୟ ସଂସ୍କୃତି ପ୍ରତି ସମ୍ମାନ ବହୁ ସାମାଜିକ ସମସ୍ୟାର ସମାଧାନରେ ସହାୟକ ହେବ। ପାଶ୍ଚାତ୍ୟ ସଭ୍ୟତାର ଅନ୍ଧାନୁକରଣ ଦ୍ୱାରା ସମାଜ ଯେତିକି କ୍ଷତି ସହିଲାଣି ତା' ର କଳନା ନାହିଁ। ବସ୍ତୁବାଦୀ ପାଶ୍ଚାତ୍ୟ ସଭ୍ୟତା ପଛରେ ଗୋଡାଇ ଯୁବ ସମାଜ ପଥ ଭ୍ରଷ୍ଟ ହେଉଛି। ଭାରତୀୟ ସଭ୍ୟତା ପ୍ରତି ସମ୍ମାନ ଓ ଭାରତୀୟ ସଭ୍ୟତାରେ ଜୀବନଯାପନ ବହୁ ସାମାଜିକ ଓ ଅର୍ଥନୈତିକ ସମସ୍ୟାର ସମାଧାନରେ ସାହାଯ୍ୟ କରିବ।

ରାଷ୍ଟ୍ରୀୟ ଜନ ଆନ୍ଦୋଳନର କର୍ମୀମାନେ ପ୍ରଶାସନକୁ ସାହାଯ୍ୟ କରିବା ପାଇଁ ବଦ୍ଧ ପରିକର। ପ୍ରଶାସନ ସାମାଜିକ ନ୍ୟାୟ ପ୍ରତିଷ୍ଠା ପାଇଁ କାର୍ଯ୍ୟକ୍ରମ କରିବା ଆବଶ୍ୟକ।

## ୧୨.୮ ପିଲାଙ୍କ ବିଜ୍ଞାନ କଂଗ୍ରେସ - ଶିଶୁ ବିଜ୍ଞାନୀ ଚିହ୍ନଟ

୧୯୮୭ ଭୋପାଳ ଗ୍ୟାସ ଦୁର୍ଘଟଣାରେ ପ୍ରାୟ ୩୦୦୦ ଲୋକଙ୍କ ମୃତ୍ୟୁ ପରେ ଭାରତ ସରକାର ବିଜ୍ଞାନ ସଚେତନତା ପ୍ରସାର ପାଇଁ ଗୁରୁତ୍ୱର ସହ ଚିନ୍ତା କଲେ। ୧୯୮୭ ମସିହାର ପ୍ରଥମ ଭାରତ ଜନ ବିଜ୍ଞାନ ଯାଥା ଲୋକଙ୍କର ସ୍ୱତଃ ପ୍ରତିକ୍ରିୟା ସ୍ୱରୂପ ସଂଗଠିତ ହୋଇଥିଲା। ପ୍ରଥମ ଯାଥାର ସଫଳତା ଦେଖି ଭାରତ ସରକାର ବିଜ୍ଞାନ ଯାଥା ଉପରେ ଅଧିକ ଗୁରୁତ୍ୱ ଆରୋପ କଲେ ଓ ସକ୍ରିୟ ଭାବରେ ୧୯୯୧ ମସିହାରେ ଦ୍ୱିତୀୟ ଜନ ବିଜ୍ଞାନ ଯାଥା ପାଇଁ ପ୍ରକ୍ରିୟା ଅରମ୍ଭ କଲେ। National Council for Science and Technology Communications Network (NCSTC Network) ମାଧ୍ୟମରେ ଏହି କାର୍ଯ୍ୟକ୍ରମ ପରିଚାଳନା ପାଇଁ ନିଷ୍ପତ୍ତି ଗ୍ରହଣ କରାଗଲା। ଦ୍ୱିତୀୟ ଯାଥାର ଅଭୁତପୂର୍ବ ସଫଳତା ଯୋଗୁଁ ଲୋକ ବିଜ୍ଞାନ ଅନ୍ଦୋଳନ ବହୁଧା ବିଭକ୍ତ ହୋଇ ଭିନ୍ନ ଭିନ୍ନ ମାର୍ଗରେ ପରିଚାଳିତ ହେଲା। ବହୁ ସଂଖ୍ୟାରେ ବିଜ୍ଞାନ କ୍ଲବ, ପରିବେଶ ସଚେତନତା ଶିବିର ଓ ଅନୁଷ୍ଠାନ ଗଢିଉଠିଲା। ସେତେବେଳେ NCSTC Network ମାଧ୍ୟମରେ Children's Science Congress ସଂଗଠିତ ହେଲା । ଏହା ମୁଖ୍ୟତଃ ୧୦ ବର୍ଷରୁ ୧୮ ବର୍ଷ ବୟସ୍କ ପିଲାଙ୍କ ପାଇଁ ଉଦ୍ଦିଷ୍ଟ । ପିଲା ସ୍କୁଲରେ ପଢୁ ଥାଉ କି ନଥାଉ କିଛି ଯାଏ ଆସେ ନାହିଁ। ପିଲାଙ୍କ ବିଜ୍ଞାନ କଂଗ୍ରେସରେ ପିଲାମାନେ ସ୍ଥାନୀୟ ସମସ୍ୟାକୁ ନେଇ ପ୍ରକଳ୍ପ ପ୍ରସ୍ତୁତ କରନ୍ତି। ସମସ୍ୟା ସଂପର୍କରେ ସେମାନେ ସ୍ଥାନୀୟ ବ୍ୟକ୍ତି, ଅନୁଷ୍ଠାନମାନଙ୍କରୁ ତଥ୍ୟ ସଂଗ୍ରହ କରନ୍ତି। ଏଥିରେ ଶିକ୍ଷକମାନେ ସାହାଯ୍ୟ କରନ୍ତି।ଏହି ପ୍ରକ୍ରିୟାର ବିଶେଷତ୍ୱ ହେଲା ଏହା ଦଳଗତ କାର୍ଯ୍ୟ, ବ୍ୟକ୍ତିଗତ କାର୍ଯ୍ୟ ନୁହେଁ। ଏକ ପାଞ୍ଚ ଜଣିଆ ଦଳ ପ୍ରକଳ୍ପ ପ୍ରସ୍ତୁତ କରନ୍ତି, ସେମାନଙ୍କ ମଧ୍ୟରୁ ଜଣେ ମୁଖ୍ୟ ଥାଆନ୍ତି। ସେ ବିଭିନ୍ନ ସ୍ତରରେ ପ୍ରକଳ୍ପ ଉପସ୍ଥାପନ କରନ୍ତି। ଯେଉଁ ସଫଳତା ମିଳେ ତାହା ଦଳର ପ୍ରାପ୍ୟ।

ଭାରତରେ ପିଲାଙ୍କ ବିଜ୍ଞାନ କଂଗ୍ରେସ ୧୯୯୩ ମସିହାଠାରୁ ଆରମ୍ଭ ହେଲା। ଓଡିଶାରେ ପ୍ରଥମେ ଜୱାହର ବାଳଭବନ ଏହାକୁ ଆରମ୍ଭ କରିଥିଲେ ଓ ରମେଶ ଚନ୍ଦ୍ର ସାମନ୍ତରାୟ ପ୍ରଥମ ଆବାହକ ଥିଲେ। ପ୍ରଥମ ଦୁଇବର୍ଷ ସେ ତାଙ୍କ ଦ୍ୱାରା ପରିଚାଳିତ ହାଇସ୍କୁଲ ପିଲାଙ୍କ ଦ୍ୱାରା ପ୍ରକଳ୍ପ ପ୍ରସ୍ତୁତ କରାଇ ଜାତୀୟ ସ୍ତରରେ ଉପସ୍ଥାପନା କରିଥିଲେ। ସ୍ଥାନୀୟ, ଜିଲ୍ଲା ବା ରାଜ୍ୟ ସ୍ତରରେ ପ୍ରକଳ୍ପ

ଉପସ୍ଥାପନା ଓ ମୂଲ୍ୟାୟନ କାର୍ଯ୍ୟ କରାଯାଉ ନଥିଲା । ଦ୍ୱିତୀୟତଃ ପ୍ରକଳ୍ପ ପ୍ରସ୍ତୁତି ସଂପର୍କରେ କାହାର ସ୍ପଷ୍ଟ ଧାରଣା ନଥିବାରୁ ପ୍ରକଳ୍ପଗୁଡିକର ଉଚ୍ଚ ଗୁଣାତ୍ମକମାନ ନଥିଲା । ପ୍ରଥମ ଓ ଦ୍ୱିତୀୟ ବର୍ଷ ଯେତେବେଳେ NCSTC Network ରୁ ଚିଠି ଆସିଲା ତାହା ଓଡିଶା ସରକାର ବା SCERT କୁ ଦିଆଯାଇ ଚପାଇ ଦିଆଗଲା । ତୃତୀୟ ବର୍ଷ ଓଡିଶା ସରକାରଙ୍କୁ ତଥା SCERT କୁ ଚିଠି ଆସିଲା । ସେତେବେଳେ ଡକ୍ଟର ନରେନ୍ଦ୍ର ପ୍ରସାଦ ଦାସ SCERT ର ବିଜ୍ଞାନ ଉପନିର୍ଦ୍ଦେଶକ ଥିଲେ । ପୂର୍ବର ପ୍ରଥାକୁ ସେ ନାମଞ୍ଜୁର କରିଦେଲେ । ସମଗ୍ର ଓଡିଶାରେ ଏ ପ୍ରକଳ୍ପ କାର୍ଯ୍ୟର ପ୍ରଚାର ଓ ପିଲାମାନଙ୍କ ଦ୍ୱାରା ଅଂଶ ଗ୍ରହଣ ଉପରେ ଗୁରୁତ୍ୱ ଦିଆଗଲା । କେତେକ ଅଞ୍ଚଳରେ ପ୍ରକଳ୍ପ ପ୍ରସ୍ତୁତି ବିଷୟରେ ଆଲୋଚନା ହେଲା । ଯେଉଁମାନେ ଜିଲ୍ଲା ବା ରାଜ୍ୟସ୍ତରକୁ ସେମାନଙ୍କ ପ୍ରକଳ୍ପ ଉପସ୍ଥାପନ ପାଇଁ ଆଣିଲେ ସେମାନଙ୍କର ଗସ୍ତ ଖର୍ଚ୍ଚ ମଧ ପାଇଲେ ନାହିଁ । ଫଳରେ ପିଲାଙ୍କ ବିଜ୍ଞାନ କଂଗ୍ରେସ କାର୍ଯ୍ୟରେ ନାନା ବିଭ୍ରାଟ ଦେଖାଦେଲା ।

୧୯୯୫-୯୬ ବେଳକୁ ଲୋକ ବିଜ୍ଞାନ ଆନ୍ଦୋଳନ ଭାରତରେ ଖୁବ୍ ସୁନାମ କଲାଣି । ବିଶେଷତଃ ୧୯୯୫ ମସିହାରେ ଭାରତ ଜନ ବିଜ୍ଞାନ ଯାଥା ତରଫରୁ ଯେଉଁ ମନ୍ଥନ ସମ୍ମିଳନୀ ଅନୁଷ୍ଠିତ ହେଲା ସେଥିରେ ଓଡିଶାର ବିଜ୍ଞାନ ପ୍ରସାର କାର୍ଯ୍ୟ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିସାରିଥିଲା । ମନ୍ଥନ ସମ୍ମିଳନୀ ପରିଚାଳନାରେ ଡକ୍ଟର ଆର୍. ଏନ୍. ରାୟଙ୍କର କାର୍ଯ୍ୟ ଉଚ୍ଚ ପ୍ରଶଂସିତ ହୋଇଥିଲା । ଓଡିଶାରେ ଭାରତ ଜନ ବିଜ୍ଞାନ କାର୍ଯ୍ୟକ୍ରମ ଉଚ୍ଚ ପ୍ରଶଂସିତ ହେବା ସହିତ ଡକ୍ଟର ଆର୍. ଏନ୍. ରାୟଙ୍କ ଅବଦାନ NCSTC ଦ୍ୱାରା ସ୍ୱୀକୃତି ଲାଭ କରିସାରିଥିଲା । ଯେ ହେତୁ ଭାରତ ଜନବିଜ୍ଞାନ ଯାଥା ଓ ପିଲାଙ୍କ ବିଜ୍ଞାନ କଂଗ୍ରେସ ଗୋଟିଏ ସଂସ୍ଥା ଦ୍ୱାରା ଜାତୀୟ ସ୍ତରରେ ସଞ୍ଚାଳିତ, ଆୟୋଜିତ ଓ ସଂଗଠିତ ହେଉଥିଲା ଓ NCSTC Network ରମେଶ ଚନ୍ଦ୍ର ସାମନ୍ତରାୟଙ୍କ କାମରେ ଅସନ୍ତୁଷ୍ଟ ଥିଲେ ତାଙ୍କ ସ୍ଥାନରେ ଡକ୍ଟର ରାୟଙ୍କୁ ଓଡିଶାର ପିଲାଙ୍କ ବିଜ୍ଞାନ କଂଗ୍ରେସର ଆବାହକ ଭାବରେ ନିଯୁକ୍ତ କଲେ । ପରବର୍ତ୍ତୀ କାଳରେ ନିର୍ବାଚନ ପ୍ରକ୍ରିୟାରେ ଆବାହକ ନିଯୁକ୍ତି ପାଇଁ ମଧ୍ୟ ସେମାନେ ଚିଠି ଲେଖିଲେ ।

୧୯୯୬ ମସିହାରେ ପିଲାଙ୍କ ବିଜ୍ଞାନ କଂଗ୍ରେସ ପରିଚାଳନା ଦାୟିତ୍ୱ ଡକ୍ଟର ଆର୍. ଏନ୍. ରାୟଙ୍କ ଉପରେ ପଡିଲା । ପରିଚାଳନା ପାଇଁ ନାନା ପ୍ରକାର ସମସ୍ୟା ଦେଖାଦେଲା । ପ୍ରଥମ କଥା ହେଲା ରମେଶ ଚନ୍ଦ୍ର ସାମନ୍ତରାୟଙ୍କୁ

ଆବାହକ ପଦରୁ ବାହାର କରି ଦେବାରୁ ସେ ବିଭ୍ରାଟ ସୃଷ୍ଟି ପାଇଁ ନାନା ପ୍ରକାର କୌଶଳ ପ୍ରୟୋଗ କଲେ। ଦ୍ୱିତୀୟତଃ SCERT ର ବିଜ୍ଞାନ ଉପନିର୍ଦ୍ଦେଶକ ଲିଆକତ୍ ଅଲ୍ଲି ଓ ତାଙ୍କ ସୁପରଭାଇଜରମାନେ ଅସନ୍ତୋଷ ପ୍ରକାଶ କଲେ। ତୃତୀୟ ସମସ୍ୟା ଯାହା ମୁଖ୍ୟ ପ୍ରତିବନ୍ଧକ ଭାବରେ ଦେଖାଦେଲା ତାହା ହେଉଛି ଅର୍ଥ ସମସ୍ୟା । ପୂର୍ବ ବର୍ଷରେ ଯାହା ଅନୁଦାନNCSTC Network ରୁ ମିଳିଥିଲା ତାହା ସବୁ ରମେଶ ଚନ୍ଦ୍ର ସାମନ୍ତରାୟ ରଖିନେଲେ। ଗୋଟିଏ ବି ପଇସା ଦେଲେ ନାହିଁ। ନୂଆ କରି ଆମେ ସମଗ୍ର ଓଡିଶା ରାଜ୍ୟର ବିଭିନ୍ନ ଅନୁଷ୍ଠାନର ପ୍ରକଳ୍ପ ମୂଲ୍ୟାୟନ ଜିଲ୍ଲା ସ୍ତରରେ ଓ ରାଜ୍ୟ ସ୍ତରରେ କରାଇବା ପାଇଁ ବହୁତ ଟଙ୍କା ଦରକାର ହେଲା, ପ୍ରାୟ ତିନି ଲକ୍ଷ ଟଙ୍କା । ଏତେ ଟଙ୍କା ଧାର ସୂତ୍ରରେ ସଂଗ୍ରହ କରିବା କଷ୍ଟକର ହେଲା। ଯାହା ବା ବ୍ୟବସ୍ଥା କରି ହୋଇଥାନ୍ତା  ରାଜ୍ୟ ସ୍ତର ମୂଲ୍ୟାୟନ ଓ ଜାତୀୟ ସ୍ତର ମୂଲ୍ୟାୟନ ନିକଟ ହୋଇଗଲା। ତେଣୁ ଅନନ୍ୟୋପାୟ ହୋଇ ମୁଁ ୟୁନିସେଫ୍ ମୁଖ୍ୟ ବିନୋଦ ଆଲକାରୀଙ୍କ ନିକଟକୁ ଯାଇ ତାଙ୍କୁ ସବୁକଥା ବୁଝାଇ କହିବାରୁ ସେ କହିଲେ, " ଏହା ପିଲାଙ୍କ କାର୍ଯ୍ୟକ୍ରମ ହୋଇଥିବାରୁ ଆମେ ସାହାଯ୍ୟ କରିବାରେ କିଛି ଅସୁବିଧା ନଥିଲା । କିନ୍ତୁ ଏ ବର୍ଷର ବଜେଟ୍ ସ୍ଥିର ହୋଇ ଯାଇଥିବାରୁ ସାହାଯ୍ୟ କରିବା ସମ୍ଭବ ନୁହେଁ। ତେବେ ବିଭିନ୍ନ କାର୍ଯ୍ୟକ୍ରମରୁ କାଟି  ଆପଣଙ୍କ ସଂସ୍ଥାକୁ ଆମେ ୫୦୦୦୦ ଟଙ୍କା ଦେଇ ପାରିବୁ।

ୟୁନିସେଫ୍ର ୫୦୦୦୦ ଟଙ୍କା ଓ ଡକ୍ଟର ରାୟ ଧାର କରି ଆଣିଥିବା ଏକ ଲକ୍ଷ ଟଙ୍କାରେ ସେ ବର୍ଷର କାର୍ଯ୍ୟକ୍ରମ ଚଲାଇବାକୁ ପଡିଲା। ତା ପର ବର୍ଷଠାରୁ ଖର୍ଚ୍ଚର ପରିମାଣ ବୃଦ୍ଧି ପାଇବାକୁ ଲାଗିଲା କାରଣ ଅଧିକରୁ ଅଧିକ ପିଲା ଅଂଶ ଗ୍ରହଣ କରିବାକୁ ଲାଗିଲେ। ସରସ୍ୱତୀ ବିଦ୍ୟାମନ୍ଦିର, ଇଂରାଜି ମାଧ୍ୟମ ସ୍କୁଲ, ମିଶନ ସ୍କୁଲ ଆଦି ବହୁ ବେସରକାରୀ ସ୍କୁଲ ସହିତ ସରକାରୀ ସ୍କୁଲ ପିଲାମାନେ ବହୁ ସଂଖ୍ୟାରେ ପିଲାଙ୍କ ବିଜ୍ଞାନ କଂଗ୍ରେସରେ ଅଂଶ ଗ୍ରହଣ କଲେ। ଓଡିଆ ପିଲାଙ୍କର ପ୍ରକଳ୍ପ ସବୁ ଜାତୀୟ ସ୍ତରରେ ଉଚ୍ଚ ପ୍ରଶଂସିତ ହେଲା। ଓଡିଶାର ଜୟପୁର ଶିକ୍ଷାମଣ୍ଡଳରେ ଗୋଟିଏ ଆଦିବାସୀ ପିଲାର ପ୍ରକଳ୍ପ ଭାରତର ଶ୍ରେଷ୍ଠ ପ୍ରକଳ୍ପ ଭାବରେ ଗୋଟିଏ ବର୍ଷରେ ବିବେଚିତ ହୋଇଥିଲା। ବହୁ ଶିଶୁ ବିଜ୍ଞାନୀଙ୍କୁ ଚିହ୍ନଟ କରାଯାଇ ସମ୍ମାନିତ କରାଗଲା।

୧୯୯୬ ମସିହା ଅପ୍ରେଲ ମାସରେ NCSTC Network ରୁ ଚିଠି ଆସିଲା ଯେ ନିୟମିତ ନିର୍ବାଚନ ପ୍ରକ୍ରିୟାରେ ଆବାହକ ନିଯୁକ୍ତି କରାଯିବ । ଏଥିପାଇଁ ୩ । ୫ । ୧୯୯୬ ତାରିଖରେ SCERT ସମ୍ମିଳନୀ କକ୍ଷରେ ଗୋଟିଏ ସଭା କରାଗଲା। ସେହି ସଭାକୁ ପାଟନା ବିଶ୍ୱ ବିଦ୍ୟାଳୟର ପଦାର୍ଥ ବିଜ୍ଞାନ ପ୍ରଫେସର ଏସ୍.ପି.ବର୍ମା observer ଭାବରେ ଆସିଥିଲେ। ସେହି ସଭାରେ SCERT ର ବିଜ୍ଞାନ ଉପନିର୍ଦ୍ଦେଶକ ଲିଆକତ୍ ଅଲ୍ଲି ଆପତ୍ତି ଉଠାଇବାରୁ ଆବାହକ ନିର୍ବାଚନ ବନ୍ଦ ହୋଇଗଲା। ମୁଁ ଗୋଟିଏ ପ୍ରସ୍ତାବ ଦେଲି ଯେ ପ୍ରଫେସର ବର୍ମା ଆଉ ଥରେ ଆସିବା ସମ୍ଭବ ନୁହେଁ। ତେଣୁ ଆମେ ଗୋଟିଏ Ad hoc Committee ଗଠନ କରିଦେବା । ସେ କମିଟି ପରେ ଗୋଟିଏ ସଭା ଡାକି ଆବାହକ ନିର୍ବାଚନ କରାଇ ଦେବେ। ଏହି କମିଟି ଡାକିବା ଦାୟିତ୍ୱ SCERT ବିଜ୍ଞାନ ଉପନିର୍ଦ୍ଦେଶକଙ୍କୁ ଦିଆଗଲା। ପରବର୍ତ୍ତୀ କାଳରେ Ad hoc Committee ଡକାଯାଇ ଡକ୍ଟର ଆର୍ . ଏନ୍ ରାୟଙ୍କୁ ନିର୍ବାଚିତ ଆବାହକ ଭାବରେ ଘୋଷଣା କରାଗଲା।

ପିଲାଙ୍କ ବିଜ୍ଞାନ କଂଗ୍ରେସ ପ୍ରତି ଦୁଇବର୍ଷରେ ଥରେ ଗୋଟିଏ ବିଷୟ ନିର୍ବାଚନ କରନ୍ତି। ପରବର୍ତ୍ତୀ ଦୁଇବର୍ଷ ସେହି ବିଷୟରେ ପ୍ରକଳ୍ପ ପ୍ରସ୍ତୁତ କରାଯାଏ। ପିଲାଙ୍କ ଦ୍ୱାରା ବିଷୟ ନିର୍ବାଚନ କରାଯାଏ। ସେହି ବିଷୟରେ ପିଲାମାନେ ସ୍ଥାନୀୟ ସମସ୍ୟା ଚିହ୍ନଟ କରି ପ୍ରକଳ୍ପ ପ୍ରସ୍ତୁତ କରନ୍ତି। ପିଲାଙ୍କ ବିଜ୍ଞାନ କଂଗ୍ରେସରେ ପ୍ରଦର୍ଶନ ବେଶୀ ଗୁରୁତ୍ୱପୂର୍ଣ୍ଣ ନୁହେଁ ବରଂ ସମସ୍ୟା ଚିହ୍ନଟ, ତଥ୍ୟ ସଂଗ୍ରହ, ଲୋକ ସଂପୃକ୍ତି ଓ ଆଲୋଚନା ପ୍ରକଳ୍ପ ପାଇଁ ଆବଶ୍ୟକ।

ପିଲାଙ୍କ ବିଜ୍ଞାନ କଂଗ୍ରେସ କାର୍ଯ୍ୟକ୍ରମ ପ୍ରତିବର୍ଷ ଏତେ ସଂପ୍ରସାରିତ ହେଲା ଯେ ତାକୁ ପରିଚାଳନା କରିବା କଷ୍ଟକର ହୋଇପଡିଲା। ଜିଲ୍ଲା ସ୍ତରରେ ଆବାହକମାନଙ୍କୁ ଯେଉଁ ଆର୍ଥିକ ସାହାଯ୍ୟ ଦିଆଯାଏ ତାହା ଖୁବ୍ କମ୍। ସେମାନେ ଜିଲ୍ଲା ସ୍ତରରେ ଅର୍ଥ ବ୍ୟବସ୍ଥା କରନ୍ତି ଓ ସେଠାରେ ପ୍ରକଳ୍ପ ବାଛିବା କାର୍ଯ୍ୟ ଶେଷ କରନ୍ତି। ରାଜ୍ୟ ସ୍ତରରେ ମଧ୍ୟ ପ୍ରକଳ୍ପ ସଂଖ୍ୟା ବଢି ଚାଲିଲା। ପ୍ରକଳ୍ପ ମୂଲ୍ୟାୟନକାରୀଙ୍କ ସଂଖ୍ୟା ବଢିବା ସହିତ ବଡ ବଡ ଶିକ୍ଷାନୁଷ୍ଠାନମାନଙ୍କରେ ମୂଲ୍ୟାୟନ କାର୍ଯ୍ୟ କରିବାକୁ ପଡିଲା। ଆନନ୍ଦର କଥା ଯେ ବଡ ବଡ ଶିକ୍ଷାନୁଷ୍ଠାନମାନେ ପିଲାଙ୍କ ବିଜ୍ଞାନ କଂଗ୍ରେସ କାର୍ଯ୍ୟକ୍ରମ ପରିଚାଳନା କରିବାକୁ ଆଗେଇ ଆସିଲେ। ବକ୍ସି ଜଗବନ୍ଧୁ ଇଂରାଜି ମାଧ୍ୟମ ସ୍କୁଲ, ଲୟଲା ହାଇସ୍କୁଲ, ଚନ୍ଦ୍ରଶେଖରପୁର ଡି.ଏ.ଭି ସ୍କୁଲ, ସେଣ୍ଟମେରୀ ମିଶନ ହାଇସ୍କୁଲ କେବଳ ଯେ




ପିଲାଙ୍କ ଷଷ୍ଠ ବିଜ୍ଞାନ କଂଗ୍ରେସ ଉଦ୍ ଘାଟନୀ ଉତ୍ସବରେ ଲେଖକ ଭାଷଣ ଦେଉଛନ୍ତି ।
ପାଖରେ ଅତିଥି ଅଜିତ୍ ତ୍ରିପାଠୀ (୧୯୯୮)

ପିଲାଙ୍କ ବିଜ୍ଞାନ କଂଗ୍ରେସ କାର୍ଯ୍ୟକ୍ରମ ପରିଚାଳନା କଲେ ତାହା ନୁହେଁ ସେମାନେ ବହୁ ଭାବରେ ସହାୟତା ମଧ୍ୟ କଲେ।

୨୦୦୨ ମସିହାରେ ଭାରତ ଜନ ବିଜ୍ଞାନ ଯାଥା ତଥା ପିଲାଙ୍କ ବିଜ୍ଞାନ କଂଗ୍ରେସ ସଭାପତି ଡକ୍ଟର ତାପସ କବିଙ୍କର ଦେହାନ୍ତ ହେବାରୁ ତାଙ୍କ ସ୍ଥାନରେ ଡକ୍ଟର ସତ୍ୟେନ୍ଦ୍ର ପ୍ରସାଦ କରଙ୍କୁ ସର୍ବସମ୍ମତି କ୍ରମେ ସଭାପତି ନିର୍ବାଚିତ କରାଗଲା। ଡକ୍ଟର କରଙ୍କ ପରିଚାଳନାରେ ପିଲାଙ୍କ ବିଜ୍ଞାନ କଂଗ୍ରେସ ଖୁବ୍ ଉନ୍ନତ ଓ ସଂପ୍ରସାରିତ ହେଲା। ଅଫିସ୍ କାର୍ଯ୍ୟ ପରଚାଳନା ପାଇଁ ସତ୍ୟବ୍ରତ ସ୍ୱାଇଁଙ୍କୁ ଗତ ଆଠ ବର୍ଷ ହେଲା ନିଯୁକ୍ତ ଦିଆ ଯାଇଛି।

## କଲାମଙ୍କ ୨୦୦୫ ପିଲାଙ୍କ ବିଜ୍ଞାନ କଂଗ୍ରେସରେ ଯୋଗଦାନ - ଶିଶୁ ବିଜ୍ଞାନର ମହୋତ୍ସବ

ପିଲାଙ୍କ ବିଜ୍ଞାନ କଂଗ୍ରେସ କାର୍ଯ୍ୟକ୍ରମରେ ଭାରତର ରାଷ୍ଟ୍ରପତି ଏ.ପି.ଜେ ଅବୁଦୁଲ୍ କଲାମଙ୍କ ସହଯୋଗ ଓ ଅଂଶ ଗ୍ରହଣ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ। ବିଶ୍ୱ ପ୍ରସିଦ୍ଧ ବୈଜ୍ଞାନିକ ଡକ୍ଟର ଅବଦୁଲ୍ କଲାମଙ୍କ ଅଂଶ ଗ୍ରହଣ

ଦ୍ୱାରା ପିଲାଙ୍କ ବିଜ୍ଞାନ କଂଗ୍ରେସ କାର୍ଯ୍ୟକ୍ରମ ଅଧିକ ଲୋକପ୍ରିୟ ହେବା ସହିତ ସରକାରଙ୍କ ଦୃଷ୍ଟି ଆକର୍ଷଣ କଲା ଓ କାର୍ଯ୍ୟକ୍ରମର ଗୁରୁତ୍ୱ ବହୁଗୁଣିତ ହୋଇଗଲା । ରାଷ୍ଟ୍ରପତିଙ୍କ ଗ୍ରସ୍ତକ୍ରମ ସହିତ ପିଲାଙ୍କ ବିଜ୍ଞାନ କଂଗ୍ରେସ ଯୋଡି ହୋଇଯିବାରୁ ସରକାରଙ୍କ ବିଭିନ୍ନ ବିଭାଗ ଶିକ୍ଷା, ବିଜ୍ଞାନ ଓ ପ୍ରାଦ୍ୟୋଗିକୀ ବିଭାଗ ସଚିବ ଓ ମନ୍ତ୍ରୀମାନେ ସକ୍ରିୟ ଭାବରେ ଅଂଶ ଗ୍ରହଣ କରିବାକୁ ବାଧ ହେଲେ ।

୨୦୦୫ ମସିହାରେ ଜାତୀୟ ସ୍ତର ପିଲାଙ୍କ ବିଜ୍ଞାନ କଂଗ୍ରେସ କାର୍ଯ୍ୟକ୍ରମ ଓଡିଶାରେ ଆୟୋଜନ କରିବା ପାଇଁ ଡକ୍ଟର ରାୟ ଯେତେବେଳେ ପ୍ରସ୍ତାବ ଦେଲେ ମୁଁ ତାଙ୍କୁ ବିରୋଧ କଲି । କାରଣ ଜାତୀୟ ସ୍ତର ପିଲାଙ୍କ ବିଜ୍ଞାନ କଂଗ୍ରେସ ପରିଚାଳନା ଏକ କଷ୍ଟକର ବ୍ୟାପାର । ଏଥିପାଇଁ ବହୁତ ଟଙ୍କା ଖର୍ଚ୍ଚ ହେବ । ଏହା ଏକ ଦାୟିତ୍ୱ ସଂପନ୍ନ କାର୍ଯ୍ୟ । ଏ ଦାୟିତ୍ୱ ତୁଲାଇବା ପାଇଁ ଆମର ଲୋକବଳ କମ୍ । "ଡକ୍ଟର ରାୟ କହିଲେ" ଏ ବର୍ଷ ଆମେ ନ କରି ପାରିଲେ ଆଉ କେବେ ଓଡିଶାରେ ଜାତୀୟ ସ୍ତର ପିଲାଙ୍କ ବିଜ୍ଞାନ କଂଗ୍ରେସ ହୋଇପାରିବ ନାହିଁ । ଅର୍ଥ ଯେଉଁଠୁ ହେଲେ ବ୍ୟବସ୍ଥା କରି ହେବ । କିଟ୍ ବିଶ୍ୱବିଦ୍ୟାଳୟର ସାହାଯ୍ୟ ସହିତ ଲୋକବଳ ପାଇବାକୁ ସେ ଆଶା ପ୍ରକାଶ କଲେ । ପ୍ରାରମ୍ଭିକ ସ୍ତରରେ କିଟ୍ ବିଶ୍ୱବିଦ୍ୟାଳୟର କୁଳାଧିପରି ଅଚ୍ୟୁତ୍ ସାମନ୍ତଙ୍କ ସହିତ ଆଲୋଚନା କଲୁ । ସେ ସମସ୍ତ ପ୍ରକାର ସାହାଯ୍ୟ ସହଯୋଗ ଦେବା ପାଇଁ ପ୍ରତିଶ୍ରୁତି ଦେଲେ । ସେତେବେଳେ ଡକ୍ଟର ରାୟ କିଟ୍ ବିଶ୍ୱ ବିଦ୍ୟାଳୟର ରେଜିଷ୍ଟ୍ରାର ନଥିଲେ । ତଥାପି ଅଚ୍ୟୁତ ସାମନ୍ତଙ୍କ କଥାରେ ବିଶ୍ୱାସ କରି ଆମେ ଜୁନ୍ ମାସରେ ରାଷ୍ଟ୍ରପତିଙ୍କ ସମ୍ମତି ନିମନ୍ତେ ଚିଠି ଲେଖିଲୁ । ଜୁଲାଇ ମାସରେ ତାଙ୍କର ସମ୍ମତି ପାଇଗଲୁ ।

ପ୍ରତିବର୍ଷ ଡିସେମ୍ବର ୨୭ ତାରିଖରୁ ୩୧ ତାରିଖ ପର୍ଯ୍ୟନ୍ତ ପାଞ୍ଚଦିନ ଜାତୀୟ ସ୍ତର ପିଲାଙ୍କ ବିଜ୍ଞାନ କଂଗ୍ରେସ ଅନୁଷ୍ଠିତ ହେବା ପାଇଁ ତାରିଖ ଧାର୍ଯ୍ୟ ହୋଇଛି । ରାଷ୍ଟ୍ରପତିଙ୍କ ସମ୍ମତି ପାଇଗଲା ପରେ ଆମେ ପ୍ରସ୍ତୁତିରେ ଲାଗି ପଡିଲୁ । ପ୍ରସ୍ତୁତି କାର୍ଯ୍ୟରେ ଆମକୁ କିଟ୍ ବିଶ୍ୱ ବିଦ୍ୟାଳୟ ଯଥେଷ୍ଟ ସାହାଯ୍ୟ କଲା । ଗୋଟିଏ Medical College ଖୋଲିବା ପାଇଁ ଗୋଟିଏ ନୂଆ ହଷ୍ଟେଲ ତିଆରି ହୋଇଥିଲା । ସେଥିରେ ଖଟ, ବିଛଣା, ତକିଆ, ଚାଦର ଆଦି ଯୋଗାଇ ଦେଇ ଯେଉଁ ପିଲାମାନେ ବିଭିନ୍ନ ରାଜ୍ୟରୁ ଆସିବେ ତାଙ୍କ ପାଇଁ ରହିବା ବ୍ୟବସ୍ଥା କରିଦେଲେ । ପ୍ରଦର୍ଶନୀ ପାଇଁ ମାଟି ପକାଇ ପଡିଆ ପ୍ରସ୍ତୁତ କରିଦେଲେ । ପିଲାମାନଙ୍କ ସାଙ୍ଗରେ ଆସିଥିବା ଲୋକଙ୍କ ରହିବା ପାଇଁ ଗୋଟିଏ ହଷ୍ଟେଲ ଖାଲି କରିଦେଲେ । ସମସ୍ତ ପ୍ରକାର ସାହାଯ୍ୟ ଆମେ ଅଚ୍ୟୁତ ସାମନ୍ତଙ୍କଠାରୁ ପାଇଲୁ । ସେତିକି ସାହାଯ୍ୟ ନପାଇଥିଲେ ହୁଏ ତ ଆମ ଉତ୍ସବ ଏତେ ସଫଳ ହୋଇ ପାରି ନଥାନ୍ତା ।

ରାଷ୍ଟ୍ର ପତିଙ୍କର ସମ୍ମତି ଓ ତାଙ୍କ ଗସ୍ତକ୍ରମ ଓଡିଶା ସରକାରଙ୍କ ନିକଟରେ ପହଞ୍ଚିଯିବାରୁ ସରକାରଙ୍କ ବିଭିନ୍ନ ବିଭାଗ ସଜାଗ ହୋଇ ଉଠିଲେ । ଭୁବନେଶ୍ୱର ରାସ୍ତାଘାଟ ତିଆରି ଚାଲିଲା । ଭାରତ ସରକାରଙ୍କ ଅନୁଦାନ ୩୦ ଲକ୍ଷ ଟଙ୍କା ସହିତ ଓଡିଶା ସରକାର ୨୦ ଲକ୍ଷ ଟଙ୍କା ଅନୁଦାନ ମଞ୍ଜୁର କଲେ । ବାକି ଟଙ୍କା ଆୟୋଜନ ପାଇଁ ବାଣିଜ୍ୟ ବିଭାଗ ସଚିବଙ୍କୁ ଦାୟିତ୍ୱ ଦିଆଗଲା । ସେତେବେଳକୁ ଗୋକୁଳାନନ୍ଦ ପତି ବାଣିଜ୍ୟ ସଚିବ ଥିଲେ । ସେ ବିଭିନ୍ନ ଶିକ୍ଷାନୁଷ୍ଠାନ କିଏ କେତେ ଟଙ୍କା ଦେବେ ସ୍ଥିର କରିଦେଲେ । ଆମେ କିନ୍ତୁ ଟଙ୍କା ନ ଦେଇ ତା ବଦଳରେ କାମ କରାଇ ନେବାକୁ ଚାହିଁଲୁ । ଗୋଟିଏ ଶିକ୍ଷାନୁଷ୍ଠାନ ସଭା ମଣ୍ଡପ ପ୍ରସ୍ତୁତି ଦାୟିତ୍ୱ ନେଲେ ତ ଆଉ ଗୋଟିଏ ଶିକ୍ଷାନୁଷ୍ଠାନ ଦର୍ଶକମଞ୍ଚ ପ୍ରସ୍ତୁତି ଦାୟିତ୍ୱ ନେଲେ । ସେହିପରି ପିଲାଙ୍କ ପୋଷାକ, ଟୋପି, ବ୍ୟାଗ ଯୋଗାଣ, ସହରର ଚାରିଆଡେ ପ୍ରଚାର ପତ୍ର ବଣ୍ଟନ, ବ୍ୟାନର ଲଟକାଇବା କାର୍ଯ୍ୟ ବିଭିନ୍ନ ଅନୁଷ୍ଠାନକୁ ଦିଆଗଲା । "ସ୍ମରଣିକା" ପ୍ରସ୍ତୁତି ଓ ପ୍ରକାଶନ ଦାୟିତ୍ୱ ମୋ ଉପରେ ରହିଥିଲା । କାମ ବାଣ୍ଟିଦେବା ଫଳରେ ଆମ ଉପରେ କୌଣସି ପ୍ରତ୍ୟକ୍ଷ ଦାୟିତ୍ୱ ରହିଲା ନାହିଁ । କେବଳ ସଂଯୋଗ ସ୍ଥାପନ ଓ ତଦାରଖ ଦାୟିତ୍ୱ ଆମ ଉପରେ ରହିଲା । ତଥାପି ଡକ୍ଟର ରାୟ ଓ ଓଡିଶାର ପିଲାଙ୍କ ବିଜ୍ଞାନ କଂଗ୍ରେସର ଅନ୍ୟ ସଦସ୍ୟମାନଙ୍କୁ ଆଠ ଦିନ କଠିନ ପରିଶ୍ରମ କରିବାକୁ ପଡିଲା ।

ରାଷ୍ଟ୍ରପତି ଡକ୍ଟର ଅବଦୁଲ୍ କଲାମଙ୍କ ଯୋଗଦାନ ରାଜ୍ୟବାସୀଙ୍କ ମନରେ ଅଭୂତପୂର୍ବ ଉତ୍ସାହ ଆଣିଦେଲା । ପ୍ରଫେସର ଯଶପାଲ ଓ ଅନ୍ୟାନ୍ୟ ବୈଜ୍ଞାନିକମାନଙ୍କର ଯୋଗଦାନ ଓ କାର୍ଯ୍ୟ ପରିଚାଳନା ସମସ୍ତଙ୍କୁ ଉତ୍ସାହିତ କରିଥିଲା । ସମସ୍ତ ଶିଶୁ ବୈଜ୍ଞାନିକ, ସେମାନଙ୍କ ସାଥିରେ ଆସିଥିବା ଶିକ୍ଷକ ଓ ମୁରବୀମାନଙ୍କ ଖାଇବା, ପିଇବା, ରହିବା କୌଣସିଥିରେ କିଛି ଅସୁବିଧା ହେଲା ନାହିଁ । ଅନ୍ୟ ରାଜ୍ୟରୁ ଯେଉଁ ଶିକ୍ଷକ ଓ ମୁରବୀମାନେ ଆସିଥିଲେ ସେମାନେ ଓଡିଶାର ପିଲାଙ୍କ ବିଜ୍ଞାନ କଂଗ୍ରେସ ପରିଚାଳନାର ଭୂୟସୀ ପ୍ରଶଂସା କଲେ ।

ସମସ୍ତ କାର୍ଯ୍ୟକ୍ରମ ଶୃଙ୍ଖଳିତ ଭାବେ ସଂପନ୍ନ ହେଲା । ଏଥିପାଇଁ ଓଡିଶା ସରକାରଙ୍କ ବିଜ୍ଞାନ ଓ ପ୍ରଦ୍ୟୋଗିକୀ ବିଭାଗ ସଚିବ ପ୍ରଶାନ୍ତ ନାୟକ ଓ ବାଣିଜ୍ୟ ବିଭାଗ ସଚିବ ଗୋକୁଳାନନ୍ଦ ପତିଙ୍କୁ ଧନ୍ୟବାଦ ଦେବାର କଥା । ସର୍ବୋପରି ସମସ୍ତ କାର୍ଯ୍ୟକ୍ରମର ସୁପରିଚାଳନା ପାଇଁ ଡକ୍ଟର ରାୟ ଓ ତାଙ୍କ ଧର୍ମପତ୍ନୀ କବିତା ରାୟ ଧନ୍ୟବାଦାର୍ହ ।

୨୦୦୬ ମସିହାରେ ପିଲାଙ୍କ ଜାତୀୟ ବିଜ୍ଞାନ କଂଗ୍ରେସ ସିକିମ୍ ରାଜ୍ୟରେ ହେବାକୁ ଥିବାରୁ ସିକିମ୍‌ର ମନ୍ତ୍ରୀ ଓ ସିକିମ୍ ଶିକ୍ଷା ସଚିବ ଓଡିଶାକୁ ଆସିଥିଲେ

ପରିଚାଳନା ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବାକୁ । ଏଠାକାର ବ୍ୟବସ୍ଥା ଦେଖି ସେମାନେ ଚକିତ ହୋଇଗଲେ । କିଟ୍ ଭଳି ବିରାଟ ଓ ପ୍ରଶସ୍ତ ଅନୁଷ୍ଠାନ ତାଙ୍କର ନାହିଁ । ତା ଛଡା ସିକିମ୍ ଛୋଟ ରାଜ୍ୟ । ଏତେ ଖର୍ଚ୍ଚ କରିବାର କ୍ଷମତା ସେମାନଙ୍କର ନାହିଁ । ଗଲାବେଳେ ଡକ୍ଟର ରାୟଙ୍କୁ ଅନୁରୋଧ କରିଗଲେ ସିକିମ୍‌କୁ ଆଗତୁରା ଯାଇ ତାଙ୍କୁ ସାହାଯ୍ୟ କରାବାକୁ । ଡକ୍ଟର ରାୟ ଯାଇ ସେମାନଙ୍କୁ ସାହାଯ୍ୟ କଲେ । ତାଙ୍କର କାର୍ଯ୍ୟକ୍ରମ ବେଶ୍ ସଫଳ ହେଲା ।

## ୧୨.୯ ବିଜ୍ଞାନ ସଚେତନତା ବର୍ଷ - ୨୦୦୪

ଭାରତ ସରକାର ୨୦୦୪ ବର୍ଷକୁ ବିଜ୍ଞାନ ସଚେତନତା ବର୍ଷଭାବେ ପାଳନ କରିବାକୁ ସ୍ଥିର କରି ବହୁ ସ୍ୱେଚ୍ଛାସେବୀ ଅନୁଷ୍ଠାନକୁ ଡାକି ବିଚାର ବିମର୍ଷ କଲେ । ଓଡିଶାରୁ କେତେକ ଅନୁଷ୍ଠାନ ବିଜ୍ଞାପନ ଦେଖି ଚାଲି ଯାଇଥିଲେ । ସେମାନଙ୍କ ମଧ୍ୟରୁ କେତେକଙ୍କର ସୀମିତ ଅଞ୍ଚଳରେ କାର୍ଯ୍ୟ କରିବାର ଅଭିଜ୍ଞତା ଥିଲା । କୌଣସି ଅନୁଷ୍ଠାନର ସାରା ଜିଲ୍ଲାରେ କାମ କରିବାର ଅଭିଜ୍ଞତା ନ ଥିଲା । ସେମାନଙ୍କୁ କାର୍ଯ୍ୟକ୍ରମରେ ସାମିଲ୍ କରିବାକୁ ଭାରତ ସରକାରଙ୍କ ବିଜ୍ଞାନ ଓ ପ୍ରାଦ୍ୟୋଗିକୀ ବିଭାଗ ଚାହିଁଥିଲେ । କିନ୍ତୁ ଏମାନଙ୍କର ସୀମିତ ପରିସର ଓ ଦକ୍ଷତା ବିଷୟରେ ସେମାନେ ଜାଣି ନ ଥିଲେ ।

ଭାରତ ଜନ ବିଜ୍ଞାନ ଯାଥା, ରାଷ୍ଟ୍ରୀୟ ଜନ ଆନ୍ଦୋଳନ ଆଦି କାର୍ଯ୍ୟକ୍ରମକରି ରାଜ୍ୟସାରା ଏକ ବିରାଟ Network ସୃଷ୍ଟି କରି ସାରିଥିଲା । ତେଣୁ ବିଜ୍ଞାନ କାର୍ଯ୍ୟକ୍ରମ ଆମେ କାର୍ଯ୍ୟକାରୀ କରିବା ସୁବିଧା ଜନକ । ଭାରତ ଜନବିଜ୍ଞାନ ଯାଥାକୁ ରାଜ୍ୟ ଦାୟିତ୍ୱ ଦିଆଯିବାପରେ ପରୀକ୍ଷାମୂଳକ ଭାବେ ମୟୁରଭଞ୍ଜ ଓ ବୌଦ୍ଧ ଜିଲ୍ଲାରେ ସ୍ୱେଚ୍ଛାସେବୀ ଅନୁଷ୍ଠାନଙ୍କୁ ଦାୟିତ୍ୱ ଦିଆଗଲା । ସେମାନେ ସଂପୂର୍ଣ୍ଣ ବିଫଳ ହେଲେ । ତାଙ୍କ ପଛରେ ଲାଗି କିଛି କାମ ଆଦାୟ କରାଗଲା । କିନ୍ତୁ ସାରା ଜିଲ୍ଲାକୁ କାର୍ଯ୍ୟକ୍ରମ ସଂପ୍ରସାରିତ ହୋଇପାରିଲା ନାହିଁ ।

ଡକ୍ଟର ରାୟ ଓ ମୁଁ ସବୁ ଜିଲ୍ଲାରେ କାମ ଦେଖିବା ପାଇଁ ଗଲୁ । ବିଜ୍ଞାନ ସଚେତନତା କାର୍ଯ୍ୟକ୍ରମ ସବୁ ଜିଲ୍ଲାରେ ଚାଲିଲେ ମଧ୍ୟ କେତେକ ଜିଲ୍ଲାରେ ଚମତ୍କାର କାର୍ଯ୍ୟକ୍ରମ ହେଲା । ବରଗଡ ଜିଲ୍ଲାର ଭଟଲିଠାରେ ହାଇସ୍କୁଲ ପରିସର ମଧ୍ୟରେ ଶତାଧିକ ବୃକ୍ଷ ରୋପଣ, ବୃକ୍ଷ ଗୁଡିକର ଯତ୍ନ ନେବାପାଇଁ ପିଲା ମାନଙ୍କ ମଧ୍ୟରେ ଦାୟିତ୍ୱ ବଣ୍ଟନ ଓ ବିରାଟ ସାଧାରଣ ସଭା ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କଲା । ସେହିପରି ଗଞ୍ଜାମ ଜିଲ୍ଲାର ଟାଉନ ହାଇସ୍କୁଲ ପରିସରରେ ଔଷଧୀୟ ବୃକ୍ଷର ଉଦ୍ୟାନ ପ୍ରସ୍ତୁତି, ଜେଲ୍ ପରିସର ମଧ୍ୟରେ ବୃକ୍ଷ ରୋପଣ ଓ ସଭା, ଗଞ୍ଜାମ ଶିକ୍ଷା ମଣ୍ଡଳ ଇନିସ୍ପେକ୍ଟର ବାଲ୍ମୀକି ପ୍ରଧାନଙ୍କର ଅଂଶଗ୍ରହଣ କାର୍ଯ୍ୟକ୍ରମକୁ

ରଦ୍ଧିମନ୍ତ କଲା । କେଉଁଝର, ଢେଙ୍କାନାଳ, ସମ୍ବଲପୁର, ସୁନ୍ଦରଗଡ, ଝାରସୁଗୁଡା ଆଦି ଜିଲ୍ଲାରେ ଯେଉଁଠାରେ କୋଇଲା ଉତ୍ତୋଳନ ହେଉଛି ସେଠାରେ ବୃକ୍ଷ ରୋପଣର ଗୁରୁତ୍ୱ ଉପଲବ୍ଧିକରି ମହାନଦୀ କୋଲଫିଲଡ୍ର ଅଧିକାରୀମାନେ କାର୍ଯ୍ୟକ୍ରମରେ ସକ୍ରିୟ ଭାବରେ ସହଯୋଗ କଲେ ଓ ଆର୍ଥିକ ସହାୟତା ମଧ୍ୟ ଦେଲେ । କୋରାପୁଟ, ରାୟଗଡା, ମାଲକାନଗିରି ପ୍ରଭୃତି ଆଦିବାସୀ ଅଧ୍ୟୁଷିତ ଜିଲ୍ଲାରେ ପୂର୍ବରୁ ଭାରତ ଜନ ବିଜ୍ଞାନ ଯାଥା ବେଳେ ବିଜ୍ଞାନ ସଚେତନତାର ଭିତ୍ତି ସ୍ଥାପିତ ହୋଇଥିଲା । ୨୦୦୪ ବର୍ଷରେ ସେମାନଙ୍କ ଅଂଶଗ୍ରହଣ ଓ କାର୍ଯ୍ୟ ସନ୍ତୋଷଜନକ ହୋଇଥିଲା ।

କେନ୍ଦ୍ରାପଡାର ଏକ ମହିଳା ଅନୁଷ୍ଠାନ ସମଗ୍ର ଜିଲ୍ଲାରେ ବିଜ୍ଞାନ ସଚେତନତା ସୃଷ୍ଟିରେ ଚମତ୍କାର କାର୍ଯ୍ୟ କଲେ । ବିଶେଷତଃ ସେଠାକର କଲେକ୍ଟରଙ୍କ ସହାୟତାରେ ଏହି ଅନୁଷ୍ଠାନ ଆଶାଜନକ କାର୍ଯ୍ୟ କରିପାରିଲା । ଜଗତସିଂପୁର ଜିଲ୍ଲାର ବିଜ୍ଞାନ ସୁପରଭାଇଜରଙ୍କ ଉଦ୍ୟମରେ ବିଜ୍ଞାନ ବାର୍ତ୍ତା ସ୍କୁଲମାନଙ୍କରେ ତଥା ସର୍ବ ସାଧାରଣରେ ପ୍ରସାରିତ ହୋଇପାରିଲା । ପାରାଦ୍ୱୀପଠାରେ ଆୟୋଜିତ ସଭାରେ ପାରାଦ୍ୱୀପ ବନ୍ଦରର କର୍ମକର୍ତ୍ତାମାନେ ଯୋଗ ଦେଇ କାର୍ଯ୍ୟକ୍ରମକୁ ବେଶ୍ ପ୍ରଭାବୀ କରି ପାରିଥିଲେ ।

ଆଦିବାସୀ ଅଧ୍ୟୁଷିତ ଦେଓଗଡ ଜିଲ୍ଲାରେ ଏକ ଗ୍ରାମାଞ୍ଚଳରେ ୧୦୦୦ ମହାଳା ବିଜ୍ଞାନ ବାର୍ତ୍ତା ଶୁଣିବାକୁ ଦୌଡି ଆସିଥିଲେ ଓ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିଥିଲେ । ସେମାନଙ୍କୁ ବୁଝାଇ ଦିଆଗଲା ଯେ ରୋଷେଇଘର ହେଉଛି ବୃହତ୍ତମ ବିଜ୍ଞାନ ପ୍ରୟୋଗଶାଳା । ସେମାନେ ସମସ୍ତେ ଆଗ୍ରହର ସହିତ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କଲେ ।

ଭାରତ ସରକାରଙ୍କ ଚିରାଚରିତ ଦୋଷ ହେଉଛି ବିଳମ୍ବିତ ଆରମ୍ଭ । ଯେଉଁ Software ଦେବାର କଥା ସେମାନେ କାର୍ଯ୍ୟକ୍ରମ ଶେଷ ବେଳକୁ ଦିଅନ୍ତି । ଫଳରେ ଯେଉଁ ସଫଳତା ମିଳିବା କଥା ତାହା ମିଳେ ନାହିଁ । ବିଜ୍ଞାନ ସଚେତନତା ବର୍ଷ ୨୦୦୪ ରେ ତାହାହିଁ ହେଲା ।

ବିଜ୍ଞାନ ସଚେତନତା କାର୍ଯ୍ୟକ୍ରମ ବାଲେଶ୍ୱର ଓ ଭଦ୍ରକ ଜିଲ୍ଲାରେ କାର୍ଯ୍ୟକାରୀ କରିବାକୁ ନୂଆ ଅନୁଷ୍ଠାନମାନେ ଉଦ୍ୟମ କଲେ । ଗ୍ରାମାଞ୍ଚଳରେ ସେମାନଙ୍କ କାର୍ଯ୍ୟକ୍ରମ ବେଶ୍ ପ୍ରଭାବଶାଳୀ ହୋଇଥିଲା । ସହରାଞ୍ଚଳ ଅପେକ୍ଷା ଗ୍ରାମାଞ୍ଚଳରେ ବିଜ୍ଞାନ ସଚେତନତା କାର୍ଯ୍ୟକ୍ରମ ଅଧିକ ସଫଳ ହେବାର ଉଦାହରଣ ଦେଖି ଆମେ ଅନ୍ୟ ଜିଲ୍ଲାମାନଙ୍କରେ କାର୍ଯ୍ୟକ୍ରମକୁ ଗ୍ରାମାଭିମୁଖୀ କରିବାକୁ ଚେଷ୍ଟା କଲୁ ।



ତ୍ରୟୋଦଶ ଅଧ୍ୟାୟ

# ଶିକ୍ଷା ବିକାଶର ସହଧାରା

## ୧୩.୧ ସୀମାହୀନ ଶିକ୍ଷା (Learning Without Frontiers)

"ସମସ୍ତଙ୍କ ପାଇଁ ଶିକ୍ଷା" କାର୍ଯ୍ୟକ୍ରମରେ ୟୁନେସ୍କୋ ଓଡିଶାରେ ସୀମାହୀନ ଶିକ୍ଷା (Learning without Frontiers) ପ୍ରବର୍ତ୍ତନ ପାଇଁ ଏକ ପ୍ରସ୍ତାବ ଦେଲେ । ଓଡିଶା ସରକାର ପ୍ରଥମେ ବିଚାର କଲେ କେଉଁ ଅଞ୍ଚଳରେ ସୀମାହୀନ ଶିକ୍ଷା ପ୍ରବର୍ତ୍ତନ କରାଯିବ । ଓଡିଶାରେ ଦୁଇଗୋଟି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ଅଛି । ଗୋଟିଏ ଦକ୍ଷିଣ ଓଡିଶାରେ କୋରାପୁଟ, ଫୁଲବାଣୀ, ଗଞ୍ଜାମ, କଳାହାଣ୍ଡି ଜିଲ୍ଲାକୁ ନେଇ ଓ ଅନ୍ୟଟି ଉତ୍ତର ଓଡିଶାରେ ସୁନ୍ଦରଗଡ, କେଉଁଝର, ଓ ମୟୁରଭଞ୍ଜକୁ ନେଇ । ଯେତେବେଳେ ଆଦିବାସୀଙ୍କ ପାଇଁ ଉଦ୍ଦିଷ୍ଟ ଉନ୍ନୟନମୂଳକ କାର୍ଯ୍ୟକ୍ରମ କରିବାର ପ୍ରସ୍ତାବ ହୁଏ ସମସ୍ତଙ୍କ ଦୃଷ୍ଟି ଦକ୍ଷିଣ ଓଡିଶା ଆଡକୁ ଯାଉଛି । କାରଣ ଦକ୍ଷିଣ ଓଡିଶାର ଆଦିବାସୀ ଅଧିକ ଅନୁନ୍ନତ । ଉତ୍ତର ଓଡିଶାର ଆଦିବାସୀ ଅଞ୍ଚଳ ପ୍ରତି କାହାରି ଦୃଷ୍ଟି ଯାଏ ନାହିଁ । ଉତ୍ତର ଓଡିଶାର ଆଦିବାସୀ ଅଞ୍ଚଳରେ Learning Without Frontiers କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବା ପାଇଁ ନିଷ୍ପତ୍ତି ନିଆଗଲା ।



ସୀମାହୀନ ଶିକ୍ଷା ସମ୍ବନ୍ଧରେ ଅନୁଧ୍ୟାନ କରିବାକୁ ଆସିଥିବା **UNESCO** ପ୍ରତିନିଧି ଦଳ କରଞ୍ଜିଆରେ ବାମରୁ **M.Jain, J. Goed-Koop,** ଲେଖକ, ସି.କେ. ଦାସପ୍ପାନି ଓ ସ୍ୱେଚ୍ଛାସେବୀ ସଂଗଠନର ସଦସ୍ୟବୃନ୍ଦ (୧୯୯୬) ।

ୟୁନେସ୍କୋର ଦ୍ୱଇଜଣ ପ୍ରତିନିଧି ନେଦରଲ୍ୟାଣ୍ଡର ଜଣେ ମହିଳା Ms. J. Goed - Koop ଓ ଫ୍ରାନ୍ସର ଜଣେ ଯୁବକ Mr. M. Jain ଓ ସଂଯୋଜକ ପ୍ରଫେସର ସି.କେ.ଦାସଓ୍ୱାନିଙ୍କ ସହିତ ଆସି ପହଞ୍ଚିଲେ ଓ ସେମାନେ ଉତ୍ତର ଓଡିଶାର ଏହି ତିନିଗୋଟି ଜିଲ୍ଲାକୁ ଯିବାକୁ ଚାହିଁଲେ । ଓଡିଶାରେ Learning Without Frontiers କାର୍ଯ୍ୟକ୍ରମ ସଂଯୋଜନା କରିବାପାଇଁ ସରକାର ମୋତେ ଅନୁରୋଧ କଲେ । ମୁଁ ସେମାନଙ୍କୁ ନେଇ ପ୍ରଥମେ ମୟୂରଭଞ୍ଜ ଜିଲ୍ଲାକୁ ଗଲି । ସେଠାରେ କଲେକ୍ଟରଙ୍କ ସହିତ ଆଲୋଚନା ହେଲା ଓ ସେଠାରେ ଏ କାର୍ଯ୍ୟକ୍ରମ କରିବାପାଇଁ ସ୍ଥିର ହେଲା । ସେଠାରୁ ଆମେ କେଉଁଝର ଓ ସୁନ୍ଦରଗଡ ଜିଲ୍ଲାକୁ ଯାଇ ସଂପୃକ୍ତ କଲେକ୍ଟରଙ୍କ ସହିତ ଆଲୋଚନା କରି ସୀମାହୀନ ଶିକ୍ଷା ପ୍ରବର୍ତ୍ତନ ପାଇଁ ସ୍ଥିର କଲୁ ।

ଇତିମଧ୍ୟରେ ତତ୍କାଳୀନ ଶିକ୍ଷାମନ୍ତ୍ରୀ ଜୟଦେବ ଜେନା ଭାରତ ସରକାରଙ୍କ ସହିତ ଆଲୋଚନା କରି D.P.E.P ର ସଂପ୍ରସାରଣ ଯୋଜନାରେ କେଉଁଝର ଜିଲ୍ଲାକୁ ଅନ୍ତର୍ଭୁକ୍ତ କରିଦେଲେ । ତେଣୁ ସୀମାହୀନ ଶିକ୍ଷା କାର୍ଯ୍ୟକ୍ରମରୁ କେଉଁଝର ଜିଲ୍ଲାକୁ ବାଦ୍ ଦେବାକୁ ପଡିଲା । କେବଳ ଦୁଇଟି ଜିଲ୍ଲା ମୟୂରଭଞ୍ଜ ଓ ସୁନ୍ଦରଗଡ ଜିଲ୍ଲାରେ ସୀମାହୀନ ଶିକ୍ଷା କାର୍ଯ୍ୟକ୍ରମ କରିବା ପାଇଁ ନିଷ୍ପତ୍ତି ନିଆଗଲା ।

ସୀମାହୀନ ଶିକ୍ଷା ମୁଖ୍ୟତଃ ଏକ ଶିକ୍ଷା ସହାୟକ କାର୍ଯ୍ୟକ୍ରମ । ଏଥିରେ (୧) ଶିକ୍ଷକ ତାଲିମ୍ ଦ୍ୱାରା ଶିକ୍ଷକ ସଶକ୍ତିକରଣ (୨) ପ୍ରାଥମିକ ଶିକ୍ଷାର ଉନ୍ନତି ସାଧନ ଓ (୩) ସୀମାହୀନ ଶିକ୍ଷାକେନ୍ଦ୍ର ସ୍ଥାପନ ଦ୍ୱାରା ଯେ କୌଣସି ବୟସର, ବର୍ଗର ଲୋକଙ୍କୁ ସ୍ଥାନ, ସମୟ, ଲିଙ୍ଗ, ବୟସ ବା ଅର୍ଥନୈତିକ ପ୍ରତିବନ୍ଧକ ଦୂର କରି ଜୀବନ ଜୀବିକା ପାଇଁ ଶିକ୍ଷା ପ୍ରଦାନ କରିବା ଏହି ତିନିଗୋଟି କାର୍ଯ୍ୟକ୍ରମକୁ ରୂପାୟିତ କରିବା ଲକ୍ଷ୍ୟ ନେଇ ସୀମାହୀନ ଶିକ୍ଷା କାର୍ଯ୍ୟକାରୀ କରିବାର ଯୋଜନା ଥିଲା ।

ପ୍ରଫେସର ସି.କେ.ଦାସଓ୍ୱାନି ସୁନ୍ଦରଗଡ ଓ ମୟୁରଭଞ୍ଜ ଜିଲ୍ଲାରେ ସୀମାହୀନ ଶିକ୍ଷା କାର୍ଯ୍ୟକାରୀ କରିବା ପାଇଁ ପ୍ରୋଜେକ୍ଟ ରିପୋର୍ଟ ପ୍ରସ୍ତୁତ କରି ପଠାଇଥିଲେ । ମୁଁ ସୀମାହୀନ ଶିକ୍ଷା କାର୍ଯ୍ୟକ୍ରମରେ ସଂଯୋଜକ ଭାବରେ କାର୍ଯ୍ୟ କରିବାର ନିଷ୍ପତ୍ତି ନିଆ ସରିଥିଲା । ଏହି ପ୍ରକଳ୍ପ କାର୍ଯ୍ୟକାରୀ ହେବା ପୂର୍ବରୁ ପାଞ୍ଚଗୋଟି ମିଳିତ ଜାତିସଂଘ ସଂସ୍ଥା "ସମସ୍ତଙ୍କ ପାଇଁ ଶିକ୍ଷା" କାର୍ଯ୍ୟକ୍ରମ

ଓଡିଶାରେ ଦୁଇଟି ପର୍ଯ୍ୟାୟରେ ୨୦ ଗୋଟି ବ୍ଲକ୍‌ରେ କାର୍ଯ୍ୟକାରୀ କରିବା ପାଇଁ ପ୍ରସ୍ତାବ ଦେଲେ । ଏହି ପାଞ୍ଚଗୋଟି ସଂସ୍ଥା ହେଲେ :- UNICEF, UNDP, UNESCO, UNFPA ଓ ILO । ଏହି ପାଞ୍ଚଗୋଟି ସଂସ୍ଥା ମିଳିତ ଭାବରେ "ସମସ୍ତଙ୍କ ପାଇଁ ଶିକ୍ଷା" କାର୍ଯ୍ୟକ୍ରମରେ ଅଧିକ ଅର୍ଥ ଦେବାକୁ ପ୍ରସ୍ତାବ ଦେବାରୁ ଓଡିଶା ସରକାର Learning Without Fronitiers କାର୍ଯ୍ୟକ୍ରମ ନ କରିବାକୁ ସ୍ଥିର କଲେ ।

## ୧୩.୨ ଶିକ୍ଷକ ତାଲିମରେ ଗୁଣାତ୍ମକ ମାନବୃଦ୍ଧି

ବହୁଦିନ ପର୍ଯ୍ୟନ୍ତ ଓଡିଶାର ଶିକ୍ଷକ ତାଲିମ୍ ଅନୁଷ୍ଠାନଗୁଡିକ ବଡ ଦୟନୀୟ ଅବସ୍ଥାରେ ପଡି ରହିଥିଲେ । ବି.ଏଡ୍. ଓ ଏମ୍.ଏଡ୍ ଆଦି ଟ୍ରେନିଂ କଲେଜଗୁଡିକ ଉଚ୍ଚ ଶିକ୍ଷା ଅଧୀନରେ ଓ ସି.ଟି.ସ୍କୁଲଗୁଡିକ ମାଧ୍ୟମିକ ଶିକ୍ଷା ଅଧୀନରେ ରହିଥିଲେ । ତା ପୂର୍ବରୁ ଏଲିମେଣ୍ଟାରୀ ଟ୍ରେନିଂ ସ୍କୁଲ ଗୁଡିକ ଡି.ପି.ଆଇ ଅଫିସର ଏକ ସ୍ୱତନ୍ତ୍ର ସେଲ୍ ଅଧୀନରେ ଥିଲେ । ଜଣେ ଦ୍ୱିତୀୟ ଶ୍ରେଣୀ କର୍ମଚାରୀ ଏହି ସେଲ୍ ଦାୟିତ୍ୱରେ ଥିଲେ । ସେତେବେଳେ ତାଲିମ୍ ପ୍ରାପ୍ତ ଶିକ୍ଷକ ଅଭାବ । ତାଲିମ୍ ସାର୍ଟିଫିକେଟ୍ ଡି.ପି.ଆଇ ଅଫିସ ଏଲିମେଣ୍ଟାରୀ ଶିକ୍ଷକ ଟ୍ରେନିଂ ସେଲରୁ ମିଳୁଥିଲା। ସାର୍ଟିଫିକେଟ୍ ପାଇଁ ଟଙ୍କା ଖର୍ଚ୍ଚ କରି କେତେକ ସାର୍ଟିଫିକେଟ୍ ନେଇଗଲେ । ସେମାନେ କୌଣସି ସ୍କୁଲରେ ଟ୍ରେନିଂ ପଢିନାହାନ୍ତି କି ତାଲିମ୍ ପାଇ ନାହାନ୍ତି । ଏ ବିଶୃଙ୍ଖଳା ଶେଷ ହେଲା ତାଲିମ୍ ସେଲ୍ ଭାଙ୍ଗିଯିବା ପରେ । ପ୍ରାଥମିକ ସ୍କୁଲ ମାନଙ୍କରେ ଅଣମାଟ୍ରିକ ଇ.ଟି. ପାଶ୍ ଶିକ୍ଷକ ବଦଳରେ ମାଟ୍ରିକ୍ ସି.ଟି ଶିକ୍ଷକ ରହିବା ନିୟମ ହେଲା ପରେ ସେ ବିଶୃଙ୍ଖଳା ଦୂର ହେଲା । ସି.ଟି ପରୀକ୍ଷା ପରିଚାଳନା ମାଧ୍ୟମିକ ଶିକ୍ଷା ବୋର୍ଡକୁ ହସ୍ତାନ୍ତରିତ କରାଗଲା ।

ତାଲିମ୍ ଅନୁଷ୍ଠାନଗୁଡିକର ସଂଖ୍ୟା ଅପେକ୍ଷାକୃତ କମ୍ ଥିବାରୁ ଶିକ୍ଷା ପ୍ରଶାସକମାନଙ୍କର ଦୃଷ୍ଟି ସେମାନଙ୍କ ଉପରେ ପଡି ପାରି ନ ଥିଲା । ଦ୍ୱିତୀୟତଃ ଶିକ୍ଷକ ତାଲିମ୍ ଅନୁଷ୍ଠାନମାନଙ୍କରେ ବିଶୃଙ୍ଖଳା ଦେଖାଯାଏ ନାହିଁ । ସେଠାରେ ଷ୍ଟ୍ରାଇକ୍ କରିବା ବା ଅନ୍ୟ କୌଣସି ବିଶୃଙ୍ଖଳିତ ଆଚରଣ ଦେଖା ଯାଉ ନ ଥିବାରୁ ତାଙ୍କ ପ୍ରତି ବିଶେଷ ଦୃଷ୍ଟି ଦେବା ଦରକାର ହୁଏନାହିଁ । ଏଇ ଅବସ୍ଥାର ସୁଯୋଗ ନେଇ ଯେଉଁ ପ୍ରଧାନ ଶିକ୍ଷକମାନେ ହାଇସ୍କୁଲରେ ଶୃଙ୍ଖଳା ରକ୍ଷା କରିବାକୁ ଅସମର୍ଥ ହୁଅନ୍ତି ବା ହାଇସ୍କୁଲ ପରିଚାଳନା କରି ପାରନ୍ତି ନାହିଁ ତାଙ୍କୁ ସି.ଟି.ସ୍କୁଲ ପ୍ରଧାନଶିକ୍ଷକ କରି ପଠାଇ ଦିଅନ୍ତି । ମୋର ଇନିସ୍ପେକ୍ଟର ଚାକିରୀ

ଭିତରେ ଏହା ମୁଁ ଅନୁଭବ କରିଥିଲି । ଅଧିକାଂଶ ସି.ଟି. ସ୍କୁଲର ପ୍ରଧାନ ଶିକ୍ଷକ ଦକ୍ଷ ନ ଥିଲେ ।

ଟ୍ରେନିଂ କଲେଜରେ ଅଧ୍ୟାପକମାନେ ବିଳମ୍ବରେ ଅଧ୍ୟାପକ ଚାକିରି କରନ୍ତି । କାରଣ ବି.ଏଡ୍. ଟ୍ରେନିଂ ପଢି କିଛି ଦିନ ଚାକିରି କଲା ପରେ ସେମାନେ ଏମ୍.ଏଡ୍ ପଢିବାକୁ ଆସନ୍ତି । ତେଣୁ ଅଧ୍ୟାପକ ଚାକିରି କଲାବେଳକୁ ସେମାନଙ୍କର ବୟସ ବଢି ଯାଇଥାଏ । ସେଥିପାଇଁ ସେମାନେ ସାଧାରଣ କଲେଜ ଅଧ୍ୟାପକମାନଙ୍କଠାରୁ ଭିନ୍ନ ଜଣାଯାନ୍ତି । ମୁଁ ଟ୍ରେନିଂ କଲେଜରେ ତଥା ସାଧାରଣ କଲେଜ ଉଭୟରେ କାମ କରିଥିବାରୁ ଏ ପାର୍ଥକ୍ୟ ଅନୁଭବ କରିଛି ।

ମୁଁ ଶିକ୍ଷା ନିର୍ଦ୍ଦେଶାଳୟକୁ ଆସିଲା ପରେ ବହୁବାର ଶିକ୍ଷା ସଚିବ ସଂଧାଂଶୁ ମୋହନ ପଟ୍ଟନାୟକଙ୍କୁ ଅନୁରୋଧ କରିଛି ସାଧାରଣ ଶିକ୍ଷା ବ୍ୟବସ୍ଥାରୁ ଶିକ୍ଷକ ତାଲିମ୍ ବ୍ୟବସ୍ଥାକୁ ପୃଥକ କରି ଦେବା ପାଇଁ । ସେ ଏତେ ବଡ ନିଷ୍ପତ୍ତି ନେବା ପାଇଁ ପଛ ଘୁଞ୍ଚା ଦେଲେ ।

ଜାତୀୟ ଶିକ୍ଷା ନୀତି ୧୯୮୬ରେ ଶିକ୍ଷକ ତାଲିମ ଉପରେ ଅଭୂତପୂର୍ବ ଗୁରୁତ୍ୱ ଦିଆଯାଇଛି । ଭାରତ ସରକାର ଉପଲବ୍ଧି କଲେ ଯେ ଶିକ୍ଷକ ତାଲିମ୍‌ର ଗୁଣାତ୍ମକ ମାନ ବୃଦ୍ଧି ନ ହେଲେ ଶିକ୍ଷାର ମାନବୃଦ୍ଧି ହେବା ସମ୍ଭବ ନୁହେଁ । ତେଣୁ ଶିକ୍ଷା କ୍ଷେତ୍ରରେ Institute of Advanced Studies in Education (IASE), College of Teacher Education (CTE) District Institute of Educatioon and Training (DIET) ସୃଷ୍ଟି କଲେ । ସେଥିପାଇଁ ଉଚ୍ଚତର ଯୋଗ୍ୟତା ସଂପନ୍ନ ବ୍ୟକ୍ତିଙ୍କୁ ଶିକ୍ଷକ ତାଲିମ୍ ଅନୁଷ୍ଠାନମାନଙ୍କରେ ରଖିବା ପାଇଁ ନୂତନ ପ୍ରଫେସର ରିଡର ପଦବୀ ସୃଷ୍ଟିକଲେ । ଜାତୀୟ ଶିକ୍ଷା ନୀତି ଶିକ୍ଷାବିତ୍‌ମାନଙ୍କର ତଥା ସରକାରଙ୍କର ଶିକ୍ଷକ ତାଲିମ୍ ପ୍ରତି ଆଭିମୁଖ୍ୟ ବଦଳାଇ ଦେଲା । ଶିକ୍ଷକ ତାଲିମ୍ ଓ ଶିକ୍ଷକ ଶିକ୍ଷା ଅଧିକ ପ୍ରାଧାନ୍ୟ ଲାଭ କଲା ।

ଏହି ପୃଷ୍ଠଭୂମିରେ ୧୯୮୮ ମସିହାରେ ରାଜ୍ୟଶିକ୍ଷା ଗବେଷଣା ଓ ତାଲିମ୍ ପ୍ରତିଷ୍ଠାନ (SCERT) କୁ ଶିକ୍ଷକ -ଶିକ୍ଷା ନିର୍ଦ୍ଦେଶାଳୟ ଓ ରାଜ୍ୟ ଶିକ୍ଷା ଗବେଷଣା ଓ ତାଲିମ୍ ପ୍ରତିଷ୍ଠାନ ପାହ୍ୟାକୁ ଉନ୍ନୀତ କରାଗଲା ଓ ଶିକ୍ଷକ ତାଲିମ୍ କାର୍ଯ୍ୟକ୍ରମ ତାଙ୍କୁ ହସ୍ତାନ୍ତର କରାଗଲା । ଏହା ଫଳରେ ଅବହେଳିତ ଶିକ୍ଷକ ତାଲିମ୍ ପ୍ରାଧାନ୍ୟ ପାଇଲା କିନ୍ତୁ ଶିକ୍ଷା କ୍ଷେତ୍ରରେ ଓ ଶିକ୍ଷକ ତାଲିମ୍‌ରେ ଯେଉଁ "ଗୁଣାତ୍ମକ ମାନବୃଦ୍ଧି

ଆଶା କରା ଯାଉଥିଲା ତାହା ଉପଲବ୍ଧ ହେଲା ନାହିଁ ।" କାରଣ ଯେଉଁ ମାନଙ୍କୁ ପଦୋନ୍ନତି ଦିଆଯାଇ ପ୍ରଫେସର, ରିଡର ଓ ଅଧ୍ୟାପକ ପଦରେ ରଖାଗଲା ସେମାନେ ପୁରୁଣା ସଂସ୍କାରୁ ବାହାରିଲେ । ସେମାନଙ୍କୁ ସ୍ୱତନ୍ତ୍ର ତାଲିମ୍ ବା ଶିକ୍ଷା ଦିଆଗଲା ନାହିଁ । ଯାହା ଥିଲା ତାହା ଚାଲିଲା । ପ୍ରତ୍ୟାଶିତ ଶିକ୍ଷାର ଗୁଣାତ୍ମକ ମାନ ବୃଦ୍ଧି ସ୍ୱପ୍ନରେ ହିଁ ରହିଗଲା ।

ଭାରତ ସରକାର ୧୯୯୪ ମସିହାରେ ଏକ ସ୍ୱତନ୍ତ୍ର ବିଧେୟକ ବଳରେ National Council for Teacher Education (NCTE) ସୃଷ୍ଟି କଲେ । ମୁଖ୍ୟ ଲକ୍ଷ୍ୟ ହେଲା ଏହି ପ୍ରତିଷ୍ଠାନ ଶିକ୍ଷକ ତାଲିମ୍‌କୁ ନିୟନ୍ତ୍ରଣ କରିବ ଓ ତାଲିମ୍‌ର ମାନ ବୃଦ୍ଧି କରିବ । ୧୯୯୫ ମସିହାରେ (NCTE) ପ୍ରତିଷ୍ଠିତ ହେଲା । ତାପରେ ନିୟମ ହେଲା ଯେ NCTE ର ବିନା ଅନୁମୋଦନରେ କୌଣସି ଶିକ୍ଷକ ତାଲିମ୍ ଅନୁଷ୍ଠାନ ଚାଲି ପାରିବ ନାହିଁ । NCTE ଅନୁମୋଦନ ଲାଭ ପାଇଁ କେତେକ ଶିକ୍ଷକ ତାଲିମ୍ ଅନୁଷ୍ଠାନରେ କିଛି କିଛି ପରିବର୍ତ୍ତନ ହେଲା କିନ୍ତୁ ତାହା ସନ୍ତୋଷଜନକ ନୁହେଁ ।

ଶିକ୍ଷକ ତାଲିମ୍ ଅନୁଷ୍ଠାନଗୁଡିକର ଅବସ୍ଥା ବିଷୟରେ ଅନୁଧ୍ୟାନ କରିବାକୁ NCTE ମୋତେ ଓ ଆଞ୍ଚଳିକ ଶିକ୍ଷାନୁଷ୍ଠାନ ରିଡର୍ V.K.Sonwani ଙ୍କୁ ପଠାଇଲେ । ଓଡିଶାର କେତେକ ଶିକ୍ଷକ ତାଲିମ୍ ଅନୁଷ୍ଠାନ ପରିଦର୍ଶନ କଲୁ ଓ ଏକ ରିପୋର୍ଟ ଦେଲୁ । ଅନୁଷ୍ଠାନ ଗୁଡିକ ହେଲା :- ଢେଙ୍କାନାଳ DIET, ଅନୁଗୁଳ CTE, ଛେଣ୍ଡିପଦା ସି.ଟି.ସ୍କୁଲ, ଦେଓଗଡ ସି.ଟି.ସ୍କୁଲ କିଶୋର ନଗର ସି.ଟି.ସ୍କୁଲ ଓ ସମ୍ବଲପୁର IASE । ଅନୁଗୁଳ CTE ଓ ସମ୍ବଲପୁର IASE ସେତେବେଳକୁ ଭାରତ ସରକାରଙ୍କଠାରୁ ଅନୁଦାନ ପାଇ ତାଙ୍କର କଲେଜ, ହଷ୍ଟେଲ, ଲାଇବ୍ରେରୀ ଇତ୍ୟାଦି ପାଇଁ ଘର ତିଆରି କରି ସାରିଥିଲେ ଓ ତାଲିମ୍ ଉପକରଣ ଓ ବହି ଆଦି କିଣି ସାରିଥିଲେ । ଶିକ୍ଷଣ କାର୍ଯ୍ୟକ୍ରମ ମଧ୍ୟ ଭଲ ଚାଲିଥିଲା ।

ଛେଣ୍ଡିପଦା ଓ ଦେଓଗଡ ସି.ଟି.ସ୍କୁଲ ଅବସ୍ଥା ଅତି ଶୋଚନୀୟ ହୋଇ ପଡିଥିଲା । ଛେଣ୍ଡିପଦା ସି.ଟି.ସ୍କୁଲ ଗୋଟିଏ ଭଙ୍ଗାଘରେ ଚାଲୁଥିଲା । ହଷ୍ଟେଲ ଅବସ୍ଥା ମଧ ତଦ୍ରୂପ । ଦେଓଗଡ ସି.ଟି.ସ୍କୁଲରେ ଯେଉଁ ମହିଳା ହଷ୍ଟେଲ ଥିଲା ତା'ର ନିରାପତ୍ତା ପାଇଁ କିଛି ବ୍ୟବସ୍ଥା ନ ଥିଲା । ମହିଳା ମାନଙ୍କ ସ୍ନାନାଗାର ମୁକ୍ତାକାଶ ତଳେ ଥିଲା । ଚାରିପଟେ ଲୁଗା ଗୁଡାଇ ଝିଅମାନେ ସ୍ନାନ କରୁଥିଲେ । ପାଠପଢାର ମାନ ସେତେଭଲ ନ ଥିଲା । କିଶୋରନଗର ସି.ଟି.ସ୍କୁଲର ବ୍ୟବସ୍ଥା

ମଧ୍ୟ ଭଲ ନୁହେଁ । ଏସବୁ ଆମ ରିପୋର୍ଟରେ ଖୁବ୍ କଡ଼ା ଭାଷାରେ ଲେଖିଥିଲୁ । କିନ୍ତୁ ଫଳ କିଛି ହେଲା ନାହିଁ । କାରଣ ସବୁଗୁଡିକ ସି.ଟି.ସ୍କୁଲ ସରକାରୀ ପରିଚାଳିତ । ସରକାର ବିରାଟ ଅନୁଷ୍ଠାନ । ଏ ସବୁ ରିପୋର୍ଟରେ ସରକାରଙ୍କର କିଛି ପ୍ରତିକ୍ରିୟା ହୁଏ ନାହିଁ । ବୋଧହୁଏ ସରକାର ବିଚାର କଲେ ଯେ କିଛି ସି.ଟି.ସ୍କୁଲର ଅବସ୍ଥା ଖରାପ ହେଲେ ଦେଶ ଭାସିଯିବ ନାହିଁ । ଶିକ୍ଷକ ତାଲିମ୍‌ର ମାନ କମିଯିବ । କମିଗଲେ ରାଜ୍ୟର କି କ୍ଷତି ହେବ ? ଏ ଅବସ୍ଥାରେ ଶିକ୍ଷକ ତାଲିମ୍‌ର ମାନ ବୃଦ୍ଧି ପାଇଁ ଭାରତ ସରକାରଙ୍କ ବ୍ୟାକୁଳତାର ଅର୍ଥ କିଛି ନାହିଁ ।

## ୧୩.୩ ସି.ଟି ପାଠ୍ୟକ୍ରମ ନବୀକରଣ

ପ୍ରଫେସର ଫଣୀଭୂଷଣ ଦାସ ୦୭/୦୮/୧୯୯୨ ଠାରୁ ୩୧/୧୨/୧୯୯୩ ମସିହା ପର୍ଯ୍ୟନ୍ତ ଓଡିଶା ମାଧ୍ୟମିକ ଶିକ୍ଷା ବୋର୍ଡ ସଭାପତି ଦାୟିତ୍ୱରେ ଥିଲେ । ତାଙ୍କ ସମୟରେ ସି.ଟି.ସିଲାବସ୍ ସଂଶୋଧନ କରାଗଲା ବୋଲି ଶୁଣାଗଲା । ସି.ଟି.ପାଠ୍ୟକ୍ରମ ପୂର୍ବରୁ ବଡ ବିଚିତ୍ର ଧରଣର ଥିଲା । ତାଲିମ୍ ପାଉଥିବା ଶିକ୍ଷକମାନଙ୍କର ଆବଶ୍ୟକତା ପୂରଣ କରିବାରେ ଏହାର ଅନେକ ଅଭାବ ଥିଲା । ତାଛଡା ଅନାବଶ୍ୟକ ଭାବରେ ଏହା ଅତ୍ୟନ୍ତ Heavy ଓ Clumsy ଥିଲା । ତେଣୁ କ'ଣ ସଂଶୋଧନ କରାଗଲା ଜାଣିବା ପାଇଁ ଆମେ ସଂଶୋଧିତ ପାଠ୍ୟକ୍ରମ ମଗାଇ ଆଣିଲୁ । ଦେଖିଲୁ ପୂର୍ବରୁ ଯାହା ଥିଲା ତାହା ରହିଛି, ଖାଲି କ୍ରମିକ ନମ୍ବର ଓ ସ୍ଥାନ ପରିବର୍ତ୍ତନ ହୋଇଛି । ଏ କଥା ଫଣୀ ବାବୁଙ୍କୁ କହିବାରୁ ସେ କହିଲେ, "ଆପଣ ଆସି ଆଉଥରେ ସଂଶୋଧନ କରନ୍ତୁ ।" ଏହା ପରେ ସେ ମୋତେ ଓ ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ରଙ୍କୁ ସଦସ୍ୟ ଭାବରେ ସି.ଟି.ସିଲାବସ୍ କମିଟିକୁ ନେଇ ଗଲେ । ସେ କମିଟିର ଆବାହକ SCERT ର ନିର୍ଦ୍ଦେଶକ ଡକ୍ଟର କାଳିକୁମାର ଦାସ । ତାଙ୍କୁ ମୁଁ ପ୍ରସ୍ତାବ ଦେଲି ଗୋଟିଏ ସଂପ୍ରସାରିତ ସି.ଟି. ପାଠ୍ୟକ୍ରମ ନବୀକରଣ କମିଟି ଗଠନ କରାଯାଉ ଓ ସେଠାକୁ ଓଡିଶାର ଶିକ୍ଷାବିତ୍‌ମାନଙ୍କୁ ଡକାଯାଉ । ତାହା ହିଁ ହେଲା । ସଂପ୍ରସାରିତ କମିଟିର ପ୍ରାୟ ୪୦ ଜଣ ସଦସ୍ୟ ରହିଲେ । କିନ୍ତୁ ତାଙ୍କ ମଧ୍ୟରୁ କେବଳ ୩୦ ଜଣ ନିୟମିତ ସଭାକୁ ଆସୁଥିଲେ ।

ଆରମ୍ଭରେ ବିଚାର କରାଗଲା ସି.ଟି.ପାଶ୍ କରୁଥିବା ପିଲାମାନେ ପ୍ରାଥମିକ ସ୍କୁଲରେ କିମ୍ବା ଉଚ୍ଚ ପ୍ରାଥମିକ ସ୍କୁଲରେ (ମାଇନର) ଶିକ୍ଷକ ରହିବେ । ତାଙ୍କର କ'ଣ ଜାଣିବା ଦରକାର । ଆଲୋଚନା ପରେ ସ୍ଥିର କରାଗଲା ଯେ ପ୍ରଥମ ପତ୍ର

- ସମସାମୟିକ ଭାରତର ଶିକ୍ଷା ବ୍ୟବସ୍ଥା ଓ ଶିକ୍ଷା ସମସ୍ୟା ଓ ଦ୍ୱିତୀୟ ପତ୍ର - ଶିକ୍ଷା ମନୋବିଜ୍ଞାନ, ବିକାଶ ମନୋବିଜ୍ଞାନ (Development Psychology) ନିଶ୍ଚୟ ରହିବ । ତୃତୀୟ ପତ୍ର ନୂଆ ଭାବରେ ପ୍ରବର୍ତ୍ତନ କରାଗଲା । ପାଠ୍ୟକ୍ରମ ପ୍ରଣୟନ, ପାଠ୍ୟକ୍ରମ ପରିଚାଳନା (Transaction) ଓ ସଂପାଦନା ତଥା ମୂଲ୍ୟାୟନ ପଦ୍ଧତି । ଚତୁର୍ଥ ପତ୍ର, ସ୍ୱାସ୍ଥ୍ୟ ଶିକ୍ଷା , ଶାରୀରିକ ଶିକ୍ଷା, କଳା ଶିକ୍ଷା ଉଭୟ ଚିତ୍ରାଙ୍କନ, ନୃତ୍ୟ, ସଂଗୀତ, ଅଭିନୟ ଇତ୍ୟାଦି କର୍ମଶିକ୍ଷା (Work Education) ଇତ୍ୟାଦି । ଏହି ଚାରିଗୋଟି ପତ୍ର ସର୍ବସମ୍ମତି କ୍ରମେ ନିର୍ଦ୍ଧାରିତ ହୋଇଗଲା । ପୂର୍ବ ପାଠ୍ୟକ୍ରମରେ ପିଲାମାନଙ୍କର ଭାଷା ଜ୍ଞାନର ଅଭିବୃଦ୍ଧି ପାଇଁ ଇଂରାଜି, ଓଡିଆ ଓ ହିନ୍ଦି ଶିକ୍ଷାର ବ୍ୟବସ୍ଥା ଥିଲା । ତାହା ମଧ ନୂଆ ପାଠ୍ୟକ୍ରମରେ ଗୃହୀତ ହେଲା । କିନ୍ତୁ ପ୍ରତ୍ୟେକ ଭାଷା ଶିକ୍ଷା ପାଇଁ ୧୦୦ ନମ୍ବର ପରିବର୍ତ୍ତେ ୫୦ ନମ୍ବର ଦିଆଗଲା ।

ମୁଖ୍ୟ ସମସ୍ୟା ହେଲା ପୁରୁଣା ପାଠ୍ୟକ୍ରମରେ ଛଅଗୋଟି ବିଷୟରେ ପାଠଦାନ ପଦ୍ଧତି ଶିକ୍ଷା ଦିଆ ଯାଉଥିଲା । ପ୍ରଶ୍ନହେଲା କୌଣସି ଛାତ୍ରଛାତ୍ରୀ ବିଜ୍ଞାନ ଓ କଳା ବିଷୟରେ ପାଠଦାନ ପଦ୍ଧତି ଶିକ୍ଷାକଲେ ହେବ । ସେଥିପାଇଁ ଛଅଗୋଟି ବିଷୟରେ ଶିକ୍ଷା ପଦ୍ଧତି ବଦଳରେ ଦୁଇଟି ବିଜ୍ଞାନ ବିଷୟ ସହିତ ଗୋଟିଏ କଳା ବିଷୟ କିମ୍ବା ଦୁଇଟି କଳା ବିଷୟ ସହ ଗୋଟିଏ ବିଜ୍ଞାନ ବିଷୟ ଶିକ୍ଷା କଲେ ଯଥେଷ୍ଟ ହେବ । ବିଷୟଗୁଡିକ ଦୁଇ ଭାଗରେ ବିଭକ୍ତ କରି ଦିଆଗଲା । (୧) ବିଜ୍ଞାନ ବିଷୟ- ଗଣିତ, ବିଜ୍ଞାନ ଓ ଭୂଗୋଳ (୨) କଳା ବିଷୟ - ଇଂରାଜି, ଓଡିଆ ଓ ଇତିହାସ । ଏହିପରି ଭାବରେ ଚାରିଗୋଟି ତାତ୍ତ୍ୱିକ ପତ୍ର (Theory Paper) ।

## ଭାଷା ଶିକ୍ଷା - ୩ ଗୋଟି

## ପଦ୍ଧତି ଶିକ୍ଷା - Theory ଓ Practical

ଏତିକିରେ ପାଠ୍ୟକ୍ରମ ସଂପୂର୍ଣ୍ଣ ହୋଇ ପାରିବ । ପୂର୍ବ ପାଠ୍ୟକ୍ରମରେ ଥିବା ୧୯୦୦ ନମ୍ବରର ଆବଶ୍ୟକତା ନାହିଁ । ପୂର୍ବ ପାଠ୍ୟକ୍ରମରେ ପିଲାଙ୍କର Record ଓ Lesson noteର ପରୀକ୍ଷା ପାଇଁ ସ୍ୱତନ୍ତ୍ର ନମ୍ବର ଥିଲା । ରେକର୍ଡ ସବୁ ପୂର୍ବବର୍ଷ ପିଲାଙ୍କଠାରୁ ନକଲ କରି ରଖାଯାଉଥିଲା । ଏପରିକି Lesson note ମଧ । ସେ ସବୁ ନକଲ କାର୍ଯ୍ୟପାଇଁ ସ୍ୱତନ୍ତ୍ର ଭାବରେ ପରୀକ୍ଷା ବ୍ୟବସ୍ଥା ନ

କରି Practical ପରୀକ୍ଷାବେଳେ Lesson note ଦେଖି ହେବ । ପୂର୍ବର ଅଭ୍ୟାସ ପାଠ ବେଳେ ଶିକ୍ଷକମାନେ Lesson note ଦେଖୁଥିବେ । ସେଥିପାଇଁ ନମ୍ବର ରଖିବାର ଆବଶ୍ୟକତା ନାହିଁ । ଅନାବଶ୍ୟକ ଭାବରେ ଗୁଡାଏ ନମ୍ବର ଦେବାର ପରମ୍ପରା ଭାଙ୍ଗିବା ଦରକାର ହେଉଥିଲା ।

ପାଠ୍ୟକ୍ରମ ସ୍ଥିରୀକୃତ ହୋଇଯିବା ପରେ ଦ୍ୱିତୀୟ ସମସ୍ୟା ହେଲା ପାଠ୍ୟ ପୁସ୍ତକ ଲେଖିବା ଓ ସମୀ କ୍ଷା କରିବା । ପ୍ରଥମ ପତ୍ର ସମସାମୟିକ ଭାରତର ଶିକ୍ଷା ସମସ୍ୟା ବିଷୟ ଡକ୍ଟର କାଳିକୁମାର ଦାସ ପଢାନ୍ତି ଓ ସେ ବିଷୟରେ ବହି ଲେଖିବାର ଅଭିଜ୍ଞତା ତାଙ୍କର ଥିବାରୁ ତାଙ୍କୁ ପ୍ରଥମ ପତ୍ରର ସମୀକ୍ଷକ କରାଗଲା ଓ ତିନିଜଣ ଲେଖକ ସେ ନିଜେ ବାଛିଲେ । ଦ୍ୱିତୀୟ ପତ୍ର ଶିକ୍ଷା ମନୋବିଜ୍ଞାନରେ ସମୀକ୍ଷକ ହେବାକୁ ବହୁତ ପ୍ରାର୍ଥୀ ବାହାରିଲେ । କିନ୍ତୁ ମନୋବିଜ୍ଞାନ ବିଷୟରେ ସମସ୍ତଙ୍କର ଅଧ୍ୟୟନ ସୀମିତ । ତେଣୁ ଜଣେ ମନୋବିଜ୍ଞାନ ବିଶେଶଜ୍ଞଙ୍କୁ ନିଯୁକ୍ତ କରିବା କଥା ବିଚାର କରାଗଲା । ମୁଁ ଡକ୍ଟର କୈଳାସ ଚନ୍ଦ୍ର ପଣ୍ଡାଙ୍କ ନାଁ ପ୍ରସ୍ତାବ ଦେଲି । ଅନ୍ୟ ସମସ୍ତେ ସମ୍ମତି ଦେବାରୁ ତାଙ୍କୁ ଦ୍ୱିତୀୟ ପତ୍ରର ସମୀକ୍ଷକ ନିଯୁକ୍ତ କରାଗଲା । ପାଠ୍ୟପୁସ୍ତକ ଲେଖିବା ପାଇଁ ଓ ସମୀକ୍ଷା କରିବା ପାଇଁ ମାଧ୍ୟମିକ ଶିକ୍ଷା ବୋର୍ଡ ଯେଉଁ ପାରିଶ୍ରମିକ ସ୍ଥିର କରିଛନ୍ତି ତାହା ବହୁତ କମ୍ । ତେବେ ଟଙ୍କା ଦୃଷ୍ଟିରୁ ନ ହେଲେ ବି ରାଜ୍ୟର ଶିକ୍ଷାର ଉନ୍ନତି ଦୃଷ୍ଟିରୁ ଦାୟିତ୍ୱ ଗ୍ରହଣ ପାଇଁ ଲେଖକ ଓ ସମୀକ୍ଷକମାନଙ୍କୁ ଅନୁରୋଧ କରାଗଲା । ଅନେକଙ୍କର ସନ୍ଦେହ ଥିଲା ଡକ୍ଟର ପଣ୍ଡା ଏ ପ୍ରସ୍ତାବ ଗ୍ରହଣ କରିବେ ନାହିଁ । କିନ୍ତୁ ସେ ମୋ ଅନୁରୋଧରେ ଗ୍ରହଣ କଲେ । ତୃତୀୟ ପତ୍ର - ପାଠ୍ୟକ୍ରମ ସଂରଚନ, ସଂପାଦନ ଓ ମୂଲ୍ୟାୟନ - ସଂପୂର୍ଣ୍ଣ ନୂଆ । ଓଡିଆରେ ପାଠ୍ୟକ୍ରମ ଉପରେ କୌଣସି ବହି ଲେଖା ଯାଇନାହିଁ । ତେଣୁ ସେ ବିଷୟ ଲେଖିବା ଓ ସମୀକ୍ଷା କରିବା କଷ୍ଟସାଧ । ମୁଁ ଯୁକ୍ତି କରି ସେ ବିଷୟଟି ପ୍ରବର୍ତ୍ତନ କରିଥିବାରୁ ମୋରି ଉପରେ ତୃତୀୟ ପତ୍ରର ସମୀକ୍ଷା ଦାୟିତ୍ୱ ଦିଆଗଲା । ଚତୁର୍ଥ ପତ୍ର ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ରଙ୍କୁ ସମୀକ୍ଷା ପାଇଁ ଦିଆଗଲା ।

ପ୍ରଥମ ଚାରିଗୋଟି ପତ୍ରର ଲେଖକମାନେ ତାଙ୍କ ନିଜ ନିଜ ଅଂଶ ଲେଖି ସମୀକ୍ଷକଙ୍କୁ ଦେବାର ବ୍ୟବସ୍ଥା ଥିଲା । ଲେଖକମାନେ ଯାହା ଲେଖିଲେ ସମୀକ୍ଷାବେଳେ ସେଥିରୁ ଅଧିକାଂଶ ପରିବର୍ତ୍ତନ ଓ ସଂଶୋଧନ କରାଗଲା । ପ୍ରଥମ, ଦ୍ୱିତୀୟ ଓ ତୃତୀୟ ପତ୍ରରେ ବ୍ୟାପକ ସଂଶୋଧନ ଆବଶ୍ୟକ ହେଲା ।

ଛଅ ଗୋଟି ଶିକ୍ଷାଦାନ ପଦ୍ଧତି ବିଷୟରେ ଯେଉଁମାନଙ୍କର ଅଭିଜ୍ଞତା ଥିଲା ତାଙ୍କୁ ଲେଖିବାକୁ ଦିଆଗଲା । ଏହି ପତ୍ର ଗୁଡିକରେ ସମୀକ୍ଷକ ନ ଥିଲେ । ଲେଖକ ଯାହା ଲେଖିଦେଲେ ତାହା ଗୃହୀତ ହେବାର କଥା । ଯେତେବେଳେ ସାଧାରଣ ସଭାରେ ଶେଷ ସମୀକ୍ଷା କରାଗଲା । ଡକ୍ଟର କୈଳାସ ଚନ୍ଦ୍ର ପଣ୍ଡା ଦୁଇଟି ଶିକ୍ଷାଦାନ ପଦ୍ଧତି ବିଷୟରେ ଆପତ୍ତି ଉଠାଇଲେ - ଇଂରାଜି ଓ ଇତିହାସ । ଅନ୍ୟମାନେ ମଧ୍ୟ ତାଙ୍କ ସହିତ ଏକମତ ହେଲେ । ନୂଆ ଲେଖକ ନିଯୁକ୍ତ ହେଲେ ଓ ପୁରୁଣା ଲେଖକଙ୍କ ସହାୟତାରେ ଆବଶ୍ୟକୀୟ ସଂଶୋଧନ ପାଇଁ କୁହାଗଲା। ସେତେବେଳେ ମାଧ୍ୟମିକ ଶିକ୍ଷା ବୋର୍ଡରେ ସଭାପତି ଥିଲେ ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର। ସଂଶୋଧନ କାର୍ଯ୍ୟ ବିଷୟରେ ସେ ସାହସିକ ପଦକ୍ଷେପ ନେଇ ପାରିଲେ ନାହିଁ । କାରଣ ପୁରୁଣା ଲେଖକମାନେ ତାଙ୍କର ସହକର୍ମୀ ଓ ସଂପର୍କିତ। ହେଲେ ଭୁଲ୍ କୁ ଭୁଲ୍ ବୋଲି କହିବାରେ ସାହସିକତା କ'ଣ ଦରକାର? ସେ ନିଜେ ତ ଭୁଲ୍ ବୋଲି କହୁନାହାଁନ୍ତି ! ଏକ ସାମୂହିକ ସମୀକ୍ଷାରେ ଥିବା ସବୁ ସଦସ୍ୟ ଏହି ମତ ଦେଇଛନ୍ତି। ନୂଆ ପାଠ୍ୟକ୍ରମ ପ୍ରବର୍ତ୍ତନ ହୋଇ ପାରୁନାହିଁ। କାରଣ ବହି ଛପା ଯାଇନାହିଁ। ଯେଉଁ ବହିରେ ଭୁଲ୍ ନଥିଲା ସେ ଗୁଡିକ ଛପା ଯାଇ ପାରିଥାନ୍ତା। ତାହା ମଧ୍ୟ ହେଲା ନାହିଁ। ପରେ ଜଣାଗଲା ଯେ ମାଧ୍ୟମିକ ଶିକ୍ଷା ବୋର୍ଡ ସଂପାଦକ ଡକ୍ଟର ମିହିର ଦାସଙ୍କ ପରାମର୍ଶରେ ନୂଆ ବହି ଛପା କାମ ବନ୍ଦ ରହିଛି। ଏହିପରି ଭାବରେ ଦୁଇବର୍ଷ ବିତିଗଲା। ପ୍ରଫୁଲ୍ଲ ବାବୁଙ୍କର ସଭାପତିତ୍ୱ ଶେଷ ହୋଇଗଲା। ଶେଷ ପର୍ଯ୍ୟନ୍ତ ନୂଆ ପାଠ୍ୟକ୍ରମ ପ୍ରବର୍ତ୍ତନ ହେଲା ନାହିଁ କି ବହି ଛପା ହେଲା ନାହିଁ। ବହୁ ପ୍ରତୀକ୍ଷିତ ନୂଆ ସି.ଟି ପାଠ୍ୟକ୍ରମ ପ୍ରଫୁଲ୍ଲ ବାବୁଙ୍କ କାର୍ଯ୍ୟକାଳ ମଧ୍ୟରେ ପ୍ରବର୍ତ୍ତନ ହୋଇ ପାରିଲା ନାହିଁ ଯଦିଓ ନୂଆ ପାଠ୍ୟକ୍ରମ ପ୍ରସ୍ତୁତିରେ ସେ ଜଣେ ପ୍ରମୁଖ ସଦସ୍ୟ ଥିଲେ।

ତାଙ୍କ ପରେ ଯେତେବେଳେ ଡକ୍ଟର ନରେନ୍ଦ୍ର ପ୍ରସାଦ ଦାସ ମାଧ୍ୟମିକ ଶିକ୍ଷା ବୋର୍ଡର ନୂଆ ସଭାପତି ହେଲେ, ତାଙ୍କୁ ନୂଆ ସି.ଟି. ପାଠ୍ୟକ୍ରମ ପ୍ରବର୍ତ୍ତନ ଓ ବହି ଛପା ବିଷୟରେ କହିଲୁ। ସେ ଦୃଢ ପଦକ୍ଷେପ ନେଇ ଛପା ହେବା ପାଇଁ ବହି ଦେଇ ଦେଲେ ଓ ନୂଆ ପାଠ୍ୟକ୍ରମ ପ୍ରବର୍ତ୍ତନ କରି ଦେଲେ। ବୋର୍ଡର ସଂପାଦକ ଡକ୍ଟର ମିହିର ଦାସଙ୍କ କେତେକ ଆପତ୍ତି ଯୋଗୁଁ ବହି ଛପା ହୋଇ ନଥିଲା। ତାଙ୍କର ମୁଖ୍ୟ ଆପତ୍ତି ଥିଲା ପୁରୁଣା ବହି ଅନେକ ବିକ୍ରି ହୋଇ ନାହିଁ।

ନୂଆ ପାଠ୍ୟକ୍ରମ ପ୍ରବର୍ତ୍ତନ କଲେ ଓ ନୂଆ ପାଠ୍ୟ ବହି ପ୍ରବର୍ତ୍ତନ କଲେ ପୁରୁଣା ବହି ଆଉ ବିକ୍ରି ହୋଇ ପାରିବ ନାହିଁ। ପ୍ରତ୍ୟେକ ବହି ନୂଆ କରି ଚଳାଇଲା ବେଳେ ଏ ପ୍ରକାର ଅବସ୍ଥା ହୁଏ । ପୁରୁଣା ବହି ବିକ୍ରି କରିବ ବୋଲି କ'ଣ ନୂଆ ବହି ପ୍ରବର୍ତ୍ତିତ ହେବ ନାହିଁ। ଆମେ ପରାମର୍ଶ ଦେଲୁ ପୁରୁଣା ବହି ସବୁ ସି.ଟି. ସ୍କୁଲ ଲାଇବ୍ରେରୀମାନଙ୍କୁ ଦେଇ ଦିଆଯାଉ।

## ୧୩.୪ ନ୍ୟୁନତମ ଶିକ୍ଷଣ ସ୍ତର
## (Minimum Levels of Learning)

ଜାତୀୟ ଶିକ୍ଷା ନୀତି, ୧୯୮୬ରେ ନ୍ୟୁନତମ ଶିକ୍ଷଣ ସ୍ତର ବା ଦକ୍ଷତା ଭିତ୍ତିକ ଶିକ୍ଷା ପ୍ରବର୍ତ୍ତନ ପାଇଁ ବ୍ୟବସ୍ଥା ରଖା ଯାଇଛି । ପୂର୍ବରୁ ଯେଉଁ ପାଠ୍ୟପୁସ୍ତକ ପ୍ରାଥମିକ ଶ୍ରେଣୀରେ ପଢା ଯାଉଥିଲା ତାହା ବିଷୟ ଭିତ୍ତିକ ଥିଲା । ସେଥିରେ ଦକ୍ଷତା ଥିଲା କିନ୍ତୁ ତାହା ଏପରି ଭାବରେ ବିଷୟବସ୍ତୁ ମଧ୍ୟରେ ସନ୍ନିବିଷ୍ଟ ହୋଇ ରହିଥିଲା ଯେ ତାକୁ ଚିହ୍ନଟ କରିବା କଷ୍ଟକର ହେଉଥିଲା । ତାହା ଶିକ୍ଷଣ କେନ୍ଦ୍ର ଭାବରେ ବ୍ୟବହୃତ ହେଉ ନ ଥିଲା । ନ୍ୟୁନତମ ଶିକ୍ଷଣ ସ୍ତରରେ (Minimum Levels of Learning) ଦକ୍ଷତା ହେଉଛି ଶିକ୍ଷଣର କେନ୍ଦ୍ରବିନ୍ଦୁ । ଦକ୍ଷତା ହାସଲ ପାଇଁ ଯେତିକି ବିଷୟବସ୍ତୁ ଦରକାର କେବଳ ସେତିକି ପାଠ୍ୟପୁସ୍ତକରେ ସନ୍ନିବେଶିତ ହେବ । ଅଧିକ ଗୁଡାଏ ବିଷୟବସ୍ତୁ ରଖି ପିଲାଙ୍କୁ ଭାରାକ୍ରାନ୍ତ କରିବାର ଆବଶ୍ୟକତା ନାହିଁ । ଏହା ଦ୍ୱାରା କମ୍ ବିଷୟବସ୍ତୁରେ ଦକ୍ଷତା ହାସଲ ହୋଇଯିବାର ବ୍ୟବସ୍ଥା ରହିଛି ।

ଦକ୍ଷତା-ଭିତ୍ତିକ ଶିକ୍ଷଣର ଉପାଦେୟତା ଦୃଷ୍ଟିରୁ ଓଡିଶା ସରକାର ଏହାକୁ ୧୯୯୫ରେ ପ୍ରଥମ ଶ୍ରେଣୀରେ ପ୍ରବର୍ତ୍ତନ କଲେ । ଦକ୍ଷତା ଭିତ୍ତିକ ପାଠ୍ୟପୁସ୍ତକ ମଧ୍ୟ ଲେଖାଗଲା । ୧୯୯୬ ମସିହାରେ ଯେତେବେଳେ ମଦନ ମୋହନ ମହାନ୍ତି ଶିକ୍ଷା ବିଭାଗର ପ୍ରମୁଖ ସଚିବ ହୋଇ ଆସିଲେ ସେ ଦେଖିଲେ ଯେ ଦକ୍ଷତା ଭିତ୍ତିକ ଶିକ୍ଷା ପ୍ରବର୍ତ୍ତିତ ହୋଇ ଯାଇଛି  କିନ୍ତୁ ଶିକ୍ଷକମାନଙ୍କୁ ଏ ପ୍ରକାର ଶିକ୍ଷାରେ ତାଲିମ୍ ଦିଆଯାଇ ନାହିଁ । ସବ୍‌ଇନିସ୍ପେକ୍ଟରଙ୍କୁ ଜିଲ୍ଲା ଶିକ୍ଷାଧିକାରୀମାନଙ୍କୁ ତାଲିମ୍ ଦିଆ ଯାଇନାହିଁ । ତେଣୁ ଏ ନୂଆ ପ୍ରଣାଳୀ ସନ୍ତୋଷଜନକ ଭାବରେ କାମ କରୁ ନାହିଁ । ସେ SCERT ନିର୍ଦ୍ଦେଶକଙ୍କୁ , ରାଜ୍ୟ ସ୍ତରରେ ଏକ Core Team

ଗଠନ କରି DIET ର ଶିକ୍ଷକମାନଙ୍କୁ, ସ୍କୁଲ ସବ୍‌ଇନିସ୍ପେକ୍ଟର, ଜିଲ୍ଲା ଶିକ୍ଷାଧିକାରୀ, ଟ୍ରେନିଂ ସ୍କୁଲ ପ୍ରଧାନ ଶିକ୍ଷକ, ଟ୍ରେନିଂ କଲେଜର ଅଧ୍ୟାପକମାନଙ୍କୁ ଟ୍ରେନିଂ ଦେବାପାଇଁ ନିର୍ଦ୍ଦେଶ ଦେଲେ । ସେ ବର୍ଷ ଦ୍ୱିତୀୟ ଶ୍ରେଣୀରେ ଦକ୍ଷତା ଭିତ୍ତିକ ଶିକ୍ଷା ପ୍ରବର୍ତ୍ତନ ନ କରିବାକୁ ସରକାର ନିଷ୍ପତ୍ତି ନେଲେ .

ପ୍ରମୁଖ ଶିକ୍ଷା ସଚିବଙ୍କ ନିର୍ଦ୍ଦେଶ ଅନୁଯାୟୀ ରାଜ୍ୟ ସ୍ତରରେ Core Team ଗଠନ କରାଗଲା । ସେ ଟିମ୍‌ରେ ଡକ୍ଟର ଶରତ ଚନ୍ଦ୍ର ଦାଶ ମୁଁ ଓ SCERT ନିର୍ଦ୍ଦେଶକ କାଳିବାବୁ, ଡକ୍ଟର ସର୍ବେଶ୍ୱର ସାମଲ ଓ ଅନ୍ୟ କେତେଜଣ ଶିକ୍ଷାବିତ୍ ରହିଲେ ।

ପ୍ରତି ଦଳରେ ୫୦ ଜଣ ଲେଖାଁଏ ପାଞ୍ଚଗୋଟି ଦଳକୁ ରାଜ୍ୟସ୍ତରରେ ଟ୍ରେନିଂ ଦିଆଗଲା । ଟ୍ରେନିଂରେ ମୁଖ୍ୟତଃ ଦକ୍ଷତା ଚୟନ, ଚିହ୍ନଟ ଓ କର୍ମ-ଭିତ୍ତିକ ଶିକ୍ଷା ଉପରେ ଗୁରୁତ୍ୱ ଦିଆଗଲା । ଜିଲ୍ଲାସ୍ତରରେ DIET ମାନେ ଅନୁରୂପ ଟ୍ରେନିଂ ଦେବାପାଇଁ ବ୍ୟବସ୍ଥା କରାଗଲା ଓ ସେଥିପାଇଁ ଅର୍ଥବ୍ୟବସ୍ଥା ମଧ୍ୟ କରାଗଲା । ସେମାନଙ୍କୁ ସାହାଯ୍ୟ କରିବା ପାଇଁ ସି.ଟି.ଟ୍ରେନିଂ ସ୍କୁଲର ଶିକ୍ଷକମାନଙ୍କୁ ନିର୍ଦ୍ଦେଶ ଦିଆଗଲା । ପ୍ରତ୍ୟେକ DIET ଓ ଟ୍ରେନିଂ କଲେଜ ସ୍କୁଲ ସବ୍‌ଇନିସ୍ପେକ୍ଟର ଓ ପ୍ରାଥମିକ ସ୍କୁଲ ଶିକ୍ଷକମାନଙ୍କୁ ଟ୍ରେନିଂ ଦେବା ପାଇଁ ଯୋଜନା ପ୍ରସ୍ତୁତ କରି SCERT ନିର୍ଦ୍ଦେଶକଙ୍କ ନିକଟକୁ ପଠାଇଲେ । SCERT ରୁ ଅନୁମୋଦନ ପାଇ ସେମାନେ ଟ୍ରେନିଂ ଦେବା କାମ ଆରମ୍ଭ କଲେ ।

ମୁଁ ଓ SCERT ନିର୍ଦ୍ଦେଶକ ଡକ୍ଟର କାଳିକୁମାର ଦାସ ଟ୍ରେନିଂ କିପରି ଚାଲିଛି ଦେଖିବା ପାଇଁ ଭୁବନେଶ୍ୱରରୁ ବାହାରିଲୁ । ଦେଖିଲୁ ବାଲେଶ୍ୱର DIET ରେମୁଣାରେ ଶିକ୍ଷକ ଶିକ୍ଷୟିତ୍ରୀ ମାନେ ଖୁବ୍ ଭଲ ଟ୍ରେନିଂ ଦେଉଛନ୍ତି । ତାଲିମ୍ ପ୍ରାର୍ଥୀମାନେ ଆମ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଦେଲେ । ଠିକ୍ ତା'ର ଓଲଟା ଦେଖିଲୁ ବାଲେଶ୍ୱର ଟ୍ରେନିଂ କଲେଜରେ, କଲେଜ ଅଧ୍ୟାପକଙ୍କ ଦ୍ୱାରା ପରିଚାଳିତ ତାଲିମ୍‌ରେ କୌଣସି କାର୍ଯ୍ୟକ୍ରମ ନ ଥିଲା । ଯାହା ପଚାରିଲେ ଶିକ୍ଷାର୍ଥୀମାନେ କିଛି ଉତ୍ତର ଦେଇ ପାରିଲେ ନାହିଁ । ସେମାନେ ସିଧା କହିଲେ ଅଧ୍ୟାପକମାନେ ତାଙ୍କୁ କିଛି ଶିକ୍ଷା ଦେଇ ନାହାନ୍ତି । ଆମର ଟ୍ରେନିଂ କଲେଜ ଅଧ୍ୟାପକ ମାନଙ୍କ ଉପରେ ଯେଉଁ ଧାରଣା ଥିଲା ତାହା ଓଲଟପାଲଟ ହୋଇଗଲା । ସେମାନେ ବୋଧହୁଏ ଏପରି ଏକ ପରିଦର୍ଶନ ହୋଇପାରେ ବୋଲି ଆଶା କରି ନ ଥିଲେ । ସେଥିପାଇଁ ଅବହେଳା କରିଥିଲେ । ବରଂ ଜଳେଶ୍ୱର ହାଇସ୍କୁଲ ଓ ଭୋଗରାଇ



ଭୁବନେଶ୍ୱର ଆଠ ନମ୍ବର ଇଉନିଟ୍ ବାଳକ ହାଇସ୍କୁଲର ଉତ୍ସବରେ ଲେଖକ ଓ ସ୍କୁଲର ପ୍ରଧାନ ଶିକ୍ଷୟିତ୍ରୀ ଅନିମା ଭଞ୍ଜ ମଞ୍ଚାସୀନ (୧୯୯୪)

ହାଇସ୍କୁଲରେ ହେଉଥିବା ଟ୍ରେନିଂ ବାଲେଶ୍ୱର DIET ଟ୍ରେନିଂ ଭଳି ଏତେ ଉଚ୍ଚ ଧରଣର ନ ହେଲେ ମଧ୍ୟ ବେଶ୍ ଭଲ ହୋଇଥିଲା ।

କିଛି ଦିନପରେ ଆମେ ପ୍ରମାଣ ପାଇଲୁ ଯେ କେତେକ DIET ଓ ଟ୍ରେନିଂ ସ୍କୁଲରେ ଯୋଜନା ଠିକ୍ ଭାବରେ କରା ଯାଇଥିଲେ ମଧ୍ୟ ତାହା କାର୍ଯ୍ୟକାରୀ କରା ଯାଇନାହିଁ । ଆଦୌ କିଛି କାମ ନ କରି ମିଥ୍ୟା ଦଲିଲ୍ ପ୍ରସ୍ତୁତ କରି ହିସାବ ଅନୁସାରେ ଟଙ୍କା ନେଇଗଲେ । ଯେଉଁଠାରେ ଏପରି ମିଥ୍ୟା ବିଲ୍ କରି ଟଙ୍କା ନେଲେ ସେଠାରେ ଆର୍ଥିକ କ୍ଷତି ଯେତେ ମାରାତ୍ମକ ନୁହେଁ, ଶିକ୍ଷାର ଅବନତି ତା ଅପେକ୍ଷା ଅଧିକ ମାରାତ୍ମକ । ସରକାର ଧାରଣା କଲେ ଯେ ସବୁ ଶିକ୍ଷକ ନୂଆ ପଦ୍ଧତିରେ ତାଲିମ୍ ପାଇଗଲେ । ଏଣିକି ପାଠ ପଢାର ମାନ ଉନ୍ନତ ହେବ। ଅଥଚ ଶିକ୍ଷକମାନେ କିଛି ଜାଣିଲେ ନାହିଁ । ଉପକୂଳ ଜିଲ୍ଲାମାନଙ୍କରେ ଅବସ୍ଥା ଯାହା ଦେଖାଗଲା ଅନ୍ୟ ଜିଲ୍ଲାମାନଙ୍କରେ ଅବସ୍ଥା ଭିନ୍ନ ହୋଇ ନ ଥିବ । କିନ୍ତୁ ଆଦିବାସୀ ଅଞ୍ଚଳରେ ଜାଲ ଫିସାଦ ଏତେ ହୋଇ ନ ଥିବାର ଖବର ଆମ ପାଖରେ ପହଞ୍ଚୁଥିଲା ।

## ୧୩.୫ ସମସ୍ତଙ୍କ ପାଇଁ ଶିକ୍ଷାର ଭିତ୍ତିପତ୍ର

ଓଡିଶାର ଶିକ୍ଷା ରୂପାୟନ କମିଟି (Education Task Force) ଉଦ୍ୟମରେ "ସମସ୍ତଙ୍କ ପାଇଁ ଶିକ୍ଷା" ନିମିତ୍ତ ଏକ ଭିତ୍ତିପତ୍ର ପ୍ରସ୍ତୁତ କରିବାକୁ ପ୍ରସ୍ତାବ କରାଗଲା । ସେଥିପାଇଁ ଆବଶ୍ୟକ ପରିସଂଖ୍ୟାନ ଓ ନୂତନ ପ୍ରକାଶିତ ଶିକ୍ଷା ଗବେଷଣା ଲବ୍ଧଜ୍ଞାନ ଏକତ୍ର କରି ଏକ ଭିତ୍ତିପତ୍ର ପ୍ରକାଶ ପାଇଁ ଯୋଜନା ହେଲା । ଓଡିଶାରେ ପ୍ରଚଳିତ ଶିକ୍ଷାକୁ ଭିତ୍ତିକରି ଏହି ଭିତ୍ତିପତ୍ର ପ୍ରସ୍ତୁତ କରାଗଲା । ବହୁ ପରିଶ୍ରମ କରି, ଅନେକ ତଥ୍ୟ ସଂଗ୍ରହ କରି ଓ ବହୁ ଆଲୋଚନା ପରେ ଗୋଟିଏ ରିପୋର୍ଟ ପ୍ରସ୍ତୁତ କରାଗଲା । ଡକ୍ଟର ଶରତ ଚନ୍ଦ୍ର ଦାଶଙ୍କ ନେତୃତ୍ୱରେ ଏହି ଭିତ୍ତିପତ୍ର ପ୍ରସ୍ତୁତ ହେଲା । ଟାଇପ୍ କରି ଏହି ଭିତ୍ତିପତ୍ରଟି ସରକାରଙ୍କୁ ଓ ୟୁନିସେଫକୁ ଦିଆ ଯାଇଥିଲା । କେହି କେବେ ସେ ରିପୋର୍ଟଟି ପଢିଥିବା ପରି ଜଣାଯାଏ ନାହିଁ । ଆମର ଅନେକ ପରିଶ୍ରମ ବୃଥା ହୋଇଗଲା ବୋଲି ଆମେ ଭାବିଥିଲୁ । ଏଥିରେ ବହୁ ଉପାଦେୟ ତଥ୍ୟ, ଆଲୋଚନା ଓ ସୂଚନା ରହିଥିବାରୁ ଅନ୍ତତଃ ଆମ୍ଭେମାନେ ଯେଉଁମାନେ ଲେଖାରେ ସଂପୃକ୍ତ ଥିଲୁ ବେଳେ ବେଳେ ଏହି ଭିତ୍ତିପତ୍ରଟି ବ୍ୟବହାର କରୁ । ଏହାର ବିଶେଷ ଆଦର ଓ ବ୍ୟବହାର ନ ହେଲେ ମଧ୍ୟ ଏହାର ଐତିହାସିକ ମୂଲ୍ୟ ଯେ ରହିଛି ଏଥିରେ ସନ୍ଦେହ ନାହିଁ ।

## ୧୩.୬ ସାର୍ବଜନୀନ ପ୍ରାଥମିକ ଶିକ୍ଷା ଓ ଶିଶୁ ଶ୍ରମିକ ସମସ୍ୟା

ଏ ଏକ ଅଛିଣ୍ଡା ଅଙ୍କ । ରାଜ୍ୟରେ ଶିଶୁ ଶ୍ରମିକ କେତେ ତାହା କେହି ଠିକ୍ ଭାବେ ଜାଣି ନାହାନ୍ତି । ସରକାର କେତେବେଳେ କହୁଛନ୍ତି ୨ ଲକ୍ଷ, କେତେବେଳେ ୪ ଲକ୍ଷ, ୫ ଲକ୍ଷ ଇତ୍ୟାଦି, ବେସରକାରୀ ସଂସ୍ଥାମାନେ କହୁଛନ୍ତି ୮ ଲକ୍ଷ । ପ୍ରକୃତ ସଂଖ୍ୟା ଜାଣିବାର ଉପାୟ ନାହିଁ ।

ସର୍ବଶିକ୍ଷା ଅଭିଯାନ ପରେ ସାର୍ବଜନୀନ ପ୍ରାଥମିକ ଶିକ୍ଷା (୧୪ ବର୍ଷ ବୟସ ପର୍ଯ୍ୟନ୍ତ) ହାସଲ କରିବାକୁ ସରକାର ୨୦୧୦ ମସିହାକୁ ଲକ୍ଷ୍ୟଧାର୍ଯ୍ୟ କରିଛନ୍ତି । ଅବଶ୍ୟ ଏହା ପୂର୍ବରୁ ବହୁବାର ସରକାର ଲକ୍ଷ୍ୟ ଧାର୍ଯ୍ୟ କରିଛନ୍ତି । ସମ୍ବିଧାନରେ ଧାର୍ଯ୍ୟ ବର୍ଷ ୧୯୬୦ ତାପରେ ୧୯୬୫, ୧୯୭୫, ୧୯୮୦ ଶେଷରେ ୨୦୦୦ ମସିହାରେ ସମସ୍ତଙ୍କ ପାଇଁ ଶିକ୍ଷା ଇତ୍ୟାଦି । ଏଥର ଯେଉଁ ତାରିଖରେ ଧାର୍ଯ୍ୟ ହୋଇଛି, ସେଥିରେ ସଫଳତା ପାଇଁ ହଜାର ହଜାର କୋଟି

ଟଙ୍କା କେନ୍ଦ୍ର ସରକାର ଛାଡ଼ିଛନ୍ତି ଓ ରାଜ୍ୟ ସରକାର ଓ ତାଙ୍କ କର୍ମଚାରୀମାନେ ଅଣ୍ଟାଭିଡ଼ିଛନ୍ତି । କେତେ ପିଲା ସ୍କୁଲକୁ ଗଲେଣି କେତେ ବାକି ଅଛନ୍ତି, କେତେ ପାଠ ତ୍ୟାଗ କରୁଛନ୍ତି ସେ ବିଷୟରେ ସଠିକ୍ ତଥ୍ୟ ନାହିଁ । ୨୦୦୪ ମସିହାରେ DPEP ଖଣ୍ଡିଏ ପୁସ୍ତିକାରେ ଲେଖିଥିଲେ ଯେ ସ୍କୁଲ ବାହାରେ ୫ ବର୍ଷରୁ ୧୦ ବର୍ଷ ବୟସର ପିଲାଙ୍କ ସଂଖ୍ୟା ମାତ୍ର ୩୬୯୨୪ ଓ ୧୧ ବର୍ଷରୁ ୧୩ ବର୍ଷ ବୟସର ପିଲାଙ୍କ ସଂଖ୍ୟା ମାତ୍ର ୧,୭୭,୨୫୯ - ମୋଟ ୨,୧୪.୧୮୩ ହାସ୍ୟାସ୍ପଦ କଥା । ଏଭଳି ଭୁଲ ତଥ୍ୟ ମଧ୍ୟ ଛପାଯାଇ ବଣ୍ଟା ଯାଇଛି ।

ସାର୍ବଜନୀନ ପ୍ରାଥମିକ ଶିକ୍ଷା ଓ ଶିଶୁ ଶ୍ରମିକ ସମସ୍ୟା ଏ ଦୁଇଟି ଏକତ୍ର ବିଚାର କରିବାର ଉଦ୍ଦେଶ୍ୟ ହେଲା ଶିଶୁ ଶ୍ରମିକ ସମସ୍ୟା ଯୋଗୁଁ ମୁଖ୍ୟତଃ ସାର୍ବଜନୀନ ପ୍ରାଥମିକ ଶିକ୍ଷା ପ୍ରକଳ୍ପ ସଫଳ ହୋଇପାରି ନାହିଁ । ଶିଶୁ ଶ୍ରମିକ ସମସ୍ୟା ଦାରିଦ୍ର୍ୟ ସହିତ ଜଡ଼ିତ । ଦେଶରେ ଦାରିଦ୍ର୍ୟ ଥିବା ପର୍ଯ୍ୟନ୍ତ ଶିଶୁ ଶ୍ରମିକ ରହିବେ । ଦାରିଦ୍ର୍ୟ ହଟାଇବା ସହଜ ନୁହେଁ କି ସମ୍ଭବ ନୁହେଁ । ଦାରିଦ୍ର୍ୟ ଏକ ଅର୍ଥନୈତିକ ସମସ୍ୟା । ଦେଶର ସଂପତ୍ତି ବଣ୍ଟନ ଏପରି ହୋଇଛି ଯେ ଲୋକମାନେ ତିନିଶ୍ରେଣୀରେ ବିଭକ୍ତ ହୋଇ ଯାଇଛନ୍ତି । ଧନୀକ , ମଧ୍ୟବିତ୍ତ ଓ ଦରିଦ୍ର । ଦେଶର ସଂପତ୍ତି ବଣ୍ଟନରେ ପରିବର୍ତ୍ତନ ସମ୍ଭବ ନୁହେଁ । ଦେଶର ସଂପତ୍ତିର ସମବଣ୍ଟନ କଥା ଚିନ୍ତା କରିବା ଏକ ବାଚାଳତା ବୋଲି ଅନେକ ଲୋକ ଭାବୁଛନ୍ତି । କାରଣ ରାଜନୈତିକ ପ୍ରକ୍ରିୟା ସହିତ ସଂପତ୍ତି ବଣ୍ଟନ ସଂପୃକ୍ତ । ଚୀନ ଭଳି ଏକ ରକ୍ତାକ୍ତ ବିପ୍ଳବ ମାଧମରେ ଅର୍ଥନୈତିକ ପ୍ରକ୍ରିୟାକୁ ଓଲଟପାଲଟ କରିବା ଭାରତରେ ସମ୍ଭବ ନୁହେଁ । ଧନୀକମାନଙ୍କ ସଂଖ୍ୟାର ବହୁଗୁଣ ଦରିଦ୍ରମାନଙ୍କ ସଂଖ୍ୟା ହେଲେ ମଧ ବିପ୍ଳବ କରିବାକୁ ତାଙ୍କର ସାହସ ହୋଇ ନାହିଁ କି ହେବ ନାହିଁ ।

ମୁଣ୍ଡପିଛା ଆୟ ବଢୁଥିବା କଥା ଅର୍ଥନୀତି ବିଶାରଦମାନେ କହୁଛନ୍ତି । ଏହା ଏକ ହାରାହାରି ହିସାବ । ଜଣକର ଆୟ ଦିନକୁ ୮୦ ଟଙ୍କା ଆଉ ଜଣଙ୍କର ୧୦,୦୦୦ ଟଙ୍କା । ତାଙ୍କର ହାରାହାରି ଦୈନନ୍ଦିନ ଆୟ ୫୦୪୦ ଟଙ୍କା । ଏ ହାରାହାରି ଆୟ ହିସାବରେ ୮୦ ଟଙ୍କା ମଜୁରୀ ପାଉଥିବା ଲୋକଙ୍କର ଦୁଃଖ ଲାଘବ ହୋଇପାରିବ ନାହିଁ । ତେଣୁ ମୁଣ୍ଡପିଛା ଆୟ ବଢ଼ିବା ଓ ଦାରିଦ୍ର୍ୟ କମିବା ପରସ୍ପର ସଂପୃକ୍ତ ନୁହେଁ ।

ଆଜିକୁ ୪୬ ବର୍ଷତଳେ ୧୯୬୨ ମସିହାରେ ମୋର ସବ୍‌ଇନିସ୍ପେକ୍ଟର ଚାକିରିର ଶେଷ ପର୍ଯ୍ୟାୟରେ ମୁଁ ଅଧ୍ୟାପକ ଚାକିରି ପାଇଁ ଓଡିଶା ଲୋକସେବା ଆୟୋଗରେ ସାକ୍ଷାତ୍‌କାର ଦେବାପାଇଁ ଯାଇଥିଲି । ସେମାନେ ମୋତେ ପଚାରିଲେ, "ସାର୍ବଜନୀନ ପ୍ରାଥମିକ ଶିକ୍ଷା ପାଇଁ ସବୁଠାରୁ ବଡ ବାଧକ କ'ଣ?" ମୁଁ ଉତ୍ତର ଦେଲି, "ଦାରିଦ୍ର୍ୟ" ଏ ଉତ୍ତରରେ ସେମାନେ ସନ୍ତୁଷ୍ଟ ହୋଇଥିଲେ । ଏବେ ବି ତାହା ସତ୍ୟ ହୋଇ ରହିଛି ।

ଶିଶୁ ଶ୍ରମିକ ସମସ୍ୟା ସମାଧାନ ତ ନୁହେଁ ବରଂ ଲାଘବ କରିବାକୁ ସରକାର ଜାତୀୟ ଶିଶୁ ଶ୍ରମିକ ପ୍ରକଳ୍ପ (National Child Labour Project) ଖୋଲିଛନ୍ତି ଓ ସେଥିରେ କିଛି ଶିଶୁ ପାଠ ପଢୁଛନ୍ତି । ସବୁ ଶିଶୁ ଶ୍ରମିକଙ୍କ ପାଇଁ ସରକାର ପ୍ରକଳ୍ପ କରି ପାରନ୍ତେ କିନ୍ତୁ ସମସ୍ତେ ଚିହ୍ନଟ ହୋଇ ପାରିଲେ ତ । ଉଦର ଜ୍ୱାଳାରେ ବ୍ୟତିବ୍ୟସ୍ତ ହୋଇ କିଏ କେତେବେଳେ କେଉଁଠି ନିଜ ପିଲାକୁ କାହାଘରେ କାମ କରିବାକୁ ପଠାଇ ଦେଉଛି, ସେ କଥା ଜାଣିବାର ଉପାୟ କ'ଣ ? ସେମାନେ ମଧ୍ୟ ନିର୍ଦ୍ଦିଷ୍ଟ ଅଞ୍ଚଳର ନୁହନ୍ତି । ସବୁଆଡେ ବିଞ୍ଚି ହୋଇ ରହିଛନ୍ତି ।

ଆଦିବାସୀ ଗ୍ରାମମାନଙ୍କରେ ପିଲାମାନେ ସକାଳୁ ଉଠି ବାପାମାଙ୍କ ସାଙ୍ଗରେ ଖାଦ୍ୟ ସଂଗ୍ରହ ପାଇଁ ବଣକୁ ଯାଆନ୍ତି । ସେ ପିଲାକୁ ସ୍କୁଲକୁ ପଠାଇଦେଲେ ୧୦/ ୧୫ ବର୍ଷ ପରେ ସେ ଭଲ ରୋଜଗାର କରିପାରେ । କିନ୍ତୁ ସେ ଦିନ ରାତିରେ ସେମାନେ ଖାଇବେ କ'ଣ ? ପିଲାଟି ଖାଦ୍ୟ ସଂଗ୍ରହରେ ବାପା ମାଙ୍କୁ ସାହାଯ୍ୟ କଲେ ସେମାନେ ସଂଗୃହୀତ ଖାଦ୍ୟ ଖାଇ ବଞ୍ଚିବେ । ପାଠ ଅପେକ୍ଷା ବଞ୍ଚି ରହିବାର ଗୁରୁତ୍ୱ ବେଶୀ । ସେ ପିଲାଙ୍କ ପାଇଁ ଏକ ପ୍ରକାର ସ୍କୁଲ ଦରକାର ଯାହା ଦିନ ୪ ଟା ବେଳେ ଆରମ୍ଭ ହୋଇ ରାତି ଆଠଟାରେ ସରିବ । ମେଘପାଳରେ ଆମେ ଏ ବ୍ୟବସ୍ଥା ଦେଖି ଆସିଛୁ । କିନ୍ତୁ ଏ ପ୍ରକାର ବ୍ୟବସ୍ଥା ଆମ ରାଜ୍ୟରେ ହୋଇ ପାରି ନାହିଁ । ସମସ୍ତେ କହୁଛନ୍ତି ସ୍ଥାନୀୟ ପରିସ୍ଥିତିକୁ ଆଖିରେ ରଖି ସ୍କୁଲ ସମୟ ନିର୍ଦ୍ଧାରଣ କରାଯିବ । କିନ୍ତୁ ପ୍ରକୃତରେ କିଛି କରାଯାଏ ନାହିଁ ।

ଆଦିବାସୀ ଅଞ୍ଚଳରେ ପ୍ରାଥମିକ ସ୍କୁଲ ସହିତ ହଷ୍ଟେଲ ତିଆରି କରି ପିଲାଙ୍କ ଖାଇବା ପିଇବା ରହିବାର ସୁବିଧା କରି ଦେଲେ ବି ପିଲାମାନେ ଆସିବେ କି

ନାହିଁ ସନ୍ଦେହ । ଆବାସିକ ପ୍ରାଥମିକ ସ୍କୁଲ କିଛି ସରକାର କରିଛନ୍ତି କିନ୍ତୁ ସବୁ ଆଦିବାସୀ ଅଞ୍ଚଳକୁ ଏ ସୁବିଧା ପହଞ୍ଚି ପାରି ନାହିଁ । ଅଞ୍ଚଳଭିତ୍ତିକ ପାଠ୍ୟକ୍ରମ କଥା ଭାଷଣରେ ବା ଆଲୋଚନାରେ କୁହାଯାଏ । କିନ୍ତୁ କାର୍ଯ୍ୟରେ ଦେଖାଯାଏ ନାହିଁ ।

ସାର୍ବଜନୀନ ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ ସହିତ ଦାରିଦ୍ର୍ୟକୁ ଯୋଡିବା କଷ୍ଟସାଧ -ଅସମ୍ଭବ ନୁହେଁ । ଯେଉଁ ଅଞ୍ଚଳରେ ଧନୀକ ଓ ମଧବିତ୍ତ ଶ୍ରେଣୀୟ ଲୋକ ଅଛନ୍ତି ସେଠାରେ ଗରିବ ବି ଅଛନ୍ତି । ସେମାନଙ୍କୁ ଚିହ୍ନଟ କରି ତାଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରିବା ସ୍ତରକୁ ଆମ ସରକାରୀ କାର୍ଯ୍ୟକ୍ରମ ଯାଇପାରି ନାହିଁ । ବର୍ତ୍ତମାନ ସାର୍ବଜନୀନ ପ୍ରାଥମିକ ଶିକ୍ଷାରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ ହେଉଛି ଦରିଦ୍ର ପିଲାମାନଙ୍କ ପାଇଁ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ହାତକୁ ନେବା । କିନ୍ତୁ ଏ କାର୍ଯ୍ୟ କରିବ କିଏ ? ସ୍କୁଲ ସବ୍‌ଇନିସ୍ପେକ୍ଟରମାନଙ୍କର ସଂଖ୍ୟା ବଢାଇ ସେମାନଙ୍କ କାର୍ଯ୍ୟ ପରିସର ଦୁଇ ବା ତିନୋଟି ଗ୍ରାମ ପଞ୍ଚାୟତରେ ସୀମିତ କରି ଦେଇ ସେମାନଙ୍କୁ କେବଳ ସେଇ କାମରେ ନିୟୋଜିତ କଲେ ହୁଅନ୍ତା । ସେମାନଙ୍କୁ ବ୍ଲକ୍ ଶାସନରୁ ମୁକ୍ତ କରି କେବଳ ଶିକ୍ଷା କାର୍ଯ୍ୟରେ ନିୟୋଜିତ କରାଯିବା ଦରକାର । ସେମାନେ ନିଜ ନିଜ ଅଞ୍ଚଳର ପିଲାମାନଙ୍କର ନାମ ଲେଖା, ପାଠ ତ୍ୟାଗ, ଦୈନିକ ଉପସ୍ଥାନ , ଶିକ୍ଷାର ମାନ, ଶିକ୍ଷକମାନଙ୍କ କାମ ବିଷୟରେ ସେମାନେ ପ୍ରତିମାସ ରିପୋର୍ଟ ଦେବେ । ସେପରି କଲେ ଗ୍ରାମାଞ୍ଚଳ ପାଇଁ ୨୦୭୮ ଓ ସହରାଞ୍ଚଳ ପାଇଁ (ପ୍ରତି ୩ଟି ୱାର୍ଡ ପାଇଁ ଜଣେ ସବ୍‌ଇନିସ୍ପେକ୍ଟର) ୪୦୦ - ମୋଟ ୨୪୭୮ - ଜଣ ସବ୍‌ଇନିସ୍ପେକ୍ଟର ଦରକାର । ସେଥିରୁ ବର୍ତ୍ତମାନ ଅଛନ୍ତି ୯୮୫ । ଆଉ ୧୪୯୩ ଜଣ ସବ୍‌ଇନିସ୍ପେକ୍ଟର ନିଯୁକ୍ତ ହେବା ଦରକାର । ବହୁକଷ୍ଟରେ ୧୮ ବର୍ଷ ତଳେ ଡକ୍ଟର ନରେନ୍ଦ୍ର ପ୍ରସାଦ ଦାସଙ୍କ ଉଦ୍ୟମରେ ମୁଁ ନିର୍ଦ୍ଦେଶକ ଥିବାବେଳେ ୩୭୭ ନୂଆ ସବ୍‌ଇନିସ୍ପେକ୍ଟର ପଦ ସୃଷ୍ଟି କରା ଯାଇଥିଲା । ଏବେ ୧୪୯୩ ପଦ ସୃଷ୍ଟି ପାଇଁ ସମ୍ବଳ ଦରକାର । ଆବଶ୍ୟକ ସମ୍ବଳ ଯୋଗାଇବା କଷ୍ଟକର ବ୍ୟାପାର ।

ଶିକ୍ଷାକର୍ମୀ ନିଯୁକ୍ତି ବେଳେ ୧୯୯୦-୧୯୯୧ରେ ଶିକ୍ଷା ବିଭାଗରୁ ଅନ୍ୟ ବିଭାଗକୁ ଟଙ୍କା ଚାଲିଗଲା କିନ୍ତୁ ଶିକ୍ଷାକର୍ମୀଙ୍କୁ ନିୟମିତ ଶିକ୍ଷକ କଲାବେଳକୁ ଟଙ୍କା ଫେରିବା କଷ୍ଟକର ହେଲା । ଦ୍ୱିତୀୟ ଅସୁବିଧା ସବ୍‌ଇନି୍ସ୍ପେକ୍ଟରମାନଙ୍କୁ

ବ୍ଲକ୍ ଶାସନାଧୀନ କରିବାକୁ କିଛି କଷ୍ଟ ହେଲାନାହିଁ । କିନ୍ତୁ ସେମାନଙ୍କୁ ସେଠାରୁ ପ୍ରତ୍ୟାହାର କରିବା ପ୍ରଶ୍ନ ଉଠିଲା ବେଳକୁ ପ୍ରବଳ ଆପତ୍ତି । ଶିକ୍ଷା ବିଭାଗରୁ ଦରମା ପାଇ ଗୋଷ୍ଠୀ ଉନ୍ନୟନ ବିଭାଗରେ କାମ କରୁଥିବା ୯୮୫ ସବ୍‌ଇନିସ୍ପେକ୍ଟରଙ୍କୁ ସେମାନେ ଛାଡିବାକୁ ରାଜି ହେବା ସମ୍ଭବ ନୁହେଁ ।

ଯଦି ପ୍ରତି ୩ ଗୋଟି ଗ୍ରାମପଞ୍ଚାୟତ ପାଇଁ ଜଣେ ଲେଖାଁଏ ସବ୍‌ଇନିସ୍ପେକ୍ଟର ନିଯୁକ୍ତ କରାଯାନ୍ତା ସେମାନେ ଦରିଦ୍ର ପରିବାର ଚିହ୍ନଟ କରି ଶିଶୁ ଶ୍ରମିକ ମାନଙ୍କ ପାଇଁ ସ୍ୱତନ୍ତ Package କରି ତାଙ୍କ ଶିକ୍ଷାର ବ୍ୟବସ୍ଥା କରନ୍ତେ । ସବ୍‌ଇନିସ୍ପେକ୍ଟରମାନଙ୍କ କାମକୁ Monitor କରିବା ପାଇଁ ଆଉ ଏକ Squad ଯାହାଙ୍କ ସଂଖ୍ୟା ଅନ୍ୟୂନ ୨୦୦ ହେବା ଦରକାର - ପ୍ରତି ୧୦/୧୨ ଜଣ ସବ୍‌ଇନିସ୍ପେକ୍ଟରଙ୍କ କାମ ଦେଖିବା ପାଇଁ ଜଣେ Monitoring Officer ଦରକାର । ଏହି ଭାବରେ କାମ ହେଲେ ଶିଶୁ ଶ୍ରମିକ ମାନଙ୍କୁ ସ୍କୁଲରେ ପାଠ ପଢାଇବା ସମ୍ଭବ ହେବ । ପ୍ରଚଳିତ ବ୍ୟବସ୍ଥାରେ ଶିଶୁ ଶ୍ରମିକ ସମସ୍ୟାକୁ ପ୍ରତିହତ କରିବା ସମ୍ଭବ ନୁହେଁ ।

ସାର୍ବଜନୀନ ପ୍ରାଥମିକ ଶିକ୍ଷା ପ୍ରକଳ୍ପ ସଫଳ ହେବା ପାଇଁ ଦାରିଦ୍ର୍ୟ ପ୍ରପୀଡିତ ସମସ୍ତ ପରିବାରକୁ ଚିହ୍ନଟ କରି ତାଙ୍କ ପିଲାଙ୍କ ପାଇଁ ଶିକ୍ଷା ବ୍ୟବସ୍ଥା ଓ ପରିବାର ଭରଣ ପୋଷଣ ବ୍ୟବସ୍ଥା କରିବାକୁ ହେବ ।



## ଚତୁର୍ଦ୍ଦଶ ଅଧ୍ୟାୟ

# ଓଡିଶାର ମହାବାତ୍ୟା - ୧୯୯୯ ପ୍ରକୃତିର କୋପ

ଓଡିଶାରେ ୧୯୯୯ ମସିହା ଅକ୍ଟୋବର ମାସ ୨୯ ତାରିଖରେ ମହାବାତ୍ୟା ଏକ ଐତିହାସିକ ଦୁର୍ଘଟଣା । ଏହି ମହାବାତ୍ୟାରେ ଘଣ୍ଟାକୁ ୨୪୦ କିଲୋମିଟରରୁ ୨୮୦ କିଲୋମିଟର ବେଗରେ ପବନ ବହିଲା । ସମୁଦ୍ର ଲହରୀ କୂଳ ଲଂଘନ କରି ଜନପଦ ଆଡକୁ ମାଡି ଆସିଲା । ଏଥିରେ ଅନ୍ୟୂନ ଆଠ ହଜାର ଲୋକଙ୍କର ପ୍ରାଣହାନି ହେଲା । ଓଡିଶାର ଶିକ୍ଷାନୁଷ୍ଠାନ, ସ୍ୱାସ୍ଥ୍ୟକେନ୍ଦ୍ର , କୃଷି କ୍ଷେତ୍ର ଓ ସର୍ବୋପରି ଓଡିଶାର ଅର୍ଥନୈତିକ ମେରୁଦଣ୍ଡ ଭାଙ୍ଗି ପଡିଲା । ଓଡିଶାର ଉପକୂଳ ଜଗତ୍‌ସିଂପୁର ଜିଲ୍ଲାର ଏରସମା, କୁଜଙ୍ଗ ଓ ବାଲିକୁଦା ବ୍ଲକ୍ ମହାବାତ୍ୟାର କେନ୍ଦ୍ରସ୍ଥଳ ହୋଇଥିବାରୁ ଏଠାରେ ସବୁଠାରୁ ଅଧିକ କ୍ଷତି ହେଲା । ସମୁଦ୍ର ଉପକୂଳର ସମସ୍ତ ଗ୍ରାମ ଓ ସହରର ଲୋକମାନଙ୍କର ଘର ଭାଙ୍ଗିଗଲା । ମୁଣ୍ଡ ଗୁଞ୍ଜିବାକୁ ଲୋକମାନେ ଜାଗା ପାଇଲେ ନାହିଁ । ସମୁଦ୍ରର ଲୁଣା ପାଣି ମାଡି ଯାଇ ସମସ୍ତ ଫସଲ ନଷ୍ଟ ହୋଇଗଲା । ଖାଇବାକୁ ନ ପାଇ ଲୋକେ ହନ୍ତସନ୍ତ ହେଲେ । ସମୁଦ୍ର ଉପକୂଳରୁ ବହୁ ଦୂର ଦୂରାନ୍ତ ସ୍ଥାନମାନଙ୍କରେ ମଧ୍ୟ ପ୍ରଳୟର ତାଣ୍ଡବ ଲୀଳା ସଂଘଟିତ ହେଲା ।  ଏପରିକି ରାଜଧାନୀ ଭୁବନେଶ୍ୱର ସହରର ସମସ୍ତ ଗଛ ପତ୍ର ଉପୁଡି ପଡିଲା । ବିଜୁଳି ଖୁଣ୍ଟ ସବୁ ବଙ୍କା ହୋଇଗଲା । ଭୁବନେଶ୍ୱରରେ ଆଠ ଦିନ ପର୍ଯ୍ୟନ୍ତ ବିଜୁଳି ଆଲୁଅ ଆସିଲା ନାହିଁ। ସମୁଦ୍ର ଉପକୂଳରେ ମାସ ମାସ ଧରି ବିଜୁଳି ସେବା ମିଳିଲା ନାହିଁ। ମହାବାତ୍ୟାର ବିପଦ ସମୟରେ ଲୋକଙ୍କୁ ଆଶ୍ରୟ ଦେବା ଏକ ବିରାଟ ସମସ୍ୟା ହେଲା । ଅସ୍ଥାୟୀ ଭାବରେ ଆଶ୍ରୟ ନେବାପାଇଁ ପଲିଥିନ୍ ବି ଅଭାବ ହେଲା । ଅଧିକ ଦାମରେ କିଣିବାକୁ ସରକାର ପ୍ରସ୍ତୁତ ଥିଲେ ବି ତାହା ଦୁଷ୍ପ୍ରାପ୍ୟ ହେଲା । ଆଲୁଅ ଟିକିଏ ପାଇବା ପାଇଁ ଲୋକେ କିରାସିନି ଟିକିଏ ବି ପାଇଲେ ନାହିଁ । ସରକାରୀ

କଲ ଲୋକଙ୍କୁ ସାହାଯ୍ୟ ଯୋଗାଇ ଦେବାରେ ବିଫଳ ହେଲା । ସ୍ୱେଚ୍ଛାସେବୀ ସଂଗଠନମାନେ ସାହାଯ୍ୟ ଦେବାପାଇଁ ଆଗେଇ ଆସିଲେ । ଗୋରୁ,ଗାଈ, ମଣିଷମାନଙ୍କର ଶବ ପଚି ଚତୁର୍ଦ୍ଦିଗ ପୂତିଗନ୍ଧମୟ ହୋଇଗଲା । ସରକାରୀ ସ୍ୱାସ୍ଥ୍ୟସେବା ଅଚଳ ହୋଇଗଲା । ସ୍ୱେଚ୍ଛାସେବୀ ମାନେ ଶବ ସତ୍କାର କରିବାରେ ଲାଗି ନ ଥିଲେ ସେ ପରିବେଶରେ ଲୋକେ  ବଞ୍ଚିବା ସମ୍ଭବପର ହୋଇ ନ ଥାନ୍ତା ।

ଯେଉଁମାନେ ଗୃହଶୂନ୍ୟ ହୋଇଗଲେ ସେମାନଙ୍କୁ ଇନ୍ଦିରା ଆବାସ ପାଇଁ ଅର୍ଥ ଦିଆଗଲା । କିନ୍ତୁ ଘର ତିଆରି କରିବାକୁ ମିସ୍ତ୍ରୀ କି ଶ୍ରମିକ ମିଳିଲେ ନାହିଁ । ମହାବାତ୍ୟାରେ କ୍ଷତିଗ୍ରସ୍ତ ଲୋକଙ୍କୁ ଇନ୍ଦିରା ଆବାସ ବଣ୍ଟନ କାର୍ଯ୍ୟ ନଅ ବର୍ଷ ପରେ ମଧ୍ୟ ଶେଷ ହୋଇନାହିଁ ।

ଓଡିଶାର ଏହି ଦାରୁଣ ବିପତ୍ତି ସମୟରେ ଭାରତର ଅନ୍ୟ ରାଜ୍ୟମାନେ ସାହାଯ୍ୟ କରିବାକୁ ଚାଲି ଆସିଲେ ।  ଯେଉଁ ସର୍ବ ସାଧାରଣ ଅନୁଷ୍ଠାନ ସବୁ କ୍ଷତିଗ୍ରସ୍ତ ହୋଇଥିଲେ ତା'ର ପୁର୍ନଗଠନ କରିବାରେ ସେମାନେ ଲାଗିଗଲେ । ଆର୍ଥିକ ସାହାଯ୍ୟର ସୁଅ ଛୁଟିଲା । କିନ୍ତୁ ସାହାଯ୍ୟର ବିନିଯୋଗ ପାଇଁ ଉପଯୁକ୍ତ କ୍ଷେତ୍ରସୃଷ୍ଟି ହୋଇ ପାରିଲା ନାହିଁ ।

ପୃଥିବୀର ଅନ୍ୟ ଦେଶ ସବୁ ଓଡିଶାର ବିପତ୍ତି ସମୟରେ ସାହାଯ୍ୟର ହାତ ବଢାଇ ଦେଲେ । ଜର୍ମାନୀ, ଇଂଲଣ୍ଡ, ଆମେରିକା, ଋଷିଆ ପ୍ରଭୃତି ଦେଶ କମ୍ବଳ, ପଶମ କୋଟ୍, ରୋଷେଇ ଉପକରଣ ଓ ଅନ୍ୟାନ୍ୟ ଆସବାବ ପତ୍ର ପଠାଇଲେ । ଯାହା ସବୁ ରିଲିଫ୍ ଆସିଲା ତାହା ଠିକ୍ ଭାବରେ କ୍ଷତିଗ୍ରସ୍ତ ଲୋକଙ୍କ ପାଖରେ ପହଞ୍ଚି ପାରିଲା ନାହିଁ । କାରଣ କିଛି ସାମଗ୍ରୀ ବାଟମାରଣା ହୋଇଗଲା । ସରକାରୀ ବଣ୍ଟନ ବ୍ୟବସ୍ଥାରେ ସୁଷମ ବଣ୍ଟନ ହୋଇ ପାରିଲା ନାହିଁ । ବେଳେବେଳେ ଟ୍ରକ୍‌ରେ  ଜିନିଷ ନେଇ ଗଲାବେଳେ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପୂର୍ବରୁ ଲୋକେ ବାଟରୁ ଲୁଟ୍ କରିନେଲେ । ତଥାପି ଅନ୍ୟ ଦେଶମାନଙ୍କର ସାହାଯ୍ୟ ବହୁ ଭାବରେ ଲୋକଙ୍କର ଉପକାର କଲା ।

ବାତ୍ୟା ସମୟରେ ପରିବେଶ ପ୍ରଦୂଷଣ ଯୋଗୁଁ ବହୁ ବ୍ୟକ୍ତି ରୋଗାକ୍ରାନ୍ତ ହେବାର ଆଶଙ୍କା ଥାଏ । ତେଣୁ ଗୋରୁ, ଗାଈ, ଛେଳି, ମେଣ୍ଢା, କୁକୁର ପ୍ରଭୃତି ଓ ମଣିଷମାନଙ୍କର ଶବ ସଂସ୍କାର ସହିତ ପ୍ରତିଷେଧକ ଔଷଧ ବ୍ୟବହାର କରିବା

ଖୁବ୍ ଗୁରୁତ୍ୱପୂର୍ଣ୍ଣ । ବାହାର ଦେଶରୁ ପ୍ରଚୁର ପରିମାଣରେ ଔଷଧ, ସଂକ୍ରମଣ ପ୍ରତିଷେଧକ ଓ ଶୋଧକ (Disinfectant) ଆସିବାରୁ ରକ୍ଷା ହୋଇଗଲା । ନଚେତ୍ ବାତ୍ୟା ପରେ ବହୁ ପ୍ରାଣହାନି ଆଶଙ୍କା ଥିଲା ।

ଓଡିଶା ଏକ ବାତ୍ୟା, ବନ୍ୟା ପ୍ରବଣ ରାଜ୍ୟ ହୋଇଥିଲେ ବି ଏଠାରେ ସରକାରଙ୍କର ଦୂରଦୃଷ୍ଟି ଅଭାବରୁ ବାତ୍ୟା ବନ୍ୟା ଆଶ୍ରୟସ୍ଥଳୀ ନିର୍ମିତ ହୋଇ ନ ଥିଲା । ତେଣୁ ବାତ୍ୟା ପରେ ଲୋକମାନେ ବର୍ଷା କାକରରେ ଶୀତରେ ରାସ୍ତା କଡରେ ପଡି ରହିଲେ । ସାଧାରଣ ଶିକ୍ଷାନୁଷ୍ଠାନରେ ଲୋକ ଭର୍ତ୍ତି ହୋଇ ଯିବାରୁ ଅନୁଷ୍ଠାନଗୁଡିକ ଅଚଳ ହୋଇ ପଡିଲା । ତା ସହିତ ପଲିଥିନ୍‌ର ଅଭାବ ଲୋକଙ୍କ ଦୁର୍ଦ୍ଦଶାକୁ ବହୁଗୁଣିତ କରିଦେଲା ।

ଓଡିଶାର ଏ ପ୍ରକାର ଦୁର୍ଦ୍ଦଶାରେ ରାଜ୍ୟର ତଥା ରାଜ୍ୟ ବାହାରର ବହୁ ଶିଳ୍ପାନୁଷ୍ଠାନ ସାହାଯ୍ୟ କରିବା ପାଇଁ ଆଗେଇ ଆସିଲେ । ସେମାନଙ୍କ ସାହାଯ୍ୟ ରାଜ୍ୟର ଦୁର୍ଦ୍ଦଶା ମୋଚନରେ କିଛି ସାହାଯ୍ୟ କଲା । ଯେଉଁ ଶିଳ୍ପପତିମାନେ ଲୋକଙ୍କ ପ୍ରତି ସହାନୁଭୂତି ପ୍ରକାଶ କଲେ ସେମାନଙ୍କ ବଦାନ୍ୟତା ଉଚ୍ଚ ପ୍ରଶଂସିତ ହେଲା ।

ଯେତେ ସବୁ ସାହାଯ୍ୟ ରାଜ୍ୟ ବାହାରୁ ଆସିଲା ତାକୁ ଗ୍ରହଣ କରି ବଣ୍ଟନ କରିବା ଦାୟିତ୍ୱ (OSDMA) (Orissa Statė Disaster Mitigation Authoirty) ଓଡିଶା ରାଜ୍ୟ ବିପର୍ଯ୍ୟୟ ପ୍ରଶମନ ପ୍ରାଧିକରଣ ଉପରେ ରହିଲା । ଯେପରି ଭାବରେ ବଣ୍ଟନ ପ୍ରକ୍ରିୟା ତ୍ୱରାନ୍ୱିତ ହେବାର କଥା ତାହା ନ ହେବାରୁ ଅନେକ ଜିନିଷ ନଷ୍ଟ ହେବା ସହିତ ଲୋକଙ୍କର ଦୁଃଖ ପ୍ରଶମନ ହୋଇ ପାରିଲା ନାହିଁ । ଜରୁରୀ କାଳୀନ ପରିସ୍ଥିତିରେ ଯେପରି ଦକ୍ଷତାର ସହିତ କାର୍ଯ୍ୟ କରିବାର କଥା OSDMA ତାହା କରି ପାରିଲା ନାହିଁ ।

କେତେକ ଅସାଧୁ କର୍ମଚାରୀଙ୍କର ଅବହେଳା ଓ ଜିନିଷପତ୍ର ଅପହରଣ କରିବାର ଉଦ୍ୟମ ଯୋଗୁଁ ଲୋକେ ସାହାଯ୍ୟରୁ ବଞ୍ଚିତ ହେଲେ । କର୍ମଚାରୀମାନଙ୍କର ସହାନୁଭୂତି ଅଭାବ ଯୋଗୁଁ ଲୋକମାନେ ଯଥା ସମୟରେ ରିଲିଫ୍ ପାଇ ପାରିଲେ ନାହିଁ । ବହୁ ସଂଖ୍ୟକ ଲୋକ ଗୃହ ଶୂନ୍ୟ ହୋଇ ମଧ୍ୟ ସରକାରୀ ତଥା ବେସରକାରୀ ସାହାଯ୍ୟରୁ ବଞ୍ଚିତ ହେଲେ । ବାତ୍ୟାପରେ

ଆନ୍ଧ୍ରପ୍ରଦେଶ ସରକାରଙ୍କର ସାହାଯ୍ୟ ଲୋକଙ୍କ ଦୁର୍ଦ୍ଦଶା ମୋଚନରେ ସାହାଯ୍ୟ କଲା । ଅଥଚ ଆମ ନିଜ ରାଜ୍ୟ ଲୋକେ ନିଜ ସ୍ୱାର୍ଥ ପାଇଁ ଲୋକଙ୍କର ଦୁର୍ଦ୍ଦଶାର କାରଣ ହେଲେ ।

## ୧୪.୨ ନାଲ୍‌କୋ ପ୍ରକଳ୍ପ

ଓଡିଶାରେ ମହାବାତ୍ୟାର ବିପଦ ସମୟରେ ସାହାଯ୍ୟ କରିବାକୁ National Aluminium Limited Company (NALCO) ଏକ ଯୋଜନା ପ୍ରସ୍ତୁତ କରିଥିଲେ । ବାତ୍ୟା  ବିଧ୍ୱସ୍ତ ଅଞ୍ଚଳରେ ଯେଉଁଠାରେ ଶିକ୍ଷାନୁଷ୍ଠାନ ଗୁଡିକ ଧ୍ୱଂସ ସ୍ତୂପରେ ପରିଣତ ହୋଇଥିଲା ସେଠାରେ ଅନୁଷ୍ଠାନଗୁଡିକ ପୁନଃ ନିର୍ମାଣ କରିବା ସହିତ ବାତ୍ୟା ଆଶ୍ରୟ ସ୍ଥଳୀ ମଧ୍ୟ ନିର୍ମାଣ କଲେ । ତଳ ମହଲା ବାତ୍ୟା ଆଶ୍ରୟସ୍ଥଳୀ ଓ ଉପର ମହଲାରେ ଦୁଇଟି ଶ୍ରେଣୀ କୋଠରୀ ସହିତ ଗୋଟିଏ ଛୋଟ ଅଫିସ ଘର । କେତେଗୁଡିଏ ତଳେଇ ଖୁଣ୍ଟ ଉପରେ ଘରଟି ତିଆରି କରାଯାଇଛି । କଟକ ଜିଲ୍ଲାର ନିଆଳି, କଣ୍ଟାପଡା, ବାରଙ୍ଗ, ଟାଙ୍ଗୀ, ଚୌଦ୍ୱାର ଓ କଟକ ସଦର - ଏହି ପାଞ୍ଚଗୋଟି ବ୍ଲକ୍‌ରେ ୧୪୪ ଗୋଟି ସ୍କୁଲ ଗୃହ ସହିତ ଆଶ୍ରୟସ୍ଥଳୀ ନିର୍ମିତ ହୋଇଛି । ଅବଶ୍ୟ ଏ ଘର ପାଇଁ ସଂପୃକ୍ତ ସ୍କୁଲଗୁଡିକର ସ୍ଥାନାଭାବ ସମସ୍ୟା ଦୂର ହୋଇଗଲା ନାହିଁ କିନ୍ତୁ ସମସ୍ୟା ଦୂର କରିବା ପାଇଁ ତଳେ ଥିବା ଆଶ୍ରୟ ସ୍ଥଳୀଗୁଡିକ ମେଢିଆ କରି ସ୍କୁଲ ଘର ଭାବରେ ବ୍ୟବହାର କରା  ଯାଉଛି ।

ନାଲକୋର ମୁଖ୍ୟ ପରିଚାଳନା ନିର୍ଦ୍ଦେଶକ (Chief Managing Director) ମିଷ୍ଟର ତ୍ରିପାଠୀ ଚାହିଁଲେ ସ୍କୁଲଗୁଡିକର ଅନ୍ୟାନ୍ୟ ଅଭାବ ଅସୁବିଧା ଦୂର କରିବାକୁ ଏକ ଯୋଜନା  ପ୍ରସ୍ତୁତ କରିବେ । ସେଥିପାଇଁ ସ୍କୁଲମାନଙ୍କର ଆବଶ୍ୟକତା ନିର୍ଦ୍ଧାରଣ କରିବାକୁ ଏକ ସର୍ଭେ କରାଯିବ । କେତେକ ଶିକ୍ଷାବିତ୍‌ଙ୍କ ସହ ଆଲୋଚନା କରିବାକୁ ସେ ମନସ୍ଥ କଲେ । ମୋତେ ଖବର ଦେବାରୁ ମୁଁ ଯାଇଥିଲି । ଆଲୋଚନା ପ୍ରସଙ୍ଗରେ ସେ ଜାଣିଲେ ଯେ ଓଡିଶାରେ ସର୍ବଭାରତୀୟ ଶିକ୍ଷା ସର୍ଭେ ମୁଁ ତିନିଥର କରିଛି । ତେଣୁ ମୋତେ ଏକ ଛୋଟ ସର୍ଭେ କରିବାକୁ ଅନୁରୋଧ କଲେ । ସର୍ଭେ କରିବାକୁ କିଛି ଅସୁବିଧା ନ ଥିଲା, କିନ୍ତୁ ଯେଉଁ ସମୟରେ ସେ ସର୍ଭେ କରିବାକୁ ଚାହିଁଲେ ତାହା ବର୍ଷା ଋତୁ । ଆମର ଗୋଟିଏ ଛୋଟ ଅନୁଷ୍ଠାନ ଅଛି । ତା ନାଁ SEEDA (Socio-Economic Educational

Development Association) ତା ମାଧ୍ୟମରେ ଏକ ପ୍ରସ୍ତାବ ଦେଲୁ ଓ ନାଲକୋ ତାହା ଅନୁମୋଦନ କରି ଦେଲେ । ଆମେ କେତେକ ଯୁବକଙ୍କୁ ସର୍ଭେ ବିଷୟରେ ତାଲିମ୍ ଦେଇ ସ୍କୁଲମାନଙ୍କୁ ପଠାଇ ଦେଲୁ । ଆମେ ମଧ୍ୟ (ମୁଁ ଓ କାଳିଦତ୍ତ ଦାସ) ୨୫/୩୦ଟି ସ୍କୁଲକୁ ଯାଇ ଅବସ୍ଥା ଅନୁଧ୍ୟାନ କଲୁ ।

ଆମେ ଯେତିକି ସ୍କୁଲ ଦେଖିଲୁ ସେଥିରୁ କେତେକ ଘର ତିଆରିରେ ନିମ୍ନମାନର ଇଟା ଓ ସିମେଣ୍ଟ ବ୍ୟବହାର ହୋଇଥିବାରୁ ତାହା ଭାଙ୍ଗିବାକୁ ଆରମ୍ଭ କରିଥିଲା । ଏ ବିଷୟ ଆମେ ନାଲକୋ କୁ ଜଣାଇବାରୁ ସେମାନେ ଇଞ୍ଜିନିୟର ପଠାଇ ସେ ଘର ସବୁ ଭାଙ୍ଗି ଆଉ ଥରେ ତିଆରି କରିବାର ବ୍ୟବସ୍ଥା କଲେ ।

ଆଉ କେତେକ ସ୍କୁଲରେ ନାଲ୍‌କୋ ଘର ତିଆରି କରିଥିଲେ ମଧ୍ୟ ପିଲାଙ୍କ ବସିବା ପାଇଁ ସ୍ଥାନାଭାବ ରହିଥିଲା । ସେମାନେ ତଳ ମହଲାର ଚଟାଣ ସିମେଣ୍ଟ କରି ତାକୁ ସ୍କୁଲ ଘର ଭାବେ ବ୍ୟବହାର କଲେ ମଧ୍ୟ ଆହୁରି ଅନେକ ପିଲାଙ୍କ ପାଇଁ ସ୍ଥାନାଭାବ ରହିଥିଲା । ଆଉ କେତେକ ସ୍କୁଲରେ ନାଲକୋର ନୂଆ ଘର ଓ ପୂର୍ବର ପୁରୁଣା ଘର ମିଶି ପିଲାମାନଙ୍କ ପାଇଁ ସୁବିଧା କରାଯାଇ ପାରିଲା । ତେବେ ସ୍ଥାନାଭାବ ଦୂର କରିବା ପାଇଁ ଅଧିକ କିଛି କରା ଯାଇ ପାରିଲା ନାହିଁ ।

ଶିକ୍ଷକ ଅଭାବ ଏକ ସାଧାରଣ ସମସ୍ୟା । ପିଲାଙ୍କ ତୁଳନାରେ ଶିକ୍ଷକ ସଂଖ୍ୟା କମ୍ । ଯେଉଁ ସ୍କୁଲରେ ଦୁଇଜଣ ଶିକ୍ଷକ, ଜଣେ ଛୁଟିରେ ଗଲେ ବା ଅନୁପସ୍ଥିତ ରହିଲେ ଏକାଧିକ କୋଠରୀରେ ପରିଚାଳିତ ଶ୍ରେଣୀ କାର୍ଯ୍ୟରେ ବାଧା ସୃଷ୍ଟି ହେଉଥିଲା । ଶିକ୍ଷକ ନିଯୁକ୍ତି ରାଜ୍ୟ ସରକାରଙ୍କ କାମ । ଛାତ୍ରଛାତ୍ରୀ ସଂଖ୍ୟା ଅନୁପାତରେ ଶିକ୍ଷକ ଯୋଗାଇବା ସରକାରଙ୍କ ପକ୍ଷରେ ସମ୍ଭବ ହେଉ ନ ଥିବାରୁ ଏ ସମସ୍ୟା ।

ଆମେ ଯେତେ ଗୋଟି ବିଦ୍ୟାଳୟ ଦେଖିଲୁ ସଂପୃକ୍ତ ଗ୍ରାମବାସୀମାନଙ୍କ ସହିତ ଆଲୋଚନା କଲୁ । ଗ୍ରାମବାସୀମାନେ ଆଗ୍ରହର ସହିତ ଆମ ସହିତ ଆଲୋଚନା କଲେ ଓ ସ୍କୁଲର ଅଭାବ ଅସୁବିଧା ଆଦି ଉପସ୍ଥାପନ କଲେ । ସେମାନଙ୍କ ଆଲୋଚନାରୁ ଜଣାଗଲା ସେମାନେ ନିଜ ଗାଁ ସ୍କୁଲ ପରିଚାଳନାରେ କେତେ ଆଗ୍ରହୀ । ଗ୍ରାମବାସୀମାନେ ସ୍କୁଲ ପରିଚାଳନାରେ ଆଗ୍ରହୀ ନୁହଁନ୍ତି ବୋଲି ଯେଉଁ ସରକାରୀ ଦୁର୍ନାମ ରହିଛି ତାହା ମିଥ୍ୟା ।

ପ୍ରାଥମିକ ସ୍କୁଲମାନଙ୍କର ଅଜସ୍ର ଅଭାବ ରହିଛି । ମୁଖ୍ୟ ଅଭାବ ହେଉଛି ପିଲାମାନଙ୍କ ପାଇଁ ବେଞ୍ଚ ଡେସ୍କ କଥା ଛାଡ ନିମ୍ନ ଡେସ୍କ ଖଣ୍ଡେ ଖଣ୍ଡେ ବି ନାହିଁ । ବସିବା ପାଇଁ ଆସନ ନାହିଁ । ପିଲାଙ୍କ ଉପଯୋଗୀ ଲାଇବ୍ରେରୀ ନାହିଁ । ଶିକ୍ଷଣ ଉପକରଣ ନାହିଁ । ସ୍କୁଲର ରେକର୍ଡ ପତ୍ର ରଖିବାକୁ ଆଲମିରା ନାହିଁ କି ସ୍କୁଲର ଅଫିସ ଘର ନାହିଁ । ନାଲକୋ ଯେଉଁ ଘର ତିଆରି କରିଛି ସେଥିରେ ଖଣ୍ଡେ ଛୋଟ କୋଠରୀ ଅଫିସ ପାଇଁ ରହିଛି । କିନ୍ତୁ ତାହା ଅତ୍ୟନ୍ତ ଅପ୍ରଶସ୍ତ । ଏ ସମସ୍ତ ଅଭାବ ଅସୁବିଧା ଭିତରେ ଗୁଣାତ୍ମକ ଶିକ୍ଷା ସମ୍ଭବ ହେବ କିପରି ? ବର୍ତ୍ତମାନ ସରକାରୀ ସ୍କୁଲଗୁଡିକରେ ପିଲା ସଂଖ୍ୟା କମି ଯିବାର କାରଣ ଭଲ ପାଠ ପଢାର ଅଭାବ । ଯେଉଁମାନେ ଅଧିକ ଅର୍ଥ ଖର୍ଚ୍ଚକରି ପାରିବେ ତାଙ୍କ ପିଲାମାନେ ଇଂରାଜି ମାଧମ ସ୍କୁଲ  କିମ୍ବା ଘରୋଇ ଭାବରେ ପରିଚାଳିତ ପ୍ରାଥମିକ ସ୍କୁଲ କିମ୍ବା ସରସ୍ୱତୀ ବିଦ୍ୟାମନ୍ଦିରରେ ନାମ ଲେଖାଉଛନ୍ତି । କେବଳ ଗରିବ ଲୋକଙ୍କର ପିଲାମାନେ ସରକାରୀ ପରିଚାଳିତ ସ୍କୁଲରେ ପଢୁଛନ୍ତି । ଏବେ ତ ସରକାରୀ ଅବହେଳାର ସୁଯୋଗ ନେଇ ଅଧିକାଂଶ ଗାଁରେ ସରସ୍ୱତୀ  ଶିଶୁ ମନ୍ଦିର ଖୋଲି ଗଲାଣି ।

ଖୁସିର କଥା ସବୁ ବାତ୍ୟା ପ୍ରପୀଡିତ ସ୍କୁଲକୁ ଟେବୁଲ, ଚଉକି, କଳାପଟା ଓ ଆଲମିରା ବା ଟ୍ରଙ୍କ ଯୋଗାଇ ଦିଆ ଯାଇଛି । ବାକି ଯାହା ଅଭାବ ସ୍କୁଲ ମାନେ ଦର୍ଶାଇଲେ ତାକୁ ରିପୋର୍ଟରେ ଦର୍ଶାଇଲୁ । ଆମେ ଯେଉଁ ରିପୋର୍ଟ ଦେଲୁ ତାହା ନାଲକୋର ଏକ କମିଟି ଆମ ଉପସ୍ଥିତିରେ ଆଲୋଚନା କରି ସନ୍ତୋଷ ପ୍ରକାଶ କଲେ ।

ଆମେ ନାଲକୋ ପ୍ରକଳ୍ପ ଆରମ୍ଭ କଲୁ ୦୧/୦୭/୨୦୦୨ ତାରିଖରେ ଓ ଶେଷ କଲୁ ୩୦/୧୧/୨୦୦୨ ତାରିଖରେ । ୨୦୦୨ ଡିସେମ୍ବର ମାସରେ ଆମେ ରିପୋର୍ଟ ଦେଲା ବେଳକୁ ମିଷ୍ଟର ତ୍ରିପାଠୀ ବଦଳି ହୋଇ ଭାରତ ସରକାରଙ୍କର ଶିକ୍ଷା ସଚିବ ଭାବରେ ଯୋଗ ଦେଇ ସାରିଥିଲେ । ତାଙ୍କ ପାଖକୁ ଆମ ରିପୋର୍ଟର ଏକ ନକଲ ପଠାଇ ଦିଆଗଲା । ସେ ଏହାକୁ ଉଚ୍ଚ ପ୍ରଶଂସା କରିବା ସହିତ ଓଡିଶା ସରକାରଙ୍କୁ ସୁପାରିଶ କଲେ ଯେ ରାଜ୍ୟର ଶିକ୍ଷା ବିଷୟକ ଯାହା କାର୍ଯ୍ୟକ୍ରମ ସ୍ୱେଚ୍ଛାସେବୀ ସଂସ୍ଥା ଦ୍ୱାରା କରିବାକୁ ଥିବ ତାହା ସବୁ SEEDA କୁ ଦିଆଯିବ ।

ଦୁର୍ଭାଗ୍ୟର କଥା ଓଡିଶା ସରକାରଙ୍କର କୌଣସି କାମ Consultant ମାନଙ୍କ ଦ୍ୱାରା କରାଇବାର ସଂସ୍କୃତି ନାହିଁ । କାରଣ ସରକାରଙ୍କର କେବଳ ବିଦ୍ୱାନ ଲୋକମାନେ କାମ କରନ୍ତି । ସେମାନେ ସବ୍ ଜାନ୍ତା କାହାକୁ ପଚାରିବେ କାହିଁକି ?

## ୧୪.୩ ଅସ୍ - ଏଡ୍ ପ୍ରକଳ୍ପ

୧୯୯୯ ମସିହା ମହାବାତ୍ୟା ପରେ ବହୁ ଆନ୍ତର୍ଦେଶୀୟ ଓ ଦେଶୀୟ ଅନୁଷ୍ଠାନ ସାହାଯ୍ୟ ଓ ପୁନର୍ବାସ କାର୍ଯ୍ୟକ୍ରମ ହାତକୁ ନେଇଥିଲେ । ତନ୍ମଧ୍ୟରୁ ୟୁନିସେଫ ମାଧ୍ୟମରେ ଅଷ୍ଟ୍ରେଲିଆ ସରକାରଙ୍କ ସାହାଯ୍ୟ ଅନ୍ୟତମ । ଏହି କାର୍ଯ୍ୟକ୍ରମରେ ଜଗତସିଂପୁର ଜିଲ୍ଲାର ଯେଉଁ ତିନିଗୋଟି ବ୍ଲକ୍ ସବୁଠାରୁ ଅଧିକ କ୍ଷତିଗ୍ରସ୍ତ ହୋଇଥିଲା ଯଥା :- ଏରସମା, କୁଜଙ୍ଗ ଓ ବାଲିକୁଦା ଓ ପୁରୀ ଜିଲ୍ଲାର କାକଟପୁର ଓ ଅସ୍ତରଙ୍ଗ ବ୍ଲକ୍‌ରେ ପ୍ରାଥମିକ ବିଦ୍ୟାଳୟ ଓ ଗ୍ରାମବାସୀଙ୍କ ସହଯୋଗ ଉପରେ ପର୍ଯ୍ୟବସିତ ପୁନର୍ନିର୍ମାଣ ଓ ପୁନର୍ବାସ କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ ହୋଇଥିଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଉନ୍ନତ ଦେଶଗୁଡିକରେ ବିଦ୍ୟାଳୟ ଓ ଜନସମୂହ ମଧ୍ୟରେ ସହଯୋଗ ଓ ସୁସଂପର୍କ ଥିବା ଯୋଗୁଁ ଉଭୟ ଉପକୃତ ହୁଅନ୍ତି ଏବଂ ଦୈବୀ ଦୁର୍ବିପାକ ସମୟରେ ଉଭୟ ଉଭୟଙ୍କୁ ସାହାଯ୍ୟ କରନ୍ତି । କିନ୍ତୁ ଓଡିଶା କ୍ଷେତ୍ରରେ ଯେଉଁ ଧନ ହାନି ଓ ପ୍ରାଣହାନି ହେଲା ସେଥିରୁ ଉପଲବ୍ଧ ହେଲା ଯେ ଓଡିଶାରେ ବିଦ୍ୟାଳୟ ଓ ଗ୍ରାମବାସୀମାନଙ୍କ ମଧ୍ୟରେ ଯେଉଁ ପାରସ୍ପରିକ ନିର୍ଭରଶୀଳତା ରହିବା କଥା ତାହା ଆଶାନୁରୂପ ନୁହେଁ ।

ପୂର୍ବେ ଗ୍ରାମବାସୀମାନେ ଗ୍ରାମରେ ବିଦ୍ୟାଳୟ ପ୍ରତିଷ୍ଠା, ଗୃହ ନିର୍ମାଣ ଓ ରକ୍ଷଣାବେକ୍ଷଣ ଠାରୁ ଆରମ୍ଭ କରି ଶିକ୍ଷକ ନିଯୁକ୍ତି, ଶିକ୍ଷକଙ୍କର ରହିବା, ଖାଇବା, ପିଇବା ଇତ୍ୟାଦି ବ୍ୟବସ୍ଥା କରୁଥିଲେ । ଗ୍ରାମର ପିଲାମାନଙ୍କର ଶିକ୍ଷା ଦାୟିତ୍ୱ ଗ୍ରାମବାସୀମାନେ ନେଉଥିଲେ । ସ୍ୱାଧୀନତା ପୂର୍ବରୁ ଗ୍ରାମବାସୀମାନେ ସ୍କୁଲ ଘର ବାର୍ଷିକ ଛପର କରିବା ଓ ମରାମତି କରିବା କାର୍ଯ୍ୟ କରୁଥିଲେ । ଅଳ୍ପ କେତୋଟି ସ୍କୁଲର ଶିକ୍ଷକଙ୍କୁ ଇଂରେଜ ସରକାର ଦରମା ଦେଉଥିଲେ । ପ୍ରତି ୨୦ ଟି ଗାଁ ପାଇଁ ଗୋଟିଏ ପ୍ରାଥମିକ ସ୍କୁଲ ଯୋଗାଇ ଦେଉଥିଲେ । ଅନ୍ୟ ସବୁ ସ୍କୁଲର ଶିକ୍ଷକମାନଙ୍କ ଦରମା ଗ୍ରାମବାସୀମାନେ ଦେଉଥିଲେ । ସରକାର କେବଳ ଶିକ୍ଷକ ତାଲିମ୍ ଓ ପାଠ୍ୟକ୍ରମ ନିର୍ଦ୍ଧାରଣ କରୁଥିଲେ । ସ୍କୁଲର ଅନ୍ୟ ସମସ୍ତ ଦାୟିତ୍ୱ ଗ୍ରାମବାସୀମାନେ ବହନ କରୁଥିଲେ । ଯେତେବେଳ ପର୍ଯ୍ୟନ୍ତ ଗ୍ରାମବାସୀ ଓ ପ୍ରାଥମିକ ବିଦ୍ୟାଳୟ ମଧ୍ୟରେ ସହଯୋଗ ଓ ସଂପର୍କ ନିବିଡ ଥିଲା ସେତେବେଳ

ଯାଏ ସ୍କୁଲ ଗ୍ରାମବାସୀଙ୍କ ଦ୍ୱାରା ଉପକୃତ ହେଉଥିଲା ଏବଂ ଗ୍ରାମବାସୀମାନେ ମଧ୍ୟ ବିଦ୍ୟାଳୟ ଓ ଶିକ୍ଷକଙ୍କ ଦ୍ୱାରା ଉପକୃତ ହେଉଥିଲେ । ୧୯୫୧ ମସିହାରେ ଯୋଜନାବଦ୍ଧ ଅର୍ଥନୀତି ଭାରତରେ ଆରମ୍ଭ ହେବା ସହିତ କେତେକ Community Development And National Extension Service ବ୍ଲକ୍ ଆରମ୍ଭ ହେଲା । ବ୍ଲକ୍ ମାଧ୍ୟମରେ ସ୍କୁଲ ଗୃହ ନିର୍ମାଣ କାର୍ଯ୍ୟ ସରକାର ଆରମ୍ଭ କଲାପରେ ଲୋକମାନଙ୍କର ଧାରଣା ହେଲା ଯେ ଶିକ୍ଷା ହେଉଛି ସରକାରୀ ଦାୟିତ୍ୱ । ଏଣୁ ସେମାନେ ଯେଉଁ ଶିକ୍ଷା ଦାୟିତ୍ୱ ବହନ କରୁଥିଲେ ସେଥିରୁ ଆସ୍ତେ ଆସ୍ତେ ଖସିବାକୁ ଆରମ୍ଭ କଲେ ।

ଗ୍ରାମବାସୀମାନେ ପ୍ରାଥମିକ ବିଦ୍ୟାଳୟ ପରିଚାଳନା କ୍ଷେତ୍ରରୁ ହଟିଯିବା ପରେ ସ୍କୁଲଗୁଡିକର ଅବସ୍ଥା ଖରାପ ହେବାକୁ ଲାଗିଲା । ବ୍ଲକ୍ ଯେଉଁ ସ୍କୁଲ ଘର ତିଆରି କରି ଦେଲେ ତା'ର ରକ୍ଷଣାବେକ୍ଷଣ ପାଇଁ ବ୍ୟବସ୍ଥା କଲେନାହିଁ । ସ୍କୁଲ ଘର ମରାମତି ଓ ରକ୍ଷଣାବେକ୍ଷଣ ଲୋକଙ୍କର ଦାୟିତ୍ୱ ବୋଲି ସେମାନେ ପ୍ରାଥମିକ ସ୍ତରରେ କହିଲେ । ଲୋକମାନେ ଥରେ ପରିଚାଳନାରୁ ହଟିଯିବା ପରେ ଆଉ କୌଣସି ଦାୟିତ୍ୱ ନେବାକୁ ରାଜି ହେଲେ ନାହିଁ । ଫଳରେ ସ୍କୁଲ ଘରର ଅବସ୍ଥା ଖରାପ ହୋଇଗଲା । ଶିକ୍ଷକମାନେ ମଧ ଗ୍ରାମବାସୀଙ୍କ ସହିତ ସଂପର୍କ ରଖିଲେ ନାହିଁ । ସେମାନେ ଧରିନେଲେ ଯେ ସରକାର ସେମାନଙ୍କର ପ୍ରଭୁ । ବିଦ୍ୟାଳୟ ପରିଚାଳନାରେ ଗ୍ରାମବାସୀଙ୍କର କୌଣସି ଭୂମିକା ନାହିଁ । ୧୯୫୪-୫୫ ମସିହା ବେଳକୁ ସରକାର ବହୁ ସଂଖ୍ୟାରେ Special Primary Schools ଖୋଲି ଦେଲେ । କୌଣସି ଗ୍ରାମବାସୀଙ୍କୁ ନ ପଚାରି ସ୍କୁଲ ଖୋଲି ଦେବାରୁ ସେମାନେ ସ୍କୁଲଠାରୁ ଦୂରେଇ ଗଲେ । ଅବଶ୍ୟ ସରକାର ଗୁଡାଏ Special Primary Schools ଖୋଲିବାର କାରଣ ସାର୍ବଜନୀନ ପ୍ରାଥମିକ ଶିକ୍ଷା ଲକ୍ଷ୍ୟ ପୂରଣ ।

୧୯୫୫ ମସିହା ଠାରୁ ୧୯୮୦ ମସିହା ମଧରେ ଗ୍ରାମବାସୀମାନେ ସଂପୂର୍ଣ୍ଣ ଭାବରେ ପ୍ରାଥମିକ ଶିକ୍ଷା ପରିଚାଳନା କ୍ଷେତ୍ରରୁ ଦୂରେଇ ଗଲେ । ସେତେବେଳେ ସ୍କୁଲ ସବ୍ଇନିସ୍ପେକ୍ଟରମାନେ ଘନ ଘନ ସ୍କୁଲ ପରିଦର୍ଶନ କରୁଥିବାରୁ ଅବସ୍ଥା ସମ୍ଭାଳିବା ସମ୍ଭବପର ହେଉଥିଲା । ସବ୍ଇନିସ୍ପେକ୍ଟରମାନେ ପରିଦର୍ଶନ ଦିନ ରାତ୍ରିରହଣି ସମୟରେ ଗ୍ରାମବାସୀଙ୍କର ସଭା ଡକାଇ ସେମାନଙ୍କ ସହିତ ଆଲୋଚନା କରୁଥିଲେ । ପ୍ରତ୍ୟକ୍ଷରେ ନ ହେଲେ ମଧ୍ୟ ପରୋକ୍ଷରେ ଗ୍ରାମବାସୀଙ୍କ ପ୍ରାଥମିକ ବିଦ୍ୟାଳୟ ସହିତ ସଂପର୍କ ରହୁଥିଲା । କିନ୍ତୁ ୧୯୮୨ - ୧୯୮୩ ମସିହାରେ ସବଇନିସ୍ପେକ୍ଟରମାନଙ୍କୁ ବ୍ଲକ୍ ଅଧୀନରେ କାର୍ଯ୍ୟ କରିବାକୁ

ସରକାର ଆଦେଶ ଦେବାପରେ ସ୍କୁଲ ପରିଦର୍ଶନ ପ୍ରାୟ ବନ୍ଦ ହୋଇଗଲା । ଏଣେ ଗ୍ରାମବାସୀମାନେ ପରିଚାଳନା କ୍ଷେତ୍ରରୁ ଦୂରେଇ ଯାଇଛନ୍ତି । ସ୍କୁଲରେ ପାଠପଢା ହେଉଛି କି ନାହିଁ ତାହା ବୁଝିବା ପାଇଁ କେହି ରହିଲେ ନାହିଁ । ସବ୍‌ଇନିସ୍ପେକ୍ଟରମାନେ ଅଧିକାଂଶ ସମୟ ବ୍ଲକ୍ କାମରେ ନିୟୋଜିତ ହେଲେ । ସେମାନଙ୍କୁ ନିୟନ୍ତ୍ରଣ କରିବା କ୍ଷମତା ବି.ଡି.ଓମାନେ ପାଇବା ପରେ ତାଙ୍କୁ ଉନ୍ନୟନ କାମ ନାଁରେ ବିଭିନ୍ନ ପ୍ରଶାସନିକ କାମରେ ନିୟୋଜିତ କଲେ । ଏଣୁ ପ୍ରାଥମିକ ବିଦ୍ୟାଳୟ ପରିଚାଳନା, ପାଠପଢାରେ ଉନ୍ନତି ସାଧନ କରିବା କାମ ବା ବିଦ୍ୟାଳୟର କିଛି ଉନ୍ନତି କରିବା କୌଣସିଟା ସମ୍ଭବ ହେଲା ନାହିଁ । ପ୍ରାଥମିକ ଶିକ୍ଷା ଏକ ପ୍ରକାର ଅନାଥ ହୋଇଗଲା । ସ୍କୁଲର କୌଣସି କଥା କେହି ବୁଝିଲେ ନାହିଁ । ଶିକ୍ଷା ବିଭାଗ ମଧ ନିଷ୍କ୍ରିୟ ହୋଇଗଲା ।

୧୯୮୬ ମସିହାରେ ଆମ ଦେଶର ଜାତୀୟ ଶିକ୍ଷାନୀତି ପ୍ରଣୀତ ହେଲା । ସେତେବେଳକୁ ସରକାରୀ ସ୍ତରରେ ଅନୁଭବ କରାଗଲାଣି ଯେ ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବା ଓ ବିଦ୍ୟାଳୟଗୁଡିକର ସୁପରିଚାଳନା କରିବା ଗ୍ରାମ ବାସୀଙ୍କ ସହଯୋଗ ବିନା ସମ୍ଭବ ନୁହେଁ । ଗୋଷ୍ଠୀ ସହଯୋଗ ପାଇଁ ଗ୍ରାମ ଶିକ୍ଷା କମିଟି ଗଠନ ପାଇଁ ଶିକ୍ଷା ନୀତିରେ ବ୍ୟବସ୍ଥା ରଖାଗଲା । ଗ୍ରାମଶିକ୍ଷା କମିଟି ଗଢାଗଲା କିନ୍ତୁ ଏପରି ଭାବରେ ଗଢାଗଲା ଯେ ତାହା ଠିକ୍ ଭାବେ କାମ କଲା ନାହିଁ । କାରଣ ଗ୍ରାମବାସୀମାନେ ଆଗ୍ରହ ପ୍ରକାଶ କରି ସ୍କୁଲ ପରିଚାଳନାରେ ଅଂଶ ଗ୍ରହଣ କରିବା ପାଇଁ କୌଣସି ଉପାଦାନ ରହିଲା ନାହିଁ । ଯାହା ସବୁ କରାଗଲା କେବଳ ଔପଚାରିକତା ରକ୍ଷା କରିବା ପାଇଁ କରାଗଲା ।

ପ୍ରାଥମିକ ବିଦ୍ୟାଳୟ ପରିଚାଳନା ଦାୟିତ୍ୱ ଗ୍ରାମ ପଞ୍ଚାୟତକୁ ହସ୍ତାନ୍ତର କରିବା ପାଇଁ ୧୯୭୨ ମସିହାରୁ ଆଇନ୍ ପ୍ରଣୟନ କରାଯାଇଛି । କିନ୍ତୁ ତାହା କାର୍ଯ୍ୟକାରୀ ହୋଇପାରୁ ନାହିଁ । କାରଣ ଯେଉଁ ଅଧିକାରୀମାନେ ପ୍ରାଥମିକ ଶିକ୍ଷା ଦାୟିତ୍ୱରେ ଅଛନ୍ତି ସେମାନେ କ୍ଷମତା ହସ୍ତାନ୍ତର କରିବାକୁ ପ୍ରସ୍ତୁତ ନୁହଁନ୍ତି । ସରକାରୀ ସ୍ତରରେ ମଧ କିଛି କଡା ବ୍ୟବସ୍ଥା କରାଯାଉନାହିଁ । ଶିକ୍ଷକମାନେ ଗ୍ରାମ ପଞ୍ଚାୟତ ଆଧୀନରେ କାମ କରିବାକୁ ଅମଙ୍ଗ ହେଉଛନ୍ତି । ପ୍ରାଥମିକ ବିଦ୍ୟାଳୟ ପରିଚାଳନା କ୍ଷେତ୍ରରେ ଅଚଳାବସ୍ଥା ବହୁ ଦିନରୁ ଲାଗି ରହିଥିଲେ ବି କିଛି ଦୃଢ ପଦକ୍ଷେପ ନିଆଯାଉନାହିଁ ।

ଏପରି ବିଭିନ୍ନ ଅସଫଳ ଉଦ୍ୟମ ଚାଲିଥିଲା ବେଳେ ୧୯୯୯ ମସିହା ଅକ୍ଟୋବର ୨୯ ତାରିଖରେ ଓଡିଶାର ମହାବାତ୍ୟା ଧ୍ୱଂସର ତାଣ୍ଡବ ସୃଷ୍ଟି କଲା ।

ମହାବାତ୍ୟା ପରେ ପୁନର୍ବସତି କାର୍ଯ୍ୟକ୍ରମରେ ବିଭିନ୍ନ ସୂତ୍ରରୁ ନୂଆ ବିଦ୍ୟାଳୟ ଗୃହମାନ ନିର୍ମିତ ହେଲା । ମହାବାତ୍ୟାର କ୍ଷତି ଭରଣା କରିବାକୁ ସବୁପ୍ରକାର ଉଦ୍ୟମ କରାଗଲା । କିନ୍ତୁ ଲୋକମାନେ ମାନସିକ ସ୍ତରରେ ଯେଉଁ ଧକ୍କା ଖାଇଲେ ତାକୁ ଦୂର କରିବା ସହଜ ହେଲା ନାହିଁ । ୟୁନିସେଫ୍ ସହାୟତାରେ ବିଦ୍ୟାଳୟ ଗୃହ ନିର୍ମାଣ, ବିଭିନ୍ନ ଶିକ୍ଷଣ ଉପକରଣ ଯଥା :- ବହି ଓ ଆସବାବ ପତ୍ର ଯୋଗାଣ ସହିତ ପ୍ରାଥମିକ ବିଦ୍ୟାଳୟ ଓ ଗୋଷ୍ଠୀ ସହଯୋଗ ପାଇଁ ଉଦ୍ୟମ କରାଗଲା।

୨୦୦୧ ମସିହାରେ ୟୁନିସେଫ ସହାୟତାରେ ବିଦ୍ୟାଳୟ ଓ ଗ୍ରାମବାସୀମାନଙ୍କ ମଧ୍ୟରେ ସହଯୋଗ ଓ ସହଭାଗିତା ପ୍ରବର୍ତ୍ତନ ପାଇଁ ଜଗତସିଂପୁର ଜିଲ୍ଲାର ଏରସମା, କୁଜଙ୍ଗ ଓ ବାଲିକୁଦା ବ୍ଲକ୍ ରେ ଓ ପୁରୀ ଜିଲ୍ଲାର କାକଟପୁର, ଅସ୍ତରଙ୍ଗ ବ୍ଲକ୍ ରେ ୬୨ଟି କେନ୍ଦ୍ର ସ୍କୁଲରେ କାର୍ଯ୍ୟ ଆରମ୍ଭ କଲେ। ସେତେବେଳେ ଉନ୍ନୟନ କମିଟି ମଧ୍ୟରେ ସମସ୍ତ ଗ୍ରାମ ଶିକ୍ଷା କମିଟି ସଦସ୍ୟମାନେ ଅନ୍ତର୍ଭୁକ୍ତ ହୋଇଥିଲେ ।

୧୯୯୭-୧୯୯୮ ମସିହାରେ ପ୍ରଫେସର ବିଧୁଭୂଷଣ ଦାସ କମିଟି ଓଡିଶାର ପ୍ରାଥମିକ ଶିକ୍ଷା ନୀତି ପ୍ରସ୍ତୁତ କରିଥିଲେ । ପ୍ରାଥମିକ ଶିକ୍ଷା ନୀତିରେ ପ୍ରାଥମିକ ଶିକ୍ଷାର ଯେଉଁ ପରିକଳ୍ପନା କରାଯାଇଛି, ତାହା ହେଉଛି ଗ୍ରାମର ପ୍ରାଥମିକ ସ୍କୁଲ ମାଧ୍ୟମରେ ଗ୍ରାମର ସମସ୍ତ ଉନ୍ନୟନ କାର୍ଯ୍ୟ ସଂପାଦିତ ହେବ, କେବଳ ଉନ୍ନୟନ କାର୍ଯ୍ୟ ନୁହେଁ ବରଂ ଗ୍ରାମର ସମସ୍ତ ସମସ୍ୟା ଓ ଅସୁବିଧା ଦୂର କରିବା ପାଇଁ ଗ୍ରାମ ଉନ୍ନୟନ କମିଟି କାର୍ଯ୍ୟ କରିବେ । ସମସ୍ତ କ୍ଷେତ୍ରିୟ କର୍ମଚାରୀ ଯଥା :- ଗ୍ରାମ ସେବକ, କୃଷି ସେବକ, ଧାଈ, ଅଙ୍ଗନବାଡି କର୍ମୀ, ଆଦି ସମସ୍ତେ ଗ୍ରାମ ଉନ୍ନୟନ କମିଟି ନିକଟରେ ଉତ୍ତରଦାୟୀ ରହିବେ । ସେହି ଆଦର୍ଶ ଅନୁସାରେ ଗ୍ରାମ ଉନ୍ନୟନ କମିଟିଗୁଡିକ କାର୍ଯ୍ୟ କରିବା ପାଇଁ 'ସିଡା' ତରଫରୁ ଉଦ୍ୟମ କରାଗଲା । 'ସିଡା'ର କର୍ମକର୍ତ୍ତା ଭାବରେ ମୁଁ ଓ ମୋର ସହଯୋଗୀ କାଳିଦତ୍ତ ଦାସ ଓ ଅନ୍ୟମାନେ ଗ୍ରାମ ମାନଙ୍କରେ ଯାଇ କାମ କଲେ ।

ଗ୍ରାମ ଉନ୍ନୟନ କମିଟିମାନେ ପ୍ରାଥମିକ ଶିକ୍ଷା ପାଇଁ ଅଣୁ-ଯୋଜନା ପ୍ରସ୍ତୁତ କରି ଗ୍ରାମର ସମସ୍ତ ୬ରୁ ୧୪ ବର୍ଷ ବୟସର ବାଳକ ବାଳିକାମାନଙ୍କ ନାମ ଲେଖା, ଅଧାରୁ ପାଠ ନ ଛାଡିବା, ନିୟମିତ ସ୍କୁଲକୁ ଆସିବା, ଓ ଉଚ୍ଚମାନର ଶିକ୍ଷାଲାଭ ଉପରେ ଗୁରୁତ୍ୱ ଆରୋପ କରୁଥିଲେ । ପ୍ରତିମାସ ଅନ୍ତତଃ ପକ୍ଷେ ଗୋଟିଏ ସଭା କରି ପିଲାମାନଙ୍କ ପାଠପଢା ବିଷୟରେ ସମୀକ୍ଷା କରୁଥିଲେ।

ଏହା ବ୍ୟତୀତ ବିଦ୍ୟାଳୟଗୁଡିକରେ ପରିବେଶ କିପରି ଆକର୍ଷଣୀୟ ହେବ ଓ ବିଦ୍ୟାଳୟଗୁଡିକ କିପରି ଉପାର୍ଜନ କ୍ଷମ ହେବେ ସେ ବିଷୟରେ ମଧ୍ୟ କମିଟି ବ୍ୟବସ୍ଥା କରୁଥିଲେ । ସ୍କୁଲ ହତାର ବାଡବନ୍ଦି କରିବା, ନଡିଆ, ଆମ୍ବ ପ୍ରଭୃତି ଫଳନ୍ତି ଗଛ ଲଗାଇବା କାମ ଗ୍ରାମବାସୀମାନେ କରିବାକୁ ଆଗେଇ ଆସିଲେ ।

ଗ୍ରାମ ଉନ୍ନୟନ କମିଟିଗୁଡିକର କାର୍ଯ୍ୟରେ ମୁଖ୍ୟ ପ୍ରତିବନ୍ଧକ ହେଲା ସରକାରଙ୍କ ଉପରେ ଅତ୍ୟଧିକ ନିର୍ଭରଶୀଳତା । ଲୋକମାନେ ସରକାରଙ୍କ ଉପରେ ଏତେ ନିର୍ଭର କରୁଥିଲେ ଯେ ସେମାନେ ଏକ ପ୍ରକାର ଅକର୍ମଣ୍ୟ ହୋଇ ଯାଇଥିଲେ । ଯାହା ସରକାର ନ କରିବେ ତାହା ଲୋକମାନେ ଉଦ୍ୟମ କରି କାର୍ଯ୍ୟକାରୀ କରିବେ ନାହିଁ । ପ୍ରଥମେ ଯେତେବେଳେ ଗୋଷ୍ଠୀ ଉନ୍ନୟନ ବ୍ଲକ୍ ହେଲା ସେହି ଦିନଠୁ ଏ ପ୍ରକାର ନିର୍ଭରଶୀଳତା ଓ ଶିଥିଳତା ଲୋକମାନଙ୍କ ଠାରେ ଦେଖାଦେଲା । ତା ପୂର୍ବରୁ ଲୋକମାନେ ସବୁ କରୁଥିଲେ । ପ୍ରଥମେ ସରକାର ପ୍ରାଥମିକ ବିଦ୍ୟାଳୟ ପାଇଁ ପକ୍କାଘର ତିଆରି କରିଦେଲେ । ଶିକ୍ଷକ ନିଯୁକ୍ତି କଲେ । ଶିକ୍ଷକଙ୍କୁ ଦରମା ଦେଲେ, ଶିକ୍ଷଣ ଉପକରଣ, ସିଲାବସ୍ ପାଠ୍ୟପୁସ୍ତକ ଯୋଗାଇଲେ । କିନ୍ତୁ ଘରର ରକ୍ଷଣାବେକ୍ଷଣ ବ୍ୟବସ୍ଥା କଲେ ନାହିଁ । ସେତିକି ମଧ ଗ୍ରାମବାସୀମାନେ କରିବାକୁ ପ୍ରସ୍ତୁତ ହେଲେ ନାହିଁ ।

ସରକାରଙ୍କ ଉପରେ ଲୋକଙ୍କର ନିର୍ଭର ଶୀଳତା କେତେ ବଢିଛି ତାର ଗୋଟିଏ ଛୋଟ ଉଦାହରଣ ଏରସମା ବ୍ଲକ୍‌ର ବାଲିତୁଠ ଗାଁ । ବାଲିତୁଠ ପ୍ରାଥମିକ ବିଦ୍ୟାଳୟରେ ଗୋଟିଏ ମିଟିଂରେ ଗାଁର ଅସୁବିଧା କଥା ଆଲୋଚନା ହେଉଥାଏ । ଲୋକମାନେ ଦୁଇଟି ଅସୁବିଧା କଥା କହିଲେ । ପ୍ରଥମ - ସ୍କୁଲ ପାଚେରୀ ଫାଟକକୁ ଲାଗି ଟ୍ରେକର ଷ୍ଟାଣ୍ଡ ହୋଇଥିବାରୁ ପିଲାଙ୍କ ଜୀବନ ବିପନ୍ନ ହେଉଛି । ଦ୍ୱିତୀୟ - ଉପର ମୁଣ୍ଡରେ ଥିବା ହୋଟେଲରୁ ମଇଳା ପାଣି ଆସି ସ୍କୁଲ ବାଟ ଦେଇ ଯାଉଥିବାରୁ ପିଲାଙ୍କ ସ୍ୱାସ୍ଥ୍ୟ ପ୍ରତି ବିପଦ ସୃଷ୍ଟି ହେଉଛି । ଲୋକେ ଚାହୁଁଛନ୍ତି ସରକାର ଟ୍ରେକର ଷ୍ଟାଣ୍ଡ ଘୁଞ୍ଚାଇ ଦିଅନ୍ତୁ ଓ ହୋଟେଲର ମଇଳାପାଣି ଆସିବା ବନ୍ଦ କରି ଦିଅନ୍ତୁ । ମୁଁ କହିଲି, "ଟ୍ରେକର ଷ୍ଟାଣ୍ଡ ଘୁଞ୍ଚାଇବା କାମ ଓ ହୋଟେଲର ମଇଳା ପାଣି ବନ୍ଦ କରିବା କାମ କ'ଣ ଗ୍ରାମବାସୀ କରି ପାରୁ ନାହାଁନ୍ତି ? ଆଜି ଆପଣମାନେ ଯାଇ ଟ୍ରେକର ଷ୍ଟାଣ୍ଡ ଘୁଞ୍ଚାଇ ଦେଇ ପାରିବେ ଓ ହୋଟେଲ୍‌ର ମଇଳା ପାଣି ମଧ୍ୟ ବନ୍ଦ କରିପାରିବେ । କରୁ ନାହାଁନ୍ତି କାହିଁକି ?" କିଛିଦିନ ପରେ ଆମେ ଯାଇ ଦେଖିଲୁ ଟ୍ରେକର ଷ୍ଟାଣ୍ଡ ଘୁଞ୍ଚି ଯାଇଛି ଓ ହୋଟେଲର ପାଣି ଅନ୍ୟ ବାଟେ ଯାଉଛି । ଲୋକଙ୍କର ଆତ୍ମବିଶ୍ୱାସର ଅଭାବ

ଦେଖା ଯାଉଥିଲା । ସେମାନଙ୍କୁ ତାଙ୍କ କ୍ଷମତା ଓ ଶକ୍ତି ବିଷୟରେ ସଚେତନ କରିଦେଲେ ସେମାନେ ଆଶ୍ଚର୍ଯ୍ୟଜନକ କାମ କରି ପାରିବେ । ଆମେ ଯେତେ ଗାଁକୁ ଯାଇଛୁ, ଲୋକମାନଙ୍କ ସାହାଯ୍ୟରେ ଗାଁର ଛୋଟ ଛୋଟ କାମ କରାଇ ନେଇଛୁ ।

ଅଷ୍ଟ୍ରେଲିଆ - ସାହାଯ୍ୟ ପ୍ରକଳ୍ପରେ କାମ କରି ଯେଉଁ ଶିକ୍ଷା ମିଳିଲା ତାହା ଖୁବ୍ ମୂଲ୍ୟବାନ୍ । ସେଗୁଡିକ ହେଲା :-

(୧) ଗ୍ରାମବାସୀମାନଙ୍କର ମିଳିତ ଶକ୍ତି ବହୁ ସମସ୍ୟାର ସମାଧାନ କରିପାରିବ । ଏହି ଉପଲବ୍ଧି ବିଷୟରେ ଗ୍ରାମବାସୀମାନଙ୍କୁ ସଚେତନ କରାଇବା ଦରକାର ।

(୨) ତୃଣମୂଳ ସ୍ତରରେ ପ୍ରାଥମିକ ଶିକ୍ଷା, ସ୍ୱାସ୍ଥ୍ୟ ଓ ଗୋଷ୍ଠୀ ଉନ୍ନୟନ ପାଇଁ ପଞ୍ଚାୟତ ଦାୟିତ୍ୱ ନେଇଛି । ତେଣୁ ପଞ୍ଚାୟତ ସାମର୍ଥ୍ୟ ବୃଦ୍ଧି ପାଇଲେ ଗ୍ରାମାଞ୍ଚଳର ସର୍ବାଙ୍ଗୀନ ଉନ୍ନତି ହୋଇ ପାରିବ ।

(୩) ଜନ ସାଧାରଣ, ଶିକ୍ଷକ ଓ ବିଶେଷ ଭାବରେ ଗ୍ରାମ ଶିକ୍ଷା କମିଟି / ଉନ୍ନୟନ କମିଟି ସଦସ୍ୟମାନଙ୍କର ସାମର୍ଥ୍ୟ ବୃଦ୍ଧି ହେଲେ ତାହା ବିଦ୍ୟାଳୟ ଓ ଗ୍ରାମବାସୀ ଉଭୟଙ୍କର ଉନ୍ନତି ସାଧନ କରିପାରିବ ।

(୪) ଗ୍ରାମବାସୀଙ୍କର ଆର୍ଥିକ ଅବସ୍ଥାରେ ଉନ୍ନତି ହେଲେ ପିଲାମାନଙ୍କ ଶିକ୍ଷା ତଥା ବିଦ୍ୟାଳୟର ଉନ୍ନତି ହୋଇ ପାରିବ ।

(୫) ଗ୍ରାମବାସୀମାନଙ୍କର ପାରିବାରିକ ଆଚରଣରେ ପରିବର୍ତ୍ତନ ହୋଇପାରିଲେ ପିଲାମାନଙ୍କ ଆଚରଣ ଉନ୍ନତ ହେବ। ଏଥିପାଇଁ ବୟସ୍କମାନଙ୍କ ଆଚରଣରେ ପରିବର୍ତ୍ତନ ଆସିବା ଦରକାର।

ଏହି ପ୍ରକଳ୍ପରେ କାମ କରି ଆମ୍ଭମାନଙ୍କର ମଧ୍ୟ ପରିବର୍ତ୍ତନ ହେଲା। ଦୀର୍ଘଦିନ ଧରି ସରକାରୀ ଚାକିରୀ କରି ସାଧାରଣ ଲୋକଙ୍କ ସମସ୍ୟା ବିଷୟରେ ଚିନ୍ତା କରିବାର ଅଭ୍ୟାସ ନଥିଲା। ଗ୍ରାମବାସୀଙ୍କ ସହିତ ଅନ୍ତରଙ୍ଗ ଆଲୋଚନା କଲେ ସେମାନେ କେବଳ ଯେ ଖୁସି ହୁଅନ୍ତି ତାହା ନୁହେଁ ସେମାନଙ୍କୁ ସମସ୍ୟା ସମାଧାନର ବାଟ ମିଳିଯାଏ। ଲୋକଙ୍କ ପାଖରେ ଶକ୍ତି ଅଛି, କ୍ଷମତା ଅଛି। ସେମାନେ ତାହା ପ୍ରୟୋଗ କରନ୍ତି ନାହିଁ। ସେମାନେ ନିଜକୁ ଦୁର୍ବଳ ଭାବନ୍ତି। ତାଙ୍କ ଶକ୍ତି ବିଷୟରେ ତାଙ୍କୁ ଜଣାଇ ଦେଲେ ଓ ଟିକିଏ ସାହସ ଦେଲେ, ସେମାନେ ଅଦ୍ଭୁତ ସାଧନ କରି ପାରିବେ।



◆◆◆

## ପଞ୍ଚଦଶ ଅଧ୍ୟାୟ

# ଗ୍ରାମବାସୀ ପ୍ରାଥମିକ ବିଦ୍ୟାଳୟ ସହଯୋଗ

### ୧୫.୧ ପୃଷ୍ଠଭୂମି

ଜାତୀୟ ଶିକ୍ଷାନୀତି ୧୯୮୬ ରେ ଗୋଷ୍ଠୀ ସହଯୋଗରେ ବିଦ୍ୟାଳୟ ପରିଚାଳନା ବିଷୟ ବର୍ଣ୍ଣିତ ହୋଇଛି। ଗ୍ରାମ ଶିକ୍ଷା କମିଟିକୁ ବିଦ୍ୟାଳୟ ପରିଚାଳନା ଦେବା ସହିତ ଦାୟିତ୍ୱ (Accountability) ମଧ୍ୟ ଦିଆଯାଇଛି। ଅଞ୍ଚଳ ଭିତ୍ତିକ ଶିକ୍ଷା ଯୋଜନା ବିଷୟରେ ମଧ୍ୟ ଏଥିରେ ସୂଚନା ଦିଆଯାଇଛି। ଜାତୀୟ ଶିକ୍ଷା ନୀତିର ଅନୁସରଣରେ ଓଡିଶାରେ ଗ୍ରାମ ଶିକ୍ଷା କମିଟି ଗଠନ କରାଯାଇଛି। ତଥାପି ଏହି କମିଟିଗୁଡିକ ଠିକ୍ ଭାବରେ କାମ କରୁନାହିଁ ଓ ଶିକ୍ଷାରେ ଉନ୍ନତି ସାଧିତ ହୋଇ ପାରୁନାହିଁ। କାହିଁକି ଶିକ୍ଷାରେ ଉନ୍ନତି ହୋଇ ପାରୁ ନାହିଁ ସେ ବିଷୟରେ ଯଥେଷ୍ଟ ଓ ଯଥୋଚିତ ବିଶ୍ଳେଷଣ ହୋଇ ପାରିନାହିଁ। ଏହି ଆଲୋଚନା ପାଇଁ ଟିକିଏ ପଶ୍ଚାଦୃଷ୍ଟି ଦରକାର।

ଏ ପର୍ଯ୍ୟନ୍ତ ଯେତେ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଛି ତା'ର ଶତକଡା ୯୫ ଭାଗ ଲୋକମାନେ ତାଙ୍କ ନିଜ ଉଦ୍ୟମରେ ପ୍ରତିଷ୍ଠା କରିଛନ୍ତି। ମଞ୍ଜୁରି ନିମିତ୍ତ ସମସ୍ତ ସର୍ତ୍ତ ପୂରଣ କରି ସାରିବା ପରେ ସରକାର ମଞ୍ଜୁରି ପ୍ରଦାନ କରିଛନ୍ତି। ବାକି ଶତକଡା ୫ ଭାଗରୁ ୩ ଭାଗ ଲୋକେ ଅନୁଷ୍ଠାନ ଆରମ୍ଭ କରିଛନ୍ତି। ସରକାର ତାକୁ ଅଧିଗ୍ରହଣ କରିଛନ୍ତି ଓ ବାକି ୨ ଭାଗ ସରକାର ପ୍ରତିଷ୍ଠା କରିଛନ୍ତି। ଯେଉଁମାନେ ଅନୁଷ୍ଠାନ ପ୍ରତିଷ୍ଠା କରିଛନ୍ତି ସେ କାହିଁକି ପରିଚାଳନାରୁ ଓହରି ଯାଉଛନ୍ତି ?

ଅନୁଷ୍ଠାନଗୁଡିକରେ ଗ୍ରାମବାସୀମାନଙ୍କର ପିଲାମାନେ ପଢନ୍ତି। ଅନୁଷ୍ଠାନର ପଢାପଢି ଭଲ ହେଲେ ତାଙ୍କ ପିଲାମାନଙ୍କର ଉପକାର ହେବ ଏକଥା କ'ଣ ଲୋକମାନେ ବୁଝିପାରି ନାହାନ୍ତି ? ତେବେ ପରିଚାଳନା କ୍ଷେତ୍ରକୁ ସେମାନେ

ଦୃଷ୍ଟି ଦେଉନାହାନ୍ତି କାହିଁକି ? ଯଦି କୁହାଯାଏ ଗାଁରେ ଅନୁଷ୍ଠାନ ପ୍ରତିଷ୍ଠା କରିଥିବା ଗ୍ରାମବାସୀମାନଙ୍କୁ ପରିଚାଳନା କ୍ଷେତ୍ରରୁ ଓହରି ଯିବା ପାଇଁ ସରକାର ବାଧ୍ୟ କରିଛନ୍ତି - ଏ କଥା କ'ଣ ଭୁଲ ହେବ ?

ପୂର୍ବେ ଗ୍ରାମବାସୀମାନେ ନିଜ ଗାଁରେ ପ୍ରାଥମିକ ବିଦ୍ୟାଳୟ ପରିଚାଳନା କରୁଥିଲେ। ପ୍ରତିବର୍ଷ ସ୍କୁଲ ଘର ଛପର କରୁଥିଲେ ଓ ସ୍କୁଲର ସମସ୍ତ ଦାୟିତ୍ୱ ବୁଝୁଥିଲେ। ୧୯୫୧-୫୨ ମସିହାଠାରୁ ସରକାର ସ୍କୁଲ ପାଇଁ ପକ୍କାଘର ତିଆରି କରିବା ଆରମ୍ଭ କଲେ ଓ ଶିକ୍ଷକ ନିଯୁକ୍ତି, ଶିକ୍ଷଣ ଉପକରଣ ଯୋଗାଣ ଆଦି କାର୍ଯ୍ୟ କରିବାରୁ ଲୋକମାନେ ଭାବିଲେ ପ୍ରାଥମିକ ସ୍କୁଲ ପରିଚାଳନା କାମ ସରକାରଙ୍କର। ମାଇନର ସ୍କୁଲ ଓ ହାଇସ୍କୁଲ ଲୋକମାନେ ପ୍ରତିଷ୍ଠା କଲା ପରେ ସରକାରଙ୍କଠାରୁ ମଞ୍ଜୁରୀ ନେଉଥିଲେ। ସ୍କୁଲ ପରିଚାଳନା ମଧ୍ୟ ଲୋକେ କରୁଥିଲେ। ଯେଉଁଦିନଠାରୁ ଅନୁଦାନ ମିଳିଲା, ସେହିଦିନଠାରୁ ସ୍କୁଲ ଓ ଗୋଷ୍ଠୀ ସଂପର୍କ ଛିନ୍ନ ହୋଇଗଲା। ପୂର୍ବେ ପରିଚାଳନା କମିଟି ମାଧ୍ୟମରେ ଅନୁଦାନ ଦିଆ ଯାଉଥିଲା। ୧୯୭୫ ମସିହାଠାରୁ ସରକାର ଶିକ୍ଷକମାନଙ୍କୁ ପ୍ରତ୍ୟକ୍ଷ ଭାବେ ଦରମା ପ୍ରଦାନ କରି ପରିଚାଳନା କମିଟିକୁ ହଟାଇ ଦେଲେ। ତେବେ ଶିକ୍ଷାନୁଷ୍ଠାନ ପରିଚାଳନା କ୍ଷେତ୍ରରୁ ହଟିଯିବା ପାଇଁ ସରକାର ଗ୍ରାମବାସୀଙ୍କୁ ବାଧ୍ୟ କରିଛନ୍ତି ବୋଲି କହିଲେ ଭୁଲ ରହିଲା କେଉଁଠି ?

ଶିକ୍ଷାକ୍ଷେତ୍ରରୁ ଗୋଷ୍ଠୀର ଅପସାରଣ ସହିତ ଶିକ୍ଷାର କ୍ରମାଗତ ଅବନତି ନିବିଡ ଭାବରେ ସଂପୃକ୍ତ। ଏ କଥା ୧୯୮୬ ମସିହା ବେଳକୁ ଭାରତ ସରକାର ଉପଲବ୍ଧି କରିବାରୁ ଶିକ୍ଷାନୁଷ୍ଠାନର ଗ୍ରାମଶିକ୍ଷା କମିଟି ମାଧ୍ୟମରେ ଗୋଷ୍ଠୀ ପରିଚାଳନା କଥା ଚିନ୍ତା କରି ଜାତୀୟ ଶିକ୍ଷା ନୀତିରେ ଉଲ୍ଲେଖ କଲେ। ତାହାକୁ ଅନୁସରଣ କରି ଗ୍ରାମ ଶିକ୍ଷା କମିଟି ଗଠନ କରାଗଲା। ତଥାପି କାହିଁକି ତାହା କାର୍ଯ୍ୟକାରୀ ହୋଇ ପାରୁନାହିଁ ?

## ୧୫.୨ ଗ୍ରାମଶିକ୍ଷା କମିଟି

ଜାତୀୟ ଶିକ୍ଷା ନୀତିରେ ଭାରତ ସରକାର ଚାହିଁଥିଲେ ଶିକ୍ଷା କମିଟି ଗ୍ରାମବାସୀଙ୍କର ପ୍ରତିନିଧିତ୍ୱ କରିବ। ଏଥିରେ ଖୁବ୍ ବେଶି ହେଲେ ୧୫ ଜଣ ସଦସ୍ୟ/ସଦସ୍ୟା ରହିବେ। ଏଥିରେ ଛାତ୍ରଛାତ୍ରୀଙ୍କର ପିତା/ମାତା, ପଞ୍ଚାୟତ ପ୍ରତିନିଧି, ସମବାୟ ସଂସ୍ଥା ପ୍ରତିନିଧି, ମହିଳା, ତଫସିଲଭୁକ୍ତ ଜାତି ଉପଜାତି, ସଂଖ୍ୟା ଲଘୁ, ସ୍ଥାନୀୟ ବିକାଶ ସଂସ୍ଥାର ପ୍ରତିନିଧି ରହିବେ। ଓଡିଶା ସରକାର

ତାଙ୍କର Orissa School Education (Community Participation Rules, 2000) ଚିଠି ନଂ ୧୯୬୩/ SME dated 17 . 1. 2001 ରେ ନିୟମ ତିଆରି କରିଦେଲେ ଯେ ଗ୍ରାମଶିକ୍ଷା କମିଟିରେ ନିମ୍ନୋକ୍ତ ମତେ ୯ ଜଣ ସଦସ୍ୟ ରହିବେ।

(୧) ଗ୍ରାମ ପଞ୍ଚାୟତ ୱାର୍ଡ ମେମ୍ବର / ସହରାଞ୍ଚଳ କାଉନ୍‌ସିଲର - ୧ ଜଣ।

(୨) ଛାତ୍ରଛାତ୍ରୀଙ୍କ ପିତାମାତା -୬

(କ) ପୁରୁଷ ସଦସ୍ୟ - ୩ ତାଙ୍କ ଭିତରୁ ଜଣେ ତଫସିଲ୍‌ଭୁକ୍ତ ଜାତି/ ଉପଜାତି ହୋଇଥିବେ।

(ଖ) ମହିଳା ସଦସ୍ୟା -୩ ତାଙ୍କ ଭିତରୁ ଜଣେ ତଫସିଲ୍ଭୁକ୍ତ ଜାତି/ଉପଜାତି

(ଗ) ସ୍ୱେଚ୍ଛାସେବୀ ଅନୁଷ୍ଠାନ ପ୍ରତିନିଧି -୧

(ଘ) ସ୍କୁଲର ପ୍ରଧାନ ଶିକ୍ଷକ - ସଦସ୍ୟ ସଂପାଦକ।

ମୋଟ - ୯ ଜଣ

ଗ୍ରାମର ଲୋକସଂଖ୍ୟା ତିନିଶହ ହେଉ କି ତିନି ହଜାର ତାର ପ୍ରତିନିଧିତ୍ୱ କରିବେ ୮ ଜଣ। ଜାତୀୟ ଶିକ୍ଷା ନୀତି ଖୁବ୍ ବେଶିରେ ୧୫ ଜଣଙ୍କ କଥା କହିଥିଲେ। ତାହା ବିଚାରକୁ ନିଆଗଲା ନାହିଁ। ସଂଖ୍ୟା ଲଘୁଙ୍କ କଥା ମଧ୍ୟ ବିଚାର କରାଯାଇ ନାହିଁ। ଦ୍ୱିତୀୟତଃ ସ୍କୁଲ ପ୍ରତିଷ୍ଠାରେ ନେତୃତ୍ୱ ନେଇଥିବା ବ୍ୟକ୍ତିମାନେ ସଦସ୍ୟ ହେବାର ସମ୍ଭାବନା ନାହିଁ। ସେମାନେ ସାଧାରଣତଃ ବୟସ୍କ ଲୋକ ହୋଇଥାନ୍ତି। ତାଙ୍କର ପିଲା ହେବା ସମ୍ଭାବନା ନଥାଏ। ସେ ପିତା/ମାତା ହେବାର ସମ୍ଭାବନା ନ ଥିବାରୁ ସେ ଗ୍ରାମଶିକ୍ଷା କମିଟିରେ ସଦସ୍ୟ ହୋଇ ପାରିବେ ନାହିଁ। ଯେଉଁ ସଦସ୍ୟମାନେ ସ୍କୁଲ ଉନ୍ନତିରେ ଅଂଶ ଗ୍ରହଣ କରିବେ ନାହିଁ ତାଙ୍କୁ ବହିଷ୍କାର କରିବାର ବ୍ୟବସ୍ଥା ମଧ୍ୟ ନାହିଁ।

ପ୍ରତି ସ୍କୁଲ ପାଇଁ ଶିକ୍ଷା କମିଟି ଗଠନ କରିବାର ବ୍ୟବସ୍ଥା ଅଛି। ପିତାମାତା ଓ ଶିକ୍ଷକ ମାନଙ୍କୁ ନେଇ ଯେଉଁ କମିଟି ଗଠିତ ହୋଇଥିବ ତାହା ସେମାନଙ୍କ ମଧ୍ୟରୁ ଗ୍ରାମଶିକ୍ଷା କମିଟି ନିର୍ବାଚନ କରିବେ। ସ୍କୁଲର ପ୍ରଧାନ ଶିକ୍ଷକ ପିତାମାତା-ଶିକ୍ଷକ କମିଟି ଅହ୍ୱାନ କରିବେ। ପଡୋଶୀ ସ୍କୁଲର ପ୍ରଧାନ ଶିକ୍ଷକ ଏହି ସଭାରେ ଅଧ୍ୟକ୍ଷତା କରିବେ। ଏହି ସଭାରେ ସଦସ୍ୟ-ସଂପାଦକଙ୍କୁ ଛାଡି ବାକି ୮ ଜଣ ନିର୍ବାଚିତ ହେବେ। ଏହି ସଭାର ବିବରଣୀ ସ୍କୁଲ ସବ୍‌ଇନ୍‌ସ୍‌ପେକ୍ଟର, ଜିଲ୍ଲା ଶିକ୍ଷାଧିକାରୀ / ଇନ୍‌ସ୍‌ପେକ୍ଟରଙ୍କ ନିକଟକୁ ପଠାଯିବ। ଏହି ପ୍ରକ୍ରିୟା ଯଦି କାର୍ଯ୍ୟକାରୀ ନ ହେଲା ତା' ହେଲେ କ'ଣ କରାଯିବ ସେ ବିଷୟରେ କିଛି ବ୍ୟବସ୍ଥା ନାହିଁ।

ଗ୍ରାମଶିକ୍ଷା କମିଟି ଛମାସ ପରିଚାଳନା ବା ବିକାଶମୂଳକ କାମ ନକଲେ ପ୍ରଧାନ ଶିକ୍ଷକ- ସଂପାଦକ କର୍ତ୍ତୃପକ୍ଷଙ୍କୁ ଜଣାଇବେ ଓ ନୂଆ କମିଟି ଗଠନ କରିବେ। କିନ୍ତୁ କୌଣସି ସଦସ୍ୟ କାମ ନକଲେ ତାଙ୍କୁ ବହିଷ୍କାର କରିବା ପାଇଁ ନିୟମ ନାହିଁ।

ସର୍ବୋପରି କମିଟି କାମ କରୁଛି କି ନାହିଁ ସେ କଥା ଦେଖିବ କିଏ ? ପ୍ରଧାନ ଶିକ୍ଷକ ସଂପାଦକ ହୋଇଥିବାରୁ ସେ ରିପୋର୍ଟ କରିବା ସମ୍ଭାବନା କମ୍। ଯେଉଁ ପରିଦର୍ଶକମାନେ ଦେଖିବାର କଥା ତାଙ୍କର ତ ସମୟ ନାହିଁ। ସବ୍‌ଇନ୍ସପେକ୍ଟରମାନେ ବ୍ଲକ କାମରେ ବ୍ୟସ୍ତ। ସ୍କୁଲ ପରିଦର୍ଶନ କରିବାକୁ ବେଳ କାହିଁ ? ଜିଲ୍ଲା ଶିକ୍ଷାଧିକାରୀ ଓ ଇନ୍ସପେକ୍ଟରମାନେ ହାଇକୋର୍ଟକୁ ଯିବା, ସରକାରୀ କାମ କରିବା, ମକଦ୍ଦମା ବୁଝିବାରେ ଏତେ ବ୍ୟସ୍ତ ଯେ ପରିଦର୍ଶନ କରିବାକୁ ବେଳ ପାଉ ନାହାନ୍ତି। ଏହି ସୁଯୋଗରେ ସ୍କୁଲରେ ପାଠପଢା ହେଉ ନାହିଁ କି ଗ୍ରାମଶିକ୍ଷା କମିଟି କାମ କରୁନାହିଁ। ଅନେକ ହାଇସ୍କୁଲ ଓ ମାଇନର ସ୍କୁଲ ପାଇଁ ଗ୍ରାମଶିକ୍ଷା କମିଟି ଗଠିତ ହୋଇ ନାହିଁ। ଏ ଅବ୍ୟବସ୍ଥା କ'ଣ ସରକାରଙ୍କୁ ଜଣା ନାହିଁ ?

ସରକାରଙ୍କ ଚିଠି ନଂ ୧୯୬୩ / SME ୧୭.୧.୨୦୦୧ ରେ କୁହାଯାଇଛି ଯେ ସ୍କୁଲ S.I, D.I, ଓ C.I ମାନେ ଗ୍ରାମଶିକ୍ଷା କମିଟିର କାମ ପ୍ରତିମାସ ସମୀକ୍ଷା କରି ମାଧ୍ୟମିକ ଓ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକଙ୍କୁ ମାସର ଦ୍ୱିତୀୟ ସପ୍ତାହରେ ରିପୋର୍ଟ୍ କରିବେ। ଏହା ପଢିଲେ ଯେ କୌଣସି ଲୋକ ହସିବ। କାରଣ ଗ୍ରାମଶିକ୍ଷା କମିଟି ପ୍ରତିମାସ ସଭା କରିଛନ୍ତି କି କରି ନାହାନ୍ତି ଏକଥା S.I, D.I ଓ C.I ମାନେ ଜାଣିବେ କେମିତି ? ସମୀକ୍ଷା କରିବେ କ'ଣ ଓ ରିପୋର୍ଟ ଦେବେ କେମିତି ? କେହି କାମ ନ କରି ମଧ୍ୟ ଶିକ୍ଷା ବିଭାଗ ଚାଲିଛି ତ, କେବଳ ଶିକ୍ଷାର ଉନ୍ନତି ହୋଇ ନାହିଁ। ସେଥିପାଇଁ କାହାର ମୁଣ୍ଡ ବ୍ୟଥା କାହିଁକି ହେବ ?

DPEP ର ଯୁଗ୍ମ ନିର୍ଦ୍ଦେଶକ ଡକ୍ଟର ହରିହର ସାହୁଙ୍କ ଆବାହକତ୍ୱରେ ଗୋଟିଏ କମିଟି ଗଢା ଯାଇଥିଲା। ଗ୍ରାମଶିକ୍ଷା କମିଟି ସମ୍ବନ୍ଧରେ ବିଚାର ଆଲୋଚନା କରି ସରକାରଙ୍କୁ ସୁପାରିଶ କରିବା ଏହାର କାମ ଥିଲା। ଏଥିରେ ମାଧ୍ୟମିକ ଶିକ୍ଷା ନିର୍ଦ୍ଦେଶକ ନିରଞ୍ଜନ ଜାଲି ସଭାପତି, ମୁଁ, ସମସ୍ତଙ୍କ ପାଇଁ ଶିକ୍ଷା ପ୍ରକୋଷ୍ଠର ମନସ୍ୱିନୀ ଦାଶ, ଶିକ୍ଷା ବିଭାଗ ଉପସଚିବ ବି.କେ. ମହାନ୍ତି ଓ ଏଲ୍.ଏନ୍. ନାୟକ ଉପସଚିବ ସଦସ୍ୟ ଥିଲେ। ଏହି କମିଟି ଏକ ୧୧ ଜଣିଆ

ଗ୍ରାମ ଶିକ୍ଷା କମିଟି ଗଠନ ପାଇଁ ୨୪ । ୯ । ୧୯୯୯ ତାରିଖରେ ସୁପାରିଶ କରିଥିଲେ। ଏଥିରେ ଗ୍ରାମ ପଞ୍ଚାୟତର ୱାର୍ଡ ମେମ୍ବର - ୧, ଛାତ୍ରଅଭିଭାବକ - ୩ ସେମାନଙ୍କ ମଧ୍ୟରୁ ଜଣେ ମହିଳା, ମହିଳା ସଦସ୍ୟ -୨ ସେମାନଙ୍କ ମଧ୍ୟରୁ ଜଣେ ତଫସିଲଭୁକ୍ତ ଜାତି/ଉପଜାତି, ଜଣେ ସ୍ୱେଚ୍ଛାସେବୀ ସଂଗଠନର ସଦସ୍ୟ। ଦୁଇ ବ୍ୟକ୍ତି ଯାହାଙ୍କର ଶିକ୍ଷା ବିକାଶରେ ଆଗ୍ରହ ଥିବ, ଓ ସଂପୃକ୍ତ ସ୍କୁଲର ପ୍ରଧାନ ଶିକ୍ଷକ - ସଦସ୍ୟ- ସଂପାଦକ । ବହୁ ଆଲୋଚନା ପରେ ଦୁଇଜଣ ଶିକ୍ଷାବିତ୍ ବା ଶିକ୍ଷାରେ ଆଗ୍ରହ ଥିବା ବ୍ୟକ୍ତିଙ୍କୁ ରଖାଯାଇଥିଲା। କାରଣ ସ୍କୁଲର ପ୍ରତିଷ୍ଠାତା ତାମଧ୍ୟରୁ ଜଣେ ହୋଇ ପାରନ୍ତି। ଆଉ ଜଣେ ଯେ ସ୍କୁଲର ବିକାଶରେ ସହାୟକ ହୋଇଥିବେ।

ଏହାପରେ DPEP ର ନିର୍ଦ୍ଦେଶକ ଭାବେ ବିଜୟ ଆରୋର ଯୋଗ ଦେଲେ। ସେ ପୂର୍ବର ସମସ୍ତ ବିଚାର ବିମର୍ଷ, ମିଟିଂ, ରିଜୋଲ୍ୟୁସନ୍ ସବୁ ଫିଙ୍ଗି ଦେଇ ଆନ୍ଧ୍ରପ୍ରଦେଶର ଗ୍ରାମଶିକ୍ଷା କମିଟି ଢାଞ୍ଚାରେ ଏଠାରେ ଗ୍ରାମଶିକ୍ଷା କମିଟି ଗଠନ କରିବାକୁ ସରକାରଙ୍କୁ ପରାମର୍ଶ ଦେଲେ। ସେତେବେଳେ ଶିକ୍ଷା ସଚିବ ଥିଲେ ଅଶୋକ ତ୍ରପାଠୀ। କୌଣସି କାରଣରୁ ବିଜୟ ଆରୋରା ଓ ଅଶୋକ ତ୍ରିପାଠୀଙ୍କ ମଧ୍ୟରେ ଭଲ ସଂପର୍କ ଥିଲା। ଶିକ୍ଷାସଚିବ କିଛି ବିଚାର ନକରି ଉପରୋକ୍ତ ଆଦେଶ ନାମା ଜାରି କରିଦେଲେ। ଯେତେବେଳେ ଗ୍ରାମଶିକ୍ଷା କମିଟି କାମ କଲା ନାହିଁ, ସରକାର ନିଜର ପୂର୍ବ ନିର୍ଦ୍ଦେଶନାମାରେ ପୁର୍ନବିଚାର କଲେ ନାହିଁ। ବର୍ତ୍ତମାନ ସବୁ ଚୁପ୍। ଗ୍ରାମଶିକ୍ଷା କମିଟି ସ୍କୁଲ ମାନଙ୍କରେ ଅଛି କି ନାହିଁ, ଯେଉଁଠି ଅଛି ତାହା କାମ କରୁଛି କି ନାହିଁ କିଛି ବୁଝିବା ଦରକାର ମନେ କରାଯାଉନାହିଁ।

ଏହି ପୃଷ୍ଠଭୂମିରେ ଆମେ "ସିଡା" ସଂଗଠନ ତରଫରୁ କେନ୍ଦ୍ର ବିଦ୍ୟାଳୟ ଓ ଗ୍ରାମବାସୀଙ୍କ ସଂପର୍କ ଉପରେ ଗୋଟିଏ ପ୍ରକଳ୍ପ ପ୍ରସ୍ତୁତ କରି ୟୁନିସେଫ୍‌କୁ ଦେଲୁ। ୟୁନିସେଫ୍ ତାହା ଅନୁମୋଦନ କରି ଆର୍ଥିକ ସହାୟତା ଦେବାକୁ ରାଜି ହେଲେ। ୨୦୦୨ ମସିହା ଡିସେମ୍ବରଠାରୁ ଏହି ପ୍ରକଳ୍ପ କାର୍ଯ୍ୟକାରୀ ହେଲା।

ଏହି ପ୍ରକଳ୍ପ ଆମେ ପରୀକ୍ଷା ମୂଳକ ଭାବରେ ଗୋଷ୍ଠୀ ଓ ବିଦ୍ୟାଳୟର ବିକାଶ ପାଇଁ ପ୍ରସ୍ତୁତ କଲୁ। ଗୋଷ୍ଠୀ ଓ ବିଦ୍ୟାଳୟ ସଂପର୍କକୁ ଯେଉଁମାନେ ସଫଳ ହେବ ବୋଲି ବିଶ୍ୱାସ କରୁ ନଥିଲେ ସେମାନେ ଆଶ୍ଚର୍ଯ୍ୟ ହେଲେ। ଏହି ପରୀକ୍ଷାର ଫଳ ଉତ୍ସାହ ଜନକ ଥିଲା। ଆମର ଧାରଣା ଥିଲା ଯେ ଏହି ପରୀକ୍ଷା

ଯଦି ସଫଳ ହୁଏ ତା' ହେଲେ ସରକାର ଏହି ଆଦର୍ଶରେ ଗ୍ରାମଶିକ୍ଷା କମିଟି ଆଦେଶ ନାମା ବଦଳାଇବେ। ପରୀକ୍ଷା ସଫଳ ହେଲା। କିନ୍ତୁ ସରକାରୀ କଳ ଉପରେ ତା'ର ପ୍ରଭାବ ପଡିଲା ନାହିଁ।

## ୧୫.୩ ଗୋଷ୍ଠୀ ଓ ବିଦ୍ୟାଳୟ ସହଯୋଗ ପ୍ରକଳ୍ପ

ପୁରୀ ଜିଲ୍ଲାର କାକଟପୁର ଓ ଅସ୍ତରଙ୍ଗ ବ୍ଲକ ଅନ୍ତର୍ଗତ ୧୮ ଟି କେନ୍ଦ୍ର ବିଦ୍ୟାଳୟରେ ଏକ ପରୀକ୍ଷା ମୂଳକ ପ୍ରକଳ୍ପ କାର୍ଯ୍ୟକାରୀ କରିବାକୁ ପ୍ରସ୍ତୁତ କରାଗଲା। ପ୍ରସ୍ତାବ କାର୍ଯ୍ୟକାରୀ କରିବା ପୂର୍ବରୁ ନିମାପଡା ଡି.ଆଇ ଅଫିସରେ ଏକ ଆଲୋଚନା ସଭା ଅନୁଷ୍ଠିତ ହୋଇଥିଲା। ଏଥିରେ ପୁରୀ ଶିକ୍ଷାମଣ୍ଡଳ ଇନିସ୍ପେକ୍ଟର ଗଣେଶ ଚନ୍ଦ୍ର ବରାଇ, ନିମାପଡା ଡି.ଆଇ. ଅନିଲ ବିଶ୍ୱାଳ, କାକଟପୁର ଓ ଅସ୍ତରଙ୍ଗ ବ୍ଲକର ସବୁ ସବ୍‌ଇନ୍ସ୍‌ପେକ୍ଟରଙ୍କୁ ନେଇ ପ୍ରାରମ୍ଭିକ ଆଲୋଚନା କରାଯାଇଥିଲା। ତାପରେ କାଟକପୁର ପ୍ରାଥମିକ ସ୍କୁଲରେ ନିମାପଡା ଡି. ଆଇ ଅନିଲ ବିଶ୍ୱାଳ, ସବୁ ସବ୍‌ଇନିସ୍ପେକ୍ଟର ଓ ସଂପୃକ୍ତ ସ୍କୁଲର ପ୍ରଧାନ ଶିକ୍ଷକଙ୍କ ଉପସ୍ଥିତିରେ ସଂପୂର୍ଣ୍ଣ ପ୍ରସ୍ତାବ ବିଷୟରେ ଆଲୋଚନା କରାଯାଇ ପ୍ରକଳ୍ପ ପ୍ରସ୍ତୁତ କରାଯାଇଥିଲା।

କାକଟପୁର ବ୍ଲକର କାକଟପୁର, ସୋମନାଥପୁର , ଗୋପୀକାନ୍ତପୁର, କୁଣ୍ଡେଇ, ବାଙ୍ଗୁରି ଗାଁ , ଯଦୁପୁର, ବାଲିଦୋକାନ ଓ ଅସ୍ତରଙ୍ଗ ବ୍ଲକର ଅସ୍ତରଙ୍ଗ, ଶୁକ ପୋଖରୀ, କଣମଣ, ନଈଗୁଆଁ, ଅଠତିରା , କେନ୍ଦ୍ରାପଟି, ଗଙ୍ଗନାରାୟଣପୁର, ସିଲାରି , ନମାରୋ ଓ ଅମୁଣିଆ ପାଟଣା ପ୍ରାଥମିକ ସ୍କୁଲ ଗୁଡିକ ଏହି ପ୍ରକଳ୍ପରେ ଅନ୍ତର୍ଭୁକ୍ତ ଥିଲେ। ଏହି ପ୍ରକଳ୍ପଟି "ସିଡା" ଆନୁକୂଲ୍ୟରେ ପ୍ରସ୍ତୁତ ହୋଇଥିଲା।

ପ୍ରତ୍ୟେକ ଗ୍ରାମରେ ଗୋଟିଏ ଗୋଟିଏ ଗ୍ରାମ ଉନ୍ନୟନ କମିଟି ଗଠିତ ହୋଇଥିଲା। ଗ୍ରାମ ଉନ୍ନୟନ କମିଟିର ସଦସ୍ୟ ଗ୍ରାମର ଲୋକ ସଂଖ୍ୟା ଉପରେ ନିର୍ଭର କରେ। ଗ୍ରାମର ଲୋକସଂଖ୍ୟା ବେଶି ହେଲେ ଉନ୍ନୟନ କମିଟିର ସଦସ୍ୟ ସଂଖ୍ୟା ଅଧିକ ହେବାର କିଛି ବାଧା ନାହିଁ। ଏହି କମିଟିରେ ଗ୍ରାମଶିକ୍ଷା କମିଟିର ସମସ୍ତ ସଦସ୍ୟ ଅନ୍ତର୍ଭୁକ୍ତ। ଗ୍ରାମଶିକ୍ଷା କମିଟି ସହିତ ଗ୍ରାମ ଉନ୍ନୟନ କମିଟିର ବିରୋଧ ଏଡାଇବା ପାଇଁ ଏହି ବ୍ୟବସ୍ଥା କରାଯାଇଥିଲା। କୌଣସି ଗ୍ରାମବାସୀ ଉନ୍ନୟନ କମିଟିର ସଦସ୍ୟ ହେବାକୁ ଚାହିଁଲେତ ତାଙ୍କୁ ଗ୍ରହଣ କରାଯିବାର ବ୍ୟବସ୍ଥା ରହିଛି।

ପ୍ରତ୍ୟେକ ଗ୍ରାମ ଉନ୍ନୟନ କମିଟି ଏକ ସ୍ୱଳ୍ପ ମିଆଦୀ ଅର୍ଥାତ୍ ମାସିକ ଓ ଦୀର୍ଘ ମିଆଦୀ ଅର୍ଥାତ୍ ବାର୍ଷିକ କାର୍ଯ୍ୟକ୍ରମ ଯୋଜନା ପ୍ରସ୍ତୁତ କରୁଥିଲେ। ଏହି ଯୋଜନା ପ୍ରାଥମିକ ବିଦ୍ୟାଳୟରେ ଓ ଗ୍ରାମର ବାସ୍ତବ ଆବଶ୍ୟକତା ଉପରେ ଆଧାରିତ। ବିଦ୍ୟାଳୟର ସମସ୍ୟା ଓ ଗ୍ରାମର ସମସ୍ୟା ବିଶେଷତଃ ଅର୍ଥନୈତିକ ଅଭିବୃଦ୍ଧି ମହିଳା ଓ ଶିଶୁମାନଙ୍କ ବିକାଶ, ସ୍ୱାସ୍ଥ୍ୟ ଓ ପରିମଳ, ପରିବେଶ, ରାସ୍ତା ଇତ୍ୟାଦିକୁ ଦୃଷ୍ଟିରେ ରଖି ଯୋଜନା ପ୍ରସ୍ତୁତ ହୋଇଥିଲା।

**ଗ୍ରାମ ଉନ୍ନୟନ କମିଟିର ଲକ୍ଷ୍ୟ :**

- ✔ ଗ୍ରାମର ଏକ ସମ୍ବଳକେନ୍ଦ୍ର ଭାବରେ ବିଦ୍ୟାଳୟକୁ ପ୍ରସ୍ତୁତ କରିବା।
- ✔ ବିଦ୍ୟାଳୟ ଓ ବିଦ୍ୟାଳୟ ପରିସରର ଉନ୍ନତି କରିବା।
- ✔ ଆବଶ୍ୟକ ହେଲେ ବିଦ୍ୟାଳୟରେ ସ୍ୱେଚ୍ଛାସେବୀ ଶିକ୍ଷକ ବ୍ୟବସ୍ଥା କରିବା।
- ✔ ଗ୍ରାମରେ ଥିବା କୁଶଳୀ କାରିଗର ଓ ଅଭିଜ୍ଞ ବ୍ୟକ୍ତିମାନଙ୍କର ଯଥା: କୃଷକ, ବଢେଇ, କମାର, ପୋଷ୍ଟମ୍ୟାନ, ବ୍ୟାଙ୍କ କର୍ମଚାରୀ, ଉନ୍ନୟନ ଅଧିକାରୀ, ଇତ୍ୟାଦି ମାନଙ୍କ ସହ ଯୋଗରେ ବିଦ୍ୟାଳୟର ଉନ୍ନତି ସାଧନ କରିବା।
- ✔ ବିଦ୍ୟାଳୟର ଉତ୍ସବ ଓ କାର୍ଯ୍ୟକ୍ରମ ସହିତ ଗ୍ରାମବାସୀ ମାନଙ୍କର ସକ୍ରିୟ ସହଯୋଗ ସ୍ଥାପନ କରିବା।
- ✔ ଗ୍ରାମର ସ୍ୱାସ୍ଥ୍ୟ, ପରିମଳ ଓ ପରିବେଶ ଉନ୍ନତି ପାଇଁ ଗ୍ରାମବାସୀମାନଙ୍କୁ ପ୍ରେରିତ କରିବା।
- ✔ ମହିଳାମାନଙ୍କ ଅର୍ଥନୈତିକ ସଶକ୍ତିକରଣ ଦ୍ୱାରା ପିଲାମାନଙ୍କର ଶିକ୍ଷା ସୁଗମ ହେଉଥିବାରୁ ଗ୍ରାମର ମହିଳା ମାନଙ୍କୁ ସଂଗଠିତ କରି ସେମାନଙ୍କ ଉନ୍ନତିରେ ସହାୟକ ହେବା।
- ✔ ଗ୍ରାମବାସୀମାନଙ୍କୁ ସଂଗଠିତ କରି ଗ୍ରାମର ସର୍ବାଙ୍ଗୀନ ଉନ୍ନତି ସାଧନ କରିବା ।
- ✔ ସରକାରଙ୍କର ବିଭିନ୍ନ ଉନ୍ନୟନ- ଓ ସମାଜ କଲ୍ୟାଣ ବିଭାଗ ସହ ସଂପର୍କ ରଖି ସାହାଯ୍ୟ ପାଇବା ପାଇଁ କାର୍ଯ୍ୟ କରିବା।
- ✔ ଶାରୀରିକ ଓ ମାନସିକ ଅନଗ୍ରସର ପିଲାଙ୍କୁ ବିଦ୍ୟାଳୟକୁ ଆଣିବା ପାଇଁ ଯତ୍ନ କରିବା।
- ✔ ଉନ୍ନୟନ ସଂପର୍କରେ ସମସ୍ତ ବିବରଣୀ ସଂଗ୍ରହ କରି ଯେଉଁ ଗ୍ରାମବାସୀଙ୍କର ଆବଶ୍ୟକତା ପଡିବ ସେମାନଙ୍କୁ ତଥ୍ୟ ଯୋଗାଇବା।

- ✔ ଦୈବୀଦୁର୍ବିପାକର ସମ୍ମୁଖୀନ ହେବା ପାଇଁ ବିଦ୍ୟାଳୟ ଓ ଗ୍ରାମବାସୀଙ୍କର ଦକ୍ଷତା ବୃଦ୍ଧି କରିବା।
- ✔ ଏହି କାର୍ଯ୍ୟକ୍ରମକୁ ପୋଷଣକ୍ଷମ କରିବା ପାଇଁ ବିହିତ ପଦକ୍ଷେପ ନେବା

ଏହି ଲକ୍ଷ୍ୟ ହାସଲ କରିବା ପାଇଁ ଗ୍ରାମ ଉନ୍ନୟନ କମିଟି ଉଦ୍ୟମ କରି କିଛି ସଫଳ ହୋଇଥିଲେ। ତେବେ ଗ୍ରାମ ଉନ୍ନୟନ କମିଟିର ନେତୃତ୍ୱ ଉପରେ କମିଟିର ଦକ୍ଷତା ନିର୍ଭର କରୁଥିଲା।

ଅଠତିରା, ନଣଗୁଆଁ , ସିଲାରୀ, ବାଙ୍ଗୁରିଙ୍ଗା, ଗଙ୍ଗନାରାୟଣପୁର, ଯଦୁପୁର ଆଦି ଗ୍ରାମ ଉନ୍ନୟନ କମିଟିର କାର୍ଯ୍ୟ ଅତ୍ୟନ୍ତ ପ୍ରଶଂସନୀୟ ହୋଇଥିଲା।

ଗୋପୀକାନ୍ତପୁର ପ୍ରାଥମିକ ସ୍କୁଲର ସାମନା ବାଡ ଭାଙ୍ଗି ଗ୍ରାମ ଉନ୍ନୟନ କମିଟି ପକ୍କା ପାଚେରୀ ନିର୍ମାଣ କରିଦେଲେ ଓ ସେଥିରେ ଲୁହା ଫାଟକ ଲଗାଇ ଦେଲେ। ସେ ଗାଁର ସବୁ ପିଲା ସ୍କୁଲରେ ନାମ ଲେଖାଇଲେ ଓ ଦୁଇବର୍ଷ ଭିତରେ ଗୋଟିଏ ବି ପିଲା ପାଠତ୍ୟାଗ କରିନାହିଁ। ସ୍କୁଲ ହତାରେ ନଡିଆ ଗଛ ଲଗାଇ ସେ ଗୁଡିକୁ ବଞ୍ଚାଇ ରଖିବାର ବ୍ୟବସ୍ଥା କରାଯାଇଛି। ସେ ଗାଁର ନେତ୍ରୀ ଝିମାଣି ଦେଇ ଓ ପ୍ରଧାନ ଶିକ୍ଷକଙ୍କ କାର୍ଯ୍ୟ ଯୋଗୁଁ ଏହା ସମ୍ଭବ ହେଲା। ଆମେ କେବଳ ଗ୍ରାମବାସୀଙ୍କୁ ପ୍ରେରିତ କରିଛୁ। କାମ ସେମାନେ କରିଛନ୍ତି। ଲୋକଙ୍କ ମନରେ ଶିକ୍ଷା ପ୍ରତି ଆଗ୍ରହ ବୃଦ୍ଧି ପାଇଛି।

ଗଙ୍ଗନାରାୟଣପୁର ସ୍କୁଲ ସାମନା ବାଡ ଭାଙ୍ଗି ଗ୍ରାମ ଉନ୍ନୟନ କମିଟି ପକ୍କା ପାଚେରୀ ନିର୍ମାଣ କରିଛି। ଗାଁର ସବୁ ପିଲା ସ୍କୁଲରେ ନାମ ଲେଖାଇଛନ୍ତି। ସବୁ ପିଲା ନିୟମିତ ବାବେ ସ୍କୁଲକୁ ଆସିଛନ୍ତି ଓ କେହି ପାଠତ୍ୟାଗ କରି ନାହାନ୍ତି।

ସିଲାରୀ ସ୍କୁଲ ଚାରିପାଖ ହତାବାଡ ଦୃଢ କରାଯାଇଛି। ପ୍ରାୟ ଶହେରୁ ଉର୍ଦ୍ଧ୍ୱ ନଡିଆ ଗଛ ଲଗାଯାଇଛି । ସବୁ ନଡିଆ ଗଛ ବଞ୍ଚି ରହିଛି। ସ୍କୁଲର ପାଠ ପଢାରେ ଉନ୍ନତି ହୋଇଛି। ଗ୍ରାମର ବୟୋବୃଦ୍ଧ ଲୋକମାନ ମଝିରେ ମଝିରେ ସ୍କୁଲକୁ ଆସି କିଛି ସମୟ ବସୁଛନ୍ତି। ଦିନେ ଆମେ ସେଠାରେ ପହଞ୍ଚିଲା ବେଳକୁ ଜଣେ ୮୫ ବର୍ଷର ବୁଢା ସ୍କୁଲରୁ ବାହାରି ଆସୁଥିବାର ଦେଖିଲୁ। ତାଙ୍କୁ ସ୍କୁଲକୁ ଆସିବାର କାରଣ ପଚାରିବାରୁ ସେ କହିଲେ, "ଗାଁ ଲୋକେ ସବୁ ତ କାମକୁ ଚାଲି ଯାଉଛନ୍ତି । ମୁଁ ଘରେ ବସିଥିଲି, ପିଲାଙ୍କ ପାଠପଢା ଦେଖିବାକୁ ଚାଲି ଆସିଲି,"। ଆମ ସ୍କୁଲ ଆମେ ଦେଖିବୁ ନାହିଁ ତ କିଏ ଦେଖିବ" ? ସିଲାରୀ ସ୍କୁଲର ଆଉ ଗୋଟିଏ ଉଦାହରଣ ହେଉଛି ଅସ୍ତରଙ୍ଗ ବି.ଡି.ଓ ଖଣ୍ଡେ ଚିଠି ଦେଲେ। ସ୍କୁଲରେ ଯେ କୌଣସି ସ୍ୱେଚ୍ଛାସେବୀ ସଂସ୍ଥାକୁ ଆମ ଅନୁମତି ବିନା

ମିଟିଂ କରିବାକୁ ଦିଆଯିବ ନାହିଁ। ସିଲାରୀ ଗ୍ରାମ ଉନ୍ନୟନ କମିଟି ସଭାପତି ତାଙ୍କୁ ଉତ୍ତର ଦେଲେ, "ଆମ ସ୍କୁଲରେ ମିଟିଂ କିରବାକୁ ଆମେ କାହାକୁ ଅନୁମତି ଦେବୁ, ସେ କଥା ଆମେ ବିଚାର କରିବୁ। ଆପଣ ସେ ବିଷୟରେ ହସ୍ତକ୍ଷେପ କରିବାକୁ କିଏ?" ଏ ଉତ୍ତର ଦେଖି ଆମେ ଖୁସି ହେଲୁ। କାରଣ ଗ୍ରାମବାସୀମାନେ ସ୍କୁଲକୁ ନିଜର ବୋଲି କହିବାକୁ ଆରମ୍ଭ କଲେଣି।

ଅଠତିରା ଓ ନଈଗୁଆଁର ନେତୃତ୍ୱ ଓ ଲୋକ ସହଯୋଗ ଭଲ। କିନ୍ତୁ ସ୍କୁଲର ସଂପ୍ରସାରଣ ପାଇଁ ବା ଉନ୍ନୟନ କାର୍ଯ୍ୟ ପାଇଁ ସ୍ଥାନାଭାବ। ସୀମିତ ସ୍ଥାନକୁ ସେମାନେ ବେଶ୍ ପରିଷ୍କାର ପରିଚ୍ଛନ୍ନ କରି ରଖିଥିଲେ। ବାଉଁଶ କାଟି ସେଥିରେ ଛନ୍ଦା ଦେଇ ହତାବାଡିଟିକୁ ବେଶ୍ ସୁଦୃଶ୍ୟ କରିପାରିଥିଲେ। ସେ ଦୁଇଟି ଗାଁର ସବୁ ପିଲାଙ୍କର ନାମ ଲେଖା ହୋଇଛି ଓ ପିଲାମାନେ ନିୟମିତ ସ୍କୁଲକୁ ଆସିବାକୁ ଆରମ୍ଭ କରିଥିଲେ।

ବାଙ୍ଗୁରିଗାଁର ପ୍ରଧାନ ଶିକ୍ଷକ ମାଧବ ବାବୁ ଆଦର୍ଶ ସ୍ଥାନୀୟ। ତାଙ୍କ ସ୍କୁଲ ପରିଚାଳନା ଖୁବ୍ ଭଲ। ତାଙ୍କ ସ୍କୁଲ ହତାଟିର ଉନ୍ନତି କରିବା ପାଇଁ ସେ ଏକ ପ୍ରକାଣ୍ଡ ଖାଲ ପୋତାଇ ଦେଇଛନ୍ତି। ସବୁ ପ୍ରକାର ଗଛ ତାଙ୍କ ହତା ଭିତରେ ସୁନ୍ଦର ଦେଖା ଯାଉଥିଲା। ପିଲାମାନେ ନିଜେ ସ୍କୁଲର ବଗିଚା କାମ କରନ୍ତି। ବାଙ୍ଗୁରି ଗାଁର ନେତୃତ୍ୱ ପ୍ରଭାବଶାଳୀ। ଏହା ଏକ ବଡ ଗାଁ ଓ ସ୍କୁଲରେ ବହୁତ ପିଲା। ପିଲାମାନେ ଶୃଙ୍ଖଳିତ ଓ ଉତ୍ତମ ବ୍ୟବହାର ସଂପନ୍ନ। ଗାଁର ଲୋକମାନେ ଶିକ୍ଷା ପ୍ରତି ଆଗ୍ରହୀ। ସେ ଗାଁର ମହିଳାମାନେ ଗାଁର ତଥା ସ୍କୁଲର ଉନ୍ନତି ପାଇଁ କାମ କରିବାକୁ ଆଗେଇ ଆସିଥିବା ଅତ୍ୟନ୍ତ ପ୍ରଶଂସନୀୟ। ଗ୍ରାମସଭାମାନଙ୍କରେ ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀ ଲୋକମାନେ ଅଧିକ ସଂଖ୍ୟାରେ ଯୋଗ ଦିଅନ୍ତି। ସବୁ ଦୃଷ୍ଟିରୁ ବାଙ୍ଗୁରି ଗାଁ ପ୍ରାଥମିକ ସ୍କୁଲ ଆଦର୍ଶ ସ୍ଥାନୀୟ।

କୁଣ୍ଡେଇ ସ୍କୁଲର ପ୍ରଧାନ ଶିକ୍ଷକଙ୍କ ଅବସର ଗ୍ରହଣ ପରେ ଯେଉଁ ମହିଳା ପ୍ରଧାନ ଶିକ୍ଷୟିତ୍ରୀ ଦାୟିତ୍ୱ ନେଲେ ତାଙ୍କର ସ୍କୁଲ ପାଇଁ କାର୍ଯ୍ୟ ଅତ୍ୟନ୍ତ ପ୍ରଶଂସନୀୟ। ସ୍କୁଲ ପାଚେରୀର ଉଚ୍ଚତା ପ୍ରାୟ ଦେଢଫୁଟ ବଢାଇବାର ବ୍ୟବସ୍ଥା ସେ ଗ୍ରାମବାସୀମାନଙ୍କ ସହଯୋଗରେ କରି ପାରିଥିଲେ। ସ୍କୁଲର ଉନ୍ନୟନ ଧାରାକୁ ଅବ୍ୟାହତ ରଖିବାକୁ ସେ ଉଦ୍ୟମ କରିଥିଲେ। ନମାରୋ ଗ୍ରାମର ଜଣେ ଗ୍ରାମବାସୀଙ୍କ ଆଦର୍ଶ କାର୍ଯ୍ୟ ଶିକ୍ଷକ ତଥା ଗ୍ରାମବାସୀଙ୍କୁ ଉଦ୍‌ବୁଦ୍ଧ କରିଥିଲା। ସେ ଏକୁଟିଆ ସ୍କୁଲ ହତାରେ ଥିବା ଏକ ପ୍ରକାଣ୍ଡ କୁଦକୁ ହାଣି ଉଠାଇ ଦେଇଥିଲେ। ପ୍ରକଳ୍ପ ଅନ୍ତର୍ଗତ ୧୮ ଟି ଯାକ ସ୍କୁଲର ଉନ୍ନତି ବେଶ ଆଖିଦୃଶିଆ ହୋଇଥିଲା। ପ୍ରତ୍ୟେକ ଗ୍ରାମର ଲୋକେ ସ୍କୁଲ ପାଇଁ କାମ କରିବାକୁ ଆଗଭର

ହୋଇଥିବା ଓ ସ୍କୁଲର ଉନ୍ନତି ସାଧନ କରିଥିବା ଏକ ସନ୍ତୋଷଜନକ ଘଟଣା।

ଗ୍ରାମବାସୀମାନଙ୍କୁ ପ୍ରେରିତ କଲେ ସେମାନେ ସ୍ୱତଃପ୍ରବୃତ୍ତ ହୋଇ ସ୍କୁଲ ସହିତ ସହଯୋଗ କରିବେ ଏଥିରେ ସନ୍ଦେହ ନାହିଁ। ଏହି ପ୍ରେରଣାର ଅଭାବ ପ୍ରାୟ ଅଧିକାଂଶ ସ୍କୁଲ କ୍ଷେତ୍ରରେ ସତ୍ୟ। ଆମମାନଙ୍କର ପ୍ରାୟ ପ୍ରତି ସପ୍ତାହରେ ସ୍କୁଲ କାମରେ ଯୋଗଦାନ ଗ୍ରାମବାସୀମାନଙ୍କୁ ଅଧିକ ପ୍ରୋତ୍ସାହିତ କରିଥିଲା।

ପ୍ରାୟ ଦୁଇ ତିନି ବର୍ଷ ମଧ୍ୟରେ ପ୍ରତ୍ୟେକ ପ୍ରକଳ୍ପ ଅନ୍ତର୍ଗତ ସ୍କୁଲ ଆର୍ଥିକ ଦୃଷ୍ଟିରୁ ଆତ୍ମ ନିର୍ଭରଶୀଳ ହୋଇ ପାରିବେ ବୋଲି ଆମର ବିଶ୍ୱାସ। କାରଣ ଅଠତିରାକୁ ଛାଡି ବାକି ସବୁ ସ୍କୁଲ ହତାରେ ନଡିଆ ଗଛ ଲଗାଯାଇଛି ଓ ୪। ୫ ବର୍ଷ ମଧ୍ୟରେ ଗଛ ସବୁ ଫଳିଲେ ଆର୍ଥିକ ଅଭାବ ରହିବ ନାହିଁ।

ଆମମାନଙ୍କ ମନରେ ଏତିକି ସନ୍ତୋଷ ଯେ ପ୍ରକଳ୍ପ ଅନ୍ତର୍ଗତ ସବୁ ସ୍କୁଲ ଗୁଡିକ ଓ ଗାଁ ଗୁଡିକ ଶିକ୍ଷା ଓ ସ୍ୱାସ୍ଥ୍ୟ ବିଷୟରେ ବେଶ୍ ସଚେତନ ହୋଇ ପାରିଛନ୍ତି।

ପ୍ରକଳ୍ପ କାର୍ଯ୍ୟ ଚାଲିବାର ଦେଢ ବର୍ଷ ଭିତରେ ମୂଲ୍ୟାଙ୍କନ କରିବାକୁ କେହି ଆସିଲେ ନାହିଁ। ଶେଷରେ ୟୁନିସେଫ୍‌ର ଲଳିତା ପଟ୍ଟନାୟକ, ଅମରଜିତ୍ , SCERT ର ତାପସ ନାୟକ ଓ ଆମ ଅନୁଷ୍ଠାନର କାଳିଦତ୍ତ ଦାଶ ଓ ମୁଁ ଦୁଇ ଦଳରେ ବିଭକ୍ତ ହୋଇ ମଧ୍ୟବର୍ତ୍ତୀ ମୂଲ୍ୟାଙ୍କନ ପାଇଁ ଯାଇଥିଲୁ। ମୁଁ ଯେଉଁ ଦଳରେ ଥିଲି ସେ ଦଳରେ ଲଳିତା ପଟ୍ଟନାୟକ ଯାଇଥିଲେ। ଆମେ ପ୍ରଥମେ ଗୋପୀକାନ୍ତପୁର ଗଲୁ। ପ୍ରଥମରୁ ଲଳିତା ପଟ୍ଟନାୟକ ଲୋକଙ୍କୁ କହିଲେ, ଆପଣ ମାନେ ତ ସବୁ ଆଗରୁ କରିଥିଲେ। "ସିଡା" ଅଧିକ କ'ଣ କଲା ? ଲୋକେ ଏ କଥାର ପ୍ରକୃତ ଉଦ୍ଦେଶ୍ୟ ଧରି ପାରିଲେ ନାହିଁ। ସେମାନେ କହିଲେ ଆମେ ସବୁ ଆଗରୁ କରୁଥିଲୁ। ମୁଁ ତାଙ୍କୁ କହିଲି, ସ୍କୁଲର ପକ୍କା ପାଚେରୀ ଆଗରୁ ଥିଲା ? ଲୁହା ଫାଟକ ଆଗରୁ ଥିଲା ନା ଆମେ ଆସିଲା ପରେ ଏ ସବୁ ହୋଇଛି ? ଝିମାଣୀ ଦେଇଙ୍କ ବ୍ୟତୀତ ଆପଣମାନେ କେହି ଏଠି ପାଦ ପକାଉଥିଲେ ? ଏ ସବୁର ଉତ୍ତର ନାଁ ଆସିଲା। ଲଳିତା ପଟ୍ଟନାୟକ ଯେଉଁ ଉଦ୍ଦେଶ୍ୟରେ Leading Question ପଚାରି ଥିଲେ ତାହା ବିଫଳ ହୋଇଗଲା।

ତାପରେ ଆମେ କୁଣ୍ଡେଇ ସ୍କୁଲକୁ ଗଲୁ। ସେଠାରେ ମଧ୍ୟ ଲଳିତା ପଟ୍ଟନାୟକ ସେହି ପ୍ରକାର ପ୍ରଶ୍ନ ପଚାରିଲେ। ସେଠାରେ ଯେଉଁ ମହିଳା ପ୍ରଧାନ ଶିକ୍ଷୟତ୍ରୀ ଥିଲେ ସେ ସିଧା କହିଲେ, ଆମର ଯାହା ଉନ୍ନତି ହୋଇଛି "ସିଡା" ଏଠାକୁ ଆସିଲା ପରେ । ବାଙ୍ଗୁରି ଗାଁରେ ସେ ସେହି କୌଶଳ ପ୍ରୟୋଗ କରି

କହିଲେ "ସିଡା" ଏଠାରେ ବିଶେଷ କିଛି କରି ନାହିଁ। ପ୍ରଧାନ ଶିକ୍ଷକ ମାଧବା ନନ୍ଦ ବାବୁ କହିଲେ, "ସିଡା" ର ବାବୁମାନେ ଆସିବାପରେ ସ୍କୁଲର ଓ ଗାଁର ଉନ୍ନତି ହୋଇଛି। ଶିକ୍ଷା ସଚେତନତା ବୃଦ୍ଧି ପାଇଛି। ପିଲାମାନେ ଉତ୍ସାହିତ ହୋଇ ଗଛ ଲଗାଇବା, ବଗିଚା କାମ କରିବା ଆଦିରେ ନିୟୋଜିତ ହୋଇଛନ୍ତି। ଗାଁ ଲୋକମାନେ କେହି ଆଗରୁ ସ୍କୁଲରେ ପାଦ ପକାଉ ନଥିଲେ- ଏବେ ପ୍ରତି ଦିନ ଗାଁ ଲୋକଙ୍କ ଧାଡି ଲାଗିଛି। ଗାଁର ମହିଳାମାନେ ଅଧିକ ସକ୍ରିୟ ହୋଇଛନ୍ତି। ଯେଉଁ ମହିଳାମାନେ ଆସିଥିଲେ ସେମାନେ ନାନା ପ୍ରକାର ପ୍ରଶ୍ନ ପଚାରି ଲଳିତା ପଟ୍ଟନାୟକଙ୍କୁ ଅସ୍ତବ୍ୟସ୍ତ କରିଦେଲେ। ସେଠାରୁ ଆମେ କାକଟପୁର ଫେରିଲୁ।

ଦ୍ୱିତୀୟ ଦଳ ଯେଉଁମାନେ ଗଙ୍ଗନାରାୟଣପୁର, ସିଲାରୀ ଯାଇଥିଲେ ସେମାନେ ମୂଲ୍ୟାୟନରେ ବେଶ୍ ସନ୍ତୁଷ୍ଟ ଥିଲେ। ସେମାନେ ମଧ ଗ୍ରାମ ଉନ୍ନୟନ ଓ ଶିକ୍ଷାନୁଷ୍ଠାନ ଉନ୍ନୟନର ପ୍ରମାଣ ପାଇଲେ।

ଶେଷରେ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ମଧୁସୂଦନ ପାଢୀଙ୍କୁ ନେଇ ଅଠତିରା ଓ ନଈଗୁଆଁ ସ୍କୁଲକୁ ମୂଲ୍ୟାୟନକାରୀ ଦଳ ଯାଇଥିଲେ। ସେଠାରେ ମଧ ଲଳିତା ପଟ୍ଟନାୟକ ସେଇ ଏକା କୌଶଳ ପ୍ରୟୋଗ କଲେ। ସରଳ ଗ୍ରାମବାସୀମାନେ ତାଙ୍କ କୌଶଳ ବୁଝିବାକୁ ଅକ୍ଷମ ହେଲେ।

ୟୁନିସେଫ୍‌ର ଲଳିତା ପଟ୍ଟନାୟକ ପ୍ରକଳ୍ପ ବନ୍ଦ କରିଦେବାକୁ ପୂର୍ବରୁ ମନସ୍ଥ କରି ମୂଲ୍ୟାୟନ କରିବାକୁ ଯାଇଥିଲେ। ସେଥିରେ ବିଫଳ ହେବାରୁ ସେ ମିଥ୍ୟାର ଆଶ୍ରୟ ନେଇ କହିଲେ, "ମୂଲ୍ୟାୟନକାରୀମାନେ ପ୍ରକଳ୍ପ କାମରେ ସନ୍ତୁଷ୍ଟ ନୁହନ୍ତି। ତେଣୁ ପ୍ରକଳ୍ପ ବନ୍ଦ କରି ଦିଆଗଲା।" ଆମେ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ମଧୁସୂଦନ ପାଢୀଙ୍କୁ ପଚାରିଲୁ । ଆପଣ ପ୍ରକଳ୍ପ କାମରେ ଅସନ୍ତୋଷ ପ୍ରକାଶ କରି ଚିଠି ଲେଖିଛନ୍ତି କି ? ସେ ମନା କଲେ। ଅନ୍ୟମାନେ ମଧ ମନା କଲେ। ଆମେ ଜାଣିଲୁ ପ୍ରକଳ୍ପ ବନ୍ଦ କରିବା ପାଇଁ ଏହି ଛଲ୍ ଲଳିତା ପଟ୍ଟନାୟକ ଖେଳିଛନ୍ତି।

କେନ୍ଦ୍ର ବିଦ୍ୟାଳୟ ଓ ଗୋଷ୍ଠୀ ସଂପର୍କ ଉପରେ ହୋଇଥିବା କାକଟପୁର ପରୀକ୍ଷାମୂଳକ ପ୍ରକଳ୍ପ ଏକ ସ୍ୱତନ୍ତ୍ର ନମୁନା ଭାବେ ସରକାରଙ୍କ ଆଗରେ ରଖାଯାଇଛି। ସରକାର ଏ ନମୁନା ପ୍ରତି ଦୃଷ୍ଟି ଦେବାକୁ ପ୍ରସ୍ତୁତ ନୁହନ୍ତି। କାରଣ କୌଣସି ମତେ ସରକାରୀ ସଂସ୍ଥା ଚଲୁ ରଖିବା ସରକାରଙ୍କର ଲକ୍ଷ୍ୟ। ଶିକ୍ଷାର ଉନ୍ନତି ବିଷୟରେ ବିଗତ ୧୫ ବର୍ଷ ମଧରେ କୋଣସି ସରକାରୀ କର୍ମକର୍ତ୍ତା ଚିନ୍ତା କରିଥିବାର ଆମକୁ ଜଣାନାହିଁ।



## ଷୋଡଶ ଅଧ୍ୟାୟ

# ଉପସଂହାର

ସୁଦୀର୍ଘ ଜୀବନର କର୍ମପଥରେ ଯେତେବେଳେ ଯାହା କରିବାର କଥା ତାହା କରିଛି । ବିବେକାନୁମୋଦିତ କାର୍ଯ୍ୟ କରି ଅନେକ ସମୟରେ ଉପରିସ୍ଥ ହାକିମଙ୍କର ରୋଷର ଶିକାର ହୋଇଛି । କିନ୍ତୁ କର୍ତ୍ତବ୍ୟ ପଥରୁ ବିଚ୍ୟୁତ ହୋଇନାହିଁ । ଜୀବନରେ ବହୁ ଚରିତ୍ରର ସଂସ୍ପର୍ଶରେ ଆସିଛି ଓ ବହୁତିକ୍ତ ଅଭିଜ୍ଞତା ପାଇଛି ।

ଯେଉଁ ଚରିତ୍ରମାନଙ୍କର ମୁଁ ଶରବ୍ୟ ହୋଇଛି ତା ମଧ୍ୟରୁ ପ୍ରଥମ ହେଉଛନ୍ତି ଗୌରୀଶ୍ୟାମ ମହାନ୍ତି । ରଜା ମିଜାଜ୍‌ର ଲୋକ । ପାଖରେ ସବୁବେଳେ ଖୋସାମତିଆ ଦରକାର ହାଁ ଜୀ କହିବା ପାଇଁ । ହାଁଜୀ ନ କହିଲେ ଅବସ୍ଥା ଅସମ୍ଭାଳ । ମୁଁ ଭଦ୍ରକରେ ସ୍କୁଲ ସବ୍‌ଇନିସ୍ପେକ୍ଟର ଭାବରେ ଯୋଗ ଦେବାର ତିନିଦିନ ପରେ ସେ ବାଲେଶ୍ୱର-ମୟୂରଭଞ୍ଜ-କେଉଁଝର ଶିକ୍ଷାମଣ୍ଡଳ ଇନିସ୍ପେକ୍ଟର ଭାବରେ ଯୋଗ ଦେଲେ । ସେ ରାଧାନାଥ ଟ୍ରେନିଂ କଲେଜରେ ମୋର ଶିକ୍ଷକ, କିନ୍ତୁ ଏଠାରେ ହାକିମ । ସେ ଥରେ ଗସ୍ତରେ ଭଦ୍ରକ ଆସି ମୋତେ ଡକାଇଲେ। ମୋର ଟିକିଏ ବିଳମ୍ବ ହେବାରୁ ମୋତେ ଗାଳି ଦେଲେ । ମୁଁ କହିଲି, "ମୁଁ ଆଉ ସବ୍‌ଇନିସ୍ପେକ୍ଟର ଚାକିରି କରିବି ନାହିଁ । ପାଠପଢି ଏମ୍ ଏ. ପରୀକ୍ଷା ଦେବି ଓ ଅଧ୍ୟାପକ ହେବି । ପଢାପଢି କରି ଏମ୍.ଏ ପରୀକ୍ଷା ଦେବା ପାଇଁ ଛୁଟି ଦରଖାସ୍ତ କଲି । ବାରିପଦା ସବ୍‌ଇନିସ୍ପେକ୍ଟର ବିଷ୍ଣୁ ମିଶ୍ରଙ୍କୁ ସେ ତିନି ମାସ ଛୁଟି ଦେଲେ କିନ୍ତୁ ମୋତେ ଦେଲେ ୨୪ ଦିନ । ଯେଉଁଦିନ ପରୀକ୍ଷା ଫଳ ବାହାରିଲା ସେ ମୋ ଉପରେ ଭୟଙ୍କର ରାଗିଲେ । ସେ ଭାବିଥିଲେ ମୁଁ ଫେଲ୍ ହେବି, ନଚେତ୍ ଥାର୍ଡ ଡିଭିଜନ୍ ପାଇବି । କିନ୍ତୁ ସେ ଖବର କାଗଜରୁ ଯେତେବେଳେ ଦେଖିଲେ ମୁଁ ପ୍ରଥମ ସ୍ଥାନ ଅଧିକାର କରିଛି ରାଗିଲେ । ଯେତେବେଳେ ମୁଁ ଓଡିଶା ଲୋକସେବା ଆୟୋଗକୁ ଅଧ୍ୟାପକ ଚାକିରି ପାଇଁ ଦରଖାସ୍ତ ଦେଲି, ମୋତେ ଥଟ୍ଟା କଲେ । କହିଲେ, ଦଶ ପନ୍ଦର ଥର ଚେଷ୍ଟା କର । ମୋର ପ୍ରଥମ ସାକ୍ଷାତକାରରେ ଅଧ୍ୟାପକ ଚାକିରୀ ହୋଇଗଲା ବେଳକୁ ସେ ଆଉ ଇନିସ୍ପେକ୍ଟର

ନ ଥିଲେ । ତାଙ୍କ କାର୍ଯ୍ୟରେ ଅସନ୍ତୁଷ୍ଟ ହୋଇ ସରକାର ଦଣ୍ଡ ସ୍ୱରୂପ ସମ୍ବଲପୁର ଟ୍ରେନିଂ କଲେଜରେ ପ୍ରିନ୍ସିପାଲ୍ କରି ପଠାଇ ଦେଲେ । ଶେଷରେ ତାଙ୍କୁ ମାଧ୍ୟମିକ ଶିକ୍ଷା ବୋର୍ଡକୁ ଉପସଭାପତି କରି ପଠାଇ ଦିଆଗଲା ଓ ସେଠାରୁ ବାଧ୍ୟତାମୂଳକ ଅବସର ଦିଆଗଲା ।

ଦ୍ୱିତୀୟ ଚରିତ୍ର ହେଉଛନ୍ତି ବିବେକାନନ୍ଦ ପତି । ତାଙ୍କର ଅଦ୍ଭୁତ ନୀତି । ସମସ୍ତଙ୍କର ଦୁର୍ବଳତା ଖୋଜିବା ତାଙ୍କର ପ୍ରଧାନ ପ୍ରଶାସନିକ କାମ । ଯେ ଦୁର୍ବଳ ନ ହେଲା ତା ଉପରେ ରାଗ । ୧୯୭୫ ମସିହାରେ ମୋତେ ଅନୁଗୁଳ ଟ୍ରେନିଂ କଲେଜରୁ ବଦଳି କରିବା ପାଇଁ ତାଙ୍କର ସମସ୍ତ ଶକ୍ତି ଓ ସାଧନ ଲଗାଇ ମଧ୍ୟ ବଦଳି କରିପାରିଲେ ନାହିଁ । ତେଣୁ ମୋ ଉପରେ ରାଗ । ନିଜର ଅକ୍ଷମତା ପାଇଁ ଅନ୍ୟ ଉପରେ ରାଗିବା ତାଙ୍କର ସାଧାରଣ ଲକ୍ଷଣ ।

ତୃତୀୟ ଚରିତ୍ର ହେଉଛନ୍ତି କେ.ଶିବରାମ ସେଶେୟା ପଟ୍ଟନାୟକ । ବହୁ ଲୋକଙ୍କ ମୁଣ୍ଡରେ ପାଦ ରଖି ସେ ଉପରକୁ ଉଠିବା ଲୋକ । ଅନ୍ୟମାନଙ୍କ ବିରୁଦ୍ଧରେ ଖଚ, ମିଛ କହି କ୍ଷତି ଘଟାଇବା ତାଙ୍କର ମୁଖ୍ୟ କାର୍ଯ୍ୟ । ତେଲେଙ୍ଗା ଅଫିସରଙ୍କ ପାଖରେ ତାଙ୍କ ନାମ ସେଶେୟା । ଓଡ଼ିଆ ଅଫିସରଙ୍କ ପାଖରେ ଶିବରାମ । ରଙ୍ଗ ବଦଳାଇବାରେ ସେ ଧୁରନ୍ଧର । ମୋ ବିରୁଦ୍ଧରେ ଡି.ପି.ଆଇ ବୈଦ୍ୟନାଥ ରଥ ଓ ଅନ୍ୟ ଅଫିସରଙ୍କୁ କହି ନିଜ ସ୍ୱାର୍ଥ ହାସଲ କରିବା ଓ ପ୍ରମୋଶନ ପାଇବା ତାଙ୍କ ଜୀବନରେ ବଡ ଉପଲବ୍ଧି । କିନ୍ତୁ ଦକ୍ଷତା ଅଭାବରୁ ଶେଷ ସ୍ତରରେ ସେ ବିଫଳ ହେଲେ । ଖଚ ମିଛ କହି ଉପରକୁ ଯାଇ ହେବ । କିନ୍ତୁ ଦକ୍ଷତା ନ ଥିଲେ ନିଜକୁ ପ୍ରତିଷ୍ଠିତ କରିବା ସମ୍ଭବ ନୁହେଁ । ତାଙ୍କଠାରୁ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଚାର୍ଜ ନେବାବେଳେ ମୋର ଧାରଣା ହେଲା ଜୀବନଯାକ ସେ ମୋ ବିରୁଦ୍ଧରେ କାର୍ଯ୍ୟକରି , ଖଚ ମିଛ କହି ଉପରକୁ ଉଠିଗଲେ ସିନା ଦକ୍ଷତା ନ ଥିବାରୁ ପ୍ରତିଷ୍ଠିତ ହୋଇ ପାରିଲେ ନାହିଁ । ଶେଷରେ ମୋତେ ତାଙ୍କଠାରୁ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଦାୟିତ୍ୱ ନେବାକୁ ପଡିଲା ।

ଅନେକ ସମୟରେ ପ୍ରଶାସନିକ ଅଫିସରମାନେ ଗୋଳମାଳିଆ ଜାଗାକୁ ନ ଯାଇ ଶୁଣାକଥା ଉପରେ କାର୍ଯ୍ୟାନୁଷ୍ଠାନ କରନ୍ତି । ଫଳରେ ତାଙ୍କ ନିଷ୍ପତ୍ତି ଭୁଲ୍ ହୋଇଯାଏ । ସେମାନେ ଘଟଣାସ୍ଥଳକୁ ନ ଯିବାର ଦୁଇଟି କାରଣ ଥାଏ (୧) ଭୟ ଓ (୨) ଆଳସ୍ୟ । ନିର୍ଭୀକ ଭାବରେ ପରିସ୍ଥିତିର ସମ୍ମୁଖୀନ ହେଲେ ସମସ୍ୟା ସମାଧାନ ସମ୍ଭବ । ନଚେତ୍ ନାହିଁ । ମୋର କଣାସ ହାଇସ୍କୁଲ ଓ ଗଡବାଣୀ-କିଲୋ ହାଇସ୍କୁଲ ଅଭିଜ୍ଞତାରୁ ଏ କଥା ସ୍ପଷ୍ଟ ହୋଇ ଯାଇଥିଲା ।

ସମସ୍ୟାକୁ ବିଶ୍ଳେଷଣ ନ କରି, ସମସ୍ୟାର ତର୍ଜମା ନ କରି ସମାଧାନ ପନ୍ଥା ବାହାର କରିବାକୁ ଚେଷ୍ଟା କଲେ ଭୁଲ୍ ହୋଇଯିବାର ସମ୍ଭାବନା ଅଧିକ । ମହାଭାରତରେ ସପ୍ତରଥୀ ମିଳି ଅଭିମନ୍ୟୁ ବଧ କଲା ପରି ଗୋବିନ୍ଦପୁର ହାଇସ୍କୁଲରେ ପଞ୍ଚରଥୀ -ସହକାରୀ ଶିକ୍ଷକ, ପରିଚାଳନା ସମିତି, ଗ୍ରାମବାସୀ, ଛାତ୍ରଛାତ୍ରୀ ଓ ସରପଞ୍ଚ ମିଶି ହେଡମାଷ୍ଟର ତ୍ରିନାଥ ରଥଙ୍କୁ ହତ୍ୟା କରିବା ପାଇଁ ବ୍ୟୁହ ରଚନା କରିଥିଲେ । ତାଙ୍କ ଚାକିରି ଏକ ପ୍ରକାର ଚାଲି ଯାଇଥିଲା । ସେହିପରି ନିର୍ଦ୍ଦୋଷ ଭାପୁର ପୁରୁଣା କିରାଣିକୁ ବାହାର କରି ନୂଆ କିରାଣି ରଖିବାକୁ ପ୍ରଧାନ ଶିକ୍ଷକଙ୍କଠାରୁ ଆରମ୍ଭ କରି ଇନିସ୍ପେକ୍ଟର ଅଫିସ ଲୋକମାନେ ଉଦ୍ୟମ କରିଥିଲେ । ନୂଆ କିରାଣି ଲାଞ୍ଚ ଦେଇ ସମସ୍ତଙ୍କୁ ହାତ କରି ନେଇଥିଲା । ସେ ସମସ୍ୟାର ତର୍ଜମା କରି ସତ୍ୟ ଉଦ୍‌ଘାଟନ ନ କରି ପାରିଥିଲେ ପୁରୁଣା କିରାଣିଟି ତା' ଚାକିରି ହରାଇଥାନ୍ତା । ଏଥିପାଇଁ ପ୍ରଶାସକଙ୍କର ତୃତୀୟ ନୟନ ଆବଶ୍ୟକ । ପଲ୍ଲବଗ୍ରାହୀ ହୋଇ ଶାସନ କଲେ ନ୍ୟାୟ ପ୍ରତିଷ୍ଠା ସମ୍ଭବ ନୁହେଁ । ଯେତେ ସମସ୍ୟାର ମୁଁ ସମ୍ମୁଖୀନ ହୋଇଛି ସବୁଗୁଡିକ ଠିକ୍ ଭାବେ ସମାଧାନ କରିଛି ବୋଲି ମୋର ବିଶ୍ୱାସ ।

ଶିକ୍ଷା ବିଭାଗର ସବୁ ଉପ-ବିଭାଗରେ ମୁଁ କାମ କରିଛି । କିନ୍ତୁ ଅଧିକ କାମ କରିଛି ପ୍ରାଥମିକ ଶିକ୍ଷା କ୍ଷେତ୍ରରେ । ମୋର କାର୍ଯ୍ୟକ୍ଷେତ୍ର ଥିଲା ପ୍ରାଥମିକ ଶିକ୍ଷା କିନ୍ତୁ ଚାକିରିକାଳ ମଧ୍ୟରେ ମୋର ଅଭିଜ୍ଞତା ଓ ଅନୁଭବର ଉପଯୋଗ ହୋଇପାରିଲା ନାହିଁ । ପ୍ରାଥମିକ ଶିକ୍ଷା ସବ୍‌ଇନିସ୍ପେକ୍ଟର, ଇନିସ୍ପେକ୍ଟର, ଉପ ନିର୍ଦ୍ଦେଶକ ଭାବରେ ଅସଜଡା ଅଫିସକୁ ସଜାଡିବାରେ ଲାଗିଲି । ପ୍ରାଥମିକ ଶିକ୍ଷକଙ୍କ ବକେୟା ଦରମା ପ୍ରଦାନ, ପ୍ରତି ବ୍ଲକ୍‌ର ଆର୍ଥିକ ଆବଶ୍ୟକତା ନିର୍ଦ୍ଧାରଣ, ଜାତୀୟ ଶିକ୍ଷାନୀତି ପାଇଁ ବିତର୍କର ସମୀକରଣ କାର୍ଯ୍ୟରେ ସମୟ କଟିଗଲା । ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଭାବରେ ମୋର କାର୍ଯ୍ୟକାଳ ସୀମିତ ସାଢେ ସାତମାସ । ସେ ସମୟରେ ଶିକ୍ଷାକର୍ମୀ ଯୋଜନା କାର୍ଯ୍ୟକାରୀ କରିବାପାଇଁ ନିୟମ ପ୍ରଣୟନ, ୧୩୦୦୦ ଶିକ୍ଷାକର୍ମୀ ନିଯୁକ୍ତି, Education in Orissa, ପୁସ୍ତିକା ପ୍ରକାଶନ, ପଞ୍ଚମ ଶିକ୍ଷା ସର୍ଭେର ପ୍ରାଥମିକ ଶିକ୍ଷା ସହ ସଂପୃକ୍ତ ତଥ୍ୟ ଏକତ୍ରୀକରଣ ଓ ପ୍ରକାଶନ, ଉଚ୍ଚ ପ୍ରାଥମିକ ବୃତ୍ତି ପରୀକ୍ଷା ପ୍ରଶ୍ନପତ୍ର ସଂସ୍କାର, ଆଠଗୋଟି ନୂତନ ଶିକ୍ଷା ଜିଲ୍ଲା ସୃଷ୍ଟି ଓ ପ୍ରାଥମିକ ଓ ମଧ୍ୟ ଇଂରାଜି ସ୍କୁଲ ଶିକ୍ଷକମାନଙ୍କୁ ସରକାରୀ କରଣରେ ମୋର କାର୍ଯ୍ୟକାଳ ଶେଷ ହୋଇଗଲା । ପ୍ରାଥମିକ ଶିକ୍ଷାର ଗୁଣାତ୍ମକ ଉନ୍ନତି ପାଇଁ କିଛି କରି ପାରିଲି ନାହିଁ । ସେଥପାଇଁ ମନରେ ଅବଶୋଷ ରହିଗଲା ।

ମୁଁ ଇନିସ୍ପେକ୍ଟର, ପ୍ରାଥମିକ ଶିକ୍ଷା ଉପ ନିର୍ଦ୍ଦେଶକ ଓ ନିର୍ଦ୍ଦେଶକ ଥିବା ସମୟରେ ଓଡିଶା ସରକାର ଆର୍ଥିକ ଦୁର୍ଗତିର ସମ୍ମୁଖୀନ ହୋଇଥିଲେ । ପରବର୍ତ୍ତୀ କାଳରେ ଯେପରି DPEP, EFA, ଓ ସର୍ବଶିକ୍ଷା ଅଭିଯାନ ଆଦି ବୃହତ ପ୍ରକଳ୍ପ, କାର୍ଯ୍ୟକାରୀ ହେଲା ଓ ହଜାର ହଜାର କୋଟି ଟଙ୍କା ବ୍ୟୟିତ ହେଲା ସେତେବେଳେ ତାହା ସ୍ୱପ୍ନ ଥିଲା । ଏ ପ୍ରକାର କୌଣସି ପ୍ରକଳ୍ପ ମିଳିଥିଲେ ଶିକ୍ଷାର ଚେହେରା ଅନ୍ୟ ପ୍ରକାର ହୋଇଥାନ୍ତା । ବାସ୍ତବ କ୍ଷେତ୍ରରେ ୧୯୯୦ ମସିହା ମାର୍ଚ୍ଚ ମାସ ଥାଇଲାଣ୍ଡର ଜୋମ୍‌ଟିଏନ୍‌ଠାରେ ଅନୁଷ୍ଠିତ ବିଶ୍ୱ ସମ୍ମିଳନୀ ପ୍ରାଥମିକ ଶିକ୍ଷାର ଭାଗ୍ୟ ବଦଳାଇ ଦେଲା । ସେତେବେଳକୁ ମୋର ଚାକିରି ଶେଷ ହୋଇ ଯାଇଥିଲା ।

ଅବସର ନେବାପରେ ସମସ୍ତଙ୍କ ପାଇଁ ଶିକ୍ଷା ପ୍ରକଳ୍ପରେ କାମ କଲି । ଗୋଷ୍ଠୀ ପରିଚାଳନାରେ ପ୍ରାଥମିକ ଶିକ୍ଷା ସମ୍ବନ୍ଧରେ ଏକ ପରୀକ୍ଷାମୂଳକ ପ୍ରକଳ୍ପ କାକଟପୁର ଓ ଅସ୍ତରଙ୍ଗ ବ୍ଲକ୍‌ରେ କାର୍ଯ୍ୟକାରୀ କଲୁ । ତା'ର ଫଳାଫଳ ଖୁବ୍ ଚମତ୍କାର ହୋଇଥିଲେ ମଧ୍ୟ ଆମ କଥା ସରକାର ଶୁଣି ତାଙ୍କ ଗ୍ରାମ ଶିକ୍ଷା କମିଟିରେ କିଛି ପରିବର୍ତ୍ତନ କଲେ ନାହିଁ । କାରଣ ଓଡିଶାରେ କେବଳ କ୍ଷମତସୀନ ଲୋକେ କହିଲେ ଲୋକେ ଶୁଣିବେ ଓ ସରକାର ଶୁଣିବେ । କ୍ଷମତା ନ ଥିବା ଲୋକ ଯେତେ ଭଲ କଥା କହିଲେ ବି କେହି ଶୁଣିବେ ନାହିଁ ।

ପ୍ରଫେସର ବିଧୁଭୂଷଣ ଦାସଙ୍କ ଅଧ୍ୟକ୍ଷତାରେ ଗଠିତ ପ୍ରାଥମିକ ଶିକ୍ଷା ନୀତି ନିର୍ଦ୍ଧାରଣ କମିଟିର ସୁପାରିଶ୍ ବିଷୟରେ ସରକାରୀ ନିର୍ଦ୍ଦେଶ ସତ୍ତ୍ୱେ କିଛି ଆଲୋଚନା ହେଲା ନାହିଁ । ପ୍ରଫେସର କାଳିକୁମାର ଦାସଙ୍କ ଅବସର ଗ୍ରହଣ ପରେ ଉଦ୍ଦେଶ୍ୟ ମୂଳକ ଭାବେ ଏହି କମିଟି ରିପୋର୍ଟକୁ ବିସ୍ମୃତି ଗର୍ଭକୁ ଠେଲି ଦିଆଗଲା । ରାଜ୍ୟର ଦୁର୍ଭାଗ୍ୟ ସହିତ ସଂପୃକ୍ତ ବହୁତ ଅଫିସର ନିଜକୁ କରିତକର୍ମା ବୋଲି ପ୍ରତିଷ୍ଠିତ କରିବାକୁ ଉଦ୍ୟମ କଲେ  ଓ ଆଂଶିକ ସଫଳ ବି ହେଲେ । ଭବିଷ୍ୟତ କହିବ ସେମାନେ କେତେ ସଫଳ ।

ଶିକ୍ଷାର ବ୍ୟଥା ଏତେ ବେଶୀ ଓ ତା ସହିତ ଏତେ ଉଚ୍ଚ ପଦସ୍ଥ ଅଫିସର ସଂପୃକ୍ତ ଯେ ସେମାନଙ୍କର ଏକ ତାଲିକା ମଧ୍ୟ କରିବା ସମ୍ଭବ ନୁହେଁ । ମୁଁ ଭାବୁଛି ଏହି ପୁସ୍ତକର ନାମ "ଶିକ୍ଷାର  କଥା ଓ ବ୍ୟଥା" ସମ୍ପୂର୍ଣ୍ଣ ଯୁକ୍ତିଯୁକ୍ତ ।

କିଛି ସହୃଦୟ ବ୍ୟକ୍ତି ଶିକ୍ଷାର ବ୍ୟଥାକୁ ଉପଲବ୍ଧି କଲେ ମୋର ଶ୍ରମ ସାର୍ଥକ ହେବ ।

# ପରିଶିଷ୍ଟ

ପ୍ରଥମରୁ କହିଛି ଯାଜପୁର ଜିଲ୍ଲା ଦାନଗଦି ବ୍ଲକ୍ ଗୋବର୍ଦ୍ଧନପୁର ଗ୍ରାମ ପଞ୍ଚାୟତର ମୁଖ୍ୟ ଦପ୍ତର ଗୋବର୍ଦ୍ଧନପୁର ଗ୍ରାମରେ ମୋର ଜନ୍ମ । ପୋଷ୍ୟପୁତ୍ର ହୋଇ କେଉଁଝର ଜିଲ୍ଲା ଆନନ୍ଦପୁର ସବ୍‌ଡିଭିଜନ୍ ପୁରୁଣିଆ ଗ୍ରାମକୁ ଯାଇ ସେଠାରେ ନିମ୍ନ ପ୍ରାଥମିକ ଶିକ୍ଷା ଶେଷରେ ଆନନ୍ଦପୁରରେ ମଧ୍ୟ ଇଂରାଜି ଶିକ୍ଷା ଓ ମାଧମିକ ଶିକ୍ଷା ଶେଷ କରି କଲେଜ ଶିକ୍ଷା ପାଇଁ ରେଭେନ୍ସା କଲେଜ ଯାଇଥିଲି । ମୋର ପାଠପଢାରେ ପୁରୁଣିଆଁର ଜମିବାଡି ବିକ୍ରି ହୋଇ ଯାଇଥିବାରୁ ସେଠାରେ ରହିବା ଆଉ ସମ୍ଭବ ହେଲା ନାହିଁ । ପୁରୁଣିଆଁ ଜମି ବିକ୍ରି ଟଙ୍କାରୁ କିଛି ଅଂଶରେ ଗୋବର୍ଦ୍ଧନପୁରରେ ଜମି କିଣା ହୋଇଥିଲା । ୧୯୫୧ ମସିହା ବେଳକୁ ପୁରୁଣିଆଁର ବାପା ମାଙ୍କୁ ନେଇ ମୁଁ ଗୋବର୍ଦ୍ଧନପୁର ଚାଲି ଆସିଲି । ସେ ପର୍ଯ୍ୟନ୍ତ ଗୋବର୍ଦ୍ଧନପୁର ବା ସୁକିନ୍ଦା ସହିତ ମୋର ବିଶେଷ ସଂପର୍କ ନ ଥିଲା । ଗୋବର୍ଦ୍ଧନପୁରରେ ମୋର ବାପା, ମା, ଦୁଇଭାଇ ଘନଶ୍ୟାମ ଓ ଦୋଳଗୋବିନ୍ଦ ଓ ଗୋଟିଏ ଭଉଣୀ ଥିଲେ । ଆମେ ତିନିଜଣ ପୁରୁଣିଆଁରୁ ଆସିଲୁ । ସମସ୍ତେ ଗୋଟିଏ ଘରେ ରହିଲୁ । ଘରେ ସ୍ଥାନାଭାବ ହେବାରୁ ୧୯୫୩ ମସିହାରେ ଆମ ଘରଠାରୁ ସାମାନ୍ୟ ଦୂରରେ ନୂଆ ଘର ତିଆରି କଲୁ । ସେଠାକୁ ସମସ୍ତେ ଚାଲି ଆସିଲୁ । ମୋ ବାପା କିନ୍ତୁ ତାଙ୍କ ଭିଟାମାଟି ଛାଡିଲେ ନାହିଁ । ସେ ସେଠାରେ ରହନ୍ତି ଓ ନୂଆ ଘରେ ଖାଆନ୍ତି ।

## ନୟାକୋଟ ଅଞ୍ଚଳ

ସୁକିନ୍ଦା ଜମିଦାରୀର ଗୋଟିଏ ଅଞ୍ଚଳକୁ ନୟାକୋଟ ଅଞ୍ଚଳ କୁହାଯାଏ । ଏହାର ତିନିପଟେ ପୂର୍ବ, ପଶ୍ଚିମ ଓ ଉତ୍ତର - କେଉଁଝର ଜିଲ୍ଲା । କେବଳ ଦକ୍ଷିଣ ପାଖ ସୁକିନ୍ଦା ସହ ସଂପୃକ୍ତ କିନ୍ତୁ ମଝିରେ ଦୁର୍ଗମ ଜଙ୍ଗଲ । ଯିବା ଆସିବା ପାଇଁ ରାସ୍ତା ନ ଥିଲା କି ଯାନ ବାହନ ନ ଥିଲା । ଜମିଦାର ବା ତାଙ୍କର କେହି ହାକିମ ଆମ ଅଞ୍ଚଳକୁ ଆସିଲେ ହାତୀରେ ଆସନ୍ତି । ବହୁଦିନ ପର୍ଯ୍ୟନ୍ତ ଏ ଅଞ୍ଚଳ ଗମନାଗମନ ଦୃଷ୍ଟିରୁ ବିଛିନ୍ନ ରହିଥିଲା ।

୪୫ ଖଣ୍ଡ ଗାଁକୁ ନେଇ ନୟାକୋଟ ଅଞ୍ଚଳ । ନୟାକୋଟ ଅଞ୍ଚଳ ଏକ ସ୍ୱତନ୍ତ୍ର ଏକକ ଭାବରେ ପରିଗଣିତ ହେଉଥିଲା । ବିଜୁ ପଟ୍ଟନାୟକଙ୍କ ଦୟାରୁ ଏକ୍ସପ୍ରେସ ସଡକ ହେବା ଦିନରୁ ଏ ଅଞ୍ଚଳର ବିଛିନ୍ନତା ଦୂର ହୋଇଗଲା ଓ ନୟାକୋଟ ନାଁର ବ୍ୟବହାର ପ୍ରାୟ ଆଉ ନାହିଁ ।

ନୟାକୋଟ ଅଞ୍ଚଳର ପ୍ରଥମ ଶିକ୍ଷାନୁଷ୍ଠାନ ଚିତ୍ରୀ ପ୍ରାଥମିକ ସ୍କୁଲ୍ ଓ ମାନପୁର ପ୍ରାଥମିକ ସ୍କୁଲ । ଏହି ଦୁଇଟି ପ୍ରାଥମିକ ସ୍କୁଲ ୪୫ ଗୋଟି ଗ୍ରାମ ଲୋକଙ୍କର ଶିକ୍ଷା ଚାହିଦା ପୂରଣ କରିବା ପାଇଁ ଉଦ୍ଦିଷ୍ଟ ଥିଲା । ୧୯୪୫ ମସିହାରେ ଚିତ୍ରୀ ମଧ୍ୟ ଇଂରାଜି ସ୍କୁଲର ପ୍ରାରମ୍ଭ । ସ୍ଥାନୀୟ ମୁଖ୍ୟ ବ୍ୟକ୍ତିମାନେ ଏକତ୍ରିତ ହୋଇ ଚିତ୍ରୀ ମଧ୍ୟ ଇଂରାଜି ସ୍କୁଲ ଆରମ୍ଭ କଲେ । ପ୍ରାରମ୍ଭିକ ଅବସ୍ଥାରେ ଅନେକ ଉତ୍ସାହର ସହିତ ଏହି ଅନୁଷ୍ଠାନଟିକୁ ଚଳାଇଲେ । ସର୍ବ ସାଧାରଣଙ୍କ ସହଯୋଗରେ ପ୍ରତିଷ୍ଠିତ ଏହି ସ୍କୁଲ ପ୍ରତି ବହୁ ଲୋକଙ୍କର ସହାନୁଭୂତି ରହିଥିଲା । ଛାତ୍ରଛାତ୍ରୀ ସଂଖ୍ୟା ମଧ୍ୟ ବେଶ୍ ଭଲ ଥିଲା । କିନ୍ତୁ ପରିଚାଳନାଗତ ତ୍ରୁଟି ଯୋଗୁଁ ସ୍କୁଲର ଅବସ୍ଥା ଆସ୍ତେ ଆସ୍ତେ ଖରାପ ହେବାକୁ ଲାଗିଲା । ସ୍କୁଲ କଟକ ଜିଲ୍ଲା ବୋର୍ଡରୁ ଗ୍ରାଣ୍ଟ-ଇନ୍-ଏଡ୍ ପାଇଲା । ସମସ୍ତେ ଭାବୁଥିଲେ ଗ୍ରାଣ୍ଟ ପାଇଲା ପରେ ଅବସ୍ଥା ସୁଧୁରିଯିବ । କିନ୍ତୁ ତାହା ହେଲା ନାହିଁ । ବରଂ ଅର୍ଥାଭାବ ଯୋଗୁଁ ଶିକ୍ଷକମାନେ ଦରମା ପାଇଲେ ନାହିଁ । ମରାମତି ଅଭାବରୁ ସ୍କୁଲ ଘର ନଷ୍ଟ ହେବାକୁ ଲାଗିଲା । ଲୋକମାନେ ଏ ସବୁ ଅବସ୍ଥା ଦେଖି ଆଉ ସ୍କୁଲ ପ୍ରତି ସହାନୁଭୂତି ଦେଖାଇଲେ ନାହିଁ । ପାଠପଢାର ମାନ ମଧ୍ୟ କମିଯିବାକୁ ଲାଗିଲା ।

## ମାଇନର ସ୍କୁଲ ପରିଚାଳନା

୧୯୫୩ ମସିହାରେ ମୁଁ ବି.ଏ. (ଅନର୍ସ) ପାଶ୍ କରି ଗାଁ ଠାରୁ ଆଠ କିଲୋମିଟର ଦୂର କୁଶଳେଶ୍ୱର ହାଇସ୍କୁଲରେ ଶିକ୍ଷକତା କରୁଥିଲି । ସ୍ଥାନୀୟ ଲୋକେ ତଥା ପରିଚାଳନା ସମିତି ମୋତେ ଅନୁରୋଧ କଲେ ମାଇନର ସ୍କୁଲ ସେକ୍ରେଟେରୀ ଦାୟିତ୍ୱ ନେବା ପାଇଁ । ମୁଁ ଦେଖିଲି ଆମ ନୟାକୋଟ ଅଞ୍ଚଳର ସର୍ବୋଚ୍ଚ ଶିକ୍ଷାନୁଷ୍ଠାନ ଚିତ୍ରୀ ମି.ଇ. ସ୍କୁଲଟି ନଷ୍ଟ ହୋଇଯିବାକୁ ବସିଛି । ତାକୁ ରକ୍ଷା କରିବାକୁ ପଡିବ । ମୁଁ ପରିଚାଳନା ଦାୟିତ୍ୱ ନେଲି । ଦାୟିତ୍ୱ ନେବା ପରେ ଦେଖିଲି କେତେକ ଲୋକ ସ୍କୁଲର ଟଙ୍କା ପଇସା ଖାଇ ଯାଇଛନ୍ତି । ରାଜନୀତି କରି କୌଣସି ଉନ୍ନତିମୂଳକ କାମ କରାଇ ଦେଉ ନାହାନ୍ତି । ମୁଁ ସେ ବିଷୟରେ କାର୍ଯ୍ୟାନୁଷ୍ଠାନ ଆରମ୍ଭ କଲାକ୍ଷଣି ଅନେକ ଲୋକଙ୍କର ଶତ୍ରୁ ହୋଇଗଲି । ମୋ ବିରୁଦ୍ଧରେ ଷଡଯନ୍ତ୍ର ଚାଲିଲା । ମୁଁ କିନ୍ତୁ କିଛି ଖାତିର ନ କରି ଦୃଢ ହସ୍ତରେ କାର୍ଯ୍ୟାନୁଷ୍ଠାନ କଲି ଓ ପରିଚାଳନା କ୍ଷେତ୍ରରେ ଯାହା ପ୍ରତିବନ୍ଧକ ଥିଲା ତାକୁ ହଟାଇ ଦେଲି ।

କଟକ ଜିଲ୍ଲା ବୋର୍ଡ ସ୍ପେଶାଲ ଅଫିସର ନରହରି ପଟ୍ଟନାୟକ ସ୍କୁଲ ପରିଦର୍ଶନରେ ଆସିଥିଲେ । ମୋତେ ଦେଖି କହିଲେ, "ତମେ ପିଲା ଲୋକ,

ଯା ଭିତରେ ପଶିଲ କାହିଁକି ? ସ୍କୁଲର ଏତେ ଅଭାବ, ପୂରଣ କରିବ କେମିତି ?" ମୁଁ କହିଲି, "ଲୋକେ ଚାହିଁବାରୁ ମୁଁ ପରିଚାଳନା ଭିତରେ ପଶିଲି । ସ୍କୁଲର ଅଭାବ ପୂରଣ ପାଇଁ ଉଦ୍ୟମ କରିବି । ଆପଣଙ୍କ ବୋର୍ଡରେ ଅଡିଟ୍ କିଛି ଟଙ୍କା ବନ୍ଦ କରି ରଖିଛନ୍ତି । ସ୍କୁଲଘର ବାର୍ଷିକ ଛପର ଟଙ୍କା ଓ ସ୍କୁଲ ବାକି ଟଙ୍କା ମିଳିଗଲେ, ବାର୍ଷିକ ଗ୍ରାଣ୍ଟଟଙ୍କା ମିଶାଇ ଅଭାବ ପୂରଣ ହୋଇପାରିବ । ନରହରିବାବୁ ସାହାଯ୍ୟ କଲେ ବାକି ଥିବା ଟଙ୍କା ମିଳିବାରେ ଓ ବାର୍ଷିକ ମରାମତି ଗ୍ରାଣ୍ଟ ଦେବାରେ । ସେଇଥିରେ ଅଭାବ ପୂରଣ ହୋଇଗଲା । ବାର୍ଷିକ ଗ୍ରାଣ୍ଟଟଙ୍କା ପୂର୍ବରୁ ହେରଫେର୍ ହେଉଥିଲା । ତାର ସୁପରିଚାଳନା ଦ୍ୱାରା ସ୍କୁଲ ଠିକ୍ ଚାଲିଲା । ୧୯୫୮ ଜାନୁୟାରୀ ମାସରେ ମୁଁ ସରକାରୀ ଚାକିରି କରିବାକୁ ଗଲାବେଳେ ଦାୟିତ୍ୱ ହସ୍ତାନ୍ତର କରିଗଲି । ସେତେବେଳକୁ ସ୍କୁଲର ଆର୍ଥିକ ଅବସ୍ଥା ସୁଧୁରି ଯାଇଥିଲା ।

ପରବର୍ତ୍ତୀ କାଳରେ ସରକାରୀ ନିୟମ ଅନୁସାରେ ଦୁଇଟି ପ୍ରାଥମିକ ଶ୍ରେଣୀ ମଧ୍ୟ ଇଂରାଜି ସ୍କୁଲରୁ ଉଠିଯାଇ ସ୍ଥାନୀୟ ପ୍ରାଥମିକ ସ୍କୁଲରେ ଯୋଡି ହୋଇଗଲା ଓ କେବଳ ୬ଷ୍ଠ ଓ ୭ମ ଶ୍ରେଣୀକୁ ନେଇ ମଧ୍ୟ ଇଂରାଜି ସ୍କୁଲଟି ଚାଲିଲା ।

## ହାଇସ୍କୁଲ ପ୍ରତିଷ୍ଠା

ଆମ ଅଞ୍ଚଳର ନିକଟତମ ହାଇସ୍କୁଲ କୁଶଳେଶ୍ୱର ହାଇସ୍କୁଲ ଆଠ କିଲୋମିଟର ଦୂର କିନ୍ତୁ ମଝିରେ କୁଶେଇ ନଈ । ବର୍ଷା ଦିନରେ ନଈରେ ପାଣି ଆସିଲେ ଏ ପାଖ ପିଲାଙ୍କର ସ୍କୁଲକୁ ଯିବା ବନ୍ଦ । ଏ ଅଞ୍ଚଳରେ ଗୋଟିଏ ହାଇସ୍କୁଲ ନିହାତି ଦରକାର । ୧୯୫୯ ମସିହାରେ ସ୍ଥାନୀୟ ଲୋକମାନେ ଗୋଟିଏ ମିଟିଂ କରି ହାଇସ୍କୁଲ ପ୍ରତିଷ୍ଠା ପାଇଁ ପ୍ରସ୍ତାବ କଲେ । ମୁଖ୍ୟ ଦାୟିତ୍ୱ ମୋ ଉପରେ ପଡିଲା । କାରଣ କୁଶଳେଶ୍ୱର ହାଇସ୍କୁଲ ମଞ୍ଜୁର କରାଇବାରେ ମୋର ମୁଖ୍ୟ ଭୂମିକା ଥିଲା ।

ସାଧାରଣ ସଭାରେ ପ୍ରସ୍ତାବ ହେଲା ଯେ ଚିତ୍ରୀ ମାଇନର ସ୍କୁଲ ଘରେ ହାଇସ୍କୁଲ ଚାଲିବ । ସ୍ଥାନୀୟ ଠାକୁରଙ୍କ ନାମାନୁସାରେ ସ୍କୁଲର ନାଁ ଝାଡେଶ୍ୱର ହାଇସ୍କୁଲ ରଖାଯିବ । ଶିକ୍ଷକ ନିଯୁକ୍ତି କରାଗଲା । ମାଇନର ସ୍କୁଲ ଶିକ୍ଷକମାନେ ପାଠ ପଢାଇବାକୁ ସମ୍ମତି ପ୍ରଦାନ କଲେ । ଏହି ସମୟରେ ଚିତ୍ରୀ ଗ୍ରାମବାସୀମାନେ ଧରଣୀ ଧର ଦତ୍ତଙ୍କ ନେତୃତ୍ୱରେ ସ୍କୁଲଟି ଚିତ୍ରୀ ପଡିଆରେ ହେବାପାଇଁ ପ୍ରସ୍ତାବ

ଦେଲେ । ସେଥିରେ ଅନ୍ୟ ସଂଗଠକମାନେ ରାଜି ନ ହେବାରୁ ବିବାଦୀୟ ପରିସ୍ଥିତି ଉପୁଜିଲା । ଚିତ୍ରୀ ପଡିଆରେ ଘର ତିଆରି କରି ସେମାନେ ସମାନ୍ତରାଳ ହାଇସ୍କୁଲ ଚଳାଇଲେ । ଉଭୟ ସ୍ଥାନରେ ମାତ୍ର ଅଧ କିଲୋମିଟର ଦୂରତା ମଧ୍ୟରେ ଦୁଇଟା ସମାନ୍ତରାଳ ହାଇସ୍କୁଲ ଚାଲିଲା ।

ସୁକିନ୍ଦାର ତତ୍‌କାଳୀନ ବିଧାନ ସଭା ସଦସ୍ୟ ମଦନମୋହନ ପଟ୍ଟନାୟକଙ୍କ ଉଦ୍ୟମରେ ବୀରେନ୍ ମିତ୍ର ପ୍ରଭୃତି ରାଜ୍ୟ ସ୍ତରୀୟ କଂଗ୍ରେସ ନେତାମାନେ ଆସି ଏଠାରେ ସମସ୍ୟାର ସମାଧାନ କଲେ । ସମାଧାନ ସୂତ୍ର ଅନୁସାରେ ହାଇସ୍କୁଲ ମାଇନର ସ୍କୁଲ ପାଖରେ ଚାଲିବ ଓ ଚିତ୍ରୀଠାରେ ଗୋଟିଏ ମାଇନର ସ୍କୁଲ ଖୋଲିବ । ଚିତ୍ରୀ ପଡିଆରେ ଯେଉଁ ମାଇନର ସ୍କୁଲଟି ଖୋଲିଲା ତା ନାଁ "ଚଣ୍ଡୀମାତା ମଧ୍ୟ ଇଂରାଜି ସ୍କୁଲ" । ସମସ୍ତ ସମାଧାନ ସତ୍ତ୍ୱେ ହାଇସ୍କୁଲର ଅବସ୍ଥା ସୁଧୁରିଲା ନାହିଁ । ପରିଚାଳନା ସମିତି ସଦସ୍ୟମାନଙ୍କ ମଧ୍ୟରେ ମନୋମାଳିନ୍ୟ ଲାଗିରହିଲା ।

ହାଇସ୍କୁଲ ପାଇଁ ଘର ତିଆରି ନିମିତ୍ତ ସ୍ଥାନୀୟ ଗ୍ରାମବାସୀଙ୍କ ମଧ୍ୟରେ କୋଠରୀ ବାଣ୍ଟି ଦିଆଗଲା । ଗୋବର୍ଦ୍ଧନପୁର, ମାନପୁର, ଅଲେଖପୁର, ଟୋଲକାନି, ଜେମାଦେଈପୁର ଗ୍ରାମବାସୀମାନେ ତାଙ୍କ ଭାଗ କାମ କରିଦେଲେ କିନ୍ତୁ ଚିତ୍ରୀ ଗ୍ରାମବାସୀମାନେ ସହଯୋଗ କଲେନାହିଁ । ମୁଁ ସ୍କୁଲର ଶିକ୍ଷକ ଓ ସ୍ଥାନୀୟ ଯୁବକମାନଙ୍କୁ ନେଇ ସେ କାମ କରାଇଲି । ସ୍କୁଲ ମଞ୍ଜୁରୀ ବେଳକୁ ତତ୍କାଳୀନ ସହକାରୀ ଇନିସ୍ପେକ୍ଟର ମୁରଲୀଧର ଦାଶ ପରିଦର୍ଶନରେ ଆସିଥିଲେ । ସେ ନାନା ପ୍ରକାର ଆପତ୍ତି ଦର୍ଶାଇଲେ ମୁଖ୍ୟତଃ ଅଭାବ । ସେ ମୋର ବନ୍ଧୁ ହୋଇଥିବାରୁ କୌଣସିମତେ ତାଙ୍କଠାରୁ ସୁପାରିଶ୍ ନେଇ ମାଧ୍ୟମିକ ଶିକ୍ଷା ବୋର୍ଡରୁ ମଞ୍ଜୁରୀ ପାଇଲୁ ।

ଯେଉଁଦିନଠାରୁ ସ୍କୁଲକୁ ଗ୍ରାଣ୍ଟ-ଇନ୍-ଏଡ୍ ମିଳିଲା, ସ୍କୁଲର ଆର୍ଥିକ ଅବସ୍ଥା ସାମାନ୍ୟ ସୁଧୁରିଲା କିନ୍ତୁ ସନ୍ତୋଷଜନକ ହେଲାନାହିଁ । ସ୍କୁଲର ଆର୍ଥିକ ଦୁର୍ବଳ ଅବସ୍ଥା ସତ୍ତ୍ୱେ ପରିଚାଳନା ସମିତିର ଅର୍ଥ ତୋଷାପପାତ କମିଲା ନାହିଁ । ଆର୍ଥିକ ଦୃଷ୍ଟିରୁ ସ୍କୁଲଟି ସଂପୂର୍ଣ୍ଣ ଦୁର୍ବଳ ହୋଇଯିବାରୁ ଓ ପରିଚାଳନା ସମିତି ସଦସ୍ୟମାନଙ୍କର ଆଚରଣରେ ପରିବର୍ତ୍ତନ ନ ହେବାରୁ ମୁଁ ବାଧ୍ୟ ହୋଇ ୧୯୭୦-୧୯୭୧ ମସିହାରେ ତତ୍କାଳୀନ ଯାଜପୁର ସର୍କଲ ଇନିସ୍ପେକ୍ଟର ଇନ୍ଦୁଭୂଷଣ ମିଶ୍ରଙ୍କୁ ଅନୁରୋଧ କଲି ସ୍କୁଲ ପରିଦର୍ଶନ କରିବାପାଇଁ । ସେ ଆସିଲେ

ଓ ତାଙ୍କର ହୃଦବୋଧ ହେଲା ଯେ ସ୍କୁଲର ଆର୍ଥିକ ପରିଚାଳନା ଦୋଷଯୁକ୍ତ । ଅର୍ଥ ତୋଷାରପାତର ପ୍ରତ୍ୟକ୍ଷ ପ୍ରମାଣ ପାଇବାପରେ ସେ ସେକ୍ରେଟେରୀଙ୍କ ମାଧ୍ୟମରେ ଅନୁଦାନ ପ୍ରଦାନ ବନ୍ଦ କରି ଦେଇ Table Payment ପାଇଁ ଆଦେଶ ଦେଲେ । ୧୯୭୫ ମସିହାରେ ପ୍ରତ୍ୟକ୍ଷ ଦରମା ପ୍ରଦାନ ପରେ ସ୍କୁଲର ଅବସ୍ଥା ସୁଧୁରିଲା । କିନ୍ତୁ ଶିକ୍ଷାର ମାନ ଉନ୍ନତ ହେଲା ନାହିଁ ବରଂ ଅପେକ୍ଷାକୃତ କମ୍ ଦିନରେ ମାନପୁରରେ ପ୍ରତିଷ୍ଠିତ ବାଳିକା ସ୍କୁଲର (ବର୍ତ୍ତମାନ ସହ ଶିକ୍ଷା ଅନୁଷ୍ଠାନ) ଶିକ୍ଷାର ମାନ ଉନ୍ନତ ।

## ଧାନକୋଠି ସଂଗଠନ

ଜମିଦାରଙ୍କ ଅମଳରୁ ଆମ ଗାଁ ଗୋବର୍ଦ୍ଧନପୁର ପ୍ରାଧାନ୍ୟ ଲାଭ କରି ଆସିଛି । ରାଜସ୍ୱ ଆଦାୟ ପାଇଁ ଗୋଟିଏ ତହସିଲ ଅଫିସ ଅଛି । ଏବେ ତାକୁ ଆର.ଆଇ.ଅଫିସ କୁହାଯାଉଛି । ଗାଁରେ ଗରିବ ଲୋକଙ୍କ ସଂଖ୍ୟା ଶତକଡା ୮୦ ଭାଗ । ମୂଲ ମଜୁରୀ କରି ଚଳନ୍ତି । ଋଣ ଭାରରେ ସେମାନଙ୍କର ଅଣ୍ଟା ନଇଁ ଯାଇଛି । ଋଣ ଦାତାଙ୍କ ଅତ୍ୟାଚାରରେ ସେମାନେ ନିଷ୍ପେଷିତ । ଧାନ ଋଣ ନେଇ ଶତକଡା ୨୫ ଭାଗ ସୁଧ ଦେବେ । ତା ଉପରେ ବେଠି । ବେଠି ନ କଲେ ଧାନ ଋଣ ମିଳିବ ନାହିଁ । ଗାଁର ଗରିବ ଲୋକମାନଙ୍କୁ ମୁଁ ସଂଗଠିତ କରି, ସେମାନଙ୍କଠାରୁ କିଛି କିଛି ମୂଳଧନ ସଂଗ୍ରହ କରି ଗୋଟିଏ ଧାନ କୋଠି କଲୁ । ଗରିବ ଲୋକମାନେ ସେଇ କୋଠିରୁ କରଜ ନିଅନ୍ତି ଓ ସୁଧ ସହ ଶୁଝି ଦିଅନ୍ତି । ଦ୍ୱିତୀୟ ତୃତୀୟ ବର୍ଷରେ କିଛି ସଙ୍ଗତି ସଂପନ୍ନ ଲୋକ ମୂଳଧନ ଦେଇ କୋଠିରେ ମିଶିଲେ । ଚାରି ପାଞ୍ଚବର୍ଷ ମଧ୍ୟରେ କୋଠି ଧାନ ହୁ ହୁ ହୋଇ ବଢ଼ି ଯାଇ ୧୦୫ ଭରଣ (୨୫୦କୁଇଣ୍ଟାଲ) ହୋଇଗଲା । ମୁଁ କୁଶଳେଶ୍ୱର ହାଇସ୍କୁଲରେ ଥାଇ କୋଠି ପରିଚାଳନାର ତତ୍ତ୍ୱାବଧାନ କରୁଥିଲି । ୧୯୫୮ ଜାନୁୟାରୀ ମାସ ଠାରୁ ମୁଁ ସରକାରୀ ଚାକିରି କରିବାକୁ ଭଦ୍ରକ ଚାଲିଯିବାରୁ ଗାଁର ଅନ୍ୟ ଲୋକଙ୍କ ଦାୟିତ୍ୱରେ କୋଠି ଛାଡିଦେଲି ।

କୋଠି ଚାଲିବା ଫଳରେ ଋଣଦାତାଙ୍କ କାରବାର ମାନ୍ଦା ହୋଇଗଲା । ଲୋକେ ବୁଝିଲେ ଆମ ନିଜ କୋଠିରୁ ଆମେ ଋଣ ନେଉଛୁ ଓ ଶୁଝି ଦେଉଛୁ । ଏଥିରେ ବେଠି ନାହିଁ । ତେଣୁ ପୁରୁଣା ଋଣଦାତାମାନେ କୋଠି ଭାଙ୍ଗିବାକୁ ଉଦ୍ୟମ କଲେ । ସାତ ଆଠ ବର୍ଷ ଚାଲିବା ପରେ ଋଣଦାତା ଓ କିଛି ଦୁଷ୍ଟ ଲୋକଙ୍କ କ୍ରମାଗତ ଉଦ୍ୟମ ଯୋଗୁଁ କୋଠିଟି ଭାଙ୍ଗିଗଲା । କିନ୍ତୁ ତା ଦ୍ୱାରା ଋଣଦାତା

ମାନଙ୍କ ବ୍ୟବସାୟ ଚାଲିଲା ନାହିଁ । ଦଳ ଦଳ ଲୋକ ଛୋଟ ଛୋଟ କୋଠି ସଂଗଠନ କରି କାମ ଚଳାଇଲେ । ଥରେ ସହଯୋଗର ଉପକାରିତା ବୁଝିଲା ପରେ ଆଉ ଋଣଦାତାଙ୍କ ଜାଲରେ ପଡିବାକୁ ଗରିବ ଲୋକେ ମଧ୍ୟ ପସନ୍ଦ କଲେ ନାହିଁ ।

## ହାଟ କିଣା

ଜମିଦାରୀ ଉଚ୍ଛେଦ ପରେ ଜମିଦାରମାନେ ଚଳିବା ପାଇଁ ତାଙ୍କର ଯାହା ଜମିବାଡି ଥିଲା ତାକୁ ଆସ୍ତେ ଆସ୍ତେ ଖଣ୍ଡେ ଖଣ୍ଡେ ବିକ୍ରି କଲେ । ଆମ ଗାଁରେ ସୁକିନ୍ଦା ଜମିଦାରଙ୍କର ବହୁତ ଜମିବାଡି ଥିଲା । ଶାଗ ମାଛ ଦରରେ ସେ ଜମିକୁ କେତେକ ଲୋକ କିଣିଲେ । ଜମିଦାରଙ୍କ ସହିତ ଦୋସ୍ତିକରି କେତେକ ଲୋକ ଜମିନେଇ ଟଙ୍କା ପଇସା ଦେଲେ ନାହିଁ । ଜମିଦାର କାନମୁଣ୍ଡା ଆଉଁସି ରହିଲେ । ଆମ ଗାଁ ପୂର୍ବ ମୁଣ୍ଡରେ ଜମିଦାରଙ୍କର ଗୋଟିଏ ହାଟ ଥିଲା । ତାକୁ ବିକ୍ରି କରିବାପାଇଁ ଜମିଦାର ମନସ୍ଥ କଲେ । ମୁଁ ଦେଖିଲି ଯଦି କୌଣସି ବ୍ୟକ୍ତି ହାଟଟିକୁ କିଣି ନେଇ ବାଡବନ୍ଦି କରିଦିଏ ଗାଁ ଲୋକଙ୍କର ବାହାରକୁ ବାହାରିବାର ବାଟ ରହିବ ନାହିଁ । ତେଣୁ ମୁଁ ଜମିଦାରଙ୍କ ପାଖକୁ ଯାଇ କହିଲି, "ଯଦି ଆପଣ କୌଣସି ବ୍ୟକ୍ତିଙ୍କୁ ହାଟଟି ବିକ୍ରି କରି ଦିଅନ୍ତି ଓ ସେ ବାଡବନ୍ଦି କରି ଦିଏ, ଗୋବର୍ଦ୍ଧନପୁର ଗାଁ ଲୋକେ ବାହାରକୁ ବାହାରି ପାରିବେ ନାହିଁ । ଲୋକଙ୍କ ସୁବିଧା ପାଇଁ ଆପଣ ହାଟଟି ଗ୍ରାମବାସୀଙ୍କୁ ବିକ୍ରି କରନ୍ତୁ । ସେତେବେଳକୁ ହାଟ କିଣିବା ପାଇଁ ଅନ୍ୟଲୋକ ପ୍ରସ୍ତୁତ ହୋଇ ସାରିଥିଲେ ଓ ଜମିଦାରଙ୍କ ଏଜେଣ୍ଟ ବେଣୁଧର ମହାନ୍ତିଙ୍କ ସହିତ କଥାବାର୍ତ୍ତା କରିଥିଲେ । ମୁଁ ଜମିଦାରଙ୍କୁ କହିଲି, ଅନ୍ୟମାନେ ଯେତେ ଟଙ୍କା ଦେବାପାଇଁ କହୁଛନ୍ତି, ଗ୍ରାମବାସୀମାନେ ସେତିକି ଟଙ୍କା ଦେବେ । ଜମିଦାର ଗ୍ରାମବାସୀଙ୍କୁ ହାଟଟି ବିକ୍ରି କରିବା ପାଇଁ ରାଜି ହେଲେ ।

ଆମେ ଟଙ୍କା ଦେଇ ହାଟଟିକୁ ଶ୍ରୀ ରାମଚନ୍ଦ୍ର ଜୀଉ ମାର୍ଫତ ମୁଁ ଓ ଆମ ଗାଁର ଯେତେ ଜାତି ଅଛନ୍ତି ପ୍ରତି ଜାତିରୁ ଜଣେ ଜଣେ ପ୍ରତିନିଧିଙ୍କ ନାଁରେ କବଲା କରିଦେଲୁ । ମୁଁ ମୁଖ୍ୟ ମାର୍ଫତଦାର ରହିଲି । କାରଣ ଭବିଷ୍ୟତରେ ଅନ୍ୟମାନେ ଏକାଠି ହେଲେ ମଧ୍ୟ ଜାଗାଟି ବିକ୍ରି କରି ପାରିବେ ନାହିଁ ।

ଦୁର୍ଭାଗ୍ୟକୁ ଆମ ଗାଁର କେତେକ ଲୋକ ମିଶି ହାଟଟିକୁ ଭାଙ୍ଗି ଦେଲେ । ହାଟୁଆଙ୍କ ଉପରେ ଜୁଲମ କରିବାରୁ ସେମାନେ ଆସିଲେ ନାହିଁ ହାଟଟି

ଭାଙ୍ଗିଗଲା । ହାଟ ଜାଗାରୁ ୩୦ ଡେସ୍ମିଲ ଗାଁ ପ୍ରାଥମିକ ସ୍କୁଲ ନାଁରେ କବଲା କରି ଦେଇଛୁ । ବାକି ଜାଗା ଗ୍ରାମବାସୀଙ୍କ ବ୍ୟବହାର ପାଇଁ ପଡି ରହିଛି ।

## ପ୍ରାଥମିକ ସ୍କୁଲ ପ୍ରତିଷ୍ଠା

ଗୋବର୍ଦ୍ଧନପୁରରେ ଲୋକସଂଖ୍ୟା ୧୦୦୦ରୁ ଅଧିକା । ସବୁ ଦୃଷ୍ଟି କୋଣରୁ ଏହାର ପ୍ରାଧାନ୍ୟ ରହିଥିଲା । କିନ୍ତୁ ନିମ୍ନ ପ୍ରାଥମିକ ସ୍କୁଲଟିଏ ଗାଁରେ ନ ଥିଲା । କେହି କେବେ ସ୍କୁଲ ପ୍ରତିଷ୍ଠା ପାଇଁ ଚେଷ୍ଟା କରିନାହିଁ । ବୋଧହୁଏ, ଯେଉଁଥିପାଇଁ ରାଜାରାଜୁଡାମାନେ ତାଙ୍କ ରାଜ୍ୟରେ ସ୍କୁଲ ପ୍ରତିଷ୍ଠା ପାଇଁ ଉଦ୍ୟମ କରନ୍ତି ନାହିଁ, ସେଇଥିପାଇଁ ଏ ଗାଁରେ ସ୍କୁଲ ପ୍ରତିଷ୍ଠା ପାଇଁ କେହି ଉଦ୍ୟମ କରିନାହାନ୍ତି । କାଳେ ଲୋକ ଶିକ୍ଷିତ ହୋଇଗଲେ ଅନ୍ୟାୟ ଅତ୍ୟାଚାରର ବିରୋଧ କରିବେ । ବେଠି ଖଟିବାକୁ ନାରାଜ ହେବେ । ଗାଁରେ ଶତକଡା ୮୦ ଭାଗ ଲୋକ ଗରିବ । ତାଙ୍କ ପିଲାମାନେ ପାଠପଢୁ ନ ଥିଲେ । ଯେଉଁ କେତେ ଜଣ ସଙ୍ଗତି ସଂପନ୍ନ ଲୋକ ଥିଲେ ତାଙ୍କ ପିଲାମାନେ ମାନପୁର ନିମ୍ନ ପ୍ରାଥମିକ ସ୍କୁଲରେ ପାଠ ପଢୁଥିଲେ ।

ଗାଁ ଦାଣ୍ଡରେ ଗୋଟିଏ ମିଟିଂ ହେଉଥାଏ । ସେଠାରେ ପ୍ରଭାକର ପୁହାଣ(ଏବେ ନାହାନ୍ତି) ପ୍ରସ୍ତାବ ଦେଲେ ଯେ ଗାଁରେ ଗୋଟିଏ ନିମ୍ନ ପ୍ରାଥମିକ ସ୍କୁଲ ପ୍ରତିଷ୍ଠା କରାଯାଉ । ସେତେବେଳେ ମୁଁ ସ୍କୁଲ ସବ୍‌ଇନିସ୍ପେକ୍ଟର ଥାଏ । ମୋତେ ସ୍କୁଲ ପ୍ରତିଷ୍ଠା ଦାୟିତ୍ୱ ଦିଆଗଲା । ମୁଁ ଦେଖିଲି ଗାଁର ଲୋକସଂଖ୍ୟା ପ୍ରାୟ ୧୦୦୦ । ଛଅ ବର୍ଷରୁ ୧୧ ବର୍ଷ ବୟସର ପିଲାଙ୍କ ସଂଖ୍ୟା ଶହେରୁ ଅଧିକ ତେଣୁ ପ୍ରାଥମିକ ସ୍କୁଲ ପ୍ରତିଷ୍ଠା ହୋଇପାରିବ । ମୁଁ କଟକ ଜିଲ୍ଲା ବୋର୍ଡ ସଭାପତି ଗୌରାଙ୍ଗ ଚରଣ ଦାସଙ୍କୁ ଭେଟି ତାଙ୍କୁ ଆମ ଗାଁକୁ ପରିଦର୍ଶନରେ ଆସିବାକୁ ଅନୁରୋଧ କଲି । ସେ ଆସିଲେ, ମୁଁ ତାଙ୍କୁ ମାନପୁର ସ୍କୁଲଠାରୁ ମାନପୁର ଓ ଗୋବର୍ଦ୍ଧନପୁର ଗାଁ ଦାଣ୍ଡରେ ଚଲାଇ ଚଲାଇ ନେଇ ଆସିଲି । ହାଟ ପଡିଆ ପାଖରେ ସ୍କୁଲଟିଏ ପ୍ରତିଷ୍ଠା ପାଇଁ ପ୍ରସ୍ତାବ ଦେଲି । ତାଙ୍କର ହୃଦବୋଧ ହେଲା ଯେ ଗାଁର ଲୋକସଂଖ୍ୟା ଦୃଷ୍ଟିରୁ ଏଠାରେ ପ୍ରାଥମିକ ସ୍କୁଲ ପ୍ରତିଷ୍ଠା ହେବା ଦରକାର ।

ସ୍ଥାନୀୟ ନେତା ଧରଣୀଧର ଦତ୍ତ ଏ ପ୍ରସ୍ତାବର ବିରୋଧ କଲେ । କହିଲେ, "ଗୋବର୍ଦ୍ଧନପୁର ପିଲାଙ୍କ ଶିକ୍ଷା ଆବଶ୍ୟକତା ମାନପୁର ପ୍ରାଥମିକ ସ୍କୁଲ ପୂରଣ କରି ଆସୁଛି ଓ କରିପାରିବ । ଏଠାରେ ସ୍କୁଲ କ'ଣ ଦରକାର ?" ମୁଁ କହିଲି, "ଗୋବର୍ଦ୍ଧନପୁରର କେତେ ଜଣ ପିଲା ମାନପୁର ପ୍ରାଥମିକ ସ୍କୁଲରେ ପଢୁଛନ୍ତି ? ଦୁଇ ଚାରି ଜଣରୁ ବେଶି ନୁହେଁ । ଅଥଚ ଗୋବର୍ଦ୍ଧନପୁରରେ ୬ରୁ ୧୧ବର୍ଷ

ବୟସର ପିଲାଙ୍କ ସଂଖ୍ୟା ୧୦୦ରୁ ଅଧିକ । ବାକି ପିଲା ପଢନ୍ତି ନାହିଁ । କାରଣ ମାନପୁର ସ୍କୁଲରେ ସ୍ଥାନାଭାବ । ଦ୍ୱିତୀୟତଃ ମାନପୁର ସ୍କୁଲ ଏପରି ଜାଗାରେ ଅଛି, ଯେଉଁଠି ସଂପ୍ରସାରଣ ସମ୍ଭବ ନୁହେଁ । ମାନପୁର ଓ ହରିଜନ ସାହି ପିଲାଙ୍କ ନାମଲେଖା ପରେ ଆଉ କେତେ ସ୍ଥାନ ରହିବ ଗୋବର୍ଦ୍ଧନପୁର ପିଲାଙ୍କ ପାଇଁ ? ଏ ସବୁ ଯୁକ୍ତି ଶୁଣି ଗୌରାଙ୍ଗ ବାବୁ ଗୋବର୍ଦ୍ଧନପୁରରେ ସ୍କୁଲ ପ୍ରତିଷ୍ଠା ପାଇଁ ରାଜି ହେଲେ ଓ କଟକ ଯାଇ ଆଦେଶ ପଠାଇ ଦେଲେ ।

ସ୍କୁଲ ପ୍ରତିଷ୍ଠା ପୂର୍ବରୁ ଗାଁ ପିଲାମାନେ ମିଶି ଗୋଟିଏ ଛୋଟ ଆଖଡାଘର ତିଆରି କରିଥିଲେ । ନାଟକ ମଞ୍ଚସ୍ଥ କରିବାପାଇଁ ଏଠାରେ ଆଖଡା ହୁଏ । ସେଇ ଆଖଡା ଘରେ ପାଖ ଗାଁ ନଛିପୁରାର କୃଷ୍ଣଚନ୍ଦ୍ର ସେଠୀ ନାମରେ ଜଣେ ଶିକ୍ଷକଙ୍କୁ ପିଲାଙ୍କୁ ଘରୋଇ ଭାବରେ ପାଠ ପଢାଇବା ପାଇଁ ନିଯୁକ୍ତ କରାଯାଇଥିଲା । ସେ ଖୁବ୍ ଭଲ ପାଠ ପଢାଉଥିଲେ ।

ପ୍ରାଥମିକ ସ୍କୁଲ ମଞ୍ଜୁରି ପରେ ସେଇ ଆଖଡା ଘରେ ସ୍କୁଲ ଆରମ୍ଭ ହେଲା । ପରେ ସେ ଘରର ସଂପ୍ରସାରଣ କରାଗଲା ଓ ନୂଆ ଘର ତିଆରି ହେଲା । ସେତେବେଳେ ଗ୍ରାମପଞ୍ଚାୟତ ଓ ପଞ୍ଚାୟତ ସମିତି ବ୍ୟବସ୍ଥା ନୂଆ ହୋଇ ଆରମ୍ଭ ହୋଇଥାଏ । ରାଛିପୁରର ରଙ୍କନାଥ ବିଶ୍ୱାଳ ଦାନଗଦି ପଞ୍ଚାୟତ ସମିତି ଚେୟାରମ୍ୟାନ ଥିଲେ । ସେ ଏଠାରେ ସ୍କୁଲପାଇଁ ଶିକ୍ଷକ ନିଯୁକ୍ତ କଲେ ନାହିଁ । ମୁଁ ପୁଣି ଦୌଡିଲି ଗୌରାଙ୍ଗ ବାବୁଙ୍କ ପାଖକୁ । ସମସ୍ତ ଘଟଣା ଶୁଣି ସେ ସିଧା ଜିଲ୍ଲାବୋର୍ଡରୁ ଶିକ୍ଷକ ନିଯୁକ୍ତ କରି ପଠାଇଲେ ଓ ପଞ୍ଚାୟତ ସମିତି, ଜିଲ୍ଲା ଶିକ୍ଷାଧିକାରୀ ଓ ସବ୍‌ଇନିସ୍ପେକ୍ଟରଙ୍କୁ ଆଦେଶର ନକଲ ପଠାଇ ଦେଲେ । ବହୁ ବାଧାବିଘ୍ନ ପରେ ଏଠାରେ ନିମ୍ନ ପ୍ରାଥମିକ ସ୍କୁଲଟିଏ ପ୍ରତିଷ୍ଠିତ ହେଲା । ପରବର୍ତ୍ତୀ କାଳରେ ଏଠାରେ ଚତୁର୍ଥ ଓ ପଞ୍ଚମ ଶ୍ରେଣୀ ଖୋଲିଲା ଓ ଅଶୀ ଦଶକରେ ସ୍କୁଲଟି ଉନ୍ନୀତ ମଧ୍ୟ ଇଂରାଜି ସ୍କୁଲରେ ପରିଣତ ହେଲା । ମନରେ ଏତିକି ସନ୍ତୋଷ ଯେ ବହୁ ଗରିବ ଲୋକଙ୍କ ପିଲାମାନେ ଏଠାରେ ପଢି ନିକଟସ୍ଥ ହାଇସ୍କୁଲ ଓ କଲେଜରେ ପଢି ପାରୁଛନ୍ତି ।

## ନିଜକଥା

ବି.ଏ (ଅନର୍ସ) ପାଶ୍ କରି କୁଶଳେଶ୍ୱର ହାଇସ୍କୁଲରେ ସହକାରୀ ଶିକ୍ଷକ ଥିବାବେଳେ ମୋର ବିହାହ ହେଲା । ସ୍ତ୍ରୀଙ୍କ ନାମ ସ୍ୱର୍ଣ୍ଣପ୍ରଭା ରାଉତ । ମୋ ଜୀବନରେ ଉନ୍ନତି ବିବାହ ପରେ ହିଁ ହୋଇଛି । ବି.ଏଡ୍ ଟ୍ରେନିଂ ଯିବା, ଘରୋଇ ଭାବରେ ଏମ୍.ଏ. ପରୀକ୍ଷା ଦେଇ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ପ୍ରଥମ ସ୍ଥାନ

ଅଧିକାର କରିବା, ଓଡିଶା ଲୋକସେବା ଆୟୋଗ ଦ୍ୱାରା ମନୋନୀତ ହୋଇ ଅଧ୍ୟାପକ ଚାକିରୀ କରିବା ଆଦି ବିବାହର ଆଠ ବର୍ଷ ମଧ୍ୟରେ ହୋଇଛି । ଏଣୁ ମୋର ବିବାହକୁ ଉନ୍ନତିର ସୂଚକ ଭାବେ ମୋର ବନ୍ଧୁମାନେ ବିବେଚନା କରନ୍ତି ।

ଆମର ପାଞ୍ଚପୁଅ । ବଡପୁଅ ଶରତ କୁମାର ରାଉତ ଅନୁଗୁଳ କଲେଜରେ ବି.ଏ. ପଢୁଥିବା ସମୟରେ କଲେଜ ଇଉନିୟନ ସଭାପତି ଭାବେ ନିର୍ବାଚିତ ହୋଇଥିଲେ । ତାପରେ ରାଜନୀତିରେ ପ୍ରବେଶ । ୧୯୮୦ ମସିହା ନିର୍ବାଚନରେ କଂଗ୍ରେସ ଦଳରୁ ସେ ନିର୍ବାଚନ ଲଢି ମାୟାଧର ନାୟକ SUCI ଓ ପ୍ରଫୁଲ୍ଲ ଚନ୍ଦ୍ର ଘଡେଇ (ସ୍ୱାଧୀନ)ଙ୍କୁ ପରାଜିତ କରି ଓଡିଶା ବିଧାନସଭା ସଦସ୍ୟ ଭାବରେ ୧୯୮୪ ପର୍ଯ୍ୟନ୍ତ ପାଞ୍ଚବର୍ଷ ରହିଥିଲେ । ୧୯୮୫ ମସିହା ନିର୍ବାଚନରେ ଜୟଲାଭ କରି ୧୯୮୯ ମସିହା ପର୍ଯ୍ୟନ୍ତ ଓଡିଶାର ସଂସ୍କୃତି ଓ ପର୍ଯ୍ୟଟନ ବିଭାଗ ରାଷ୍ଟ୍ରମନ୍ତ୍ରୀ ଭାବେ କାର୍ଯ୍ୟ କରିଥିଲେ । ଏବେ ସେ କଂଗ୍ରେସ ଦଳରେ ସକ୍ରିୟ ରାଜନିତିରେ ବ୍ୟସ୍ତ ।

ଦ୍ୱିତୀୟ ପୁତ୍ର ହେମନ୍ତ କୁମାର ରାଉତ ଇତିହାସରେ ଏମ୍.ଏ ଓ ଏମ୍ ଫିଲ୍ କରି ଅଧ୍ୟାପକ ଭାବରେ କାର୍ଯ୍ୟ କରୁଛନ୍ତି । ତାଙ୍କ ସ୍ତ୍ରୀ ବିଦ୍ୟୁଲ୍ଲତା ପାତ୍ର ଅର୍ଥନୀତିର ଅଧ୍ୟାପିକା । ଉଭୟ ବ୍ୟାସନଗର କଲେଜ, ଯାଜପୁର ରୋଡ୍‌ରେ କାମ କରୁଛନ୍ତି ।

ତୃତୀୟ ପୁତ୍ର ବସନ୍ତ କୁମାର ରାଉତ୍ ବି.ଏସ୍.ସି, ବି.ଏଡ୍ ଓ ପି.ଜି.ଡି.ମ ପାଶ୍ କରି ଯାଜପୁର -କେନ୍ଦୁଝର ଜିଲ୍ଲା ସୀମାରେ ଅବସ୍ଥିତ ଚାର୍ଜକ୍ରୋମ କାରଖାନାରେ କିଛି ବର୍ଷ କାମ କରି ସ୍ୱେଚ୍ଛାକୃତ ଅବସର ନେଇଛନ୍ତି ।

ଚତୁର୍ଥପୁତ୍ର ଶିଶିର କୁମାର ରାଉତ୍ ବି.କମ୍ ପରେ ପି.ଜି.ଡି.ଏଚ.ଆର୍.ଏମ୍ କରି କିଛି ବର୍ଷ ଯାଜପୁର ରୋଡ ନିକଟସ୍ଥ ମେସ୍କୋ କାରଖାନାରେ କାମ କରୁଥିଲେ । ବର୍ତ୍ତମାନ ସେ ଯୋଡା ଆର୍ଯ୍ୟ ଷ୍ଟିଲ୍ ପ୍ଲାଣ୍ଟରେ କାମ କରୁଛନ୍ତି ।

ପଞ୍ଚମ ପୁତ୍ର ସୀତେଶ କୁମାର ରାଉତ ଇତିହାସରେ ଏମ୍.ଏ ପାଶ୍ କରି ଘରେ ଚାଷବାସ ଖବର ବୁଝିବା ସହିତ ଡୁବୁରୀ ନୀଳାଚଳ ଇସ୍ପାତ କାରଖାନାରେ କଣ୍ଟ୍ରାକ୍ଟ କାମ କରୁଛନ୍ତି ।

ସମସ୍ତେ ତାଙ୍କ ନିଜ ନିଜ ପରିବାର ଚଳାଇ ଆନନ୍ଦରେ ରହିଛନ୍ତି । ମୋର ପାରିବାରିକ ସ୍ଥିତି ସନ୍ତୋଷଜନକ । ଏ ପ୍ରକାର ସନ୍ତୋଷଜନକ ସ୍ଥିତିକୁ ମୁଁ ମୋର ପୁଣ୍ୟଫଳ ବୋଲି ଧରି ନେଇଛି ।



ପ୍ରଫେସର ଡକ୍ଟର ପୂର୍ଣ୍ଣଚନ୍ଦ୍ର ରାଉତ ଓଡ଼ିଶାର ଶିକ୍ଷାଜଗତରେ ବିଶେଷକରି ସ୍କୁଲ ଶିକ୍ଷା ଏବଂ ଶିକ୍ଷକ-ଶିକ୍ଷା କ୍ଷେତ୍ରରେ ଏକ ପରିଚିତ ଓ ଜନାଦୃତ ବ୍ୟକ୍ତିତ୍ୱ । ଶିକ୍ଷା ପ୍ରଶାସନରେ ସ୍କୁଲ ସବ୍‌ଇନିସ୍‌ପେକ୍ଟର ଭାବରେ ନିଜର କର୍ମମୟ ଜୀବନ ଆରମ୍ଭ କରି ପ୍ରଶାସନର ସର୍ବୋଚ୍ଚ ନିର୍ଦ୍ଦେଶକ ଆସନ ଅଳଙ୍କୃତ କରିବାରେ ସେ ଅଦ୍ୱିତୀୟ । ଶିକ୍ଷକ ଭାବରେ ତାଙ୍କର ଶିକ୍ଷାଦାନ ପ୍ରଣାଳୀ ତାଙ୍କୁ ଛାତ୍ର ଛାତ୍ରୀଙ୍କ ପାଖରେ ଯେମିତି ଆଦରଣୀୟ କରିଥିଲା, ଶିକ୍ଷା ପ୍ରଶାସନରେ ତାଙ୍କର ମାନବୀୟ ଦୃଷ୍ଟିଭଙ୍ଗୀ ଓ ସର୍ବ ଜନହିତାୟ ଭଳି ପଦକ୍ଷେପ ତାଙ୍କୁ ସେମିତି ଶିକ୍ଷକ, ଅଧସ୍ତନ ସହକର୍ମୀ ତଥା ଅଭିଭାବକମାନଙ୍କ ପାଖରେ ବରଣୀୟ କରିଥିଲା । ବାସ୍ତବିକ ଶିକ୍ଷାକ୍ଷେତ୍ରରେ ତାଙ୍କର ଦୀର୍ଘ ୩୭ ବର୍ଷର ଅଭିଜ୍ଞତା, ଓଡିଶାରେ ପ୍ରାଥମିକ ଶିକ୍ଷା, ମାଧ୍ୟମିକ ଶିକ୍ଷା, ଶିକ୍ଷକ ଶିକ୍ଷା ଓ ଧନ୍ଦାମୂଳକ ଶିକ୍ଷାର ଏକ ଇତିହାସ ।

ପ୍ରଫେସର ରାଉତ ପିଲାଦିନରୁ ଯେପରି ନାନା ଆହ୍ୱାନର ସମ୍ମୁଖୀନ ହୋଇଛନ୍ତି ତାହା ତାଙ୍କର ମନସ୍ତତ୍ତ୍ୱକୁ ଓ ତେଣୁକରି ବ୍ୟକ୍ତିତ୍ୱକୁ ମଧ୍ୟ ଅନେକାଂଶରେ ପ୍ରଭାବିତ କରିଛି । ବାପା ମାଙ୍କର ପ୍ରଥମ ସନ୍ତାନ ହୋଇ ମଧ୍ୟ ପାଞ୍ଚବର୍ଷ ବୟସରେ ପିଉସୀ ପିଉସାଙ୍କ କୋଳକୁ ପୁଅ ହୋଇଯିବା ତାଙ୍କର ଶିଶୁ ମନକୁ ଯେ କିପରି ବେଖାପ କରି ଦେଇଥିବ ତାହା ସହଜରେ ଅନୁମେୟ । ତା ସାଙ୍ଗକୁ ପାଠ ପଢିବାରେ ପ୍ରତି ପାହାଚରେ ବିଭିନ୍ନ ପ୍ରକାର ବାଧା ବିଘ୍ନ ସତ୍ତ୍ୱେ ତାଙ୍କ ମନରେ ଅଧିକ ପାଠ ପଢିବା ପାଇଁ ଯେ ଝୁଙ୍କ, ଏବଂ ଶେଷରେ ବି.ଏ.ଅନର୍ସ ଓ ଏମ.ଏ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ପାଠରେ ନିଜର ଉତ୍କର୍ଷ ସାବ୍ୟସ୍ତ କରିବା ତାଙ୍କ ବ୍ୟକ୍ତିତ୍ୱକୁ ସକାରତ୍ମକ ଜିଦିଆ କରି ଦେଇଥିବ ନିଶ୍ଚୟ । ଯେଉଁଥିପାଇଁ ତାଙ୍କ କର୍ମମୟ ଜୀବନରେ ଗୋଟାଏ କିଛି କାମ ହେବ ନାହିଁ, ହୋଇ ପାରିବନାହିଁ ଭଳି ନ କାରାତ୍ମକ ଦୃଷ୍ଟିଭଙ୍ଗୀ ଆଦୌ ଦେଖାଯାଇନାହିଁ । ସ୍କୁଲ ସବଇନ୍ସପେକ୍ଟର ଚାକିରି ହେଉ, କି ସ୍କୁଲ ଇନ୍ସପେକ୍ଟର ଅବା ଟ୍ରେନିଂ କଲେଜରେ ଇତିହାସ ପଢା କି ନାଟ୍ୟ ପରିଚାଳନା ହେଉ, ସବୁଥିରେ ଏହା ପ୍ରତିଫଳିତ । ଶିକ୍ଷା ସର୍ଭେ କାମରେ ମଧ୍ୟ ସେହି ଏକାପ୍ରକାର ପ୍ରଦର୍ଶନ ।

ପ୍ରଫେସର ପୂର୍ଣ୍ଣଚନ୍ଦ୍ର ରାଉତଙ୍କ ବାଲ୍ୟଜୀବନ, ଶିକ୍ଷା ତଥା ସାମାଜିକ ଚଳଣିର ବିଶେଷକରି ଗ୍ରାମ୍ୟଜୀବନର ଏକ ସମକାଳୀନ ଚିତ୍ର । ତାଙ୍କର କର୍ମମୟ ଜୀବନ, ଉଚ୍ଚଶିକ୍ଷା ଓ ବିଦ୍ୟାଳୟ ଶିକ୍ଷା କ୍ଷେତ୍ରରେ ତଥା ଶିକ୍ଷା ପ୍ରଶାସନରେ ଏକ ନୂତନ, ସକାରାତ୍ମକ ଆଭିମୁଖ୍ୟର ନିଦର୍ଶନ । ପ୍ରଫେସର ରାଉତଙ୍କ ଜୀବନର ବହୁମୁଖୀ ଅଭିଜ୍ଞତା, ଆହ୍ୱାନର ମୁକାବିଲା, ଅନେକଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ରହିବ । ଏହି ବିଶ୍ୱାସ ରଖି ପ୍ରଫେସର ରାଉତଙ୍କ ଆତ୍ମଜୀବନୀ ପ୍ରକାଶ କରି ପ୍ରକାଶକ ହିସାବରେ ଆମେ ଗୌରବାନ୍ୱିତ ମନେ କରୁଛୁ ।

ପ୍ରକାଶକ- କ୍ଲାସ ଓଡ଼ିଶା